# ଶ୍ରୀକୃଷ୍ଣଚରିତମାନସ



ଶ୍ରୀ ବିପିନ ବିହାରୀ ଦାସ

MAHAKAVYA

# SHRI KRISHNA CHARITA MANAS

BY *BIPIN BEHARI DAS*

Published by :

**NILACHAL PRAKASHANI**

**BARBIL - 758035, DIST-KENDUJHAR**

**Printed by NILACHAL PRINTING WORKS**

**B A R B I L**

**PRICE - RS. 120-00**

ପ୍ରଥମ ପ୍ରକାଶ ଅଗଷ୍ଟ - ୨୦୦୦

ପ୍ରକାଶକ

ବିପିନ ବିହାରୀ ଦାସ

ବଡ଼ବିଲ-୭୫୮୦୩୫, ଜିଲ୍ଲା କେନ୍ଦୁଝର

ମୁଦ୍ରଣ - ନୀଳାଚଳ ପ୍ରିଣ୍ଟିଂ ୱାର୍କସ

ବ ଡ ବି ଲ

ମୂଲ୍ୟ - ୧୨୦ ଟଙ୍କା

# ସୂଚୀପତ୍ର

# ଭୂମିକା

ଶ୍ରୀକୃଷ୍ଣ ଚରିତ ମାନସ ଏକ ମହାକାବ୍ୟ । ଏହାର ମହାନାୟକ ପୃଥିବୀର ଶ୍ରେଷ୍ଠତମ ତଥା ସୁବିଶାଳ ସମର ମହାକାବ୍ୟ " ମହାଭାରତ " ର ମହାନାୟକ ଭଗବାନ କୃଷ୍ଣ ବାସୁଦେବ ଏବଂ ଏହାର ଉପଜୀବ୍ୟ କଥାବସ୍ତୁ ହେଉଛି " ଯୁଦ୍ଧାୟ କୃତ ନିଶ୍ଚୟ "।

ମହାକବି କୃଷ୍ଣ ଦ୍ୱୈପାୟନ ବ୍ୟାସଦେବଙ୍କ ବିରଚିତ କୃଷ୍ଣକାବ୍ୟ " ମହାଭାରତ " ହେଉଛି ଭାରତୀୟ ସାହିତ୍ୟ ଜଗତରେ ସର୍ବବୃହତ୍ତମ ଗ୍ରନ୍ଥ ଏବଂ ବିଶ୍ୱ ବିଖ୍ୟାତ ବିଶାଳ ଗ୍ରନ୍ଥ ସମୂହ ମଧ୍ୟରେ ଅନ୍ୟତମ ଶ୍ରେଷ୍ଠ ଗ୍ରନ୍ଥ । ମହାଭାରତରେ ବର୍ଣ୍ଣିତ ଐତିହାସିକ କଥାବସ୍ତୁ ହେଉଛି ସାରା ମାନବ ସମାଜର ଶାଶ୍ୱତ ଇତିହାସ । ଧର୍ମ ସହିତ ଅଧର୍ମ ଯୁଦ୍ଧର ନିଚ୍ଛକ ଚିତ୍ର ବର୍ଣ୍ଣନା ମାଧ୍ୟମରେ ଲୋକ ଶିକ୍ଷା ଦେବା ମାନସରେ ମହାମନୀଷୀ ବ୍ୟାସଦେବ ଏହା ରଚନା କରି ଅଛନ୍ତି ।

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର " ଭାରତ ବର୍ଷରେ ଇତିହାସର ଧାରା " ଶୀର୍ଷକ ଗ୍ରନ୍ଥରେ ଲେଖିଅଛନ୍ତି :— " ଆର୍ଯ୍ୟ ସମାଜରେ ଯେତେ କିଛି ଜନଶ୍ରୁତି ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥିଲା, ସେ ସମସ୍ତଙ୍କୁ ସଂଗ୍ରହ କରି ବ୍ୟାସଦେବ ଏକତ୍ର କଲେ । କେବଳ ଜନଶ୍ରୁତି ନୁହେଁ, ଆର୍ଯ୍ୟ ସମାଜରେ ପ୍ରଚଳିତ ସମସ୍ତ ବିଶ୍ୱାସ, ତର୍କ ବିତର୍କ ଚରିତ୍ର ଓ ନୀତିକୁ ମଧ୍ୟ ସେ ଏଥି ସଙ୍ଗେ ସଂଯୁକ୍ତ କରି ଗୋଟିଏ ଜାତିର ସାମଗ୍ରିକ ବିରାଟ ମୂର୍ତ୍ତିଟିଏ ନିର୍ମାଣ କଲେ । ତା'ର ନାମ ଦେଲେ " ମହାଭାରତ " । ଏହା କୌଣସି ବ୍ୟକ୍ତି ବିଶେଷଙ୍କ ରଚିତ ଇତିହାସ ନୁହେଁ । ଏହା ଗୋଟିଏ ଜାତିର ସ୍ୱରଚିତ ସ୍ୱାଭାବିକ ଇତିହାସ । ମହାଭାରତକୁ ସଂହିତା ବା ସଂଗ୍ରହ ଗ୍ରନ୍ଥ ବୋଲି କୁହାଯାଏ । ଏହା ଭୋଗ ନୁହେଁ, ତ୍ୟାଗର ପ୍ରେରଣା ଦିଏ । କର୍ମ ସନ୍ନ୍ୟାସ ନୁହେଁ, କର୍ମ ଯୋଗର ବାର୍ତ୍ତା ପ୍ରଚାର କରେ । ଜ୍ଞାନ-ଯୋଗ-କର୍ମ-ଭକ୍ତିର ସମାହାର ଶାସ୍ତ୍ର ହେଉଛି ମହାଭାରତ । ଏଥିରେ ଶ୍ରେଷ୍ଠ ମାନବ ଧର୍ମ ଉଦ୍‌ଘୋଷିତ ହୋଇଅଛି ।

ମହାଭାରତ ବସ୍ତୁତଃ ସମର ସାହିତ୍ୟ ଗ୍ରନ୍ଥ ଅଟେ । ଯୁଦ୍ଧ ହେଉଛି ଭାରତୀୟ ଧର୍ମ ରାଜନୀତିର ମୂଳଭିତ୍ତି । କେବଳ ମହାଭାରତ ନୁହେଁ ଭାରତୀୟ ସଂସ୍କୃତିର ଆଦ୍ୟ ଗ୍ରନ୍ଥ ରାମାୟଣ ମଧ୍ୟ ଏକ ସୁବିଶାଳ ସମର ସାହିତ୍ୟ ଗ୍ରନ୍ଥ । ଏହାର ମହାନାୟକ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମଚନ୍ଦ୍ର ଦେବ ତାଙ୍କ ପତ୍ନୀ ଅପହରଣକାରୀ ଦୁର୍ମଦ ରାବଣ ଦୈତ୍ୟର ନିଧନ ପାଇଁ ଧନୁ ଧାରଣ କରି ଭୟଙ୍କର ଲୋମହର୍ଷଣକାରୀ ଯୁଦ୍ଧରେ ପ୍ରବୃତ୍ତ ହୋଇଅଛନ୍ତି । ଏଥିରୁ ଅନୁମିତ ହେଉଅଛି ଯେ ଅନ୍ୟାୟ ଓ ଅଧର୍ମ ବିପକ୍ଷରେ ଯୁଦ୍ଧ ସବୁ ରାଜତନ୍ତ୍ରର ମୌଳିକ ଦାୟିତ୍ୱ ଅଟେ । ଏହା ସବୁ କାଳର, ସବୁ ସମୟର ଆହ୍ୱାନ ଅଟେ । ଯୁଦ୍ଧକୁ ଏଡ଼ାଇବା ସହଜ ବ୍ୟାପାର ନୁହେଁ । ଏଣୁ ଭଗବାନ ବାରମ୍ବାର ମାନବ ରୂପ ଗ୍ରହଣ କରି ଯୁଦ୍ଧରେ ସ୍ୱୟଂ ପ୍ରବୃତ୍ତ ହୋଇ-ଅଛନ୍ତି ।

କେବଳ ରାମାୟଣ ମହାଭାରତ ନୁହେଁ, ଶ୍ରୀମଦ୍ ଭଗବତଗୀତା, ନୃସିଂହ ରତ୍ନାକର, ଅଷ୍ଟାଦଶପୁରାଣ ସପ୍ତସତ୍ତ ଚଣ୍ଡୀ, ଆଦି ଆଧ୍ୟାତ୍ମିକ ଗ୍ରନ୍ଥ ସମୂହ ସମର ବର୍ଣ୍ଣନାରେ ମୁଖରିତ । ଭାରତୀୟ ସାହିତ୍ୟ ସଂସ୍କୃତିରେ କେବଳ ନରଦେହଧାରୀ ମାନବା ବିଷ୍ଣୁ ନୁହଁନ୍ତି, ପରନ୍ତୁ ତାର' ଦେବଦେବୀ ମାନେ ମଧ୍ୟ ସୁତୀକ୍ଷଣ ମାରଣାସ୍ତ୍ରରେ ସଜ୍ଜିତ ହୋଇ ଭୟଙ୍କର ଯୁଦ୍ଧରେ ବ୍ୟାପୃତ ହୋଇଅଛନ୍ତି । ଭାରତର ଆଧ୍ୟାତ୍ମବାଦୀ ମୁନିଋଷି, ସାଧୁସନ୍ଥ ମାନେ ମଧ୍ୟ ଜନନୀ ଜନ୍ମଭୂମି ଓ ସ୍ୱଧର୍ମ ରକ୍ଷା ନିମନ୍ତେ ବିଭିନ୍ନ ପ୍ରକାର ମାରଣାସ୍ତ୍ର ନିର୍ମାଣ, ସଂରକ୍ଷଣ ସହିତ ଯୁଦ୍ଧବିଦ୍ୟା ଶିକ୍ଷାଦାନ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରି ଆସି ଅଛନ୍ତି । ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଅସ୍ତ୍ରଗୁରୁ ବ୍ରହ୍ମର୍ଷି ବିଶ୍ୱାମିତ୍ର, ଭଗବାନ ରାମକୃଷ୍ଣଙ୍କ ଅସ୍ତ୍ରଗୁରୁ ସାନ୍ଦୀପନ ବିପ୍ର ଓ ପାଣ୍ଡବ ମାନଙ୍କ ଅସ୍ତ୍ରଗୁରୁ ଦ୍ରୋଣଙ୍କ ଭୂମିକା ପ୍ରଣିଧାନର ବିଷୟ ଅଟେ । ମାନବ ଦେହଧାରୀ ଭଗବାନ ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ପରି ଦିବ୍ୟ ଦେହଧାରୀ ମାତୃଶକ୍ତି ଦୁର୍ଗା, ଚଣ୍ଡୀ, ମହାକାଳୀ, ମହାସରସ୍ୱତୀ ଓ ମହାଲକ୍ଷ୍ମୀ ମଧ୍ୟ ଭୟଙ୍କର ଯୁଦ୍ଧରେ ଅବତୀର୍ଣ୍ଣ ହୋଇଅଛନ୍ତି । ଏଣୁ ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ, ଭାରତୀୟ ଜନଜୀବନରେ ଆର୍ଯ୍ୟମାନେ ହେଉଛନ୍ତି ବିଶ୍ୱର

ପ୍ରାଚୀନତମ ଦୁର୍ଦ୍ଧର୍ଷ ଯୁଦ୍ଧପ୍ରିୟ ଜାତି । ଏଣୁ ବୈଦିକ ଶାସ୍ତ୍ରରେ ଯଥାର୍ଥରେ ଆହ୍ୱାନ ଦିଆ ଯାଇଅଛି :— " ଆବ୍ରହ୍ମନ୍ ବ୍ରହ୍ମଣା ବ୍ରହ୍ମବର୍ଚ୍ଚସୀ ଜାୟତାମ୍ ଆରାଷ୍ଟ୍ରେ ରାଜନ୍ୟଃ " । ଅର୍ଥାତ୍ ହେ ପରମେଶ୍ୱର ! ଆମର ରାଷ୍ଟ୍ରକୁ ଅଦ୍ୱିତୀୟ ରାଷ୍ଟ୍ରରେ ପରିଣତ କରିବାକୁ ହେଲେ ଆପଣ ବେଦ-ବିଦ୍ୟା ଯୁକ୍ତ ତେଜସ୍ୱୀ ବ୍ରାହ୍ମଣ ଉତ୍ପନ୍ନ କରନ୍ତୁ ଯଦ୍ୱାରା ଦେଶର ଶିକ୍ଷା ଓ ସଂସ୍କୃତିର ମାନଦଣ୍ଡ ସର୍ବଥା ଅଗ୍ରଗଣ୍ୟ ହୋଇ ରହିବ । ଦେଶ ମାତୃକାକୁ ଶତ୍ରୁସୈନ୍ୟ ମାନଙ୍କ କବଳରୁ ମୁକ୍ତ କରିବା ପାଇଁ ସୁଦକ୍ଷ ବୀର ସୈନିକ ମାନଙ୍କୁ ପ୍ରେରଣ କରନ୍ତୁ, ବଳବୀର୍ଯ୍ୟର ସାମର୍ଥ ବୃଦ୍ଧି ପାଇଁ ବହୁକ୍ଷୀର ସମ୍ପନ୍ନା ଧେନୁ, ଶସ୍ୟଶ୍ୟାମଳା ଧରିତ୍ରୀକୁ କର୍ଷଣ କରିବା ପାଇଁ ସମର୍ଥ ବଳଦ, ଯୁଦ୍ଧରେ ପ୍ରବୃତ୍ତ ପାଇଁ ବେଗଗାମୀ ଅଶ୍ୱ, ବୀର ପ୍ରସବିନୀ ରମଣୀ, ସର୍ବୋପରି ରାଷ୍ଟ୍ରର ସମୃଦ୍ଧି ପାଇଁଯୋଗ୍ୟ ଯୋଦ୍ଧା, ରାଷ୍ଟ୍ରାଭିଜ୍ଞ ରାଷ୍ଟ୍ରଦୂତ, ବିଦ୍ୱାନ ଓ ସଂସ୍କାରକବାଦୀ ପୁରୁଷ ପ୍ରବର ମାନଙ୍କୁ ପ୍ରେରଣ କରନ୍ତୁ । ପୁନଶ୍ଚ ମାନବ ସମାଜର ସର୍ବାଙ୍ଗୀନ ଉନ୍ନତି ତଥା କଲ୍ୟାଣ ପାଇଁ ଆବଶ୍ୟକ ସମୟରେ ବୃଷ୍ଟିପାତ କରାଇ ଦେଶରୁ ଦାରିଦ୍ର୍ୟ, ଅନ୍ନକ୍ଲିଷ୍ଟ ଦୂର କରନ୍ତୁ । ମହାବ୍ୟାଧିର ନିରାକରଣ ପାଇଁ ବନୌଷଧି ବୃକ୍ଷମାନଙ୍କୁ ସୃଷ୍ଟି କରାଇ ରାଷ୍ଟ୍ରର ହିତସାଧନ ନିମିତ୍ତ ଆମ୍ଭମାନଙ୍କର ସହାୟକ ହୁଅନ୍ତୁ । "

ପ୍ରଚଣ୍ଡ ସମର କାବ୍ୟ ମହାଭାରତର ଭୀଷ୍ମ ପର୍ବରେ ଶ୍ରୀକୃଷ୍ଣଙ୍କ କଥିତ ଅମର ସାହିତ୍ୟ କୃତି " ଶ୍ରୀମଦ୍ ଭଗବତ ଗୀତା " ହେଉଛି ବିଶ୍ୱର ଏକମାତ୍ର ସମୃଦ୍ଧ ତଥା ସର୍ବଜନାଦୃତ ସମର ମହାକାବ୍ୟ— ଯାହାର ପ୍ରଥମ ଶ୍ଳୋକ ଦେଇଛି ଧର୍ମଯୁଦ୍ଧର ବଜ୍ର ଆହ୍ୱାନ । ଯଥା :-

" ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ
ମାମକାଃ ପାଣ୍ଡବା ଶ୍ଚୈବ କିମ କୁର୍ବତଃ ସଞ୍ଜୟ । "

ଅର୍ଥାତ୍ ଧୃତରାଷ୍ଟ୍ର କହିଲେ ହେ ସଞ୍ଜୟ ! ଧର୍ମଭୂମି କୁରୁକ୍ଷେତ୍ରରେ ଦୁର୍ଯ୍ୟୋଧନାଦି ମୋର ପୁତ୍ରମାନେ ଏବଂ ଯୁଧିଷ୍ଠିର ପ୍ରଭୃତି ପାଣ୍ଡବମାନେ ଯୁଦ୍ଧ କରିବା ପାଇଁ ଏକତ୍ରିତ ହୋଇ କଣ କଲେ ?

ସଞ୍ଜୟ ମନ୍ତ୍ରୀ କହିଲେ ହେ ଭରତ ଶ୍ରେଷ୍ଠ ! ଯୁଦ୍ଧ କ୍ଷେତ୍ରରେ ଉଭୟ ପକ୍ଷରେ ଆତ୍ମୀୟ ସ୍ୱଜନ, ଭାଇ ବନ୍ଧୁ, ମଧ୍ୟାଦିନ ଗୁରୁ ଉଦଗ

ପିତାପୁତ୍ର, ମାମୁଁ ଭଣଜା, ଶଳା ଭଣେଇ, ଗୁରୁଇଷ୍ଟ-ମାନଙ୍କୁ ଦେଖି ଅର୍ଜୁନଙ୍କ ମନରେ ବିଷାଦ ଜାତ ହୋଇଅଛି ଏବଂ ଭଗବାନ ଶ୍ରୀକୃଷ୍ଣ ସଖା ଅର୍ଜୁନଙ୍କ ମନରୁ ବିଷାଦ ଦୂର କରି ତାଙ୍କୁ ପୁନଶ୍ଚ ଯୁଦ୍ଧରେ ପ୍ରବୃତ୍ତ କରାଇବା ମାନସରେ ଭଗବତ ଗୀତାର ଗୋଟିକ ପରେ ଗୋଟିଏ କରି ଅଠର ଅଧ୍ୟାୟ ଗୀତା ଶୁଣାଇ ସାଂସାରିକ ମୋହ ତ୍ୟାଗ କରି କ୍ଷତ୍ରିୟ ଧର୍ମରେ ପ୍ରବୃତ୍ତ କରାଇ ଯୁଦ୍ଧ କରିବାକୁ ଆହ୍ୱାନ ଦେଇ କହି ଅଛନ୍ତି :— " କ୍ଷତ୍ରିୟର ଧର୍ମ ଯୁଦ୍ଧ ଠାରୁ ମଙ୍ଗଳକର ଆଉ କିଛି ନାହିଁ । ଏତାଦୃଶ୍ୟ ଯୁଦ୍ଧକୁ ଭାଗ୍ୟବାନ୍ କ୍ଷତ୍ରିୟମାନେ ଲଭ କରନ୍ତି । ଆହେ ଆର୍ଯ୍ୟପୁତ୍ର ଅର୍ଜୁନ ! ତୁମ୍ଭେ ଯେବେ ଏହି ଧର୍ମଯୁଦ୍ଧ ନ କରିବ ତାହାହେଲେ ନିଜର କ୍ଷତ୍ରିୟ ଧର୍ମ ଏବଂ କୀର୍ତ୍ତି ସମୂହ ଲୁପ୍ତ କରି ପାପଭାଗୀ ହେବ ।

"ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତ ନିଶ୍ଚୟଃ ।"

ହେ କୁନ୍ତୀ ସୁତ ! ତୁମ୍ଭେ ଯୁଦ୍ଧରେ ନିହତ ହେଲେ ସ୍ୱର୍ଗପଦ ଲଭ କରିବ । ଅଥବା ଶତ୍ରୁମାନଙ୍କୁ ଜୟ କଲେ ପୃଥ୍ୱୀ ଭୋଗ କରିବ । ଅତଏବ ଯୁଦ୍ଧ କରିବାକୁ ନିଶ୍ଚୟ କରି ଉଠ । ଶ୍ଳୋକ ୩ । ୩୭

ତୁମ୍ଭେ ସୁଖଦୁଃଖାଦି ଅଭିଳାଷ ଛାଡ଼ି ଧର୍ମ ଯୁଦ୍ଧ ଦ୍ୱାରା କ୍ଷତ୍ରିୟ ଧର୍ମରେ ପ୍ରବୃତ୍ତ ହୋଇ ଯୁଦ୍ଧ କଲେ ତୁମ୍ଭର ପାପ ହେବ ନାହିଁ ।

ଅର୍ଜୁନ କହିଲେ ହେ ଜନାର୍ଦ୍ଦନ ! ହେ କେଶବ ! ଯଦ୍ୟପି କର୍ମ ଯୋଗ ଅପେକ୍ଷା ଜ୍ଞାନଯୋଗ ପ୍ରଶଂସନୀୟ ବୋଲି ତୁମର ମତ, ତାହା ହେଲେ ଏ ଭୟଙ୍କର କର୍ମରେ ଯୁଦ୍ଧରେ ମୋତେ ନିଯୁକ୍ତ କରାଉଛ କାହିଁକି ? ପୁଣି ଆପଣ ଜ୍ଞାନ ଓ କର୍ମ ଉଭୟର ପ୍ରଶଂସା କରି ମୋର ବୁଦ୍ଧି ଭ୍ରଂଶ କରାଉ ଅଛନ୍ତି । ତେଣୁ ମୁଁ ଦ୍ୱନ୍ଦରେ ପଡ଼ି ଯାଉଛି । ଯାହାଦ୍ୱାରା ମୁଁ ମୋକ୍ଷଲଭ କରି ପାରିବି, ସେହି ଗୋଟିକ ନିଶ୍ଚିତ କରି କହନ୍ତୁ ।

ଭଗବାନ ଶ୍ରୀକୃଷ୍ଣ କହିଲେ ହେ ଅନଘ ! ଇହ ଲୋକରେ ଦୁଇ ପ୍ରକାର ମୋକ୍ଷପରତା ଅଛି । ସାଂଖ୍ୟମାନଙ୍କର ଜ୍ଞାନ ଯୋଗ ଦ୍ୱାରା ଏବଂ ଯୋଗୀମାନଙ୍କର କର୍ମ ଯୋଗ ଦ୍ୱାରା ବୋଲି ଜାଣ । କର୍ମାନୁଷ୍ଠାନ ନ କଲେ କେହି ତତ୍ତ୍ୱଜ୍ଞାନ ବା ମୋକ୍ଷ ପାଏ ନାହିଁ । କର୍ମ ତ୍ୟାଗ

ଦ୍ୱାରା ସିଦ୍ଧି ମିଳେ ନାହିଁ । ତେଣୁ ତୁମେ ଯୁଦ୍ଧ କର୍ମରେ ପ୍ରବୃତ୍ତ ହୋଇ ନିଜର କ୍ଷାତ୍ର ଧର୍ମ, ସ୍ୱଧର୍ମ ପାଳନ କର । କାରଣ ସ୍ୱଧର୍ମରେ ଥାଇ ମରଣ ହେଲେ ଶ୍ରେୟ/ଅର୍ଥାତ ସ୍ୱଧର୍ମ ଶୁଭଫଳ ଦିଏ । ପରଧର୍ମ ନର୍କରେ ପକାଏ ।

ମୁଁ ଅବିନାଶୀ, ମୋର ଜନ୍ମ ମୃତ୍ୟୁ ହୁଏ ନାହିଁ । ମୁଁ ପ୍ରାଣୀମାନଙ୍କର ଈଶ୍ୱର ହେଲେ ହେଁ ନିଜର ପ୍ରକୃତିକୁ ଆଶ୍ରୟ କରି ସ୍ୱକୀୟ ମାୟା ଦ୍ୱାରା ( ନିଜ ଇଚ୍ଛାରେ ) ଜନ୍ମ ଗ୍ରହଣ କରେ । କାରଣ ଯେଉଁ କାଳରେ ଧର୍ମର ହାନି ହୋଇ ଅଧର୍ମର ପ୍ରଭାବ ବଢେ, ସେହି ସେହି କାଳରେ ମୁଁ ନିଶ୍ଚୟ ନିଜକୁ ଜାତ କରାଏ ଅର୍ଥାତ୍ ସାଧୁମାନଙ୍କୁ ପରିତ୍ରାଣ ଓ ଅସାଧୁ ଦୁଷ୍ଟମାନଙ୍କୁ ବିନାଶ କରି ଧର୍ମ ସଂସ୍ଥାପନ (ସ୍ଥିରୀକରଣ) କରିବା ନିମିତ୍ତ ମର୍ତ୍ତ୍ୟପୁରରେ ମାନବ ରୂପରେ ଅବତୀର୍ଣ୍ଣ ହୁଏ । ଯେଉଁ ବ୍ୟକ୍ତି ମୋର ଏ ପ୍ରକାର ସ୍ୱେଚ୍ଛାକୃତ ଜନ୍ମ ଓ ଧର୍ମ ପାଳନ ରୂପକ ଅଲୌକିକ କର୍ମମାନଙ୍କୁ ତତ୍ତ୍ୱଜ୍ଞାନ ପୂର୍ବକ ଈଶ୍ୱରଙ୍କର ଏହି ଜନ୍ମ ବୋଲି ଜାଣେ, ସେ ଦେହ ତ୍ୟାଗ ପରେ ମୋତେ ପ୍ରାପ୍ତ ହୁଏ ।

ହେ ପାର୍ଥ ! ସକାମ ବା ନିଷ୍କାମ ହେଉ ଯେ ଯେଉଁ ପ୍ରକାରରେ ମୋତେ ଭଜନ କରନ୍ତି, ମୁଁ ସେହି ପ୍ରକାରରେ ତାଙ୍କୁ ପ୍ରାପ୍ତ ହୁଏ । ଯେହେତୁ ମନୁଷ୍ୟମାନେ ଯେ ଯାହା କରନ୍ତୁ ପଛେ, କିନ୍ତୁ ସକଳ କର୍ମରେ ମୋର ଭଜନ ପନ୍ଥା ଅନୁସରଣ କରିଥାନ୍ତି । ବିଶ୍ୱ ସୃଷ୍ଟ୍ୟାଦି କର୍ମମାନେ ମୋତେ ଲିପ୍ତ କରି ପାରନ୍ତି ନାହିଁ । ମୋର କର୍ମ ଫଳରେ ଆସକ୍ତି ନ ଥାଏ । ମୋତେ ଯେ ଯେପରି ଜାଣେ ସେ ସେପରି ସଂସାର ବନ୍ଧନରୁ ମୁକ୍ତି ଲଭ କରେ । ପୂର୍ବକାଳରେ ଜନକ ପ୍ରଭୃତି ଯେତେ ମୋକ୍ଷାର୍ଥୀ ଥିଲେ ସେମାନେ ମଧ୍ୟ ଅହଂକାରାଦି ରହିତ କର୍ମରେ ବନ୍ଧନ ନାହିଁ ଏକଥା ଜାଣି ଆତ୍ମଶୁଦ୍ଧି ନିମିତ୍ତ କର୍ମ କରି ଯାଇଛନ୍ତି । ସେହି କାରଣରୁ ପୂର୍ବବର୍ତ୍ତୀ ସାଧୁମାନେ କରିଯାଇଥିବା କର୍ମ ତୁମ୍ଭେ କର । ଅତଏବ ହେ ଭରତ ! ଅଜ୍ଞାନରୁ ଜାତ ନିଜ ହୃଦୟସ୍ଥିତ ଏହି ଯେଉଁ ସଂଶୟ ( ବନ୍ଧୁମିତ୍ରାଦି ନାଶ ହେତୁ ଶୋକାଦି ନିମିତ୍ତ ସନ୍ଦେହ ) କୁ ଜ୍ଞାନ ଖଡ୍ଗ ଦ୍ୱାରା ଛେଦନ କରି କର୍ମଯୋଗର ଆଶ୍ରୟ ନିଅ ଏବଂ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ଉଠ ।

ଅର୍ଜ୍ଜୁନ କହିଲେ ହେ ଭଗବାନ୍ ! ଆପଣ ପୂର୍ବ ଅଧ୍ୟାୟରେ କର୍ମମାନଙ୍କରେ ତ୍ୟାଗ କରିବାକୁ କହି ପୁନଶ୍ଚ ସଂଶୟ ଛାଡ଼ି ଯୁଦ୍ଧରୂପ କର୍ମାନୁଷ୍ଠାନ କରିବାକୁ ଉଠ ବୋଲି କହୁ ଅଛନ୍ତି । ଅତଏବ କର୍ମ ସନ୍ନ୍ୟାସ ଓ କର୍ମଯୋଗ ଏ ଦୁହେଁ ପରସ୍ପର ବିରୋଧୀ ହେତୁ ଏକ ସମୟରେ ଏକ ବ୍ୟକ୍ତି ପକ୍ଷେ ତାହା ଅନୁଷ୍ଠାନ କରିବା ଅସମ୍ଭବ । ଏଣୁ ଏ ଦୁହିଙ୍କ ମଧ୍ୟରେ ଯେଉଁ ଗୋଟିକୁ ଶ୍ରେୟସ୍କର ବୋଲି ମନେ କରନ୍ତି, ନିଶ୍ଚୟ କରି ସେ ଗୋଟିକୁ ମୋତେ କହି ଦିଅନ୍ତୁ ।

ଭଗବାନ କହିଲେ କର୍ମ ସନ୍ନ୍ୟାସ ଓ କର୍ମଯୋଗ ଏ ଦୁହେଁଯାକ ମୋକ୍ଷ ଦାୟକ । ତଥାପି କର୍ମ ତ୍ୟାଗ ଅପେକ୍ଷା କର୍ମଯୋଗ ଉତ୍କୃଷ୍ଟ ଅଟେ । ସମସ୍ତ ଜୀବମାନଙ୍କ ମଧ୍ୟରେ ମନୁଷ୍ୟ ଭିନ୍ନ ଆଉ କାହାରି ମୋକ୍ଷ ମାର୍ଗରେ ପ୍ରବୃତ୍ତି ବଳେ ନାହିଁ । ଏବଂଭୂତ ମନୁଷ୍ୟମାନଙ୍କ ମଧ୍ୟରୁ ଲକ୍ଷକରେ ଜଣକୁ ଦୁର୍ଲ୍ଲଭ ଆତ୍ମ ତତ୍ତ୍ୱଜ୍ଞାନ ମିଳିଥାଏ ।

ଏହା କହି ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ମନରୁ ସନ୍ଦେହ ଦୂରୀଭୂତ କରିବା ପାଇଁ ବିଶ୍ୱରୂପ ଦେଖାଇଲେ ଏବଂ ଅର୍ଜ୍ଜୁନ ତାହା ଦର୍ଶନ କରି କହିଲେ :— " ହେ ମହାବାହୋ ! ଏହି ଯେ ଧୃତରାଷ୍ଟ୍ର ପୁତ୍ର ଦୁର୍ଯ୍ୟୋଧନାଦି ସମସ୍ତେ, ତତ୍‌ସହିତ ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣ — ଏମାନେ ଅନ୍ୟ ରାଜାମାନଙ୍କ ସହିତ ଧାବମାନ ହୋଇ ତୁମ୍ଭର କରାଳ ଦନ୍ତ ବିଶିଷ୍ଟ ଭୟଙ୍କର ମୁଖମାନଙ୍କରେ ପ୍ରବେଶ କରୁ ଅଛନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ତୁମ୍ଭର ଦନ୍ତ ସନ୍ଧିରେ ଲାଗି ରହିଛନ୍ତି । ତାଙ୍କର ମସ୍ତକ ସବୁ ଚୂର୍ଣ୍ଣ ହୋଇଯାଇ ଥିବାର ଦେଖା ଯାଉଅଛି । ଯେପରି ଅନେକ ମାର୍ଗ ଗାମିନୀ ନଦୀମାନଙ୍କର ବହୁ ସଂଖ୍ୟକ ଜଳପ୍ରବାହ ଏକମୁଖୀ ହୋଇ ସମୁଦ୍ର ଗର୍ଭରେ ପ୍ରବେଶ କରେ, ସେହିପରି ଏହି ସମସ୍ତ ମର୍ତ୍ତ୍ୟବାସୀ ବୀରଗଣ ତୁମର ସର୍ବତ୍ର ପ୍ରକାଶିତ ଓ ପ୍ରଜ୍ୱଳିତ ମୁଖ ମାନଙ୍କରେ ପ୍ରବେଶ କରୁ ଅଛନ୍ତି । ଯେପରି ପତଙ୍ଗମାନେ ଆପଣା ଇଚ୍ଛାରେ ମରିବା ପାଇଁକି ଶୀଘ୍ର ଗତିରେ ଧାବମାନ ହୋଇ ତୁମ୍ଭର ମୁଖମାନଙ୍କରେ ପ୍ରବେଶ କରୁଅଛନ୍ତି । ଅର୍ଥାତ୍ ଏସବୁ ଲୋକ ଜାଣିଜାଣି ମରିବା ପାଇଁ ତୁମର ମୁଖମାନଙ୍କରେ ଧାଇଁ ଯାଇ ପଶୁ ଅଛନ୍ତି । ତୁମ୍ଭେ ପ୍ରଜ୍ୱଳିତ ଅନଳତୁଲ୍ୟ ମୁଖମାନଙ୍କ ଦ୍ୱାରା ସବୁଆଡ଼େ ସମସ୍ତ ଲୋକଙ୍କୁ

ଗ୍ରାସକରି ପୁନଃ ପୁନଃ ରକ୍ତାକ୍ତ ଓଷ୍ଠଦେଶକୁ ଲେହନ କରୁଅଛ । ହେ ବିଷ୍ଣୋ ! ତୁମର ପ୍ରଖର ଦୀପ୍ତି ସମୂହ ନିଜ ତେଜ ଦ୍ୱାରା ସମଗ୍ର ଜଗତକୁ ପୂର୍ଣ୍ଣକରି ସମସ୍ତ ବ୍ୟାକୁଳ କରୁଅଛୁ । ଏହି ଉଗ୍ର ରୂପଧାରୀ ତୁମ୍ଭେ କିଏ ଅଟ ମୋତେ କହ । ମୁଁ ତୁମ୍ଭଙ୍କୁ ନମସ୍କାର କରୁଅଛି । ମୋତେ ପ୍ରସନ୍ନ ହୁଅ ।

ଭଗବାନ କହିଲେ ମୁଁ ଲୋକକ୍ଷୟକର୍ତ୍ତା ଅତ୍ୟୁଚ୍ଚ କାଳ ଅଟେ । ପ୍ରାଣୀମାନଙ୍କୁ ସଂହାର କରିବାକୁ ଇହଲୋକରେ ପ୍ରବୃତ୍ତ ହୋଇଅଛି । ଅତଏବ ତୁମ୍ଭେ ନ ମାରିଲେ ସୁଦ୍ଧା ପ୍ରତିବାହିନୀରେ ଭୀଷ୍ମ, ଦ୍ରୋଣ, ପ୍ରଭୃତି ଯୋଦ୍ଧାମାନେ ଜୀବିତ ରହିପାରିବେ ନାହିଁ । ଅର୍ଥାତ୍ ମୋ ଦ୍ୱାରା ନିହତ ହେବେ ଏହା ଦେଖି ଜାଣି ତୁମ୍ଭେ ଉଠ । ଯଶଲାଭ କର ଏବଂ ଶତ୍ରୁମାନଙ୍କୁ ଜିଣି ଅକଣ୍ଟକ ଓ ସମୃଦ୍ଧିଶାଳୀ ରାଜ୍ୟ ଭୋଗ କର । ତୁମର ଏହି ଶତ୍ରୁମାନେ ଯୁଦ୍ଧ ନ ହେବା ଆଗରୁ ମୋହ ଦ୍ୱାରା ନିହତ ହୋଇ-ଅଛନ୍ତି । ଅତଏବ ତୁମ୍ଭେ ଏ ବିଷୟରେ ନିମିତ୍ତ ମାତ୍ର ହୁଅ । ମୋ ଦ୍ୱାରା ହତ ହୋଇଥିବା ଏହି ଦ୍ରୋଣ, ଭୀଷ୍ମ, କର୍ଣ୍ଣ, ଜୟଦ୍ରଥ ପ୍ରଭୃତି ଏବଂ ଅନ୍ୟାନ୍ୟ ଯୁଦ୍ଧାର୍ଥୀ ବୀରମାନଙ୍କୁ ତୁମ୍ଭେ ବିନାଶକର । କିନ୍ତୁ ସେମାନଙ୍କ ମୃତ୍ୟୁ ବିଷୟରେ ଶୋକ କରନାହିଁ । ଯୁଦ୍ଧରେ ଶତ୍ରୁମାନଙ୍କୁ ନିଶ୍ଚୟ ଜିଣିବ । ଏଣୁ ଯୁଦ୍ଧ କର । ଭଗବାନଙ୍କର ବଚନକୁ ଶୁଣି କମ୍ପମାନ ଶରୀର ପୂର୍ବକ ଅର୍ଜୁନ କୃତାଞ୍ଜଳି ପୂର୍ବରେ କୃଷ୍ଣଙ୍କୁ ନମସ୍କାର କରି ଅତ୍ୟନ୍ତ ଭୟଯୁକ୍ତ ହୋଇ କହିଲେ- ହେ ଦେବେଶ ! ହେ ଜଗନ୍ନିବାସ ! ତୁମର ଏହି ବିଶ୍ୱକ୍ଷୟକାରୀ ରୂପ ନ ଦେଖାଇ ସେହି ସୌମ୍ୟ ରୂପ ମୋତେ ଦେଖାଅ ଏବଂ ମୋଠାରେ ପ୍ରସନ୍ନ ହୁଅ ।

ସଖା ଅର୍ଜୁନଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଭଗବାନ କୃଷ୍ଣ ବାସୁଦେବ ଶାନ୍ତମୂର୍ତ୍ତି ହୋଇ ଭୟଭୀତ ଅର୍ଜୁନଙ୍କୁ ଆଶ୍ୱାସନା ଦେଲେ ।

ଅର୍ଜୁନ କହିଲେ ହେ ଜନାର୍ଦ୍ଦନ ! ତୁମର ଏହି ଶାନ୍ତପୂର୍ଣ୍ଣ ମନୁଷ୍ୟରୂପ ଦେଖି ବର୍ତ୍ତମାନ ମୁଁ ସୁସ୍ଥ ହୋଇ ସଚେତ ଓ ପ୍ରକୃତିସ୍ଥ ହେଲି ।

ଭଗବାନ କହିଲେ ହେ ଅର୍ଜୁନ ! କେଉଁ କଥା କରଣୀୟ ଓ କେଉଁ କଥା ଅକରଣୀୟ ଏ ବିଷୟରେ ତୁମର ଶାସ୍ତ୍ର କେବଳ ପ୍ରମାଣ ଅଟେ ।

ଅତଏବ ତୁମ୍ଭେ ଶାସ୍ତ୍ରୋକ୍ତ ପ୍ରମାଣ ବୁଝି ନିଜର ଅଧିକାରଥିବା କର୍ମ(ଯୁଦ୍ଧ) କରିବାକୁ ପ୍ରସ୍ତୁତ ହୁଅ । ଏହାର ତାତ୍ପର୍ଯ୍ୟାର୍ଥ ଏହିଯେ; କର୍ମର ଫଳକୁ ତ୍ୟାଗ କରିବ କିନ୍ତୁ କର୍ମକୁ ତ୍ୟାଗ କରିବ ନାହିଁ । ଅର୍ଥାତ ଅନାସକ୍ତ ଭାବେ କର୍ମ କରିବ । ପରାକ୍ରମ, ତେଜ, ଧୈର୍ଯ୍ୟ, ଯୁଦ୍ଧରେ ଅପଳାୟନ, ଦାନ ଓ ପ୍ରଭୁତ୍ୱ ଏହିସବୁ କ୍ଷତ୍ରିୟର ସ୍ୱାଭାବିକ କର୍ମ ଅଟେ । ହେ କୌନ୍ତେୟ ! ନିଜର ସ୍ୱଭାବ ଜନିତ କର୍ମ ଦୋଷ ଯୁକ୍ତ ହେଲେ ମଧ୍ୟ ତାହାକୁ ତ୍ୟାଗ କରିବ ନାହିଁ । ଯେହେତୁ ଅଗ୍ନି ଜାତଧୂମରେ ଆବୃତ ଥିଲାପରି ସମସ୍ତ କର୍ମ ମାନେ କୌଣସି ହେଲେ ଦୋଷରେ ଆବୃତ ଥାନ୍ତି । ଅତଏବ ହେ ଅର୍ଜ୍ଜୁନ ! ତୁମେ ସମସ୍ତ କର୍ମ ମାନଙ୍କୁ ବିବେକ ବୁଦ୍ଧିଦ୍ୱାରା ମୋଠାରେ ଅର୍ପଣ କରି ମତ୍ପରାୟଣ ହୋଇ ବୁଦ୍ଧିଯୋଗକୁ ଆଶ୍ରୟ କରି ସନ୍ତତଃ ମୋଠାରେ ଚିତ୍ତସମର୍ପଣ କର ।

ତୁମ୍ଭେ ଅହଂକାରକୁ ଆଶ୍ରୟ କରି ମୁଁ ଯୁଦ୍ଧ କରିବି ନାହିଁ ଏପରି ଯାହା ମନେ କରିଅଛ ତାହା ତୁମ୍ଭର ମିଥ୍ୟା ହେବ । କାରଣ କ୍ଷତ୍ରିୟ ଜାତୀୟ ଯେ ରଜୋଗୁଣାତ୍ମକ ପ୍ରକୃତି ସେ ତୁମ୍ଭଙ୍କୁ ବାଳାତ୍କାରରେ ନେଇ ଯୁଦ୍ଧରେ ଲଗାଇଦେବ । ଏଣୁ ତୁମ୍ଭେ ସମସ୍ତ ଧର୍ମ ମାନଙ୍କୁ ତ୍ୟାଗ କରି ଏକମାତ୍ର ମୋର ଶରଣ ନିଅ । ଆଉ ଶୋକ କରନାହିଁ । ମୁଁ ତୁମ୍ଭଙ୍କୁ ସମସ୍ତ ପାପରୁ ମୁକ୍ତ କରିବି । ହେ ପାର୍ଥ ! ହେ ଧନଞ୍ଜୟ ! ତୁମ୍ଭେ ଏକାଗ୍ରଚିତ୍ତରେ ଏହି ତତ୍ତ୍ୱାର୍ଥଯୁକ୍ତ ଗୀତାଶାସ୍ତ୍ର ଶୁଣିଲତ ? ଏଥିରେ ତୁମ୍ଭର ଅଜ୍ଞାନ ମୋହ ବିନାଶ ହେଲକି ?

ଅର୍ଜ୍ଜୁନ କହିଲେ- ହେ ଅଚ୍ୟୁତ ! ତୁମ୍ଭ ପ୍ରସାଦରୁ ମୋର ଯେଉଁ ସଂସାର ବିଷୟକ ମୋହଥିଲା, ତାହା ଦୂରହେଲା । ମୁଁ ଈଶ୍ୱରାନୁସନ୍ଧାନ ବିଷୟକ ସ୍ମୃତିଲାଭ କଲି । ବର୍ତ୍ତମାନ ସନ୍ଦେହ ଛାଡ଼ି ଯୁଦ୍ଧପାଇଁ ପ୍ରସ୍ତୁତ । ତୁମ୍ଭର ବଚନ ପ୍ରତିପାଳନ କରିବି । ସଞ୍ଜୟ କହିଲେ ହେ ଧୃତରାଷ୍ଟ୍ର ! ଏହି ପ୍ରକାର ମାହାତ୍ମା ବାସୁଦେବ ଏବଂ ଅର୍ଜ୍ଜୁନଙ୍କର ଏହି ଅଦ୍ଭୁତ ଓ ଲୋମହର୍ଷଣ ସମ୍ବାଦ ମୁଁ ବ୍ୟାସ ଦେବଙ୍କ ପ୍ରସାଦରୁ ସାକ୍ଷାତ ତାଙ୍କ ମୁଖରୁ ଶୁଣିଲି । ହେ ରାଜନ ! ଯେଉଁ ପକ୍ଷରେ ଯୋଗେଶ୍ୱର ଶ୍ରୀକୃଷ୍ଣ ଓ ଧନୁର୍ଦ୍ଧର ଅର୍ଜ୍ଜୁନ ବିଦ୍ୟମାନ, ସେ ପକ୍ଷରେ ରାଜଲକ୍ଷ୍ମୀ, ବିଜୟ, ସାମ୍ରାଜ୍ୟ, ସମ୍ପତ୍ତି ଓ ନିଶ୍ଚଳା ନୀତି ରହିଛି ବୋଲି ମୋ ବୁଦ୍ଧିରେ ମୁଁ -ସ୍ଥିର

କରିଅଛି । ଅତଏବ ତୁମ୍ଭେ ତୁମ୍ଭ ପୁତ୍ର ମାନଙ୍କର ରାଜ୍ୟପ୍ରାପ୍ତି ଆଶା ପରିତ୍ୟାଗ କର । ”

ମହାଭାରତ ଯୁଦ୍ଧ ରାଜ୍ୟ ସମ୍ପ୍ରସାରଣ ପାଇଁ ନୁହେଁ । ପରନ୍ତୁ ଏହା ଅନ୍ୟାୟର ପରି ସମାପ୍ତି ପାଇଁ ଉଦ୍ଦିଷ୍ଟ । ଅଧର୍ମ ବିନାଶ କରି ଧର୍ମ ସ୍ଥାପନ କରିବା ଏହାର ମୌଳିକ ଲକ୍ଷ । ଏହି ଦୃଷ୍ଟି କୋଣରୁ ବିଚାର କଲେ ଯୁଦ୍ଧର ଉପାଦେୟତା ବେଶ ବୃଦ୍ଧି ହୁଏ ଏବଂ ସେହି ଦୃଷ୍ଟିରୁ ମହାଭାରତ ଯୁଦ୍ଧ ହେଉଛି ଏକ ଅପରିହାର୍ଯ୍ୟ ଧର୍ମ ଯୁଦ୍ଧ । ଏହି ମହାନ ବାର୍ତ୍ତାକୁ ହଜାର ହଜାର ବର୍ଷ ଧରି ମଣିଷ ସମାଜ ବିଶ୍ୱାସ କରି ଆସିଅଛି । ଏହି ସାର୍ବଜନୀନ ବିଶ୍ୱାସ ବିରୁଦ୍ଧରେ ମତ ପୋଷଣ କରିବା ଧୃଷ୍ଟତା ବ୍ୟତୀତ ଆଉ କଣ ହୋଇପାରେ ? ନ୍ୟାୟ ଓ ଅନ୍ୟାୟର ସ୍ୱରୂପ ଠାବକରି ମୂଲ୍ୟବୋଧର ଭିତ୍ତିଭୂମି ଉପରେ ଧର୍ମକୁ ବିଚାର କରାଯିବା ଉଚିତ ।

ଭଗବାନ ଶ୍ରୀକୃଷ୍ଣ ଜନ୍ମରୁ ତିରୋଧାନ ପର୍ଯ୍ୟନ୍ତ ଯୁଦ୍ଧରେ ଲିପ୍ତ ହୋଇଅଛନ୍ତି । ସମରକ୍ଳାନ୍ତ ଶ୍ରୀକୃଷ୍ଣ କ୍ଳାନ୍ତି ବିନୋଦନ ପାଇଁ ଶୀତଳ ଛାୟାଶ୍ରିତ ପିଆଳ ଲତା ତଳେ ପଡ଼ିଥିବା ପଥର ଶଯ୍ୟାରେ ଶୟନ କରିଥିବା ସମୟରେ ବ୍ୟାଧ ଜରାଶବରର ଶରାଘାତରେ ଇହଲୀଳା ସମ୍ବରଣ କଲେ । ଏହି ମହାନ ବିପ୍ଳବୀ ତଥା ବୀର ପୁରୁଷଙ୍କ ଜୀବନ ଚରିତକୁ ଆଧାର କରି “ ଶ୍ରୀକୃଷ୍ଣ ଚରିତ ମାନସ ” ମହାକାବ୍ୟର ସୃଷ୍ଟି । ମହାଭାରତର କଥାବସ୍ତୁ ତଥା ମହାନାୟକ ଭଗବାନ ଶ୍ରୀକୃଷ୍ଣଙ୍କ ମହା-ମାନବୀୟଲୀଳା ହିଁ ଏହାର ଉପଜୀବ୍ୟ କଥାବସ୍ତୁ ।

ଭାରତୀୟ ସାହିତ୍ୟ ଜଗତରେ ରାମାୟଣ ଓ ମହାଭାରତ ହେଉଛି ବିବିଧ ଆଧ୍ୟାତ୍ମିକ ତଥା ରସାଳ କାବ୍ୟ କବିତା ସୃଷ୍ଟିର ଭିତ୍ତିଭୂମି ବା ମୂଳ ଉତ୍ସ । ସଂସ୍କୃତ ଭାଷାରେ ବିରଚିତ ଏହି ମହାନ ଗ୍ରନ୍ଥ ଦ୍ୱୟକୁ ଭିତ୍ତି କରି ପରବର୍ତ୍ତୀ କାଳରେ ସଂସ୍କୃତ ତଥା ପ୍ରାନ୍ତୀୟ ଭାଷାରେ ଅନେକାନେକ ସାହିତ୍ୟ ସୃଷ୍ଟି ହୋଇଅଛି । କବି କାଳିଦାସ, ଭବଭୂତି, ଶ୍ରୀହର୍ଷ, ବିଲ୍ୱମଙ୍ଗଳ, ଆଦି ମହାନ କବିମାନେ ଅନେକ ରାମକୃଷ୍ଣ କାବ୍ୟ-କବିତା ରଚନା କରି ଭାରତୀୟ ସାହିତ୍ୟକୁ ପୁଷ୍ଟ କରି ଯାଇଛନ୍ତି ।

ସମସ୍ୟାନୁକ୍ରମିକ ଆଲୋଚନା କଲେ ଜଣଯାଏ ପ୍ରାନ୍ତୀୟ ତାମିଲ ଭାଷାରେ ମହାଭାରତ ଓ ସ୍କନ୍ଦପୁରାଣ ଅଷ୍ଟମ ଶତାବ୍ଦୀରେ ଏବଂ ରାମାୟଣ ଏକାଦଶ ଶତାବ୍ଦୀରେ ଲିଖିତ ହେଲା । ସେହିପରି କନ୍ନଡ଼ ଭାଷାରେ ମହାଭାରତ ଓ ରାମାୟଣ ଯଥାକ୍ରମେ ଦଶମ ଓ ଦ୍ୱାଦଶ ଶତାବ୍ଦୀରେ, ତେଲଗୁ ଭାଷାରେ ମହାଭାରତ ଏକାଦଶ ଶତାବ୍ଦୀରେ ଓ ରାମାୟଣ ଚତୁର୍ଦ୍ଦଶ ଶତକରେ, ମାଲୟାଲମ ଭାଷାରେ ରାମାୟଣ ଓ ମହାଭାରତ ସେହି ସମୟରେ ରଚିତ ହୋଇଥିବା ବେଳେ ଆସାମିୟା ଭାଷାରେ ଏହି ଦୁଇ ଗ୍ରନ୍ଥ ଚତୁର୍ଦ୍ଦଶ ଶତାବ୍ଦୀରେ ରଚିତ ହୋଇଥିଲା ଏବଂ ବଙ୍ଗଳା ଭାଷାରେ କୃତ୍ତିବାସ ରାମାୟଣ ଚତୁର୍ଦ୍ଦଶ ଶତକରେ ଓ ତାପରେ ମହାଭାରତ ରଚିତ ହୋଇଥିଲା ବେଳେ ଷୋଡ଼ଶ ଶତାବ୍ଦୀରେ ହିନ୍ଦୀ ରାମାୟଣ "ରାମଚରିତ ମାନସ" ଓ ୧୪୭୫ ଖ୍ରୀଷ୍ଟାବ୍ଦରେ ସାରଳା ମହାଭାରତ ଓଡ଼ିଆ ଭାଷାରେ ରଚିତ ହୋଇଥିଲା । ଏହା ଭାରତର ସମସ୍ତ ପ୍ରାନ୍ତୀୟ ଭାଷାରେ ରଚିତ ମହାଭାରତ ଗ୍ରନ୍ଥ ଗୁଡ଼ିକ ମଧ୍ୟରେ ଆକାରରେ ବିଶାଳତମ ଗ୍ରନ୍ଥ ଅଟେ । ତାପରେ ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ଆଗରୁ ଓଡ଼ିଶାରେ ରାମକୃଷ୍ଣ କାବ୍ୟର ପ୍ରବକ୍ତା ଭାବରେ ପଞ୍ଚସଖାମାନେ ପ୍ରତିଷ୍ଠାଲାଭ କରିଥିଲେ । ଏ କ୍ଷେତ୍ରରେ ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ପ୍ରଣିଧାନର ବିଷୟ ଅଟେ ।

ସାରଳା ମହାଭାରତକୁ ଆଧାର କରି "ଶ୍ରୀକୃଷ୍ଣ ଚରିତ ମାନସ" ମହାକାବ୍ୟର ସୃଷ୍ଟି ହୋଇଥିଲେ ହେଁ ମହାଭାରତର ଆଦିସ୍ରଷ୍ଟା ମହାକବି ବ୍ୟାସଦେବଙ୍କ ରଚିତ ମୂଳ ସଂସ୍କୃତ ମହାଭାରତ, ଆଦିକବି ବାଲ୍ମୀକିଙ୍କ ଦ୍ୱାରା ରଚିତ ରାମାୟଣ, ନୃସିଂହ ନାଟକ, ହରିବଂଶ, ଅଷ୍ଟାଦଶ ପୁରାଣ,ବେଦ, ଉପନିଷଦ, ସଂହିତା, ଗୀତଗୋବିନ୍ଦ, ସୁକ୍ତିଶାସ୍ତ୍ର, ପଞ୍ଚସଖା ସାହିତ୍ୟ, ଭକ୍ତକବି ଜୟଦେବଙ୍କ ତୁଳସୀ ରାମାୟଣ, ସନ୍ଥକବି ଭୀମଭୋଇ ରଚନାବଳୀ,କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାଶ ସମେତ ଭଞ୍ଜକାବ୍ୟ ସମୂହ, ବିଚିତ୍ର ରାମାୟଣ, କବିସୂର୍ଯ୍ୟ ବଳଦେବ ରଥ, ଭକ୍ତକବି ଗୋପାଳକୃଷ୍ଣ ଦାସଙ୍କ ରଚିତ କୃଷ୍ଣକାବ୍ୟର ସଙ୍ଗୀତ ମୂର୍ଚ୍ଛନାରେ ଏହାର ଅଙ୍ଗ ସୌଷ୍ଠବ ସୁଗଠିତ । ମହାଭାରତର ଘଟଣାବଳୀକୁ

ଉପଜୀବ୍ୟ କରି ବିଭିନ୍ନ ପ୍ରାନ୍ତୀୟ ଭାଷାରେ ରଚିତ ପ୍ରସିଦ୍ଧ ଉପନ୍ୟାସ ଯଥା :— କେ. ଏମ୍, ମୁନସିଙ୍କ କୃଷ୍ଣାବତାର, ମୃତ୍ୟୁଞ୍ଜୟଙ୍କ ଯାଜ୍ଞସେନୀ, ସମେତ ପାଞ୍ଚଜନ୍ୟ, କର୍ଣ୍ଣ, ବ୍ୟାସଦେବ ଆଦି ଲୋକପ୍ରିୟ କଥା ସାହିତ୍ୟର ସାର, ଭାଷା, ଶୈଳୀ, ଶବ୍ଦବିନ୍ୟାସ ଓ ଭାବାର୍ଥକୁ ଭିତ୍ତି କରି ଛନ୍ଦ ରାଗରାଗେଣୀରେ ରଚିତ ଶ୍ରୁତିମଧୁର ତଥା ରସମୟ ସଙ୍ଗୀତରେ ଭରପୂର " ଶ୍ରୀକୃଷ୍ଣଚରିତ ମାନସ " ସମ୍ପୂର୍ଣ୍ଣ ଏକ ନୂତନ ଢଙ୍ଗରେ ।

ଏହାଛଡ଼ା ଦୈନିକ, ସପ୍ତାହିକ ପାକ୍ଷିକ ମାସିକ, ବାର୍ଷିକ ପତ୍ର ପତ୍ରିକା ସ୍ମରଣିକା ଗୁଡ଼ିକରେ ବିଭିନ୍ନ ସମୟରେ ପ୍ରକାଶିତ କୃଷ୍ଣ ଲୀଳା/ମହାଭାରତ କଥା ସମ୍ବନ୍ଧୀୟ ସନ୍ଦର୍ଭ ଗୁଡ଼ିକର ନିର୍ଯ୍ୟାସରେ ଔପନ୍ୟାସିକ ଭଙ୍ଗୀରେ ରଚିତ ହୋଇଅଛି । ଇସ୍କନଦ୍ୱାରା ପ୍ରକାଶିତ ଶ୍ରୀମଦ୍ ଭଗବତ ଗୀତାର କୃଷ୍ଣ ଚେତନାକୁ ମଧ୍ୟ ଆଲୋଚନା ପରିସର ଭୁକ୍ତ କରାଯାଇଅଛି ।

ଓଡ଼ିଆ ଭାଷା ସାହିତ୍ୟରେ, କାବ୍ୟ କବିତାରେ ଅନେକ କୃଷ୍ଣ କାବ୍ୟ ରଚିତ ହୋଇଥିଲେ ମଧ୍ୟ ଏକବିଂଶ ଶତାବ୍ଦୀର ଆଦ୍ୟପାଦର ପ୍ରାରମ୍ଭରେ ମହାନ୍ କୃଷ୍ଣ କାବ୍ୟ ଶ୍ରୀକୃଷ୍ଣ ଚରିତ ମାନସ ରଚିତ ଓ ପ୍ରକାଶିତ ହେବାର କାରଣ ହେଉଛି ନୀଳାଚଳ ନିବାସୀ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ଅସୀମ କୃପା, ଆଶିର୍ବାଦ ଓ ଶାଶ୍ୱତ ପ୍ରେରଣା ସହିତ ମୋର ପରମାରାଧ୍ୟ ଜଗଦ୍‌ଗୁରୁ ଠାକୁର ଶ୍ରୀ ଶ୍ରୀ ଶ୍ରୀ ଅଭିରାମ ପରମହଂସ ଦେବଙ୍କ ନିର୍ଦ୍ଦେଶ ଓ ଇଚ୍ଛାଶକ୍ତିର ପ୍ରତିଫଳନ । ଏଣୁ ଏ କାବ୍ୟ କୁସୁମାଞ୍ଜଳି ଯଥାର୍ଥରେ ଶ୍ରୀକୃଷ୍ଣାର୍ପଣ ମସ୍ତୁ ହୋଇଅଛି ।

ମୋର ବିଶ୍ୱାସ ଏହା ନିଶ୍ଚିତ ରୂପେ ରସଗ୍ରାହୀ ତଥା ଅଧ୍ୟାତ୍ମ ବାଦୀ ପାଠକ ପାଠିକା ମାନଙ୍କ ଅନ୍ତଃକରଣରେ ରେଖାପାତ କରିବ । କାରଣ ଇସ ମଧ୍ୟରେ କୃଷ୍ଣନାମ ପ୍ରେମ ହେଉଛି ଶ୍ରେଷ୍ଠରସ । ଅସରନ୍ତି ସେ ରସ ଭଣ୍ଡାର । ଚିରପ୍ରବହମାନ । ଯେତେ ପାନ କଲେ ମଧ୍ୟ ତୃପ୍ତି

ଆସେନା । ଆହୁରି, ଆହୁରି ଅଧିକ ଅଧିକ ପାନ କରିବାକୁ ଜିହ୍ୱା ଆଗ୍ରହାନ୍ୱିତ ହୋଇ ଉଠେ । ଯୁଗ ଯୁଗ ଧରି ନିରବଚ୍ଛିନ୍ନ ଭାବରେ ପ୍ରବାହିତ ହୋଇ ଆସିଥିବା ଏହି ଭଗବତ ପ୍ରେମଧାର କେବଳ କାହାଣୀ ନୁହେଁ, ଐତିହାସିକ ଘଟଣା ବଳୀର ସମାହାର ନୁହେଁ, ପରନ୍ତୁ ଏହା ପରମାତ୍ମା ଭଗବାନ କୃଷ୍ଣଙ୍କର ଦିବ୍ୟ ଚରିତ୍ର ବର୍ଣ୍ଣନା ସାଙ୍ଗକୁ ପ୍ରତ୍ୟେକ ବ୍ୟକ୍ତିର ଜୀବନଗାଥା ଅଟେ । ଶରାଘାତ କରିଥିବା ଜରାଶବରଙ୍କୁ ଅଭୟ ପ୍ରଦାନ, ଯୁଦ୍ଧକ୍ଷେତ୍ରରେ ଚକ୍ରପେଶି ଶିରଚ୍ଛେଦନ କରିଥିବା କରାତ ସେନଙ୍କୁ ନନ୍ଦିଘୋଷ ରଥରେ ମର୍ଯ୍ୟାଦାପୂର୍ଣ୍ଣ ଆସନ ପ୍ରଦାନ, ପିତୃହୀନ ଶତ୍ରୁକବଳିତ ପାଣ୍ଡବ ମାନଙ୍କୁ ମରଣ ମୁଖରୁ ରକ୍ଷା ସହିତ ନାରୀ ଦ୍ରୌପଦୀଙ୍କୁ ବସ୍ତ୍ରହରଣ ସମୟରେ କୋଟି ବସ୍ତ୍ର ପ୍ରଦାନ, ବନ୍ଧୁ ଦାମୋଦର ବିପ୍ରଙ୍କ ଅଜ୍ଞାତରେ ଅସୀମ ଧନ ପ୍ରଦାନ କରି ତାଙ୍କର ଦାରିଦ୍ର୍ୟ ଦୁଃଖ-ହରଣ, ଗୋପାଳ ବାଳକ ମେଳରେ ଏକତ୍ର ଭୋଜନ, ଅନ୍ଧଙ୍କୁ ଚକ୍ଷୁ ପ୍ରଦାନ, ରାଜସୂୟ ଯଜ୍ଞରେ ବିପ୍ର ମାନଙ୍କର ପାଦ ଧୌତ, ଉଚ୍ଛିଷ୍ଟପତ୍ର ଉଠାଇବା ଆଦି ସେବା କାର୍ଯ୍ୟ ମହାମାନବୀୟ ସ୍ୱୀକୃତ ଓ ସମନ୍ୱୟର ବୋର୍ଦ୍ଧ ପ୍ରକୃରକରେ । ଏ ସବୁ ଚିତ୍ରଣ କ୍ଷେତ୍ରରେ କାବ୍ୟ ସ୍ରଷ୍ଟା କେତେ-ଦୂର କୃତ କାର୍ଯ୍ୟ ତାହା ବିଦଗ୍ଧ ପାଠକେ ଆବଶ୍ୟ ନିର୍ଣ୍ଣୟ କରିବେ ।

"ଶ୍ରୀକୃଷ୍ଣ ଚରିତ ମାନସ" କାବ୍ୟ ବସ୍ତୁତଃ ଚାରି ଖଣ୍ଡରେ ବିଭକ୍ତ ଅଟେ । ଯଥା- ଗୋପଲୀଳା ଖଣ୍ଡ, ମଥୁରା-ଦ୍ୱାରକା ଲୀଳା ଖଣ୍ଡ, ବନଲୀଳା ଖଣ୍ଡ ଓ ଭାରତ ଲୀଳା ଖଣ୍ଡ- ଯାହାକି ଧର୍ମ-ଅର୍ଥ-କାମ-ମୋକ୍ଷ ସ୍ୱରୂପ ଅଥବା ବଦ୍ରିକା-ଅଯୋଧ୍ୟା-ଦ୍ୱାରକା-ଶ୍ରୀକ୍ଷେତ୍ର ନାମକ ଚାରି ପୁଣ୍ୟଧାମ ଦର୍ଶନ ଜନିତ ଶୁଭଫଳ ପ୍ରଦାୟକ ଅଟେ । ଏହାର ପଠନ-ଶ୍ରବଣ-ଚିନ୍ତନ-ସ୍ମରଣ ପ୍ରଭୃତି ଶ୍ରୀବଳଦେବ, ଶ୍ରୀ ସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀସୁଦର୍ଶନଙ୍କ ଦର୍ଶନ ଜନିତ ପ୍ରେମପ୍ରୀତି ପ୍ରଦାୟକ ଆଧ୍ୟାତ୍ମିକ ଭାବନା ଅଟେ ।

ଜୟ ଜଗନ୍ନାଥ

ଲେଖକ

# ଶ୍ରୀ କୃଷ୍ଣ ଚରିତ ମାନସ

## ଗୋପଲୀଳା ଖଣ୍ଡ

## ପ୍ରଥମ ଅଧ୍ୟାୟ

## ( ବନ୍ଦନା )

### ରାଗ-ମଙ୍ଗଳ ଗୁର୍ଜ୍ଜରୀ

"କଦାଚିତ କାଳନ୍ଦୀ-ତଟ-ବିପିନ ସଙ୍ଗୀତକରବୋ,
ମୁଦାଭିରୀ ନାରୀ ବଦନ କମଳା - ସ୍ୱାଦୁ - ମଧୁପଃ,
ରମା ଶମ୍ଭୁ ସୁରପତି ଗଣେଶାର୍ଚ୍ଚିତ ପଦୋ,
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବ ତୁମେ ।"

ବନ୍ଦଇ ଶ୍ରୀ ଜଗନ୍ନାଥ ଶଙ୍ଖ ଚକ୍ର ପାଣି
ଅଶେଷ କୋଟି ବ୍ରହ୍ମାଣ୍ଡ କରଣ କାରେଣୀ ଯେ । ୧
କଳାମୁଖ ଶୋଭାପାଏ କଳାହାଣ୍ଡି ଜିଣି
ବିକଚ - କମଳ ନେତ୍ର ଶଙ୍ଖ ଚକ୍ର ପାଣି ଯେ । ୨
ପକ୍ୱ ବିମ୍ବ ଫଳ ଜିଣି ସୁରଙ୍ଗ ଅଧର
ଭକ୍ତଜନ ହିତକାରୀ କରୁଣା ସାଗର ଯେ । ୩
ଅଷ୍ଟ - ରତ୍ନ ସିଂହାସନେ ପ୍ରଭୁ ଦେବରାଜେ
ଭାଇ ଭଉଣୀ ଘେନ ନୀଳ କନ୍ଦରରେ ବିଜେ ଯେ । ୪
ସମ୍ମୁଖରେ ଗରୁଡଉଭା ଯୋଡ଼ ବେନି ପାଣି
ଧରଣୀରେ ନମସ୍କରନ୍ତି ଛପ୍ନ କୋଟି ପ୍ରାଣୀ ଯେ । ୫
ଶ୍ରୀ ଜଗନ୍ନାଥ ଚରଣେ କୋଟିଏ ପ୍ରଣତି
ବୋଲେ ଚୂଲ ଦାସ ପ୍ରଭୁ ନାହିଁ ଅନ୍ୟ ଗତି ଯେ । ୬

ନମୋ ଜଗଦ୍ଗୁରୁ କୃଷ୍ଣ ଜଗତ ମଙ୍ଗଳ
ଭକ୍ତ ଶେଖର ନନ୍ଦ ଯଶୋଦା ଦୁଲାଳ ଯେ । ୭

ନିକୁଞ୍ଜ ବିହାରୀ କୃଷ୍ଣ ଗୋପୀ ପ୍ରାଣ ପ୍ରିୟ
ବ୍ରଜେନ୍ଦ୍ର ନନ୍ଦନ ନନ୍ଦ ଯଶୋଦା ତନୟ ଯେ । ୮
ଯଦୁକୁଳ ମିତ୍ର ଜୟ ଜୟ ଜଗନ୍ନାଥ
ଶୁଦ୍ଧ-ବିଗ୍ରହ ଶ୍ରୀକୃଷ୍ଣ ଶଙ୍ଖ ଚକ୍ର ହସ୍ତ ଯେ । ୯
ଚରଣ କମଳେ ସ୍ୱାମୀ ପଶୁଛି ଶରଣ
ଶରଣ ରକ୍ଷଣ ଦେବ କରନ୍ତୁ କାରଣ ଯେ । ୧୦

" ତଂ ଦେବ ଶାସ୍ତ୍ର ପରିନିଷ୍ଠିତ ଶୁଦ୍ଧ ବୁଦ୍ଧିଂ ।
ଚର୍ମା ବରଂ ସୁର ସୁମୀନ୍ଦ୍ରଂ ନୁତଂ କବୀନ୍ଦ୍ରଂ ॥
କୃଷ୍ଣ ତ୍ୱିଷଂ କନକ ପିଙ୍ଗ ଜଟା କଳାପଂ ।
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାଂ ॥"
ନମୋ ନମୋ ବ୍ୟାସ ଦେବ କବି କୁଳ ଗୁରୁ ।
କୃଷ୍ଣ ଦ୍ୱୈପାୟନ କୃଷ୍ଣ ପ୍ରେମ କଳ୍ପତରୁ ଯେ । ୧୧
ସର୍ବ ଶାସ୍ତ୍ର ସୃଷ୍ଟି କର୍ତ୍ତା କୃଷ୍ଣ ପ୍ରିୟ ଭକ୍ତ
କୃଷ୍ଣ ନାମ ପ୍ରଚାରକ ଜ୍ଞାନରେ ଗରିଷ୍ଠ ଯେ । ୧୨
କବୀନ୍ଦ୍ର ମୁନୀନ୍ଦ୍ର ନମୋ ପରାଶର ସୁତ
ଭକ୍ତ ଶିରୋମଣି ପଦେ ଶତ ପ୍ରଣିପାତ ଯେ । ୧୩

" ସତ୍ୟ ନାରାୟଣ ଦେବଂ ସତ୍ୟ ରୂପ ସନାତନଂ ।
ଧର୍ମସଂସ୍ଥାପନାର୍ଥାୟ ଗୁରୁବ୍ରହ୍ମଃଂ ନମୋମ୍ୟହଂ ।
ତ୍ରେତୟାଂ ରାମଚନ୍ଦ୍ରାଚ ଦ୍ୱାପରେ ଶ୍ରୀକୃଷ୍ଣ ତଥା
ସତ୍ୟକଳୌ ଶ୍ରୀ ଚୈତନ୍ୟ ଅଭିରାମଂ ନମୋ ନମଃ ।"
ସତ୍ୟ ନାରାୟଣ ସ୍ୱାମୀ ସତ୍ୟ ସନାତନ
ତ୍ରେତୟା ଯୁଗେ ଶ୍ରୀରାମ ଦ୍ୱାପରେ ଶ୍ରୀକୃଷ୍ଣ ଯେ । ୧୪
ଅନନ୍ତ ସତ୍ୟ କଳରେ ଶ୍ରୀଚୈତନ୍ୟାଭିରାମ
ନମୋ ନମୋ ଗୁରୁବ୍ରହ୍ମ ସତ୍ୟ ସନାତନ ଯେ । ୧୫

ମୋ କଣ୍ଠେ ବସନ୍ତୁ କରି ରଚିବି ସଂଗୀତ
"ଶ୍ରୀ କୃଷ୍ଣ ଚରିତ ମାନସ" ରସମୟ ଗୀତ ଯେ । ୧୬
ଅଜ୍ଞାନ ଅଧମ ମୂର୍ଖ ନାହିଁ ମୋ କବିତ୍ୱ
ଦଣଇ ପଦ ଯେମନ୍ତ ଲେଖଇ ତେମନ୍ତ ଯେ । ୧୭
ସର୍ବରସ ମୟ ଅଟେ ଶ୍ରୀ କୃଷ୍ଣ ଚରିତ
ରସରାଜ କୃଷ୍ଣଚନ୍ଦ୍ର ନାୟକ କଥିତ ଯେ । ୧୮
ରସିକ ଜନ ହୃଦୟ ଭୂଷଣ ହୋଇବ
କୃଷ୍ଣ ଚରିତ ମାନସ" କାବ୍ୟ ବୋଲାଇବ ଯେ । ୧୯
ନମୋ ନମୋ ଗଜାନନ ଗିରିଜା ନନ୍ଦନ
ବିଘ୍ନ ବିନାଶକ ଘେନା କର ନିବେଦନ ଯେ । ୨୦
ଘଟଗାଁ ତାରିଣୀ ମାଗୋ ବିପିନ ବାସିନୀ
ତଟେ ବିଜେ କରି ଅଛ ସତ୍ୟ ସନାତନୀ ଯେ ।
କବିର ଜନନୀ କରି ଏକାବ୍ୟ ପୂରଣ
କରଯୋଡ଼ି କରୁଅଛୁ ଚରଣ ବନ୍ଦନ ଯେ । ୨୨
ମହାକାବ୍ୟ ବୋଲାଇବ କାବ୍ୟ ମଧ୍ୟେ ସାର
ମହାନାୟକ ଶ୍ରୀକୃଷ୍ଣ ପୁରୁଷ ପ୍ରବରଯେ । ୨୪
ଚବିଶ ପଦେ ଅଧ୍ୟାୟ ହୋଇଲା ସମ୍ପୂର୍ଣ୍ଣ
ଗୀତରେ ଭଣିଲା ବୃନ୍ଦାଦାସ ମୂଢ଼ଜନ ଯେ । ୨୫

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ମଙ୍ଗଳାର୍ପଣେ ନାମ ପ୍ରଥମ ଗ୍ରନ୍ଥ ସମ୍ପୂର୍ଣ୍ଣଂ

**ଶ୍ରୀ କୃଷ୍ଣାର୍ପଣ ମସ୍ତୁ ।**



# ଦ୍ୱିତୀୟ ଅଧ୍ୟାୟ

## ଆତ୍ମ ନିବେଦନ

## ରାଗ - ବଙ୍ଗଳା ଶ୍ରୀ

ଜୟ ଜଗନ୍ନାଥେ ! ଜଗତ ସାଆନ୍ତେ
ଜଗତ ଜନଙ୍କ ହିତେ
ଜଗତରେ ବିଜେ କରିଅଛ ପ୍ରଭୁ
ଭାଇ ଭଗ୍ନୀ ଘେନି ସାଥେ । ୧
ସଙ୍ଗେ ସୁଦର୍ଶନ ଧରି ନାରାୟଣ
ହୋଇଛ ଚତୁର୍ଦ୍ଧା ମୂର୍ତ୍ତି
ଜଗତ ଠାକୁର ଜଗତ ଜନର
ସେବା କରନ୍ତୁ ପ୍ରଣତି । ୨
ହେ କରୁଣାସିନ୍ଧୁ ଭକ୍ତ ପ୍ରାଣ ବନ୍ଧୁ
ଜଗତ ପତି ଗୋପେଶ
ଜୟ ରାଧାକାନ୍ତ ଗୋପୀ ପ୍ରାଣନାଥ
ବଂଶୀଧାରୀ ନନ୍ଦଶିଷ୍ୟ । ୩
ଜୟ ରାଧାରାଣୀ ହାଟକ ବରଣୀ
କୃଷ୍ଣ ଆହ୍ଲାଦିନୀ ଶକ୍ତି
ରାଧା-ଗୋପୀ ପ୍ରେମେ ପାଗଳ କରାଅ
ପାଇବାକୁ କୃଷ୍ଣ ଭକ୍ତି । ୪
ନାରୀ ଅଙ୍ଗ ବନା କୃଷ୍ଣ ପ୍ରେମ ମନା
ବୈଷ୍ଣବ ଧର୍ମର ମତ
ଶ୍ରୀରାଧା, ଗୋପୀଙ୍କୁ ଗୁରୁଜ୍ଞାନ କରି
ଭଜୁଅଛୁ ରାଧାନାଥ । ୫
ଜୟ ଜୟ ଗୁରୁ ପ୍ରେମ କଳ୍ପତରୁ
ହରେ-ରାମ-କୃଷ୍ଣ-ଶ୍ୟାମ
ନବୀନ ନୀରଦ କାନ୍ତି ଶୋଭାପାଏ
ନମୋ ଗୁରୁ ଅଭିରାମ । ୬

ଗୁରୁ ବଇଷ୍ଣବ ଚରଣେ ପ୍ରଣତି
ପ୍ରଣାମ ହେ ଜୟଦେବ
ସାରଳା ଦାସଙ୍କ ଚରଣେ ଜୁହାର
ପଞ୍ଚସଖା ଗୁରୁଦେବ । ୭
ଜଗନ୍ନାଥ, ଯଶୋ- ବନ୍ତ, ବଳରାମ
ଜୟ ଅଚ୍ୟୁତ, ଅନନ୍ତ
ସେ ପଞ୍ଚ ସଖାଙ୍କ ଚରଣେ ପ୍ରଣତି
ପ୍ରଣତି ପଞ୍ଚ ମହନ୍ତ । ୮
ପଞ୍ଚସଖାଙ୍କର ପାଞ୍ଚ ଗୋଟି ଭାବ
ଝରଇ ଅମୀୟ ରସ
ଶାନ୍ତ-ଦାସ୍ୟ-ସଖ୍ୟ ବାତ୍ସଲ୍ୟ-ମଧୁର
ଅଟେ ଏହି ପଞ୍ଚରସ । ୯
ଏ ପଞ୍ଚ ରସରେ ମୋ ପଞ୍ଚ ପରାଣ
ପ୍ଲାବିତ କରନ୍ତୁ ପ୍ରଭୁ
ପଞ୍ଚରସେ କୃଷ୍ଣ ଲୀଳା ମୁଁ ଗାଇବି
ଶୁଣି ତୋଷ ହେବେ ବିଭୁ । ୧୦
ପଞ୍ଚମୁଖେ ପଞ୍ଚା- ନନ ଗାଉଛନ୍ତି
ପଞ୍ଚାମୃତ ପାନ ପାଇଁ
ପଞ୍ଚାନନ ପଞ୍ଚା- କ୍ଷର ଜପି ହୃଦେ
ପଞ୍ଚରସେ ରଚିବଇଁ । ୧୧
ମୁଁ କଣ ଭଣିବି ଜ୍ଞାନ ମୋର ନାହିଁ
ସ୍ୱଭାବେ ମୂଢ଼ ଅଜ୍ଞାନ
ଗୁରୁଙ୍କ ଦୟାରୁ ଯେ ପଦ ଝରଇ
କରୁଛି ମାତ୍ର ଲିଖନ । ୧୨
ଅନ୍ତର ଭାବକୁ ଭାଷା ଦେଉଅଛି
ଦେଖାକର ଭାବଗ୍ରାହି
ତୁମ୍ଭେ ଅଟ ଭାବ୍ୟ ମୁଁ ଅଟେ ଭାବୁକ
ଭାବେ ଅର୍ପଣ କରଇ । ୧୩

ଭକତ କଲ୍ଲୋଳେ ଚରଣ କମଳେ
କରେ ଆତ୍ମନିବେଦନ
ତୁମ୍ଭେ ମୋ ସାଆନ୍ତ ମୁଁ ତୁମ୍ଭ ସାମନ୍ତ
ଚରଣ ସେବକ ଜନ । ୧୪

ଶ୍ରୀ କୃଷ୍ଣ ଚରିତ ଅତ୍ୟନ୍ତ ପବିତ୍ର
ଶାସ୍ତ୍ର ପୁରାଣରେ ସାର
ଗୀତା, ଭାଗବତ, ଭାରତ, ସଂହିତା
ନୃସିଂହ ରତନାକର । ୧୫

ସକଳ ଶାସ୍ତ୍ରର ନିଗୂଢ଼ ନିର୍ଯ୍ୟାସ
ଏକତ୍ର ହୋଇ ମନ୍ଥନ
ପୁଷ୍ପ ମଧ୍ୟେ ମଧୁ ଯେସନେ ସଞ୍ଚିତ
ମାନସ ଅଟେ ତେସନ । ୧୬

ଜ୍ଞାନ ଓ ଚେତନା ବିବେକ ଭାଣ୍ଡରେ
ମନ୍ଥନ କରି ବିପିନ
ମୁରୁ ତତ୍ତ୍ୱଜ୍ଞାନ ଉଦ୍ଦୀପ୍ତ ବହ୍ନିରେ
ବସାଇ କରେ ପାଚନ । ୧୭

ଗାଏ ବୃନ୍ଦାବନ ଭାଷା ପ୍ରବନ୍ଧରେ
ମଙ୍ଗଳ ମୂର୍ଚ୍ଛନା ଗୀତ
ହରେ-ରାମ-କୃଷ୍ଣ- ଶ୍ୟାମ-ଅଭିରାମ
ନାମରେ ଜଳାଇ ବତି । ୧୮

ଗୁରୁଜ୍ଞାନାଞ୍ଜନେ ବିବେକ ମାର୍ଜନେ
ଲେଖେ ପବିତ୍ର ଆଖ୍ୟାନ
ଅମିୟ ଅମୃତ ଧାର ବହିଯାଏ
ସୁଜନେ କର ହେ। ପାନ । ୧୯

ଆହେ ସୁଜ୍ଞଜନେ କରେ ନିବେଦନ
ନ ଧରିବ ଦାସ ଦୋଷ
କୋଡ଼ିଏ ପଦରେ ଅଧ୍ୟାୟ ସମାପ୍ତ
ପାନକର କୃଷ୍ଣ ରସ । ୨୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହା କାବ୍ୟ
ଅଟେନେ ଚୋପଲ୍ଲା ଖଣ୍ଡେ ଆତ୍ମନିବେଦନେ ନାମ
ଦ୍ୱିତୀୟ ଅଧ୍ୟାୟ ସମାପ୍ତଂ ।

**ଶ୍ରୀ କୃଷ୍ଣାର୍ପଣ ମସ୍ତୁ ।**

*-*

# ତୃତୀୟ ଅଧ୍ୟାୟ

# ମାହାତ୍ମ୍ୟ କଥନ

## ରାଗ- ବଙ୍ଗଳାଶ୍ରୀ

ନମୋ ନମୋ ଗୁରୁ ପ୍ରେମ କଳ୍ପ ତରୁ
ନମସ୍ତେ ଅନାଦି ବ୍ରହ୍ମ
କମଳାକାନ୍ତ ଭକ୍ତ ପ୍ରାଣନାଥ
ଗୁରୁବ୍ରହ୍ମ ଅଭିରାମ ।୧
ଗୁରୁରୂପେ ଜ୍ଞାନ କରନ୍ତୁ ପ୍ରଦାନ
ଶ୍ରୀ ଚରଣେ ନିବେଦନ
ସତ୍ୟ ନାରାୟଣ ସ୍ୱରୂପ ଧାରିଣ
କରି ଜ୍ଞାନ ବିତରଣ ।୨
ଶ୍ରୀକୃଷ୍ଣ ଚରିତ ମାନସ ରଚନେ
ବଳଅଛି ମୋର ମନ
କୃଷ୍ଣଙ୍କ ସଗୁଣ ଆଖ୍ୟାନ ଶୁଣାଇ
ତୋଷ କର ମୋର ମନ ।୩

କୃଷ୍ଣ ଲୀଳା ମୃତ ପାନ କର ତୋଷେ
ହୋଇବ ତାପିତ ପ୍ରାଣ
ଜନ୍ମ ଜନ୍ମାନ୍ତର ପାପ ବିମୋଚନେ
ଅର୍ଜିବ ଅଖଣ୍ଡ ପୁଣ୍ୟ । ୪

ଶିଷ୍ୟର ଉତ୍କଣ୍ଠା ଭାବକୁ ଦେଖିଣ
ଗୁରୁବ୍ରହ୍ମ ଅଭିରାମ
ଭାବ ବିନୋଦିଆ ଠାକୁର କହିଲେ
ଶୁଣ ଶ୍ରୀକୃଷ୍ଣ ଆଖ୍ୟାନ । ୫

ଜ୍ଞାନ ଗୁରୁ ବ୍ୟାସ ଦେବଙ୍କ ଚରଣ
ଆଦ୍ୟରେ କରି ବନ୍ଦନ
ବ୍ୟାସଦେବ ଉକ୍ତ କୃଷ୍ଣ ଲୀଳାମୃତ
କଥା କରୁଛୁ ବର୍ଣ୍ଣନ । ୬

ଗୀତା, ଭାଗବତ, ଭାରତ, ନୃସିଂହ
ଇତିହାସ ସିଦ୍ଧ ତଥ୍ୟ
ପୁଣ୍ୟ ଦେବଭୂମି ଭାରତ ଭୂଖଣ୍ଡେ
ପ୍ରାଚୀନ କାଳୁ ବିଦିତ । ୭

ଯାହାର ହଜାର ହଜାର ବର୍ଷର
ଆତ୍ମ ଗାଥା ସମ୍ମୁନ୍ନତ
ସମୃଦ୍ଧ ଜାତିର ସମୃଦ୍ଧ ପ୍ରସିଦ୍ଧି
ପ୍ରାଚୀନ କାଳୁ କଥିତ । ୮

ଜୟ, ପରାଜୟ, ଉତ୍‌ଥାନ, ପତନ
ଦୀର୍ଘ ବିବରଣୀ ପୃଷ୍ଠା
ଭାଷା ପ୍ରବନ୍ଧରେ ରଚିତ ହୋଇଛି
ଇତିହାସ ଇତିକଥା । ୯

ସିଂହ ଶିଶୁ ସଙ୍ଗେ କ୍ରୀଡ଼ାରତ ଶିଶୁ
ନୃପ ନନ୍ଦନ ଭରତ
ଢନେ ଏ ଭୂମିକୁ ଭାରତ ନାମରେ
କରିଲେ ଅଭିମନ୍ତ୍ରିତ । ୧୦

ସାର ଭୋଗ୍ୟା ଭୂମି ଏ ଭାରତ ବର୍ଷ
ଏ ମାଟିରେ ଫଳେ ସୁନା
ଜୀବନ ମନ୍ତ୍ର ଗଗେ ସ୍ୱରସ୍ଫିତ
ପ୍ରକୃତ୍ୟାନନ୍ଦ ଯୌବନା । ୧୧
କାଳେ କାଳେ ଏଇ ମାଟିର ଆହ୍ୱାନ
ଉଦାର ମାନବ ଧର୍ମ
ସନାତନ ଧର୍ମ ପ୍ରବହମାନରେ
ଶୁଭେ ଶାଶ୍ୱତ ସ୍ପନ୍ଦନ । ୧୨
ଏ ପୁଣ୍ୟ ଭୂମିକୁ ସୁ-ଅଭିମନ୍ତ୍ରିତ
କରିଛି ବେଦ ବେଦାନ୍ତ
ଗୀତା, ଭାଗବତ, ପୁରାଣ, ସଂହିତା
ଉପନିଷଦ, ଭାରତ । ୧୩
ରାମାୟଣ, ଅଷ୍ଟା- ଦଶ ପୁରାଣାଦି
ଅହର୍ନିଶି ଉଦ୍‌ଗୀତ
ବନ, ଉପବନ, ଗଗନ, ପବନ
ପ୍ରତିଧ୍ୱନି ପ୍ରକମ୍ପିତ । ୧୪
ଆକାଶ, ପାତାଳ, ସ୍ୱର୍ଗ, ଶୂନ୍ୟଲୋକ
ଜଳ ସ୍ଥଳ ବାୟୁ ଆଦି
ନଗ ଓ ନଗର ପ୍ରତିଧ୍ୱନି ଶୁଭେ
ଗିରି ଗହ୍ୱାରାଦି ଭେଦି । ୧୫
କ୍ରାନ୍ତଦର୍ଶୀ, ମନ୍ତ୍ର - ଦ୍ରଷ୍ଟା ମୁନିଋଷି
ତପସ୍ୟା ସାଧନ ବଳେ
ଏ ପୁଣ୍ୟ ଭୂମିକୁ ରକ୍ଷା କରିଛନ୍ତି
ଧ୍ୱଂସ ମୁଖୁ କାଳେ କାଳେ । ୧୬
ପୃଥିବୀର ବହୁ ପ୍ରାଚୀନ ସଭ୍ୟତା
କାଳ କବଳିତ ହୋଇ
ପୃଥିବୀର ପୃଷ୍ଠରୁ ନିଶ୍ଚିହ୍ନ ହୋଇଛି
ଆପଣା ସ୍ଥିତି ହରାଇ । ୧୭

ମାନ ଇତିହାସ ସଭ୍ୟତା ଉନ୍ନତି
କାଳେ କାଳେ ପ୍ରଜ୍ଜ୍ୱଳିତ
ବହୁ ଆସୁରିକ ଆକ୍ରମଣ ସତ୍ତ୍ୱେ
ହୋଇନ·ବିଲୟ·ପ୍ରାପ୍ତ ।୧୮

ସମ୍ଭାବନା, ଭବ୍ୟ- ତାରେ ପରିପୂର୍ଣ୍ଣ
ଏ ଆମ ଭାରତ ବର୍ଷ
ସମଗ୍ର ବିଶ୍ୱର ଗୁରୁପଦ ବାଚ୍ୟ
ବ୍ରହ୍ମ ପୁରୁଷଙ୍କ ବାସ ।୧୯

ବୃକ୍ଷଲତା, ଫଳ- ପୁଷ୍ପ, ପଶୁ ପକ୍ଷୀ
ନଦନଦୀ, ଜାତିବର୍ଣ୍ଣ
ବିଭିନ୍ନ ପ୍ରକାର ଜଳବାୟୁ ବଦେ
ଅନେକ ଚିନ୍ତା ଚେତନ ।୨୦

ଗହନ କାନନ, କାନ୍ତାର, କନ୍ଦର
ଶସ୍ୟ ଶ୍ୟାମଳମାମୟ
ମହା ଶୃଙ୍ଗ, ମହୋ- ଦଧି, ମହାନଦୀ
ପ୍ରକୃତ ଅତୁଳନୀୟ ।୨୧

ସମଗ୍ର ପୃଥ୍ୱୀରେ ଯାହା ରହିଅଛି
ଭାରତେ ରହିଛି ତାହା
ଭାରତରେ ଯାହା! ନାହିଁ ପୃଥିବୀରେ
ଖୋଜିଲେ ନ ମିଳେ ତାହା ।୨୨

ପୃଥିବୀର ସାମ- ଗ୍ରିକ ରୂପ ସତ୍ତା-
ଭାବ, ବୃତ୍ତିକୁ ନିରେଖ
ସଂସ୍କୃତିର ସମ- ନ୍ୱୟାତ୍ମକ ପ୍ରତି-
ବିମ୍ବରେ ହୁଅଇ ଦେଖ ।୨୩

ଯେତେ ଦିନ ଯାଏ ରହିଛି ଭାରତ
ତେତେ ଦିନ ଅଛି ପୃଥ୍ୱୀ
ଯେ'ଦିନ ଭାରତ ଧ୍ୱଂସ ପାଇଯିବ
ସେ ଦିନ ନ ଥିବ ପୃଥ୍ୱୀ ।୨୪

ଭାରତର ଦିବ୍ୟ ଚେତନା ସମଗ୍ର
ବିଶ୍ୱ ଆଗ୍ରୁର, ବିଶ୍ୱର
ସଂସ୍କୃତି ସମ୍ପନ୍ନ ସମ୍ବେଦନଶୀଳ
ଶକ୍ତିରେ ଉଜ୍ଜ୍ୱଳତର । ୨୫
ଦେବ, ଦୈତ୍ୟ, ରକ୍ଷ, ଯକ୍ଷ, ଗନ୍ଧର୍ବାଦି
ଅସୁର, ନର, ବାନର
ଭାରତ ସଂସ୍କୃତି ଦ୍ୱାରା ପ୍ରଭାବିତ
ହୋଇଛନ୍ତି ନିରନ୍ତର । ୨୬
ମାନବିକ ଗୁଣ ଆଗ୍ରୁର, ବିଶ୍ୱରେ
ରୂପରେଖ ଦେଇଛନ୍ତି
ସମସ୍ତେ ମାନବ ସଙ୍ଗରେ ମିଳିଣ
ଅନ୍ତଃଲିନ ହୋଇଛନ୍ତି । ୨୭
ମନୁଷ୍ୟ ମନର ସେହି ସମ୍ବେଦନ
ବିଶ୍ୱର ଚେତନା ଧାର
ପୃଥିବୀରେ ସର୍ବ - ସାରତ ହୋଇଛି
ସମନ୍ୱୟ ବାର୍ତ୍ତା ତାର । ୨୮
" ମାତା ଭୂମି ପୁତ୍ରୋଽ - ହଂ ପୃଥିବ୍ୟାଃ " ବୋଲି
ବିଶ୍ୱ ସଂସାରେ ପ୍ରଚାର
ପୃଥିବୀ ଆମର ମା' ଆମେ ସମସ୍ତେ
ଶିଶୁ ସନ୍ତାନ ତାହାର । ୨୯
ଏ ଭାରତ ବର୍ଷ ଅଟଇ ସେ ଦେଶ
ଯହିଁ ଗିରି କନ୍ୟା ଉମା
ଦରି କନ୍ୟା ରମା ମାତୃ ରୂପେ ପୂଜ୍ୟା
ଧରଣୀ ହୋଇଛି ଧନ୍ୟା । ୩୦
ଗିରି ଶିଖରରୁ ନିର୍ଗତ ସରିତ
ଗଙ୍ଗା - ଯମୁନା - ନର୍ମଦା
କୃଷ୍ଣା - ଗୋଦାବରୀ, କାବେରୀ, ବୈତରଣୀ
ଭକ୍ତି, ମୁକ୍ତି - ଗତି ପ୍ରଦା । ୩୧

ଯହିଁ ବସୁମତୀ ଫୁଲ ଫଳବତୀ
ସମୀର ସଙ୍ଗୀତ ଗାଏ
ଜ୍ୟୋସ୍ନା ନୃତ୍ୟ କରେ ଗିରି ତପ କରେ
ବାରିଦ ବାଦ୍ୟ ବଜାଏ । ୩୨
ମେଘ ଜଳ ବୃଷ୍ଟି କରଇ ସଧୀରେ
ନଦୀ ପ୍ରଣୟୀ ପ୍ରାୟ
ମଧୁମତୀ ବେଶେ ବସନ୍ତ ଆସଇ
ଋତୁ ଚକ୍ର ଶୋଭାମୟ । ୩୩
ବିଦଗ୍ଧା ନାୟିକା ସଦୃଶା ଶରତ
ଆସେ ଶୁଭ୍ର ସମ୍ଭାରରେ
ବରଷା ଉଚ୍ଛ୍ଳ ନାରୀ ପ୍ରାୟ ଅଟେ
ଅଭିସାର ସୃଷ୍ଟି କରେ । ୩୪
ଭଳି ଭଳି ରୂପ ସଜାଇ ଧରଣୀ
ଲାସ୍ୟମୟୀ, ଦୃଶ୍ୟମୟୀ
ପ୍ରକୃତି ଓ ଅନ୍ତଃ- ପ୍ରକୃତି ମଧ୍ୟରେ
ସମ୍ବେଦନଶୀଳ ଥାଇ । ୩୫
ତେଣୁ ଏ ଭୂମିର ଆଚାର, ବିଚାର
ଚିନ୍ତା, ଚେତନା ମଧ୍ୟରେ
ସ୍ୱଭାବେ କରୁଣା ଧର୍ମାନୁଶାସନ
ସମତା, ଉଚ୍ଚତା ଭରେ । ୩୬
ଅଧିକନ୍ତୁ ଏହି ଭୂଖଣ୍ଡ ହୋଇଛି
ଧର୍ମାର୍ଥ କାମ ମୋକ୍ଷର
ସାଧନା ଜଗତେ ଯୋଗ୍ୟ କର୍ମ ଭୂମି
ଦେବେ ଧରନ୍ତି ଶରୀର । ୩୭
ଏଠାରେ ସମ୍ଭୋଗ ବାସନା, ସମ୍ୟକ
ତ୍ୟାଗ ପରେ ପ୍ରତିଷ୍ଠିତ
ତପସ୍ୟା ହୋଇଛି ସାଧନା ମାଧ୍ୟମ
ଏ ମାଟିର ବିଶେଷତ୍ୱ । ୩୮

ଏଣୁ ଏ ଭାରତ ଭୂଖଣ୍ଡ ଅଟଇ
ଭୂ ଭାଗରେ ମହାତୀର୍ଥ
ଯାହାର ପବନ ଜଳ, ବାୟୁ ସ୍ପର୍ଶେ
ଜୀବ ଗଣ ଶାନ୍ତ ଚିତ୍ତ । ୩୯
ଏଣୁ ଏଭାରତ ଧର୍ମ ସଂସ୍କୃତିରେ
ତଥା ଚିନ୍ତା ଚେତନାରେ
ଯେତେବେଳେ ମତ ପାର୍ଥକ୍ୟ ଘଟଇ
ଭାରତ ସହ ପୃଥ୍ୱୀରେ । ୪୦
ପ୍ରାକୃତିକ ଋତୁ - ବେଶ ପରେ ପଡ଼େ
ପ୍ରକୃତି କୂଳ ପରଭାବ
ଭାରତରେ ଶାନ୍ତ ସଦ୍‌ଭାବ ରହିଲେ
ପୃଥିବୀ ଶାନ୍ତ ରହିବ । ୪୧
ଯୁଗେ ଯୁଗେ ଏଇ ଭୂମିର ଧରମ
ସତ୍ୟ ସନାତନ ଧର୍ମ
ଉଦାର ମାନବ ଧର୍ମ ପ୍ରବାହରେ
ଶାନ୍ତ ବୀଜର ବପନ । ୪୨
ପାଞ୍ଚ ସହସ୍ର ବର୍ଷ ତଳର ଏକଥା
ଏଇ ଭାରତ ଭୂମିରେ
ଲୋକୋତ୍ତର ଏକ ଘଟଣା ଘଟିଲା
ପବନ ଜମ୍ବୁ ଦ୍ୱୀପରେ । ୪୩
କାନ୍ତ ଓ କାନ୍ତର ଶ୍ରେଷ୍ଠ ସମନ୍ୱୟ
ରୂପେ କୃଷ୍ଣ ଅବତାର
ଯେ କର ପଲ୍ଲବ ବଂଶୀ ଧରି ପାରେ
ହୋଇ ପାରେ ଚକ୍ର କର । ୪୪
ଯେଉଁ ଅଧରରୁ ଝରଇ ମୂର୍ଚ୍ଛିତ
ମୋହନା ରାଗିଣୀ ମାନ
ସେହି ଅଧରରୁ ଉଦ୍‌ ଘୋଷିତ ହୋଇ
ଅଛୁ ପାଞ୍ଚଜନ୍ୟ ସ୍ୱନ । ୪୫

ନାସ୍ତିକ, ନିର୍ଘୋଷ    ଶଙ୍ଖ ସ୍ୱନ ଶୁଣି
    ଆସୁରିକ, ତାମସିକ
ଶାକ୍ତ ବିରୋଧରେ    ସ୍ପର୍ଦ୍ଧିତ ଆହ୍ୱାନ
    କାଳଜୟୀ, ମର୍ମାନ୍ତକ । ୪୬
ପ୍ରେମ ଓ ଜୀବନ    ଯୌବନ ଆଦର
    ଅନୁପମ ଅଧିଷ୍ଠାତା
ଭାବରେ ଶ୍ରୀକୃଷ୍ଣ    ସର୍ବଦା ବରେଣ୍ୟ
    ନ୍ୟାୟ - ସଂଗ୍ରାମ ପ୍ରବକ୍ତା । ୪୭
ପୌରୁଷ ଦୃପ୍ତ    ପ୍ରଦର୍ଶନ କ୍ଷେତ୍ରେ
    ଭାରତୀୟ ମାନସରେ
ଚିର ସ୍ମରଣୀୟ    ହୋଇ ରହିଛନ୍ତି
    ଜୟ ଜଗଦୀଶ ହରେ । ୪୮
କୃଷ୍ଣ ତତ୍ତ୍ୱ ଭାର -    ତୀୟ ଦର୍ଶନରେ
    ବର୍ଣ୍ଣାଢ୍ୟ ଓ ସୁବିଶାଳ
ଆଦର୍ଶ ସ୍ୱରୂପ    ଦିଗନ୍ତ ବ୍ୟାପିଛି
    ନାହିଁ ଯା'ର ସ୍ଥଳ କୂଳ । ୪୯
ଏ ଭାରତ ବର୍ଷ    ଯେତେବେଳେ ଘୋର
    ବିପର୍ଯ୍ୟୟ କାଳସନ୍ଧି
ମଧ୍ୟେ ପଥ ଭ୍ରଷ୍ଟ    ହୋଇ ଘୂରୁଥାଏ
    ହରାଇ ଆପଣା ସ୍ଥିତି । ୫୦
ସେଥି ପାଇଁ ଯେଉଁ    ସାର୍ଥକ ସାରଥି
    ହୋଇଥାଏ ପ୍ରୟୋଜନ
ତାହା କୃଷ୍ଣ ପରି    ସମର୍ଥ ସାରଥି
    କରି ଥାଆନ୍ତି ପୂରଣ । ୫୧
ସୃଷ୍ଟିର ପୂର୍ବରୁ    ପ୍ରଳୟର ପରେ
    ତଥା ସଂସାର ସ୍ଥିତିରେ
ଏକ ମାତ୍ର କୃଷ୍ଣ    ସତ୍ୟ ସ୍ୱରୂପରେ
    ବିଦ୍ୟମାନ ଜଗତରେ । ୫୨

• ଦୃଶ୍ୟମାନ ପଞ୍ଚ - ମହାଭୂତ ମଧ୍ୟେ
ହେଇ ସତ୍ୟାତ୍ମକ ସେତୁ
ଶରଣ ପ୍ରପନ୍ନ ପତିତ ପାବନ
ବିଶ୍ୱ ବ୍ରହ୍ମାଣ୍ଡର ହେତୁ । ୫୩
ଯଦୁ ବଂଶେ ସ୍ୱୟଂ ଅବତୀର୍ଣ୍ଣ ହୋଇ
ହରନ୍ତି ପୃଥିବୀ ଭାର
କୃଷ୍ଣ ଅବତାର ଅବତାରେ ସାର
ଅନାଦି ବ୍ରହ୍ମ ଶରୀର । ୫୪
ପ୍ରଭୁ ଆଗମନେ ସର୍ବତ୍ର ନୂତନ
ଚେତନା ହୁଅଇ ସୃଷ୍ଟି
ପରଂବ୍ରହ୍ମ କୃଷ୍ଣ ଚରଣ ସ୍ପର୍ଶରେ
ପବିତ୍ର ସମଗ୍ର ପୃଥ୍ୱୀ । ୫୫
ନିର୍ଗୁଣ ବ୍ରହ୍ମଙ୍କ ସଗୁଣ ଲୀଳାକୁ
ଦେଖି ପୃଥ୍ୱୀ ଚମତ୍କୃତ
ସତ୍ୟଲୋକ, ବ୍ରହ୍ମ - ଲୋକ, ସ୍ୱାହାଃ, ସ୍ୱଧା
ବଷଟ୍‌କାର ସମେତ । ୫୬
ଦେବ-ଋଷି-ପିତୃ- ଲୋକ ଦିବ୍ୟ ଲୀଳା
ନୟନେ ଦେଖିବା ପାଇଁ
ନିଜ ଲୋକ ତେଜି ଏ ମର୍ତ୍ତ୍ୟ ଲୋକକୁ
ଆସନ୍ତି ଧୀରେ ଓହ୍ଲାଇ । ୫୭
ଧୂଳି, ଧୂସରିତ ଧରଣୀର ପୃଷ୍ଠ
ବୈକୁଣ୍ଠରେ ପରିଣତ
ହୋଇ ଗତି, ମୁକ୍ତି ପ୍ରଦାନ କରଇ
ଶାସ୍ତ୍ର ପୁରାଣେ କଥିତ । ୫୮
ନର ମଧ୍ୟେ ଉତ୍ତ- ଶତ ନାରୀମଣି
ଚେତନା ସ୍ୱର୍ଗାଦି ଲୋକ
ଦିବ୍ୟ ସୌରଭକୁ ଉଣା କରି ଦେଇ
ରଖଇ ଭୂଦେବୀ ଟେକ । ୫୯

ଭୂଦେବୀ ହୃଦୟ ଛନ୍ଦୀରେ ଭୂମାର
ଆବେଗମୟ ମୂର୍ଚ୍ଛନା
କରଇ ଅପୂର୍ବ ଉତ୍ସବ ମୁଖର
ଲୀଳା ମାଧୁରୀ ସର୍ଜନା । ୭୦

ସେ ଲୀଳା ମାଧୁରୀ ସ୍ମରଣ କରିଲେ
ଉତ୍‌ଫୁଲ୍ଲିତ ହୁଏ ଚିତ୍ତ
କୃଷ୍ଣ ପ୍ରେମ ରସେ ଆହ୍ଲାଦିତ ହୃଦ
ନୟନ ପ୍ରେମାଶ୍ରୁ ସିକ୍ତ । ୭୧

ପ୍ରେମ ମୟ କୃଷ୍ଣ କମନୀୟ କାନ୍ତି
ନୟନେ କରି ଦର୍ଶନ
ପ୍ରେମେ ପୁଲକିତ ଅନ୍ତର ପ୍ରଦେଶ
ଉଦ୍‌ବେଳିତ ମନ ପ୍ରାଣ । ୭୨

ପ୍ରେମମୟ କୃଷ୍ଣ ମହିମା ବର୍ଣ୍ଣିନେ
ବ୍ୟାସଦେବ ଅବତାର
ତାହାଙ୍କ ଚରଣେ ଚିତ୍ତ ନିବେଶିଣ
କର ଶତ ନମସ୍କାର । ୭୩

କୃଷ୍ଣ ଭକ୍ତ ବ୍ୟାସ - ଦେବ ଦୟା କଲେ
କୃଷ୍ଣ ପ୍ରେମ ଲାଭ ହେବ
ବ୍ୟାସ ବାସୁଦେବ ଅଭିନ୍ନ ଶରୀର
ବ୍ୟାସଦେବେ କର ସ୍ତବ । ୭୪

ବିଶ୍ୱ ଗୁରୁ ବ୍ୟାସ ସୁଦୟା କରିଲେ
ଜାଗିବ କୃଷ୍ଣରେ ଜ୍ଞାନ
ନିର୍ବିଘ୍ନରେ କାବ୍ୟ ସମାପନ ହେବ
ଶୁଣି ପ୍ରୀତ ହେବେ ଜନ । ୭୫

ଉପଦେଶ ଦେଇ ଗୁରୁ ଅଭିରାମ
ଅଧରେ ହସ ଫୁଟାଇ
ଅନ୍ତର ହୋଇଲେ ଶିଷ୍ୟ ନେଇ ପଦ
ସ୍ତବ କରନ୍ତି ଭାବଗ୍ରାହୀ । ୭୬

ଚରଣ ତଳରେ ପଡ଼ି ବୁଲି ଦାସ
କରି ଶତ ନମସ୍କାର
ନମୋ ନମୋ ଗୁରୁ ପ୍ରେମ କଳ୍ପତରୁ
ସୁବ୍ରତା ମାତା କୁମର । ୬୭
ଗୁରୁ ରୂପେଜ୍ଞାନ ନ ଦେଲେ ଆପଣ
ସନ୍ଦେହ କି ଦୂରହେବ
ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁ ଶିବ
ଗୁରୁ ସର୍ବ ଦେବ ଦେବ । ୬୮
ଗୁରୁଙ୍କୁ ସ୍ମରଣ କରନ୍ତେ ଅନ୍ତରେ
ପଦମାନ ହେଲା ଦୃଶ୍ୟ
ଶ୍ରୀକୃଷ୍ଣ ଚରିତ ମାନସ ରଚନା
କଲି ମୂଢ଼ ବୁଲି ଦାସ । ୬୯
ଅଜ୍ଞାନ ତିମିର ବିନାଶ କରତା
ଅଟନ୍ତି ଶ୍ରୀଗୁରୁବ୍ରହ୍ମ
ପଙ୍ଗୁ ଲଙ୍ଘେ ଗିରି ମୂକ କହେ କଥା
କୃପା କଲେ ଗୁରୁ ବ୍ରହ୍ମ । ୭୦
ଆଶା ବୈତରଣୀ ଙ୍କରେ ବସାବାନ୍ଧ
ଭରସା କରିଛୁ ହରି
ନୈରାଶ ନ କର ସହସା ଦର୍ଶନ
ଦେଇ କର ଭବ ପାରି । ୭୧
ବାଆସ୍ତୋରି ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ସୁଜନେ ନ ଘେନ ଦୋଷ
ଶ୍ରୀକୃଷ୍ଣ ସଗୁଣ ଲୀଳା ଶ୍ରବଣରେ
ମନ କର୍ଣ୍ଣ କର ତୋଷ । ୭୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଗୁରୁମାହାତ୍ମ୍ୟ ବର୍ଣ୍ଣନେ
ନାମ ତୃତୀୟ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲ-**

ବାଇ ମନରେ ବସି କୃଷ୍ଣ ଭଜୁଥା
ମାନବ ଜନମ ନ ହେଉ ବୃଥା । ( ଘୋଷା )
ଅମୂଲ୍ୟ ପଦାର୍ଥ କୃଷ୍ଣ ନାମ ତତ୍ତ୍ୱ
ପରମାର୍ଥ ମଣି ଗଣ୍ଠି କରିଥା । ୧
ନୋହି ଚର ଚର ଭଜ ବେଣୁଧର
ତୁଣ୍ଡେ ଶ୍ରୀକୃଷ୍ଣ ନାମ ଗାଉଥା
ଭ୍ରମର ଗୁମ୍ଫାରେ ଖେଳ ଲାଗିଅଛି
ଓଲଟ ପାଲଟ ଗତି ଜାଣିଥା । ୨
ହକାର ଶ୍ରୀହରି ସକାର ଯେ ଶିରୀ
ଶିରୀହରି ପାଦେ ମନ ଦେଇଥା
ହଂସ ମୁଖେ ହଂସ ଖେଳ କରୁ ଅଛି
ହଂସ ସୋଽହଂ ବେଦ ତତ୍ତ୍ୱ ରଖିଥା । ୩
ବୋଲେ ବୁଲା ଦାସ ପକାଇଣ ଫାସ
ଅଜପା ସୂତ୍ରରେ ବାଇ ବାନ୍ଧିଥା
ହଂସ ଉଡିଗଲେ ହଂସା ଉଡିଯିବ
(ତୋର) ସଂସାର ବେଉସା ହୋଇବ ବୃଥା । ୪

-*●*-



# ଚତୁର୍ଥ ଅଧ୍ୟାୟ

## ବ୍ୟାସଦେବଙ୍କ ଜନ୍ମ

### ରାଗ - ଚୋଖି

କୃଷ୍ଣ ଚରିତ ମାନସ ପାନ କର ସୁଧାରସ
ବ୍ୟାସଦେବଙ୍କ ଜନ୍ମକଥା କର ଶ୍ରବଣ
ଦାସ ରାଜା ବେନ ରାଣୀ ଲୀଳା, ଶ୍ୟାମଳା ବଖାଣି
ନ ଥିଲା କୋଳେ ତାଙ୍କର ଏକ ସନ୍ତାନ
ଅପୁତ୍ରିକ ହେତୁ ନୃପତି
ମନ ମଧ୍ୟେ ରହିଥିଲା ଘୋର ଅଶାନ୍ତି । ୧
ବଂଶରକ୍ଷା ଚିନ୍ତା କରି କୁଳ ଗୁରୁଙ୍କୁ ହକାରି
ପୁଚ୍ଛା କଲେ କର ଯୋଡ଼ି ଦାସ ନୃବର
ଉତ୍ତରିଲେ ବିପ୍ରବର ହେ ନାକର ନୃପବର
ନିୟୋଗ ପ୍ରଥାରେ କରି କୁଳ ଉଦ୍ଧାର
ଶାସ୍ତ୍ରରେ ରହିଛି ବ୍ୟବସ୍ଥା
ଶୁଣ ମହାଭାଗ ! କାହ୍ନି ଅଛି ଯେ କଥା । ୨
ନିଜ ଔରସରୁ ସନ୍ତାନ ଯେବେଁ ନ ହେଲେ ଉତ୍ପନ୍ନ
ବଂଶରକ୍ଷା ଧର୍ମ କଥା ମନେ ଚିନ୍ତିଣ
ସୌଦାସ ନାମେ ରାଜନ କହି ବିନୟ ବଚନ
ବଶିଷ୍ଠ ସଙ୍ଗେ ପତ୍ନୀ କରାନ୍ତେ ମିଳନ
ଜାତ ହୋଇଲା ଏକ ସୁତ
ଅଶ୍ମକ ନାମେ ଭାରତ ବର୍ଷେ ବିଖ୍ୟାତ । ୩
ରାଜା ଅମ୍ବରୀଷ ନାତି ପୃଷଦଶ୍ୱ, ମହୀପତି
ବଂଶରକ୍ଷା ଧର୍ମ କଥା ଚିନ୍ତି ନୃବର
ଅଙ୍ଗିର ଋଷି ମହତ ପତ୍ନୀ କରାନ୍ତେ ଏକାନ୍ତ
ଜାତ ହେଲେ ଶତ ସୁତ ନାମ ଅଙ୍ଗିର
ସୂର୍ଯ୍ୟ ବଂଶର ଇତି ବୃତ୍ତି
ସେ ବଂଶେ ଇକ୍ଷ୍ୱାକୁ ନୃପ ହେଲେ ଉତ୍ପତ୍ତି । ୪

ଏମିତ ଦୃଷ୍ଟାନ୍ତ ମାନ   ଶାସ୍ତ୍ର ପୁରାଣେ ଲିଖନ
ବଂଶରକ୍ଷା କରି ରାଜା ଛାଡ଼ି ଦୁଃଶ୍ଚିନ୍ତା
କୁଳ ଗୁରୁ ଉପଦେଶ   ପାଇ ଦାସ ନୃପଶ୍ରେଷ୍ଠ
ପରସ୍ପରେ ଯୋଗ କରାଇଲେ ବନିତା
କନ୍ୟା ଏକ ହେଲ୍ ସମ୍ଭୂତ
ମତ୍ସ୍ୟବତୀ ନାମେ ସେହି କନ୍ୟା ବିଖ୍ୟାତ ।୫

ନିୟୋଗ ପ୍ରଥାରେ ଜନ୍ମ   ହୋଇବାରୁ କନ୍ୟା ରତ୍ନ
ବିବାହ ନ କଲେ ତାଙ୍କୁ ନୃପତି ସୁତ
ବିବାହ ବର୍ଷ ଆଗତ   ଜାଣି ଦାସ ନରନାଥ
ନାବିକା କାର୍ଯ୍ୟେ କନ୍ୟାକୁ କଲେ ନିଯୁକ୍ତ
ଉଭୟ ପାର୍ଶ୍ୱ ଯାତ୍ରୀ ଗଣ
ପାରି କରନ୍ତି ଗଙ୍ଗା ନାବେ ବସାଇଣ ।୬

ଦିନେ ଋଷି ପରାଶର   ନଦୀ ହେଉଥିଲେ ପାର
କନ୍ୟା ଅଙ୍ଗ ଶୋଭା ଦେଖି ମାଗିଲେ ରତି
ଥିଲ୍ ସେ ଅରେଜବତୀ   ମନ୍ତ୍ର ବଳେ ରଜୋବତୀ
ହୋଇ ପ୍ରୀତି କରିବାରୁ ପୁତ୍ର ଉତ୍ପତ୍ତି
ଗର୍ଭରୁ ଜନମି ନନ୍ଦନ
ବେଦ ମହାକାବ୍ୟ ମୁଖେ କରେ ଗାୟନ ।୭

କ୍ରନ୍ଦନ ଛଳେ ନନ୍ଦନ   କରେ କୃଷ୍ଣ ଉଚ୍ଚାରଣ
ଓଁ କାର ଶବ୍ଦ ମୁଖୁ ହୁଏ ପ୍ରକାଶ
ପୁତ୍ର କୋଳେ ଧରି ଋଷି   ମନ ମଧ୍ୟେ ମହା ଖୁସି
ଗ୍ରହ ଚକ୍ର ପାତି ବିଚାରିଲେ ତାପସ
ଜାଣିଲେ ବିରଳ ବିଜ୍ଞାନୀ
ଆଷାଢ଼ ପୂର୍ଣ୍ଣମୀ ଦିନ ଜାତ ଅବନୀ ।୮

କୂଳରେ ଲାଗିଲ୍ ନାବ   ଗୋପନ ରହିଲ୍ ଭାବ
ପୁତ୍ର ଘେନି ଚାଲିଲେ ଋଷି ପରାଶର
ନାବରେ ହୋଇ ନାଉରୀ   ରହିଲେ ରାଜ କୁମାରୀ
"ଯୋଜନା ଗନ୍ଧା" ନାମ ହୋଇଥିଲ୍ ତାଙ୍କର

କି ବର୍ଣ୍ଣିବା ରୂପ ବାମାର
ଶରୀର ଶୋଭା ସଙ୍ଗେ ସୁଗନ୍ଧ ସମ୍ଭାର । ୯

କୃଷ୍ଣ ଦ୍ୱୀପରେ ଜନମ   ରୂପ ଦିଶେ କୃଷ୍ଣ ବର୍ଣ୍ଣ
"କୃଷ୍ଣ ଦ୍ୱୀପାୟନ" ହେଲେ କୁମର ନାମ
ବଦରିକା ବନେ ବାସ   କରିବାରୁ କାଳ ଶିଷ୍ୟ
"ବାଦାରାୟଣ" ହେଲା ଅନ୍ୟ ଏକ ନାମ
କୃଷ୍ଣଙ୍କ ପରମ ଭକତ
ଭକ୍ତ ଶିରୋମଣି ନାମେ ବିଶ୍ୱେ ବିଖ୍ୟାତ । ୧୦

ବେଦକୁ ବିଭାଗ କରି   "ବେଦବ୍ୟାସ" ନାମ ଧରି
ଏକ ବେଦ ଚାରି ବେଦେ କଲେ ଲିଖନ
ଋକ-ଯଜୁ-ସମାର୍ଥବ   ବେଦର ଚାରି ବିଭାଗ
ସଂସାର ଜନଙ୍କ ହିତେ କରିଲେ ଭିନ୍ନ
ଶିଷ୍ୟମାନଙ୍କୁ ଶିକ୍ଷା ଦେଲେ
ବ୍ୟାସଯୋଗୁ ବିଶ୍ୱବାସୀ ବେଦ ପଢିଲେ । ୧୧

ପୂର୍ବରୁ ଶ୍ରୁତି ରୂପରେ   ଥିଲା ଗୁରୁଙ୍କ ମୁଖରେ
ଶୁଣି ଶୁଣି ଶିଷ୍ୟେ ରଖୁଥିଲେ ମନରେ
ଯାହା ପ୍ରବନ୍ଧେ ପ୍ରକାଶ   କଲେ ଆଦ୍ୟେ ବେଦବ୍ୟାସ
ଲେଖନୀ ଧରି ଲେଖିଲେ ତାଳ ପତ୍ରରେ
ଶିଷ୍ୟ ଗଣେ କଲେ ପଠନ
ପ୍ରଚଳିତ ବେଦ ମନ୍ତ୍ର ନଗ୍ର କାନନ । ୧୨

ଋଗ ବେଦ ଜ୍ଞାନ ବେଦ   ଯଜୁର୍ବେଦ କର୍ମ ବେଦ
ସାମବେଦ ଗୀତ ଉପାସନା କଥିତ
ଅଥର୍ବେ ଯୋଗ ବେଦ   ପ୍ରକାଶନ୍ତେ ବ୍ରହ୍ମ ବେଦ
ବ୍ରହ୍ମ ଜ୍ଞାନ ହିଁ ବେଦର ମୌଳିକ ତତ୍ତ୍ୱ
ଜୀବନର ପ୍ରତି କ୍ଷେତ୍ରରେ
ଜ୍ଞାନ ଆବଶ୍ୟକତାକୁ କେ ମନା କରେ ? ୧୩

କର୍ମ ବିହୁନେ ଜୀବନ   ନ ହୁଅଇ ପରିପୂର୍ଣ୍ଣ
କର୍ମ ହିଁ ଅମୃତତ୍ୱର ସନ୍ଧାନ ଦିଏ

ଜୀବନ ସରସମୟ    କରିବା ସଦ୍ ଉପାୟ
ବେଦରେ ସନ୍ନି ବେଶିତ ହୋଇଣ ଥାଏ
ବେଦ ପଠନ ଉପାଦେୟ
ବେଦ ଭୂମି ଭାରତରୁ ଆଦ୍ୟେ ଉଦୟ । ୧୪
ନୁହନ୍ତି ମନୁଷ୍ୟ କୃତ    ଅପୁରୁଷେୟ କଥିତ
ବ୍ରହ୍ମଙ୍କର ବାଣୀ ବୋଲି ସର୍ବ ସମ୍ମତ
ବ୍ରହ୍ମା, ବ୍ରହ୍ମ ଋଷି ହୃଦ    କନ୍ଦରେ ଝଙ୍କୃତ ବେଦ
ଶବ୍ଦ-ବ୍ରହ୍ମ ବୋଲି ଏହା ବିଶ୍ୱେ ବିଦିତ
"ପଶ୍ୟନ୍ତ ବାଣୀ" କେ ବୋଲନ୍ତି
ମନ୍ତ୍ର ଦ୍ରଷ୍ଟା ଋଷି ମାନେ ଶ୍ରୁତି କହନ୍ତି । ୧୫
ବେଦ ବାଣୀ ଅବିନାଶୀ    ଅନନ୍ତ ମହିମା ରାଶି
ବ୍ରହ୍ମଙ୍କ ସମୀପ ବର୍ତ୍ତୀ ହୋଇବା ପାଇଁ
ପ୍ରଥମେ ବ୍ରହ୍ମଙ୍କ ବାଣୀ    ବେଦ ଜନମାଙ୍କୁ ଚିହ୍ନି
ଆରାଧନା କଲେ ଇଚ୍ଛା ପୂର୍ଣ୍ଣ ହୁଅଇ
ସୃଷ୍ଟିର ଆଦ୍ୟରୁ ଉତ୍ପତ୍ତି
ପ୍ରାଚୀନତମ ଅଟଇ ବେଦର ଉକ୍ତି । ୧୬
ଆଦ୍ୟରେ ଆର୍ଯ୍ୟାବର୍ତ୍ତରେ    ପ୍ରଚୁରିତ ହୋଇ ଧୀରେ
ପ୍ରସାର ଲଭି କରିଲା ବିଶ୍ୱ ସଂସାରେ
ସକଳ ଧର୍ମ ନିର୍ଯ୍ୟାସ    ବେଦର ତତ୍ତ୍ୱ ବିଶେଷ
ଏଣୁ କଥିତ ମାନବ ଧର୍ମ ନାମରେ
ନୋହି ମଧ୍ୟ ମାନବ କୃତ
ବିଶ୍ୱ ମାନବର ବେଦ ଏକକ ଶାସ୍ତ୍ର । ୧୭
ମହା ବ୍ରହ୍ମ ବେତ୍ତା ବ୍ୟାସ    ବେଦ ଭ୍ୟାସୀ ତପୋନିଷ୍ଠ
ଅଜପା ସାଧକ ବ୍ରହ୍ମ ପଦ୍ମରେ ଧ୍ୟାନ
ଅଷ୍ଟାଦଶ ପୁରାଣାଦି    ଗୀତା, ଭାରତ ସମ୍ପାଦି
ଭାଗବତ ସୃଷ୍ଟି କର୍ତ୍ତା ବିଜ୍ଞ ବିଦ୍ୱାନ
ବିଶ୍ୱ ଗୁରୁ ପରମାତ୍ମନ
ବେଦ ଶାସ୍ତ୍ର ବିଶାରଦ ବିଶ୍ୱ ବନ୍ଦନ । ୧୮

ବ୍ରହ୍ମ ଜ୍ଞାନୀ ବେଦବ୍ୟାସ          ଦର୍ଶନେ ହରଇ ମୋହ
ପାଦ ସ୍ପର୍ଶ କଲେ ପାପ ହୁଏ ବିନାଶ
ଭାଗ୍ୟ ଥିଲେ ବ୍ୟାସଦେବ          ଦର୍ଶନ ଲଭ ହୋଇବ
ଶ୍ରୀମୁଖ ବାକ୍ୟ ଶ୍ରବଣେ ବୈକୁଣ୍ଠେ ବାସ
କଅବା ଦେବା ପଟ୍ଟାନ୍ତର ।
ବ୍ରହ୍ମ ବିଦ୍ୟା ବିଶାରଦ ବିଦ୍ୟା ସାଗର । ୧୯
ବ୍ୟାସଦେବ, ବାସୁଦେବ          ଏକ ମୁରତି ସମ୍ଭବ
ନିର୍ଗୁଣ ପୁରୁଷ ନିତ୍ୟ ଗୋଲକେ ବାସ
ନାହିଁ ତାଙ୍କ ପରାପର          ବିଶ୍ୱ ହିତେ ଅବତାର
ଅଣାକାର ପୁରୁଷ ସେ ଆକାରେ ପ୍ରକାଶ
ପାପ, ତାପ, ହାଣ କରତା,
ବିଶ୍ୱ ବ୍ରହ୍ମାଣ୍ଡରେ ବ୍ୟାପି ବିଦ୍ୟା ବକତା । ୨୦
ଜବ ପଣରେ ବରିଷ୍ଠ          ଜ୍ଞାନ ଗୁଣରେ ଗରିଷ୍ଠ
ବିଶ୍ୱ ଗୁରୁ ରୂପେ ବ୍ୟାସ ବିଶ୍ୱେ ବରେଣ୍ୟ
ମାତୃଗର୍ଭରୁ ବିଦ୍ୱାନ          ବ୍ରହ୍ମ ସୂତ୍ରରେ ନିପୁଣ
ଅଜପା ସାଧକ ହୃଦ ପଦ୍ମରେ କୃଷ୍ଣ
ହୀକାଳ ଦର୍ଶୀ ଜାତି ସ୍ମର
ଧରଣୀ ଧନ୍ୟ ହେଲ ଧରି ଏ କୁମର । ୨୧
ଶ୍ରୀକୃଷ୍ଣ ଲୀଳା ଚରିତ          ରଚିଲେ ଶ୍ରୀ ଭାଗବତ
ଭାବ- ଜ୍ଞାନ - ବ୍ରହ୍ମ - ତତ୍ତ୍ୱ ଏକହିଭୂତ
କୃଷ୍ଣ ପ୍ରିୟ ମହାଜନ          କୃଷ୍ଣ ପ୍ରେମରେ ନିମଗ୍ନ
ପ୍ରଚ୍ଚର କଲେ "କୃଷ୍ଣ ବାସୁଦେବ" ତତ୍ତ୍ୱ
ପ୍ରବାହିତ ପ୍ରେମ ସଲିଳ
କୂଳ ଲଂଘି ଉଦ୍‌ବେଳିତ ଭାବକଲ୍ଲୋଳ । ୨୨
କୃଷ୍ଣ ନାମେ ପ୍ରେମ ମତ୍ତ          ହେଲେ ମିଳେ କୃଷ୍ଣ ପ୍ରେମ
ଆତ୍ମ ଜ୍ଞାନ ଲଭ ହୁଏ ବୋଲନ୍ତି ବ୍ୟାସ
ଏମନ୍ତ ଭଣେ ବ୍ୟାସ ସୂତେ          ଭଜ କୃଷ୍ଣ ଅନୁବ୍ରତେ
ଭଜିଲେ ଅବଶ୍ୟ ପାଇବ ନିତ୍ୟ ବାସ

ସେ ପାଦେ ରସେ ବୁଲିଦାସ
ତେଇଶି ପଦେ ଅଧ୍ୟାୟ ହୋଇଲା ଶେଷ । ୨୩

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳାଖଣ୍ଡେ ବ୍ୟାସଦେବ ଜନ୍ମ ବିବରଣୀ ବର୍ଣ୍ଣନେ
ନାମ ଚତୁର୍ଥ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।



**ବୋଲି** - ସୁଜନେ ନାମ ଭଜନେ ରସ
ନାମ ଅନାମରେ ଭଜନ ଲାଗିଛି
ନାମ ସୋହଂ ବେନି ଶବଦ ଘୋଷ ॥ ଘୋଷା ॥
ନାଭି ଠାରୁ ନାସା ଚଉଦ ଆଙ୍ଗୁଳି
ଖେଳ କରୁଅଛି ସର୍ବଦା ହଂସ
ହଂକାର ପୁରୁଷ ସଂକାର ପ୍ରକୃତି
ପ୍ରକୃତି ପୁରୁଷେ ଲାଗିଛି ରାସ । ୧
ନାମରୁ ରୂପର ଜନମ ହୋଇଛି
ନାମ ରୂପ ବେନି ଶୂନ୍ୟ ପ୍ରକାଶ
ଅରୂପାନନ୍ଦରୁ ରୂପ ହୋଇବାରୁ
ଜୀବ ପରମରେ ସଂସାର ବଶ । ୨
ନିର୍ଗୁଣରୁ ଆସି ସଗୁଣ ନ ହେଲେ
ସଗୁଣ ଲୀଳା କି ହେବ ପ୍ରକାଶ ?
ପ୍ରକୃତି ପୁରୁଷ ଗତିର ରହସ୍ୟ
ଭ୍ରମର ଗୁମ୍ଫାରେ ବନ୍ଦେ ବତାସ । ୩
ନାଭିର ପବନ ନାସାର ଭଜନ
ଜୀବ ପରମର ଗୁହ୍ୟକ୍ଷସ
ଏକ ବିଂଶ ସହ୍ର ଷଠଶ ପାହୁଣ୍ଡ
ଷାଠିଏ ଦଣ୍ଡରେ ଗଣିତ କସ । ୪
ଯୋଗୀଙ୍କେ ପରମ ବାହାରେ ଖେଳଇ
ଭୋଗୀଙ୍କେ ଜୀବର ବାହାରେ ବାସ

ଭିତର ବାହାର ଗତି ଚରାଚର
କେହି କାହାରିକୁ ନୁହଁନ୍ତି ଦୃଶ୍ୟ । ୫
ଜୀବ ପରମକୁ ଯୁଗଳ କରିଲେ
ଅଜପା ସୂତ୍ରରେ ହୋଇବ ଘୋଷ
ଗୁରୁ ଅଭିରାମ ମହନ୍ତ ସୂତ୍ର ଏ
ସେ ରସେ ରସିଛି ଏ ବୁଲା ଦାସ । ୬

=✽=

# ପଞ୍ଚମ ଅଧ୍ୟାୟ

## ଲକ୍ଷ୍ମୀ ଜନ୍ମ

### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
ନର୍ଦ୍ଧାତଙ୍କ କୋଳେ ଜାତ ହେଲେ ଗଙ୍ଗା
ଧବଳାଙ୍ଗୀ କନ୍ୟା ରତ୍ନ । ୧
ନର୍ଦ୍ଧାତ ପାଳିଲେ ନିତ୍ୟ ନିରଞ୍ଜନ
ଦ୍ୱାଦଶ ବର୍ଷ ପୂରଣ
ବିବାହ ବୟସ ସମାଗତ ଜାଣି
ନୃପତି ମନ ଉଛନ୍ନ । ୨
ଜନକ ପୁଚ୍ଛିଲେ କହ ଧବଳାଙ୍ଗୀ
କାହାକରେ ସମର୍ପିବି ?
ଜାହ୍ନବୀ ବୋଇଲେ ଶୁଣ ଆହେ ପିତା
ମୁହିଁ ଶଙ୍କର ବଲ୍ଲଭୀ । ୩
ନର୍ଦ୍ଧାତ ବୋଇଲେ ଶୁଣ ଧବଳାଙ୍ଗୀ
ବ୍ରହ୍ମହତ୍ୟା କରି ଶିବ
ପାପନାଶ ପାଇଁ ପାତାଳ ପୁରରେ
ତପ କରୁଛନ୍ତି ଭବ । ୪

କେତେ କାଳ ମାଗୋ ଗୃହେଁ ବସିଥିବୁ
ଅନ୍ୟପତି ବେନା କର
ପିତାଙ୍କ ବଚନେ କହିଲେ ଜାହ୍ନବୀ
ସେ କଥା ମୁଖେ ନ ଧର । ୫

କନ୍ୟାରୂପେ ଥିବ ଯାଉ ଯେତେ ଦିନ
ନ ହୁଅ ପିତା ବିରାଗ
ଏହାକହି ଦେବୀ ଯୋଗରେ ବସିଲେ
ଯୋଗେଶ୍ୱରେ ଅନୁରାଗ । ୬

ଅଏଁଳା ମୂଳରେ ଯୋଗଧ୍ୟାନ କରି
ବସିଥିଲେ ମହାମାୟୀ
ଏକଦା ଶାନ୍ତନୁ ଦିଗ ବିଜେ କରି
ମିଳିଲେ ସେଠାରେ ଯାଇ । ୭

ସୋମବଂଶେ ଜାତ ପୃଥୁ ନରପତି
ପ୍ରତୀତ ତାଙ୍କ ସନ୍ତାନ
ପ୍ରତୀତ ଙ୍କ ପତ୍ନୀ ଚସୋପୂଳା ଗର୍ଭେ
ତିନି ସନ୍ତାନ ଉତ୍ପନ୍ନ ୮ ।

ଶାନ୍ତନୁ ଓ ପରା- ଶର, ଭୂରିଶ୍ରବା
ଅଟନ୍ତି ତିନି ସୋଦର
ଶାନ୍ତନୁ ରାଜ୍ୟରେ ନୃପତି ହୋଇଣ
ବୁଝିଲେ ରାଜ୍ୟର ଭାର । ୯

ହସ୍ତିନାରେ ରାଜା ହୋଇଣ ଶାନ୍ତନୁ
ପୃଥିବୀକୁ ସାଧକଲେ
ମର୍ତ୍ତ୍ୟେନ୍ଦ୍ର ନାମରେ ବିଖ୍ୟାତ ହୋଇଲେ
ପ୍ରିଷ୍ଟଥାଏ ଇନ୍ଦ୍ର ତୁଲେ । ୧୦

ଶିବ ପ୍ରିୟ ଭକ୍ତ ଶାନ୍ତନୁ ନୃପତି
ବିଭୂତି ଅଙ୍ଗେ ଲେପନ
ଧୂର୍ଜଟୀ ବେଶରେ ଭ୍ରମଣ କରନ୍ତି
ସାକ୍ଷାତରେ ତ୍ରିଲୋଚନ । ୧୧

ଭ୍ରମି ଭ୍ରମି ଦିନେ ଶାନ୍ତନୁ ନୃପତି
ମିଳିଲେ ଜାହ୍ନବୀ ପାଶେ
ଶିବ ଭବ ଦେବୀ ବରଣ କରିଲେ
ସ୍ୱାମୀ ରୂପେ ନୃପଙ୍କଶେ । ୧୨

ମାତ୍ର ଭ୍ରମ ବୁଝି କହିଲେ ଜାହ୍ନବୀ
" ହେ ରଜା ଶାନ୍ତନୁ ଶୁଣ ।
ମୋହର ବଲ୍ଲଭ ଦେବ ତ୍ରିଲୋଚନ
ତାଙ୍କଠାରେ ମୋର ମନ । ୧୩

ମୋହର ଆନ୍ଦୋଳ ସମ୍ଭାଳ ପାରିବ
କହ ଆହେ ନର ସାଇଁ
ଗୋଲକ ବିହାରୀ ସହି ନ ପାରିଲେ
ଜଳ ରୂପେ ଗଲି ବହି । ୧୪

ବ୍ରହ୍ମା କମଣ୍ଡଳୁ ମଧ୍ୟେ ସେନ ଗଲେ
ରଖି ନପାରିଲେ ସେହି
ବାମନ ବିଷ୍ଣୁଙ୍କ ପାଦେ ଢାଳି ଦେଲେ
ରହିଲି ସେଠାରେ ଯାଇ । ୧୫

ସେ ବାମନ ବିଷ୍ଣୁ ରଖି ନ ପାରିଲେ
ମେରୁ ପୃଷ୍ଠେ ଦେଲ ଛାଡ଼ି
ଧବଳାଙ୍ଗୀ ନାମେ ହିମଗିରି ଶୀର୍ଷୁ"
ପଡ଼ିଲ ମର୍ତ୍ତ୍ୟ କନ୍ଦଡ଼ । ୧୬

ଆକାଶୁ ଖସିବା କାଳେ ବ୍ୟୋମ କେଶ
ରଖିଲେ ଜଟାରେ ଧରି
ସେହି ଦିନ ଠାରୁ ଶିବ ସ୍ୱାମୀ ମୋର
ମୁଁ ଅଟେ ପତ୍ନୀ ତାଙ୍କର । ୧୭

ଶୁଣ ନୃପବର କହେ ନୀରାଧାର
ସ୍ୱଭାବେ ବାତୁଳ ମୁହିଁ
ଜହ୍ନୁ ଋଷି ମୋତେ ରଖି ନ ପାରିଲେ
ଜନ୍ମିଲେ ଜାନୁ ଫଟାଇ । ୧୮

ଜାହ୍ନବୀ ନାମରେ ପ୍ରବାହିତ ହେଲି
ଜଗତ ଜନଙ୍କ ହିତେ
ଜଗତେ କେ ମୋତେ ଆପୂତ କରିବ
ଜଗତ ମୋର ଆପୂତେ । ୧୯

ତୁମ୍ଭେ ଯେବେ ମୋତେ ରଖିବାକୁ ଚାହଁ
ଶୁଣବାକ୍ୟ ନିରଧାର
ଅନୁକ୍ଷଣେ ମୋର କଥା ମାନିଥିବ
ନ କରିଣ ହତାଦର । ୨୦

କଲେ ଯେତେ ଦୋଷ ନ କରିବ ରୋଷ
ଦେବ ନାହିଁ ପଦେ ଗାଳି
ଅନୁକ୍ଷଣେ ମୋର ବାକ୍ୟ ପାଳିଥିବ
ଭୃତ୍ୟ ପ୍ରାୟେ ଅନୁସରି । ୨୧

ପାଳିବ ବଚନ ନ କରି ଲଂଘନ
କହ ନୃପକରି ସତ୍ୟ
ସତ୍ୟଭଗ୍ନ ହେଲେ ଛାଡି ପଳାଇବି
କହୁଛି ନସ୍ତା ଉଦନ୍ତ । " ୨୨

ଶାନ୍ତନୁ କହିଲେ ସତ୍ୟ କଲି ପ୍ରିୟେ
ପାଳିବି ତୁମ୍ଭ ବଚନ
କଲେ ଯେତେ ଦୋଷ ନ କରିବି ରୋଷ
କରିବି କ୍ଷମା ପ୍ରଦାନ । ୨୩

ଭାର୍ଯ୍ୟାର ଅଦେଶ ଭର୍ତ୍ତା ନ ସହିଲେ
ଘର ସଂସାରକ ହେବ
ପତ୍ନୀ କଥା ପତି ଗ୍ରହଣ ନ କଲେ
ପ୍ରିତିକ ହେବ ସମ୍ଭବ । ୨୪

ଅଙ୍ଗୀକାର କରି ଶାନ୍ତନୁ ନୃପତି
ଗଙ୍ଗାଦେବୀ ସଙ୍ଗେ ନେଇ
ହସ୍ତିନା ନଗରେ ପ୍ରବେଶ ହୋଇଲେ
ରାଜା ରାଣୀ ଦୁଇ ପ୍ରାଣୀ । ୨୫

ପତି ପତ୍ନୀ ଦୁଇ ସଂସାର କରିଲେ
କଟିଗଲା କେତେ ବର୍ଷ
ସନ୍ତାନଙ୍କ ବିନା ଶାନ୍ତନୁଙ୍କ ଠାରେ
ନଥାଏ ଗଙ୍ଗା ମାନସ । ୨୬

ଅନାଦି ଅପର୍ଣ୍ଣା ନିତ୍ୟ ନିରଞ୍ଜନୀ
ନର୍ଘାତ ନନ୍ଦିନୀ ଗଙ୍ଗା
ଶାନ୍ତନୁଙ୍କୁ ବର ବରଣ କରିଣ
ଜୀବନେ ପାଇଲେ ଦଗା । ୨୭

ଘୃଣା ଓ କ୍ରୋଧରେ ଦଗିଧି ଭୂତ ହୃଦ
ଅନ୍ତରେ ନ ଥାଏ ସ୍ନେହ
ରାଜାଙ୍କର ସତ୍ୟ- ଭଗ୍ନ କରିବାକୁ
କରନ୍ତି ନାନା ଉପାୟ । ୨୮

ସତ୍ୟଭଗ୍ନ ଦୋଷୁ ନୃପତିଙ୍କି ଛାଡ଼ି
ପଳାଇ ଯିବେ ଜାହ୍ନବୀ
ଏଣୁ ସେ ରହସ୍ୟ ସୃଜନ କରନ୍ତି
ମନରେ କପଟ ଭାବ । ୨୯

କାମାଶକ୍ତ ହୋଇ ଯଦି କେବେ ରାଜା
ଲୋଡ଼ୁଥାନ୍ତି ରତି କ୍ରୀଡ଼ା
ସ୍ଥାନ ତ୍ୟାଗ କରି ପଳାଇ ଯାଆନ୍ତି
କହିଣ ବଚନ କଡ଼ା । ୩୦

ବିଚାରନ୍ତି ମନେ କାମାନ୍ଧ ନୃପତି
ଯଦି ଭର୍ତ୍ସନା କରିବେ
ସତ୍ୟ ଭଗ୍ନ ଦୋଷେ ନୃପ ତେଜି ଦେବୀ
ଅନ୍ତର ହୋଇଣ ଯିବେ । ୩୧

ଯେଣୁ ରାଜାଙ୍କର ପ୍ରିୟତମା ପତ୍ନୀ
ଗଙ୍ଗା ପରମା ସୁନ୍ଦରୀ
ପ୍ରାଣଠାରୁ ତାଙ୍କୁ ଅଧିକ ମଣନ୍ତି
ନ ପାରନ୍ତି ଦୂର କରି । ୩୨

ପ୍ରିୟତମାଙ୍କର ଯାବତ ଭର୍ତ୍ସନା
ପ୍ରତି ନଥାଏ ଭ୍ରୂକ୍ଷେପ
ପ୍ରିୟାର ଭର୍ତ୍ସନା ପ୍ରିତି ବାର ପ୍ରାୟ
ମନେ ମଣୁଥାନ୍ତି ନୃପ । ୩୩

ଯେତେ ଗୁରୁତର ଦ୍ରୋହ କଲେ ମଧ୍ୟ
ନୃପ ନ ଦେଖନ୍ତି ଦୋଷ
ସକଳ ଦୋଷକୁ କ୍ଷମା ଦେଉଥାନ୍ତି
ଶାନ୍ତ ଚିତ୍ତେ ନରଈଶ । ୩୪

ଶାନ୍ତନୁ ଔରସୁ ଗଙ୍ଗାଙ୍କ ଗର୍ଭରୁ
ଜାତ ହେଲେ ସାତ ସୁତ
ଜାତ ହେବା ମାତ୍ରେ ଜାହ୍ନବୀ ଜଳରେ
ଫିଙ୍ଗି ଦିଅନ୍ତି ନବ ଜାତ । ୩୫

ତଥାପି ଶାନ୍ତନୁ ପ୍ରିୟତମା ପ୍ରତି
ନ ବହନ୍ତି କ୍ରୋଧ ଭାବ
ଆପଣା ବଚନ ରକ୍ଷା କରିବାରେ
ଶାନ୍ତନୁ ନର ପୁଙ୍ଗବ । ୩୬

ଅଷ୍ଟମ ଗର୍ଭରେ ଦିବ୍ୟ ତନୁ ଧରି
ଜନ୍ମିଲା ଏକ ନନ୍ଦନ
ଆନନ୍ଦିତ ହୋଇ ଶାନ୍ତନୁ ନୃପତି
କଲେ ପୁତ୍ରେ ଆଲିଙ୍ଗନ । ୩୭

ଜାଣିଲେ ଏ ସୁତ କୃଷ୍ଣ ପ୍ରିୟ ଭକ୍ତ
ଜନ୍ମି ଜପେ କୃଷ୍ଣ କୃଷ୍ଣ
ମାତୃ ଗର୍ଭ ଜ୍ଞାନ ସ୍ମରଣ ରହିଛି ।
ରୁନ୍ଧିଛି ହୃଦେ ପବନ । ୩୮

ବିଷ୍ଣୁ ଭକ୍ତ ପୁତ୍ର ପାଇ ଆନନ୍ଦିତ
ସସ୍ନେହେ କରିଲେ କୋଳ
ନୟନ ଯୁଗଳୁ ପ୍ରେମ ଅଶ୍ରୁ ବାରି
ଝରିପଡ଼େ ଧାର ଧାର । ୩୯

ସ୍ୱାମୀ ମନ କଥା ଜାଣି ଗଙ୍ଗା ଦେବୀ
ଛୁରିକା ଧରି ଉଦ୍ୟତ
କ୍ରୋଧରେ ରାଜନ ଭର୍ତ୍ସନା କରିଲେ
ହୋଇ ଅତ୍ୟନ୍ତ ବିରକ୍ତ । ୪୦

ନୃପତି କହିଲେ ଜନନୀ ହୋଇତୁ
ଜଠରୁ ଜନମ କରି
ଜଳ ସ୍ରୋତେ ସୁତେ ନିକ୍ଷେପ କରିଲୁ
ପିଶାଚୀ ପ୍ରକୃତି ଧରି । ୪୧

ପୁଣି ଏ ପୁତ୍ରକୁ ଛୁରିକା ଧରିଣ
କରୁଅଛୁ ତୁ ସଂହାର
ସନ୍ତାନଙ୍କ ପ୍ରତି ଏପରି ନିର୍ଦ୍ଦୟୀ
ନ ଦେଖାଅ ମୁଖ ତୋର । ୪୨

ସ୍ୱାମୀଙ୍କ ଭର୍ତ୍ସନା ଶୁଣି ଧବଳାଙ୍ଗୀ
କହିଲେ ନୃପତି ଶୁଣ
ଯହିଁ ପାଇଁ ସୁତେ ଜଳକୁ ଫିଙ୍ଗିଲି
ବ୍ୟକ୍ତ କରୁଛି କାରଣ । ୪୩

ଏହି ଅଷ୍ଟ ସୁତ ଅଷ୍ଟ ବସୁ ଥାଇ
ଅରଜିଲେ ମହାପାପ
ବଶିଷ୍ଠ ଋଷିଙ୍କ ଧେନୁ ଚୋରି କରି
ପାଇଥିଲେ ବ୍ରହ୍ମ ଶାପ । ୪୪

କାମ ଧେନୁ କ୍ଷୀର ପାନ ଲାଳସାରେ
ବସୁଏ ହରିଲେ ଗାଈ
ମାନବ ଯୋନିରେ ଜନମ ହୋଇଲେ
ବ୍ରହ୍ମ ଅଭିଶାପ ପାଇ । ୪୫

ଶାପ ମୁକ୍ତି ପାଇଁ ଅଷ୍ଟ ବସୁ ଦୁଃଖେ
କଲେ ଆମ୍ଭଙ୍କୁ ସ୍ମରଣ
" କହିଲେ ଜନନୀ ଆମ୍ଭ ହିତ ପାଇଁ
ମର୍ତ୍ତ୍ୟେ ହେବ ଅବତୀର୍ଣ୍ଣ । ୪୬

ତୁମ୍ଭର ଗର୍ଭରୁ ଆମ୍ଭେ ଜନ୍ମ ହେବୁ
ଫିଙ୍ଗିବ ଆମ୍ଭଙ୍କୁ ଜଳେ
ଗଙ୍ଗା ଜଳେ ପ୍ରାଣ ହାରି ଶାପମୁକ୍ତ
ହେବୁ ଋଷି ଆଜ୍ଞା ବଳେ ।"୪୭

ସପ୍ତ ବସୁ ମୋର ଗର୍ଭରୁ ଜନ୍ମିଣ
ହୋଇ ଗଲେ ଶାପ ମୁକ୍ତ
ତୁମ୍ଭେ କହିବାରୁ ରଖିଲି ଏ ସୁତ
ହେତୁ କର ନର ନାଥ । ୪୮

'ଦ୍ୟୁ' ନାମରେ ବସୁ ଅଟେ ଏ କୁମର
ରଖିଲି ଏହାର ପ୍ରାଣ
ଏ ମହା ତେଜସ୍ୱୀ ହୋଇବେ ଭାରତେ
ମୃତ୍ୟୁ ତାର ଇଚ୍ଛାଧୀନ । ୪୯

ଧର୍ମକାଳ ଯାଏଁ ମାନବ ଲୋକରେ
ଜୀବିତ ହୋଇ ରହିବ
ଧର୍ମ ତନୟଙ୍କ ମଙ୍ଗଳ ବିଧାନ
କରି ମୋକ୍ଷ ହୋଇଯିବ । ୫୦

ବସୁମାନଙ୍କର ପିତା ମାତା ହୋଇ
ଜୀବନ ଆମ୍ଭର ଧନ୍ୟ
ଅକ୍ଷୟ କୀରତି ରଖିବ ଜଗତେ
ତୁମ୍ଭର ଏହି ନନ୍ଦନ । ୫୧

ମାତ୍ର ଏ ନନ୍ଦନ ନନ୍ଦନର ହାତେ
ହେବ ତୁମ୍ଭ ପ୍ରାଣ ନାଶ
ଏହି ଅଭିଶାପ ଦେଇ ଯାଉଅଛି
ଜାଣି ରଖ ନର ଈଶ । ୫୨

ସତ୍ୟ କରି ଯେଣୁ ସତ୍ୟ ଭଙ୍ଗ କଲ
ତୁଟି ଯାଉଛି ନୃପତି
ଏହା କହି ଦେବୀ ପୁଅକୁ ଧରିଣ
ଅନ୍ତର ହେଲେ ଝଟତି । ୫୩

ପତ୍ନୀ, ପୁତ୍ର ତେଜି          ଶାନ୍ତନୁ ନୃପତି
ଦୁଃଖରେ କାଟିଲେ ଦିନ
ଶିବ ସେବା କରି          କାଳ କଟାଇଲେ
ହସ୍ତିନାର ନର ଗଣ । ୫୪
ଇତ୍ୟବସରରେ          ଦ୍ୱାଦଶ ବରଷ
କ୍ରମେ ହୋଇଗଲା ଗତ
ଏକଦା ନୃପତି          ଗଙ୍ଗା ତୀରେ ଭ୍ରମୁଁ
ଭେଟିଲେ ଜାହ୍ନବୀ ସୁତ । ୫୫
ଦିବ୍ୟ ଶିଶୁ ପ୍ରାପ୍ତ          ଭ୍ରମେ ନଦୀ ତୀରେ
କରେ ଧରି ଧନୁଶର
ଶର ପ୍ରହାରଣେ          ପ୍ରତିରୋଧ କରେ
ପ୍ରଖର ଜାହ୍ନବୀ ଧାର । ୫୬
ଏ ବିଚିତ୍ର ଦୃଶ୍ୟ          ଦେଖି ନୃପତିଙ୍କ
ମନ ହେଲା ଆନ୍ଦୋଳିତ
ଏ କାଳେ ସେଠାରେ          ମିଳି ଗଙ୍ଗା ଦେବୀ
ପ୍ରକାଶ କରିଲେ ତଥ୍ୟ । ୫୭
" ଜାହ୍ନବୀ କହିଲେ          ଏ ତୁମ୍ଭ ତନୟ
ନାମ ଅଟେ "ଦେବବ୍ରତ"
ବଶିଷ୍ଠ ଋଷିଙ୍କ          ଆଶ୍ରମରେ ବିଦ୍ୟା
ଶିକ୍ଷା କରି ବିଦ୍ୟାବନ୍ତ । ୫୮
ଶସ୍ତ୍ର, ଶାସ୍ତ୍ର, ବେଦ          ବେଦାଙ୍ଗ ସାଧିଣ
ସର୍ବ ବିଦ୍ୟାରେ ଭୂଷିତ
ଶୁକ୍ରାଚାର୍ଯ୍ୟାର୍ଜିତ          ବିଦ୍ୟାରେ ନିପୁଣ
ପର୍ଶୁରାମ ବୀରବତ । ୫୯
ଦେବବ୍ରତ ପୁତ୍ର          ଘେନି ନରପତି
ଫେରିଲେ ହସ୍ତିନାପୁର
ଯୁବରାଜ ପଦେ          ଅଭିଷିକ୍ତ ହେଲେ
ଶାନ୍ତନୁ ରାଜ କୁମର । ୬୦

ବ୍ୟାସଦେବ ଠାରୁ          ବସୁମରେ ବନ୍ଦି
ଅଟନ୍ତି ଏ ଦେବବ୍ରତ
ବୀରଙ୍କ ମଧ୍ୟରେ          ମହାବୀର ଗଣ୍ୟ
ଶାନ୍ତନୁଙ୍କ ଜ୍ୟେଷ୍ଠ ସୁତ । ୬୧
ଶ୍ରଦ୍ଧାରେ ପୁନକୁ          ପାଳନ କରିଲେ
ପଞ୍ଚ କଟକ ଈଶ୍ୱର
ବାଷଠି ପଦରେ          ଗୀତରେ ଭଣିଲା
ବୁଲି ଦାସ କବି ଗୁରୁ । ୬୨
ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପ ଲୀଳା ଖଣ୍ଡେ ଭୀଷ୍ମ ଜନ୍ମ ଉପାଖ୍ୟାନେ ନାମ
ପଞ୍ଚମ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ



**ବୋଲି** -
ବାଇ ମନରେ ।
ଶୁଣ ତୋ ଶରୀର ଗଢ଼ଣ ।
ଜନନୀ ଜଠରେ          ବିନ୍ଦୁ ପଡିବାରୁ
ତୋ ଦେହ ହୋଇଲା ନିର୍ମାଣ । ଘୋଷା
ନବ ଦିନେ ତାକୁ          ନିର୍ମିତ ହୋଇଲା
ଅଠର ଦିନେ ଲଲାଟ
ସତେଇଶ ଦିନେ          ଚକ୍ଷୁ, କର୍ଣ୍ଣ ସୃଷ୍ଟି
ପଞ୍ଚତ୍ରିଶେ ନାସା ପୁଟ । ୧
ବୟାଳିଶ ଦିନେ          ହୃଦ ପଦ୍ମ ସୃଷ୍ଟି
ଚୌବିଶୀ ଦିନରେ ନାଡି
ପୂର୍ବ ତିନ ମାସେ          ଇନ୍ଦ୍ରିୟ ଖଞ୍ଜିଲେ
ଶତ ଦିବସେ ଚନ୍ଦ୍ର ଗତି । ୨

ଷାଶାଶତ ଦନେ  ହସ୍ତ ନିର୍ମିଣିଲେ
ଦୁଇଶତ ଦନେ ଚରଣ
ପୂର୍ଣ୍ଣ ଯାତ ମାସେ  ପୂର୍ଣ୍ଣାଙ୍ଗ ଶରୀର
ପୂର୍ଣ୍ଣାନନ୍ଦ କଲେ ସମ୍ପୂର୍ଣ୍ଣ । ୩
ଜୀବ ବ୍ରହ୍ମ ଦୁଇ  ବାସ କଲେ ତହିଁ
ସୁନ୍ଦର ମନ୍ଦର ଗଢଣ
ଦ୍ୱାଦଶ ଶବଦେ  ଆଳତି ହେଉଛି
ବୁଲ୍ ବୋଲେ ଶୁଣ ନନ୍ଦନ । ୪



# ଷଷ୍ଠ ଅଧ୍ୟାୟ

## ଭୀଷ୍ମ ପ୍ରତିଜ୍ଞା

### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ  ମାନସ ଶ୍ରବଣ
କର ଜନେ ଦେଇ ଚିତ୍ତ
କୃଷ୍ଣ ପ୍ରେମ ରସ  ଧାର ବନ୍ଦ୍ୟାଏ
ଉଚ୍ଛୁଳାଇ ହୃଦତଟ । ୧
କହୁଁ କହୁଁ ବ୍ୟାସ  ବର୍ଣ୍ଣି ଏତି ଚାଲି
ଅନେକ ଘଟଣା ଶୁଣ
ଜାହ୍ନବୀ କୂଳରେ  ଶାନ୍ତନୁ ରାଜନ
କରନ୍ତି ମାଲ୍ୟ ଭ୍ରମଣ । ୨
ମନ ମୁଗ୍ଧକର  ଗନ୍ଧ ଆଘ୍ରାଣରେ
ମୋହିତ ହୋଇ ନରେଶ
ଗନ୍ଧ ଅନ୍ୱେଷଣେ  କର କିଛି ଦୂରେ
ଭେଟିଲେ ଯୁବତୀ ଜଣ । ୩

ଦାସ ରାଜ କନ୍ୟା    ଦେବୀ ସତ୍ୟବତୀ
ପରାଶରେ ପ୍ରୀତି ଦେଇ
ବ୍ୟାସଙ୍କ ଜନନୀ    ହୋଇ ଋଷି ବାକ୍ୟେ
ରହିଲେ ଏକାନ୍ତ ହୋଇ । ୪

ପରାଶର ବାକ୍ୟେ    ଶରୀରୁ ସୁଗନ୍ଧ
ବାହାରି ଯୋଜନ ଯାଏ
ସୁଗନ୍ଧିତ କରି -    ବାୟୁ ପରିବେଶ
"ଯୋଜନାଗନ୍ଧା" ବୋଲାଏ । ୫
ଅପୂର୍ବ ସୁନ୍ଦରୀ    ନାରୀ ଶରୀରରୁ
ଗନ୍ଧ ହେଉଥିଲା ଜାତ
ସୁଗନ୍ଧ ବାସନା    ସୁନ୍ଦର ରୂପକୁ
ଦେଖି ରାଜା ବିମୋହିତ । ୬
ପ୍ରେମାସକ୍ତ ହୋଇ    ଶାନ୍ତନୁ ନୃପତି
କନ୍ୟା ପାଶେ ଉଭା ହୋଇ
ମନର ବାସନା    ପ୍ରକାଶ କରନ୍ତେ
ସଧୀରେ ବାଳା ବୋଲଇ । ୭
"ପିତା ଦତ୍ତ କନ୍ୟା    ସମାଜ ନିୟମ
ରାଜାଙ୍କୁ ଜଣାନ୍ତୁ ଯାଇ"
ନିଷ୍ଠା କଥା ଶୁଣି    ଶାନ୍ତନୁ ନୃପତି
ଭେଟି କଲେ ନର ସାଇଁ । ୮
ଧୀବର ନୃପତି    କହିଲେ ରାଜନ
ପ୍ରସ୍ତାବେ ମୋର ସମ୍ମତି
ମାତ୍ର ମୋ କନ୍ୟାର    ଗର୍ଭରୁ ସମ୍ଭୂତ
ସନ୍ତାନ ହେବ ନୃପତି । ୯
ଏଥିରେ ସମ୍ମତ    ହେଲେ ନରନାଥ
କନ୍ୟା କରିବ ପ୍ରଦାନ
ଏପରି କଠିନ    ପ୍ରସ୍ତାବକୁ ଶୁଣି
ବିଷାଦିତ ନରରାଣ । ୧୦

ବିସ୍ମରିଲେ ରାଜା    ପୁତ୍ର ଦେବବ୍ରତ
ସକଳ ଗୁଣେ ଭୂଷିତ
ରାଜ୍ୟ ଯୁବରାଜ    ପଦେ ଅଭିଷିକ୍ତ
କିପରି ହେବ ବଞ୍ଚିତ ? ୧୧

ଏହା ଚିନ୍ତି ରାଜା    ସୁସ୍ଥ ନ ହୋଇ
ଫେରିଲେ ରାଜନବର
ମାତ୍ର କାମଜ୍ୱାଳା    ପ୍ରଜ୍ୱଳିତ ହୋଇ
ଚିନ୍ତାକୁଳ ନୃପବର । ୧୨

ପିତାଙ୍କୁ ସର୍ବଦା    ଚିନ୍ତା ମଗ୍ନ ଦେଖି
ପୃଚ୍ଛା କଲେ ଦେବବ୍ରତ
ହେ ପିତା କିମ୍ପାଇ    ବିଷର୍ଣ୍ଣ ବଦନ
ପ୍ରକାଶ କରନ୍ତୁ ତଥ୍ୟ ? ୧୩

ଦିନୁ ଦିନ ତବ    କଳେବର କ୍ଷୀଣ
ଚିତ୍ତେ ପ୍ରସନ୍ନତା ନାହିଁ
ଗୋପନ ନ ରଖି    ପ୍ରକାଶ କରନ୍ତୁ
ମନେ ଚିନ୍ତା କେଉଁ ପାଇଁ ? ୧୪

" ସଙ୍କୁଚେ ଉତ୍ତର    ଦେଲେ ନୃପବର
ଶୁଣିରେ କୁଳ ନନ୍ଦନ
ମୋ କୁଳରେ ତୁହି    ଏକ ମାତ୍ର ସୁତ
ସର୍ବ ଗୁଣେ ପରିପୂର୍ଣ୍ଣ । ୧୫

ମାତ୍ର ଏକ ସୁତେ    ସିଂହାସନ ରକ୍ଷା
ଅଟେ କଠିନ ବ୍ୟାପାର
କ୍ଷତ୍ରିୟ ପକ୍ଷରେ    ଯୁଦ୍ଧ ବିଭୀଷିକା
ଲାଗିଥାଏ ନିରନ୍ତର । ୧୬

ଏଣୁ ଏକାଧିକ    ପୁତ୍ର ଲୋଡା ଅଛି
ସିଂହାସନ ରକ୍ଷା ପାଇଁ
ଏ କଥାକୁ ଚିନ୍ତା    କରିଣ କୁମର
ଅସ୍ଥିର ଚିତ୍ତ ଅଟଇ" । ୧୭

ପିତାଙ୍କର ମନ ଭାବ ବୁଝି ପାରି
ପିତୃ ଭକ୍ତ ଦେବବ୍ରତ
ପିତାଙ୍କ ସାରଥି ଠାରୁ ଏ ରହସ୍ୟ
ବୁଝି ହେଲେ ଆନନ୍ଦିତ । ୧୮

ଧୀବର ରାଜାଙ୍କୁ ସାକ୍ଷାତ କରଣ
ଜଣାଇଲେ ଦେବବ୍ରତ
ମୋ ପିତାଙ୍କୁ କନ୍ୟା ବିଭା ଦେଇ ରାଜା
ପୂର୍ଣ୍ଣ କର ମନୋରଥ । ୧୯

ସଧୀରେ ବୋଇଲେ ଧୀବର ରାଜନ
ଶୁଣ ଆମ୍ଭର ନିଷ୍ପତ୍ତି
ନୃପତି ମହିଷୀ ହେବାକୁ ମୋ କନ୍ୟା
ଅଟେ ଉପଯୁକ୍ତ ପାତ୍ରୀ । ୨୦
ତା' ଗର୍ଭ ସମ୍ଭୂତ ଯୁବ ରାଜା ହେବା
ନୁହେଁ କି କଥା ଉଚିତ
ମାତ୍ର ଶାନ୍ତନୁଙ୍କ ଉତ୍ତରାଧିକାରୀ
ଅଟ ତୁମ୍ଭେ ଜ୍ୟେଷ୍ଠ ସୁତ । ୨୧
ଏହାହିଁ ହେଉଛି ମୋହର ଆପତ୍ତି
କ୍ଷମା କର ଯୁବରାଜ
ଧୀବର ନୃପତି କଥା ଶୁଣି ଧୀରେ
କହିଲେ ରାଜ ତନୁଜ । ୨୨
ପିତାଙ୍କର ସୁଖ ସମ୍ଭୋଗ ନିମନ୍ତେ
ତ୍ୟାଗ କଲି ସିଂହାସନ
ତୁମ୍ଭ କନ୍ୟା ଗର୍ଭୁଁ ଜନ୍ମିତ ସନ୍ତାନ
ରାଜ୍ୟେ ହେବେ ନରରାଣ । ୨୩
ଦେବବ୍ରତଙ୍କର ନିଷ୍ଠା କଥା ଶୁଣି
ଉତ୍ତରିଲେ ନରନାଥ
"ହେ କୁମର ଯେଉଁ ପ୍ରତିଜ୍ଞା କରିଲ
ଶୁଣି ହେଲି ପ୍ରମୀଭୂତ । ୨୪

ଭାରତ ଭୂଇଁରେ ଏପରି ନାସ୍ତୁରେ
ପ୍ରତିଜ୍ଞା କେ କରି ନାହିଁ
କନ୍ୟା ପିତା ରୂପେ ଆଉ ଏକ କଥା
ଜାଣିବାକୁ ଚାହେଁ ମୁହିଁ । ୨୫

ତୁମ୍ଭର ସନ୍ତାନ ସନ୍ତତି ସମ୍ବନ୍ଧେ
ନିଶ୍ଚିନ୍ତ ହୋଇ ପାରେ କି
ସେମାନେ ମୋ କନ୍ୟା ପୁତ୍ର ନାତିଙ୍କର
ଶତ୍ରୁ ହୋଇବେ ନାହିଁ କି ? । ୨୬

ବଳ ପୂର୍ବକ ସେ ମୋ କନ୍ୟା ପୁତ୍ରଙ୍କୁ
ନ ନେବେ କି ରାଜ୍ୟ ଭାର
ଏଥିକୁ ସଂଶୟ ଜାଗରିତ ମନେ
ସନ୍ଦେହ ମୋଚନ କର ? । ୨୭

ଧୀବର ରାଜାଙ୍କ ନିଷ୍ଠା କଥା ଶୁଣି
ଉତ୍ତରିଲେ ଦେବବ୍ରତ
" ଆଜୀବନ ଦାର ସଂହାର କରିଲି
ପାଳି ବ୍ରହ୍ମଚର୍ଯ୍ୟବ୍ରତ " । ୨୮

ଏ ଦୃଢ ପ୍ରତିଜ୍ଞା ଶୁଣି ତୋଷ ହେଲେ
କୈବର୍ତ୍ତ କୁଳ ରାଜନ
ଶୂନ୍ୟ ବାଣୀ ହେଲା ଆକାଶ ମଣ୍ଡଳୁ
" ଭୀଷ୍ମ ପ୍ରତିଜ୍ଞା " ପ୍ରମାଣ । ୨୯

ସେହି ଦିନ ଠାରୁ ଭୀଷ୍ମ ନାମେ ଖ୍ୟାତ
ହେଲେ ପୁତ୍ର ଦେବବ୍ରତ
ଦାସ ରାଜ କନ୍ୟା ପ୍ରଦାନ କରିଲେ
ଶାନ୍ତନୁ ନୃପଙ୍କ ହସ୍ତ । ୩୦

ଭାରତ ଭୂଖଣ୍ଡେ ବିରଳ ଏ କଥା
ଧନ୍ୟ ଏ ଭାରତ ଭୂଇଁ
ପିତା ପାଇଁ ପୁତ୍ର ସଂସାର ତେଜିଲେ
ଚକିତ ହୋଇଲା ମହୀ । ୩୧

ପୁତ୍ର ଦେବବ୍ରତ ଭୀଷଣ ପ୍ରତିଜ୍ଞା
ଶୁଣି ପିତା ସ୍ତମ୍ଭୀଭୂତ
ବତୃରଲେ ମନେ ମାତା ଅଭିଶାପ
ଧ୍ରୁବ ହୋଇ ବଖଣ୍ଡିତ । ୩୨

ନିଶ୍ଚିନ୍ତ ହୋଇଲେ ଶାନ୍ତନୁ ନୃପତି
ଦେବବ୍ରତ ପୁତ୍ର ହାତେ
ଶିରଚ୍ଛେଦ ମୋର ହେବନାହିଁ ଆଉ
ରକ୍ଷା ବ୍ରହ୍ମଚର୍ଯ୍ୟ ବ୍ରତେ । ୩୩

ଅଟଳ ପ୍ରତିଜ୍ଞା- କାରୀ ରୂପେ ଭୀଷ୍ମ
ଭାରତେ ହେଲେ ବିଖ୍ୟାତ
ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଣ
ତ୍ୟାଗ କଲେ ରାଜ୍ୟ ସୁଖ । ୩୪

ପୁତ୍ର ଶ୍ରେଣୀଭୁକ୍ତ ଅଟନ୍ତି କ୍ରମରେ
ଗୁଣ କର୍ମ ଅନୁଯାୟୀ
ଉତ୍ତମ, ମଧ୍ୟମ, ଅଧମ ସହିତ
ଅଧମାଧମ ବୋଲାଇ । ୩୫

ପିତା ମନୋଭାବ ବୁଝି ଯେ ନନ୍ଦନ
କାର୍ଯ୍ୟ କରେ ସମ୍ପାଦନ
ଉତ୍ତମ ସନ୍ତାନ ବୋଲନ୍ତି ତାହାଙ୍କୁ
ପିତୃଭକ୍ତ ସେ ନନ୍ଦନ । ୩୬

ପିତାଙ୍କ ଆଦେଶ ମତେ ଯେ କରଇ
ପିତୃ କାର୍ଯ୍ୟ ସମ୍ପାଦନ
ମଧ୍ୟମ ଶ୍ରେଣୀର ପୁତ୍ର ସେ ଅଟଇ
ହେତୁ କର ରଖ ମନ । ୩୭

ପିତାଙ୍କ ଆଦେଶ ପାଇ ଯେ ନନ୍ଦନ
କୁଣ୍ଠିତ ଚିତ୍ତରେ କର୍ମ
ସମ୍ପାଦନ କରେ ଅଧମ ଶ୍ରେଣୀର
ଅନ୍ତର୍ଭୁକ୍ତ ସେ ନନ୍ଦନ । ୩୮

ପିତାଙ୍କ ଆଦେଶ ନ ଶୁଣେ ଯେ କର୍ଣ୍ଣେ
ଅଧମାଧମ ଅଟଇ
ଏ ତୃତ ଶ୍ରେଣୀରୁ ପ୍ରଥମ ଶ୍ରେଣୀର
ପୁତ୍ର ଉତ୍ତମ ଅଟଇ । ୩୯

ଶାନ୍ତନୁ କୁଳରେ ଭୀଷ୍ମ ହିଁ ଉତ୍ତମ
ପିତାଙ୍କର ମନ ଜାଣି
କହିବା ଆଗରୁ କାର୍ଯ୍ୟ ସମ୍ପାଦନ
କରି ଦେଲେ ପୁତ୍ରମଣି । ୪୦

ପିତା ସୁଖ ପାଇଁ ଆପଣାର ସୁଖ
ତ୍ୟାଗ କଲେ ଚିର ଦିନ
ଭାରତ ବରଷେ ଏପରି ଆଦର୍ଶ
ରକ୍ଷଣେ ଭୀଷ୍ମ ମହାନ୍ । ୪୧

ପୁତ୍ର ଦେବବ୍ରତ ପାଳି ସତ୍ୟ ବ୍ରତ
ଭୀଷ୍ମ ନାମେ ପରିଚିତ
ନମସ୍ୟ, ପ୍ରଣମ୍ୟ ଅଟନ୍ତି ଗାଙ୍ଗେୟ
ପୁତ୍ରଙ୍କ ମଧ୍ୟେ ସୁପୁତ୍ର । ୪୨

ଶାନ୍ତନୁ ଔରସୁ ସତ୍ୟବତୀ ଗର୍ଭୁଁ
ଜାତ ହେଲେ ଦୁଇ ସୁତ
ଚିତ୍ରାଙ୍ଗଦ ଜ୍ୟେଷ୍ଠ ବିଚିତ୍ର କନିଷ୍ଠ
ଶସ୍ତ୍ର ଶାସ୍ତ୍ରରେ ନିର୍ଜିତ । ୪୩

ସତ୍ୟବତୀ ସୁତ ବୀର ଚିତ୍ରାଙ୍ଗଦ
ରାଜ୍ୟ ହେଲେ ନରନାଥ
ଗନ୍ଧର୍ବଙ୍କ ସଙ୍ଗେ ସମରେ ପଶିଣ
ଯୁବ ବୟସେ ନିହତ । ୪୪

ଭ୍ରାତାଙ୍କ ନିହତ ଅନ୍ତେ ରାଜା ହେଲେ
ରାଜ୍ୟରେ ବିଚିତ୍ରବୀର୍ଯ୍ୟ
ଧର୍ମ ନ୍ୟାୟ ବଳେ ବୁଝାସୁଝା କଲେ
ହସ୍ତିନାର ରାଜ କାର୍ଯ୍ୟ । ୪୫

ରଜ ପ୍ରମର୍ଶ ଦାତା ହୁଏଥ ସ୍ୱୟଂ
ସମ୍ପାଦଲେ ନିଜ କାର୍ଯ୍ୟ
ପୁନ ପର ପ୍ରଜା ପାଳନ କରିଲେ
ନୃପତି ବଚନ କାର୍ଯ୍ୟ । ୪୬
ମତ ବୃକଶ ପ - ଦେ ଅଧ୍ୟାୟ ଶେଷ
ସୁଜନେ ଶୁଣ ମାନସ
ମୁରୁ ଅଭିରାମ କୃପା ହୋଇବାରୁ
ଭଣିଲ ଶ୍ରୀ ବୁଲୁ ଦାସ । ୪୭

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଂସନୋ
ଗୋପଲୀଳା ବନ୍ଦ୍ରେ କୃଷ୍ଣ ଜନ୍ମ ବର୍ଣ୍ଣନେ ନାମ
ଷଷ୍ଠ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।



**ବୋଲି -**

ବାଇ ମନରେ
ଏକାଙ୍ଗ ଭଜନ ଶୁଣ
ରାଙ୍ଗ ଅଧରରେ ମନ୍ଦେ ମନ୍ଦେ ହସି
କହନ୍ତ ରମା ରମଣ
ଚୌରାଅଶି ଅଙ୍ଗୁଳ ଘଟ ପରମାଣ
ବୃନ୍ଦାବନ ବୋଲି ଜାଣ ॥ ଘୋଷା ॥
ଯକାର ଶ୍ରୀମଣ୍ଡ ହକାର ଶ୍ରୀ ପଣ୍ଡ
ଲଗିଅଛୁ ହଂସ ଖେଳ
ଆଜ୍ଞା ଚକ୍ର ଠାରୁ ମଣିପୁର ଯାଏଁ
ରାଧାକୃଷ୍ଣ ପ୍ରେମେ ଖେଳ ।

ବାମରେ ଶ୍ରୀମତୀ ଦକ୍ଷିଣେ ଶ୍ରୀପତି
ଭେଟ ନ ହୁଅନ୍ତି ଦୁଇ
ଉଲଟ ପାଲଟ ଗତି କରୁଛନ୍ତି
ଭ୍ରମର ଗୁମ୍ଫାରେ ରହି ।
ଦେଖୁ ନାମେ ଦୂତୀ ଅତି ବୁଦ୍ଧିମତୀ
କରାଏ ବେନି ମିଳନ
ଦବସ୍ତ ଶବଙ୍ଖ ରାସ ଲାଗିଅଛି
କର ମନ ରସ ପାନ ।



# ସପ୍ତମ ଅଧ୍ୟାୟ

## ଭୀଷ୍ମଙ୍କ ପ୍ରତି କ୍ରୋଧ

### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞ ଜନ
ପଦ ପଦ କରେ ଧାର ଝରୁ ଅଛି
ଆକଣ୍ଠ କର ହେ ପାନ । ୧
କାଶିରାଜ କନ୍ୟା ସ୍ୱୟମ୍ବର ବାର୍ତ୍ତା
ପାଇ ଭୀଷ୍ମ ମହାବୀର
ବାଜ ପକ୍ଷୀ ପ୍ରାୟ ସଭାରେ ମିଳିଲେ
ଗାଙ୍ଗେୟ ବାହୁ ଚନ୍ଦ୍ରବର । ୨
ଭୀଷ୍ମ ଉପସ୍ଥିତି ଦେଖି ନରପତି
ହୋଇଗଲେ ସ୍ତମ୍ଭୀଭୂତ
କହୁଗଲେ ଦାମ୍ଭ ତ୍ୟାଗ କର ଭୀଷ୍ମ
କାହିଁପା ମଣ୍ଡପକୁ ଆଗତ ? ୩

ସଭିଙ୍କ ସନ୍ଦେହ ମୋଚନ କରିଣ
କହୁଛନ୍ତି ଗଙ୍ଗାସୁତ
" ମୋ କନିଷ୍ଠ ଭ୍ରାତା ପାଇଁ କନ୍ୟା ଖୋଜି
ଆସିଅଛୁ ନରନାଥ । ୪
ସ୍ୱୟମ୍ବର ଜାଣି ରାଜାଙ୍କ କନ୍ୟାଙ୍କୁ
ବଳେ ନେଉଅଛୁ ଧରି
ଯଦି ପ୍ରତିରୋଧ କରିବାକୁ ଇଚ୍ଛା
କରି ପାର ଦଣ୍ଡ ଧାରି " । ୫
ଏହା କହି ସ୍ୱୟଂ - ମ୍ବର କନ୍ୟା ନେଇ
ଚଳିଲେ ଆପଣା ରଥେ
ଲଜ୍ଜା ପାଇ ନୃପେ ବସିଲେ ମଉନେ
ଭୟ କରି ଗଙ୍ଗା ସୁତେ । ୬
ସୌରାଜ ନୃପତି ଦମ୍ଭ କରି ତ୍ରାହି
ଭୀଷ୍ମଙ୍କ ସଙ୍ଗେ ଲଢ଼ିଲେ
ଭୀଷ୍ମ ଶାଲ୍ୱ ମଧ୍ୟେ ଘୋର ଯୁଦ୍ଧ ହୋଇ
ସୌରାଷ୍ଟ୍ର ନୃପ ହାରିଲେ । ୭
କାଶୀ ରାଜାଙ୍କର ତିନ କନ୍ୟା ନେଇ
ଫେରିଲେ ହସ୍ତିନାପୁର
ବିଧି ବିଧାନରେ ଆୟୋଜନ କଲେ
ବିଚିତ୍ରଙ୍କ ବିଭାଘର । ୮
ଅମ୍ବା, ଅମ୍ବାଳିକା, ଅମ୍ବିକା ନାମରେ
କାଶି ରାଜାଙ୍କ ଦୁହିତା
ଅମ୍ବିକା, ଅମ୍ବାଳି- କା ଦୁଇ ଭଗ୍ନିଙ୍କ
-ବିଚିତ୍ର ହୋଇଲେ ଭର୍ତ୍ତା । ୯
ବିବାହ ବେଦିରେ ଅମ୍ବା ନାମେ କନ୍ୟା
ସଭିଙ୍କ ଉପସ୍ଥିତିରେ
ଭୀଷ୍ମଦେବ ପ୍ରତି ତିରସ୍କାର କଲେ
କ୍ରୋଧ ବହି ହୃଦୟରେ । ୧୦

" କହିଲେ ଆପଣ ଗଙ୍ଗାଙ୍କ ନନ୍ଦନ
ସର୍ବଜ୍ଞ ପୁଣି ବିଦ୍ୱାନ
ମୋର ମନ କଥା ବୁଝି ନ ପାରିଣ
କିମ୍ପା କରିଲ ହରଣ ? ୧୧

ସୌଭ ଦେଶ ନୃପ ଶାଲ୍ୱ ମହୀପତି
ମୋହର ମାନସ ପତି
ତାଙ୍କୁ ଛାଡ଼ି ଆନେ ବିବାହ ନ କରେ
ଶୁଣ ମୋ ଦୁଃଖ ଭରଣ । ୧୨

ଅମ୍ବା ଦେବୀଙ୍କର ଦୁଃଖ ନିଷ୍ଠା କଥା
ଶୁଣି ଶ୍ରେଷ୍ଠ ମହାତ୍ମନ
ଶାଲ୍ୱ ନୃପତିଙ୍କ ପାଖକୁ ଅମ୍ବାକୁ
ପଠାଇ ଦେଲେ ବହନ । ୧୩

ସୌରଷ୍ଟ୍ର ଦେଶକୁ ଯାଇ ଅମ୍ବା ଦେବୀ
ଭେଟିଲେ ଶାଲ୍ୱ ରାଜନ
ଅନ୍ତରର କଥା ପ୍ରକାଶ କରିଲେ
କହି ବିନୟ ବଚନ । ୧୪

" ସ୍ୱୟମ୍ବର ଆଗୁଁ ମୋ ମନ ମଧ୍ୟରେ
ଆପଣଙ୍କୁ ପତି ରୂପେ
ବରଣ କରିବା କଥା ଶୁଣି ଭୀଷ୍ମ
ଅତିଶୟ ଅନୁତାପେ । ୧୫

ସସମ୍ମାନେ ମୋତେ ଆପଣଙ୍କ ପାଶେ
ପଠାଇ ଅଛନ୍ତି ରାଜା
ମୋ ହୃଦ ଦେବତା ଅଟନ୍ତି ଆପଣ
ମୁଁ ଅଟେ ତୁମ୍ଭ ଭାରିଯା । " ୧୬

ଅମ୍ବା କଥା ଶୁଣି ଶାଲ୍ୱ ନୃପମଣି
କହିଲେ ରାଜକୁମାରୀ
ସ୍ୱୟମ୍ବର ସ୍ଥଳେ ନୃପଙ୍କ ସମ୍ମୁଖେ
ବଳେ ଭୀଷ୍ମ ନେଲେ ଧରି । ୧୭

ସମର କର ମୁଁ ଭୀଷ୍ମଙ୍କୁ ହାରିଲି
ନେସେ କରିଛ ଦର୍ଶନ
ହରି ତା' କନ୍ୟାକୁ ପତ୍ନୀ ରୂପେ ମୁହିଁ
କରି ନ ପାରେ ଗ୍ରହଣ । ୧୮

ଭୀଷ୍ମଙ୍କ ପାଖକୁ ଫେରି ଯାଇ ଦେବୀ
ଜଣାଅ ସକଳ କଥା
ତାହାଙ୍କ ଆଦେଶ- ମତେ କାର୍ଯ୍ୟ କର
ହେ କାଶି ରାଜ ଦୁହିତା । ୧୯

ଅମ୍ବା ଦେବୀ ପୁଣି ହସ୍ତିନାକୁ ଫେରି
ଭୀଷ୍ମ ଦେବେ ଜଣାଇଲେ
ଏହା ଶୁଣି ଭୀଷ୍ମ ବିଚିତ୍ର ବୀର୍ଯ୍ୟଙ୍କୁ
ବିବାହ କର ବୋଇଲେ । ୨୦

ବିଚିତ୍ର କହିଲେ ଅମ୍ବା ଦେବୀ ଯେଣୁ
ବରିଛନ୍ତି ଶାଲ୍ୱନାଥ
କ୍ଷତ୍ରିୟ ଧର୍ମରେ ବରିତ ଯେ କନ୍ୟା
ଅନ୍ୟ ନୃପେ ଅଗୃହିତ । ୨୧

ତହୁଁ ଅମ୍ବା ଦେବୀ ଭୀଷ୍ମଙ୍କୁ କହିଲେ
ତୁମ୍ଭେ ମୋର ତ୍ରାଣ କର୍ତ୍ତା
ତୁମରି ଯୋଗୁଁ ମୁଁ ହତ ନଷ୍ଟା ହେଲି
ତୁମ୍ଭେ ହେବ ମୋର ଭର୍ତ୍ତା । ୨୨

ମାତ୍ର ଭୀଷ୍ମଦେବ ଅମ୍ବାଙ୍କ କଥାରେ
କଲେ ନାହିଁ କର୍ଣ୍ଣପାତ
କହିଲେ ପ୍ରତିଜ୍ଞା ଭଙ୍ଗି ପାରିବିନି
କରିଛୁ ସି ବାର ସତ୍ୟ । ୨୩

ବିଫଳ ମାନସ ହୋଇ ଅମ୍ବା କନ୍ୟା
ଭେଟି କଲେ ନୃପଗଣେ
ମାତ୍ର କେହି ତାଙ୍କ ଦୁଃଖ ହରଣରେ
ବଳାଇଲେ ନାହିଁ ମନ । ୨୪

ଶାଲ୍ୱଙ୍କ ବଳତା   କନ୍ୟାକୁ ଗ୍ରହଣ
କରିବାକୁ ମନା କଲେ
ନିପେଷିତା ହୋଇ   ନୃପତି କୁମାରୀ
କାନନେ ଭ୍ରମଣ କାଲେ । ୨୫
ଦେବ ସେନାପତି   କୁମାର କାର୍ତ୍ତିକ
ଅମ୍ବାଦେବୀ ଦୁଃଖ ଶୁଣି
ଅମ୍ଳାନ କମଳ   ମାଳା ଏକ ଦେଇ
କହିଲେ ଅଭୟ ବାଣୀ । ୨୬
ଏ ମାଳା ଧାରଣ   କରି ଯେଉଁ ବୀର
ଭୀଷ୍ମଙ୍କ ସଙ୍ଗେ ଲଢିବ
ଅକ୍ଳେଶ ତାହାଙ୍କୁ   ପରାଜିତ କରି
କ୍ଷତ୍ରି ଶ୍ରେଷ୍ଠ ବୋଲାଇବ । ୨୭
ଦେବ ସେନାପତି   ହସ୍ତୁଁ ଜୟ ମାଳା
ଅମ୍ବା କରିଲେ ଗ୍ରହଣ
ଭୀଷ୍ମଙ୍କ ସହିତ   ଯୁଦ୍ଧ କରିବାକୁ
ବୀରଙ୍କୁ ଦେଲେ ଆହ୍ୱାନ । ୨୮
ମାତ୍ର ଜଣେ ବୀର   ସାହାସ କଲେନି
ଭୀଷ୍ମଙ୍କୁ ସଭିଙ୍କ ଭୟ
ନୃପ ଗଣେ ହୀନ-   ବୀର୍ଯ୍ୟ ହେବା ଦେଖି
ଅମ୍ବା ହୋଇଲେ ବିସ୍ମୟ । ୨୯
ଅବଶେଷେ ଦେବୀ   ଦ୍ରୁପଦ ରାଜାଙ୍କ
ହୋଇଲେ ଶରଣାଗତ
ମାତ୍ର ପଞ୍ଚାଳେଶ   ମନା କରିଦେଲେ
ଭୀଷ୍ମ ପ୍ରତି ଭୟଭୀତ । ୩୦
ଆପଣା ସମ୍ମାନ   ରକ୍ଷା କରିବାରେ
କୁମାରୀ ଅକ୍ଷମ ହୋଇ
ଦ୍ରୁପଦ ରାଜାଙ୍କ   ସିଂହ ଦ୍ୱାରେ ମାଳା
ପଳାଇଲେ ଟାଙ୍ଗି ଦେଇ । ୩୧

ମନ ଅବସାଦେ ଭ୍ରମି ବନ ଦେଶେ
ଋଷିଙ୍କ ଆଶ୍ରୟ ନେଲେ
ଋଷି ପରାମର୍ଶେ ପରଶୁରାମ ପାଖେ
ଯାଇ ଶରଣ ପଶିଲେ । ୩୨

ଅମ୍ବା ଦେବୀ କଥା ଶୁଣି ପରଶୁରାମ
କହିଲେ ରାଜ କୁମାରୀ
ଶାଲ୍ୱଙ୍କୁ ବୁଝାଇ ବିବାହ ଯୋଗାଡ଼
ଅବଶ୍ୟ ପାରଇ କରି । ୩୩

ମାତ୍ର ଅମ୍ବା ଦେବୀ କହିଲେ ବିବାହେ
ଆଗ୍ରହ ନାହିଁ ମୋହର
ଭୀଷ୍ମ ବିନାଶନ କାମନା ମୋହର
ତହିଁର ଉପାୟ କର । ୩୪

ନାରୀ ସ୍ୱାଭିମାନ ରକ୍ଷା ପାଇଁ ରାମ
ଭୀଷ୍ମ ସଙ୍ଗେ କଲେ ଯୁଦ୍ଧ
ମାତ୍ର ଭୀଷ୍ମ ଠାରୁ ହାରିଗଲେ ଯୁଦ୍ଧେ
ଶୁଣି ନୃପେ ହେଲେ ସ୍ତବ୍ଧ । ୩୫

ଅମ୍ବାଙ୍କ ଉଦ୍ଦେଶ୍ୟ ପୂରଣ ନ ହେଲା
କ୍ରୋଧେ ଦେବୀ ଚିନ୍ତା ମଗ୍ନ
ପ୍ରତିଶୋଧ ଚିନ୍ତ ଯୋଗାସନେ ବସି
ଧ୍ୟାନକଲେ ତ୍ରିଲୋଚନ । ୩୬

" ପ୍ରସନ୍ନ ହୋଇଣ ପାର୍ବତୀ ରମଣ
ବର କରିଲେ ପ୍ରଦାନ
କହିଲେ ତୁମର ଉଦ୍ଦେଶ୍ୟ ପୂରଣ
ପର ଜନ୍ମେ ହେବ ଜାଣ । " ୩୭

ସେ ଜନ୍ମେ ଭୀଷ୍ମଙ୍କୁ ପରାଜୟ କରି
ଯଶକୀର୍ତ୍ତି ଅରଜିବ
ତେଣୁ ଏହି ଘଟ ତ୍ୟାଗ କରି ଦେବୀ
ନବ ଘଟ କର ଲଭ । ୩୮

ଆଶୁତୋଷ ଆଜ୍ଞା ଶିରଧାର୍ଯ୍ୟ କରି
ପ୍ରତିଶୋଧ ନେବାପାଇଁ
ପରଜନ୍ମ ଲଭ କରିବା ମାନସେ
ଅଗ୍ନିରେ ପଶିଲେ ଯାଇ । ୩୯

କ୍ରୋଧାଗ୍ନି ସହିତ ଯୋଗାଗ୍ନି ମିଶନ୍ତେ
ବନାଗ୍ନି ହୋଇଲା ଜାତ
ସେ ଅନଳେ ଅମ୍ବା ଦେବୀ ଅଙ୍ଗ ଗୋଟି
ହୋଇଗଲା ଦଗ୍ଧିଭୂତ । ୪୦

ବିଚିତ୍ର ଘଟଣା ଘଟିଲା ଭାରତେ
ଜନ୍ମାନ୍ତରବାଦ ଏହି
ପରଜନ୍ମେ ଅମ୍ବା ପୁରୁଷ ଜନ୍ମିଲେ
ପ୍ରତିଶୋଧ ନେବା ପାଇଁ । ୪୧

କିଛି ଦିନ ଗଲେ ରାଜକାଶ ହେଲେ
ବିଚିତ୍ରବୀର୍ଯ୍ୟ ନିହତ
ପଙ୍କକଣ୍ଟକର ତତ୍ତ୍ୱାବଧାରକ
ରହିଲେ ଜାହ୍ନବୀ ସୁତ । ୪୨

ନେପୂ୍ଲେଶ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
କୃଷ୍ଣ ଚରିତ ମାନସ
ଗୁରୁକୃପା ବଳେ ଗୀତରେ ଭଣିଲା
ମୂଢମତି ବୁଲ୍‌ବାସ । ୪୩

ଇତି ଶ୍ରୀ କୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଖଷ୍ଣଙ୍କ ପ୍ରତି କ୍ରୋଧ ବର୍ଣ୍ଣନେ ନାମ
ସପ୍ତମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀ କୃଷ୍ଣାର୍ପଣମସ୍ତୁ ।



**ବୋଲ -** ବାଇମନରେ
ରାଧାକୃଷ୍ଣ ରାମେ ରସ
ଭ୍ରମର ଗୁମ୍ଫାରେ ଖେଳ କରୁଛନ୍ତି
ରାଈ ସଙ୍ଗେ ରାଈ କ୍ଷଣ ॥ ଘୋଷା ॥

ଯୋଗାଙ୍ଗରେ କୃଷ୍ଣ ରହିଲେ ବାହାରେ
ରାଈ ଅନହତ ପୁରେ
ଅନହତ ପୁରେ କୃଷ୍ଣ ବାସ କଲେ
ରାଧା ଥାନ୍ତି ମଣିପୁରେ । ୧
ଅନାହତୁ ଖୋଜି କୃଷ୍ଣ ବାହାରନ୍ତେ
ଅନାହତେ ଥାନ୍ତି ରାଈ
ଗୋଟିଏ ଘଟରେ ରାଧାକୃଷ୍ଣ ଥାଇ
ଭେଟଘାଟ ହୁଏ ନାହିଁ । ୨
ଭୋଗାଙ୍ଗରେ ରାଈ ବାହାରେ ରହିଲେ
ଅନହତ ପୁରେ କୃଷ୍ଣ
ଅନହତ ପୁରେ ଯଦି ଥାନ୍ତି ରାଧା
ମଣିପୁରେ ବାସ କୃଷ୍ଣ । ୩
ଅନହତ ପୁରୁ ରାଧା ବାହାରିଲେ
କୃଷ୍ଣ ଅନହତପୁରେ
ଏହି ସୂତ୍ରେ ଘଟେ ଖେଳ ଲାଗିଅଛି
ଯୋଗାଙ୍ଗ ଓ ଭୋଗାଙ୍ଗରେ । ୪
ରାଧାକୃଷ୍ଣଙ୍କର ଏ ଗୁମ୍ଫାବାସ
ଚନ୍ଦ୍ରସୂର୍ଯ୍ୟ ବିଜ୍ଞାନ ସୂତ୍ର
ପରକିୟା ପ୍ରିତି ହୋଇଲା କେମନ୍ତେ
ସ୍ୱକୀୟା ପ୍ରଣୟ ସୂତ୍ର ? ୫
ସ୍ୱକୀୟ ପ୍ରଣୟ ସୂତ୍ରେ ରାଧାକୃଷ୍ଣ
ଗୁମ୍ଫାରେ ରାସେ ନିମଗ୍ନ
ଗୁରୁ ଅଭିରାମ ସହଜ ସୂତ୍ରଏ
ହଂସ ସୂତ୍ର [illegible]ହା ନାମ । ୬

ଏ ମତେ ଭଜନ କରଇ ଯେ ଜନ
କରେ ପାନ ସୁଧାରସ
ରାଧାକୃଷ୍ଣଙ୍କର ଏକାଙ୍ଗ ଭଜନ
ବସି କରେ ବୃଜ ଦାସ ।୭

—●—

# ଅଷ୍ଟମ ଅଧ୍ୟାୟ

## ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଜନ୍ମ

### ରାଗ - ଚୋଖି

କୃଷ୍ଣ ଚରିତ ମାନସ ପାନକର ସୁଧାରସ
ଶାନ୍ତନୁଙ୍କ ଦୁଇ ସୁତ ହେଲେ ନିହତ
ଦୁଇ ପତ୍ନୀ ବିଭାହୋଇ ପୁତ୍ରେକ ଜନ୍ମିଲ ନାହିଁ
ଅପୂର୍ବିକ କୁରୁବଂଶ ବୃଦ୍ଧି ଘଟଣା
ନାଶଗଲେ ବେନି କୁମରେ
ଖଣ୍ଡଦ୍ୱାର ସଂହରିଲେ ପିତୃ ହତରେ ।୧
ଯାଜ ପ୍ରତିଜ୍ଞା ଭୀଷ୍ମ କୁର୍ବନ୍ତି ରାଜ୍ୟ ଶାସନ
ମାତ୍ର ରାଜ କାର୍ଯ୍ୟେ ତାଙ୍କ ନ ଥାଏ ମନ
ରାଜମାତା ସତ୍ୟବତୀ ନିରବେ ବସି ଭାଳନ୍ତି
କୁରୁକୁଳ କେଉଁ ପରି ହେବ ରକ୍ଷଣ
ଭସ୍ମରୁ ଜନ୍ମିବ ଅଙ୍କୁର
ପୁତ୍ର ଭୀଷ୍ମ ସଙ୍ଗେ ମାତା କଲେ ବିଚାର ।୨
କହିଲେ ଜାହ୍ନବୀ ସୁତ ନିୟୋଗ ଅନୁକ୍ରମେ ମାତ
ଯୋଗ୍ୟ ପୁରୁଷ ଔରସେ ବଧୂ ଉଦରେ
ପୁତ୍ର ଜାତ କରାଇଣ କରକୁଳ ଉଦ୍ଧାରଣ
ଶୁଣି ସତ୍ୟବତୀ ତୋଷ ମନ ମଧ୍ୟରେ

ବ୍ୟାସ ମୋର ଜ୍ୟେଷ୍ଠ ନନ୍ଦନ
ତାହା ଯୋଗୁଁ କୁରୁବଂଶ ହେବ କାରଣ । ୩

ମତ୍ସ୍ୟଗନ୍ଧା ପରାଶର ଶାନ୍ତନୁ ତନ ସୋଦର
ଦୁଇଭାଇ ଗୃହତ୍ୟାଗୀ ଶାନ୍ତନୁ ରାଜା
ଗଙ୍ଗା ତାଙ୍କ ଆଦ୍ୟ ନାରୀ ଭୀଷ୍ମ ଜନ୍ମି ବ୍ରହ୍ମଚାରୀ
ଦ୍ୱିତୀୟେ ହୋଇଲି ମୁହିଁ ତାଙ୍କ ଭାରଯା
ବିବାହ ଆଗୁ ପରାଶର
କ୍ରୀଡ଼ା କରିବାରୁ ଜାତ ବ୍ୟାସ କୁମର । ୪

ବୟସରେ ବ୍ୟାସ ସାନ ଜ୍ୟେଷ୍ଠ ଜାହ୍ନବୀ ନନ୍ଦନ
ଏଣୁ ବ୍ୟାସ କରୁଥାନ୍ତି ଭୀଷ୍ମଙ୍କୁ ମାନ୍ୟ
ମୋର ମୃତ ଦୁଇସୁତ ବ୍ୟାସଙ୍କ ଠାରୁ କନିଷ୍ଠ
ବିଜେ୍ୟ ରାଜା ହୋଇଥିଲେ ବେନି ନନ୍ଦନ
ଅକାଳେ ହେବାରୁ ନିହତ
ବିଧବା ବଧୂଏ ଘରେ ନାହାଁନ୍ତି ସୁତ । ୫

ବଧୂଙ୍କୁ କହିଲେ ମାତା ଉପାୟ କର ଗୋ ଚିନ୍ତା
ହୋଇବ ଯେପରି ମା'ଗୋ ଉଦ୍ଦେଶ୍ୟ ସିଦ୍ଧି
କରପଦ ଯୋଡ଼ିକରି ବୋଲନ୍ତି ଅମ୍ବିକା ନାରୀ
ମାତା ପଣେ ରହିଅଛୁ କୁଳେ ପ୍ରସିଦ୍ଧି
ଯୁବା ବର୍ଷ ଅତିବାହିତ
ବିଧବା କୋଳେ କପରି ଜନ୍ମିବେ ସୁତ ? ୬

ବୋଲୁଛନ୍ତି ସତ୍ୟବତୀ ନବୋଲ ବିଦ୍ଧ ଭାରତୀ
ବଂଶରକ୍ଷା ଧର୍ମଗୋଟି କର ପାଳନ
ଅମ୍ବିକା ପୁଚ୍ଛିଲେ ତେବେ ପୁରୁଷ କିଏ ହୋଇବେ
ତହିଁର ବିଧାନ ମା' ଗୋ କର ବଖାଣ
ଶୁଣି ସତ୍ୟବତୀ ମଉନ
ଉତ୍ତର ନ ଦେଇ ତ୍ୟାଗ କଲେ ସେ ସ୍ଥାନ । ୭

ଜାହ୍ନବୀ ନଦୀର କୂଳେ ବସି ଜନନୀ ନିରୋଳେ
ସ୍ମରଣ ମାତ୍ରେ ମିଳିଲେ ସେ ସ୍ଥାନେ ବ୍ୟାସ

ମାତାଙ୍କୁ ପୁଚ୍ଛିଲେ ଋଷି  କସ ଭଗ୍ନୁ ଏକା ବସି
ଦୟାକର ଜନନୀ ଗୋ କର ପ୍ରକାଶ
ଶ୍ରବଣେ ନନ୍ଦନ ବଚନ
ଜନନୀ କହିଲେ ପୁତ୍ର କର ଶ୍ରବଣ । ୮

ନାଶ ଗଲା କୁରୁକୁଳ  ଉଦ୍ଧାର କର ଦୁଲାଳ
ବଧୂମାନଙ୍କର କୋଳେ ଦେଇଣ ସୁତ
ଛାଡ଼ି ବାପ ମନୁ ଲାଜ  କର ବଂଶରକ୍ଷା କାର୍ଯ୍ୟ
ମାତା କଥା ଶୁଣି ବ୍ୟାସ ହେଲେ ବିସ୍ମିତ
କହିଲେ ଏହା ଅନୁଚିତ
ଅଗମ୍ୟା ଗମନେ ମା ଗୋ ହେବ ନିନ୍ଦିତ । ୯

ଜନନୀ କହିଲେ ବାପ  ନ ଚିନ୍ତ ମନରେ ପାପ
ସଂସାର ଜନର ତୁହି ବିନାଶୁ ତାପ
ଭ୍ରାତୃ ବଧୂ ସଙ୍ଗେ ରମ  ରକ୍ଷା କର କୁରୁ ବଂଶ
ଭାରତେ ରହିବ କୀର୍ତ୍ତି ତୋର ଅମାପ
କୁରୁକୁଳ ହେବ ରକ୍ଷଣ
ଅନ୍ୟଥା ନ କର କଥା ଆରେ ନନ୍ଦନ । ୧୦

ସମ୍ମତ କରାଇ ବ୍ୟାସ  ଜନନୀ ହୋଇଣ ତୋଷ
ପ୍ରବେଶ ହୋଇଲେ ଯାଇଁ ବଧୂଙ୍କ ପୁର
ବଧୂଙ୍କୁ ବସାଇ ପାଶେ  କହିଲେ ମନ ହରଷେ
ବ୍ୟାସଦେବ ଅଟଇ ମୋ ଜ୍ୟେଷ୍ଠ କୁମର
ତାହାର ତୁଲେ କ୍ରୀଡ଼ା କର
କୁମର ଜାତ କରାଇ କୁଳ ଉଦ୍ଧାର । ୧୧

ଶାଶୁଙ୍କର କଥା ଶୁଣି  ପ୍ରତିବାଦ କଲେ ରାଣୀ
ଜ୍ୟେଷ୍ଠାସୁର ସଙ୍ଗେ କ୍ରୀଡ଼ା ନୁହେଁ ବିଧାନ
ହୋଇ ତୁମ୍ଭେ ପୂଜ୍ୟ ନାରୀ  ଅନ୍ୟାୟ କହ କିପରି
ଦେଢ଼ଶୁର ଦେହ ସ୍ପର୍ଶ ସଦା ବାରଣ
ବଂଶ-ପଛେ ହେଉ ବିନାଶ
ଅଧର୍ମ କର୍ମରେ ବଳେ ନାହିଁ ମାନସ । ୧୨

ବଧୂଙ୍କ ବଚନ ଶୁଣି    କହିଲେ ରାଜ ଜନନୀ
ବ୍ୟାସଦେବ ପାଦ ସ୍ପର୍ଶେ ପାପ ବିନାଶ
ଭାଗ୍ୟେଥିଲେ ବ୍ୟାସଦେବ    ଅଙ୍ଗ ସଙ୍ଗ ଲଭହେବ
ଜୀବନ ହୋଇବ ଧନ୍ୟ ରହିବ ବଂଶ
କି'ଅବା ଦେବା ପଟାନ୍ତର
ବ୍ରହ୍ମବିଦ୍ୟା ବିଶାରଦ ବିଦ୍ୟା ସାଗର । ୧୩

ଶୁଣି ବ୍ୟାସ କୀର୍ତ୍ତିଯଶ    ବଧୂମାନେ ହୋଇ ତୋଷ
ସମ୍ମତି ପ୍ରଦାନ କଲେ ବ୍ରୀଡ଼ା ନିମନ୍ତେ
ଧରି ନବ ବଧୂ ବେଶ    ଆଭୂଷଣେ ହୋଇ ତୋଷ
ଶଯ୍ୟା ସଜାଇ ଶୟନ କକ୍ଷେ ଏକାନ୍ତେ
ହୋଇଲା ଗଭୀର ନିଶିଥ
ଚାହିଁ ବସିଛନ୍ତି ବଧୂ ରହି ଜାଗ୍ରତ । ୧୪

ଶୟନ କକ୍ଷରେ ବ୍ୟାସ    ରାତ୍ରରେ କଲେ ପ୍ରବେଶ
ବିଶାଳ ମସ୍ତକ ଘୂର୍ଣ୍ଣିମନ୍ତ ନୟନ
ତପଃ ଶ୍ଚର୍ଯ୍ୟା ରେ ନିର୍ଜିତ    ଅଙ୍ଗେ ମୃଗ ଚର୍ମାବୃତ
ବଳିଷ୍ଠ ସୁପୁଷ୍ଟ ବପୁ ଶ୍ମଶ୍ରୁ ବଦନ
ଘନ କୃଷ୍ଣ ବର୍ଣ୍ଣ ଶରୀର
ପିଙ୍ଗଳ ଜାଙ୍ଗଳ ଜଟା ମଣ୍ଡିତ ଶିର । ୧୫

ଦେଖି ନରସିଂହ ରୂପ    ମନ ମଧ୍ୟେ ପାଇ ତାପ
ନ ଚାହିଁ ବଦନ ବୁଜି ଦେଲେ ନୟନ
ଅମ୍ବିକା ଗର୍ଭ ସମ୍ଭୂତ    ପୁତ୍ର ହୋଇଲା ନେତ୍ର
ଜନ୍ମାନ୍ଧ ହୋଇ ଜନ୍ମିଲା ଜ୍ୟେଷ୍ଠ ନନ୍ଦନ
କୁଲକ୍ଷଣେ ଜାତ ହୋଇଲା
ରାଜ୍ୟ ସିଂହାସନ ପାଇଁ ଅଯୋଗ୍ୟ ହେଲା । ୧୬

ବିଲୋକି ଅନ୍ଧ ନନ୍ଦନ    ଜନନୀ କଲେ କ୍ରନ୍ଦନ
ବୋଇଲେ ଆରେକ ପୁତ୍ର କର ପ୍ରଦାନ
ଅମ୍ବାଳିକାର ଶୟନ    କକ୍ଷକୁ କଲେ ଗମନ
ମନେ ଭୟ କଲେ ଦେବ ରୂପ ଦେଖିଣ

ଶରୀର ବଶିଲ ପାଣ୍ଡୁର
ପାଣ୍ଡୁର ବର୍ଣ୍ଣେ ଜନ୍ମିଲ ଏକ କୁମର । ୧୭
ଅମ୍ବୁଷା ନାମରେ ଦାସୀ ମନେ ହୋଇ ମହାଖୁସି
ପୁତ୍ର ପାଇଁ ପୂଜା କଲେ ବ୍ୟାସ ଚରଣ
ସନ୍ତୋଷ ହୋଇଣ ବ୍ୟାସ କରନ୍ତେ ସୁରତ ରାସ
ଜନ୍ମିଲ ଧାର୍ମିକ ପୁତ୍ର ରାଗ, କ୍ରୋଧ ଶୂନ୍ୟ
ବହୁ ଶାସ୍ତ୍ରଦର୍ଶୀ ବିଦ୍ୱାନ
ମାଣ୍ଡବ୍ୟ ଋଷିଙ୍କ ଶାପେ ଜନ୍ମିଲେ ଯମ । ୧୮
ଅମ୍ବିକା ଗର୍ଭ ସମ୍ଭୂତ ଧୃତରାଷ୍ଟ୍ର ଜ୍ୟେଷ୍ଠ ସୁତ
ଜନ୍ମାନ୍ଧ ହେତୁ ରାଜ୍ୟକୁ ଅନୁପଯୁକ୍ତ
ଅମ୍ବାଳିକା ଗର୍ଭୁଁ ଜାତ ସୁଲକ୍ଷଣେ ପାଣ୍ଡୁସୁତ
ରାଜପଣ କରିବାକୁ ପୂର୍ଣ୍ଣ ସାମର୍ଥ
ଅମ୍ବୁଷା ଉଦରୁ ବିଦୁର
ବ୍ରହ୍ମବିଦ୍ୟା ବିଶାରଦ ଭକ୍ତ ପ୍ରବର । ୧୯
ଏମାନଙ୍କର ବିଦ୍ୟାଦାତା ହେଲେ ଭୀଷ୍ମ ମହାରଥୀ
ଶିକ୍ଷା ଦେଲେ ଶସ୍ତ୍ରଶାସ୍ତ୍ର ଆଦି କୌଶଳ
ସକଳ ବିଦ୍ୟାକୁ ସାଧି ପାଣ୍ଡୁ ହେଲେ ମହାଯୋଦ୍ଧି
ନାମ ଶୁଣି ଶତ୍ରୁଗଣେ ପଡ଼ିଲେ ବଳ
କ୍ରମେ ହେଲା ଷୋଳ ବରଷ
ବିଦ୍ୟା ଶିକ୍ଷା କରି ପୁଣେ ବିଜ୍ଞ ବିଶେଷ । ୨୦
ଜ୍ୟେଷ୍ଠ ସୁତ ଧୃତ ରାଷ୍ଟ୍ର ଦେହେ ଶକ୍ତି ଅପ୍ରମିତ
ଶାରୀରିକ ବଳେ କେହି ସରି ନୁହଁନ୍ତି
ପାଣ୍ଡୁ ଧନୁ ଚାଳନାରେ ଖ୍ୟାତି ଅର୍ଜିଲେ ମହୀରେ
ଧାର୍ମିକ ଗଣେ ବିଦୁର ବିଶେଷ ଖ୍ୟାତି
ଧୃତରାଷ୍ଟ୍ର, ପାଣ୍ଡୁ, ବିଦୁର
ବ୍ୟାସଙ୍କ ଔରସୁ ଜାତ ତିନି କୁମର । ୨୧
ରକ୍ଷା ପାଇଗଲା ବଂଶ ଦେଖି ସତ୍ୟବତୀ ତୋଷ
ଆଶ୍ୱସ୍ତ ହୋଇଲେ ଭୀଷ୍ମ ଦେଖି କୁମର

ଅମ୍ବାଳିକାର ତନୁଜ ରାଜ୍ୟେ ହେଲେ ଯୁବରାଜ
ରାଜକାର୍ଯ୍ୟ ଶିକ୍ଷା ଦେଲେ ଗଙ୍ଗା କୁମର
ବୋଲେ ବୁଲୁ ଦାସ ସୁଜନ
ବାଇଶି ପଦେ ଅଧ୍ୟାୟ ହେଲା ସମ୍ପୂର୍ଣ୍ଣ । ୨୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଧୃତରାଷ୍ଟ୍ର, ପାଣ୍ଡୁ, ବିଦୁର ଜନ୍ମ
ବିବରଣେ ନାମ
ଅଷ୍ଟମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ

**ବୋଲି -**

ସୁଜନେ ! ଶୁଣ ଶରୀର ଭେଦ
ଅଭେଦରେ ଥାଇ ଭେଦକୁ ଭିଆଇ
ପ୍ରକୃତି ପୁରୁଷ ଖେଳର ନାଦ ॥ ଘୋଷା ॥
ଅର୍ଦ୍ଧେ ହେଲା ଶିବ ଅର୍ଦ୍ଧେକ ଶ୍ରୀଧର
ଖେଳ କରିବାକୁ ଜଗଦାନନ୍ଦ
ହଂସ ସୋଽହଂ ବେନି ଗତି କରୁଛନ୍ତି
ଭ୍ରମର ଗୁମ୍ଫାରେ ଶୁଭେ ଶବଦ । ୧
ଜୀବ ସଅଁ ସଅଁ ବ୍ରହ୍ମ ହଅଁ ହଅଁ
ବୁଝାଏ ଶରୀର ତତ୍ତ୍ୱର ଭେଦ
କହି ବୁଲୁ ଦାସ ଶୁଣି ସେ ଶବଦ
ଶରଣ ପଶିଲା ଅଚ୍ୟୁତ ପାଦ
ସୁଜନେ ଶୁଣ ଶରୀର ଭେଦ । ୨

—●—



# ନବମ ଅଧ୍ୟାୟ

## ପୁତ୍ରମାନଙ୍କର ବିବାହ ଓ ରାଜ୍ୟ ଶାସନ

### ରାଗ - ଚୋଖି

କୃଷ୍ଣ ଚରିତ ମାନସ       ପାନ କର ସୁଧାରସ
ପୁତ୍ରଙ୍କ ପାଇଁ କନ୍ୟା ଖୋଜିଲେ ଯାଇ
ଜନ୍ମ ଅନ୍ଧ ଧୃତରାଷ୍ଟ୍ର       ନ ଯାଆନ୍ତି ଅନ୍ୟ ରାଷ୍ଟ୍ର
ହସିବେ ଅନ୍ୟତ୍ର ଗଲେ ବରକୁ ଚାହିଁ
ବଂଶର ରହିଛି ସୁଖ୍ୟାତି
ପରରାଷ୍ଟ୍ରୁ ରାଜକନ୍ୟା ଖୋଜି ଆଣନ୍ତି । ୧

ମନ୍ଦ ଲକ୍ଷଣେ ଜନମ       ହୋଇଥିବାରୁ ନନ୍ଦନ
ବରଣ ମାତ୍ରକେ କନ୍ୟା ହୁଅନ୍ତି ହତ
କ୍ରମେ ଏକ ଶତ ସାତ       କନ୍ୟା ହେବାରୁ ନିହତ
ନ ମିଳିଲେ କନ୍ୟା ଆଉ ପୁତ୍ର ନିମିତ୍ତ
ଗାନ୍ଧାର ଦେଶର ନୃପତି
ଗାନ୍ଧାରୀ ନାମରେ ତାଙ୍କ ଏକ ଦୁହିତା । ୨

କୃଷ୍ଣ ପକ୍ଷ ଜ୍ୟେଷ୍ଠ ମାସ       ଅମାବାସ୍ୟା ନିଶା ଶେଷ
କୃତ୍ତିକା ନକ୍ଷତ୍ରେ କନ୍ୟା ହେଲ ଉତ୍ପତ୍ତି
ଉଆଁସୀ କୃତ୍ତିକା ରାଶି       ଲକ୍ଷଣେ ବ୍ରହ୍ମ ରାକ୍ଷସୀ
ବରଣ ମାତ୍ରେ ବର ମରଣ ଲଭନ୍ତି
ନମିଳନ୍ତେ କନ୍ୟାକୁ ବର
ଚିନ୍ତିତ ହୋଇଲେ ରାଜାରାଣୀ ନିକର । ୩

ଏ ସମ୍ବାଦ ପାଇ ବ୍ୟାସ       ଗାନ୍ଧାର ଦେଶେ ପ୍ରବେଶ
ଦେଖି ପାଦ ପୂଜା କଲେ ଗାନ୍ଧାରସେନ
ରାଜାଙ୍କ ମୁଖ ବିବର୍ଣ୍ଣ       ଦେଖି ବ୍ୟାସ ମହାମୁନି
କହିଲେ ଶ୍ରବଣ କର ମୋର ବଚନ

କୃତ୍ତିକା ନକ୍ଷତ୍ରେ କୁମାରୀ
ଜାତ ହୋଇବାରୁ ବର ପଳାଏ ମାରି । ୪
ଏଥିକୁ ଅଛୁ ଉପାୟ ଶୁଣ ହେ ଗାନ୍ଧାରୀବନ୍ଧୁ
ଗୋଲକ ବୃକ୍ଷକୁ ବାନ୍ଧ ଦିଅ ତନୟୀ
ଦୂରିତ ହେବ ଖଣ୍ଡନ ନ ତେଜିବ ବର ପ୍ରାଣ
ତା'ପରେ ବାନ୍ଧ ଦିଅ କନ୍ୟାକୁ ଭୁଙ୍ଖ
ଶ୍ରବଣେ ବ୍ୟାସଙ୍କ ବଚନ
ବୃକ୍ଷ ସଙ୍ଗେ କନ୍ୟା ବାନ୍ଧି ଦେଲେ ରାଜନ । ୫
ହସ୍ତଗ୍ରନ୍ଥି କାଳେ ବୃକ୍ଷ ବିନାଶ ହେଲା ପ୍ରତ୍ୟକ୍ଷ
ନାଶ ଗଲା ଗଣ୍ଡ ଦୋଷ କନ୍ୟା ପବିତ୍ର
ତହୁଁ ବ୍ୟାସ ତପୋଧନ କନ୍ୟା କରିଲେ ବରଣ
ଅନ୍ଧ ଧୃତରାଷ୍ଟ୍ର ହୋଇଲେ ବରପାତ୍ର
ବିବାହ ଉତ୍ସବ ଯୋଗାଡ଼
ରାଜ ନଗରେ ଲାଗିଲା ଲୋକଙ୍କ ଭିଡ଼ । ୬
ଧୃତରାଷ୍ଟ୍ର ବ୍ରହ୍ମାସୁର କୃତ୍ତିକା ନକ୍ଷତ୍ର ତା'ର
ଗ୍ରହ ଗଣନାରେ ରାକ୍ଷ ବୃକ୍ଷ ଯେ ରାଶି
ଗଣ୍ଡ ଦୋଷ କାଳେ ଜାତ ଗାନ୍ଧାରୀ ଅସୁରୀ ଖ୍ୟାତ
କୃତ୍ତିକା ରାଶି ତାହାର କନ୍ୟା ଉଆଁସୀ
ବରଣେ ବରକୁ ମାତଇ
ଧୃତରାଷ୍ଟ୍ର କନ୍ୟା ମାନେ ବରଣ ହୋଇ । ୭
ବରମରା, କନ୍ୟାମରା ବର କନ୍ୟା ଦୁଇମରା
ଦୁହିଁଙ୍କର ଏକ ଯୋଗେ ବଢ଼ିଲା ପ୍ରୀତି
ଅସୁର, ଅସୁରୀ ଦୁଇ ଘଟସୂତ୍ରେ ଏକ ହୋଇ
ଘର ସଂସାରରେ ବେଳ ରହିଲେ ମାତି
ବିଚିତ୍ର ବିଧିର ଘଟଣ
ଯାହାକୁ ଯେମନ୍ତ ଲୋଡ଼ା ଖଞ୍ଜେ ତେମନ । ୮
କେବଳ ଦ୍ରବ୍ୟ ସୁନ୍ଦରୀ ନ ଥିଲେ ଦେବୀ ଗାନ୍ଧାରୀ
ସ୍ୱଭାବ ଚରିତ୍ର ତାଙ୍କ ଥିଲା ପବିତ୍ର ।

ଜନ୍ମାନ୍ଧ ସ୍ୱାମୀଙ୍କୁ ସେବ ଅଶ୍ରଦ୍ଧା ହୋଇବ ଭବ
ବାନ୍ଧିଲେ ଅନ୍ଧ ପୁଟୁଳି ଆପଣା ନେତ୍ର
ପତିପତ୍ନୀ ଅନ୍ଧ ଅନ୍ଧୁଣୀ
ପତିବ୍ରତା ପଣେ ଦେଶେ ଖ୍ୟାତ ଅବନୀ । ୯

ବୃଷ୍ଣି ବଂଶେ ଦେବ ମୀଢ ପୃଥା ନାମେ କନ୍ୟା ବନ୍ଧୁ
କୋନ୍ତ ଭୋଜ ରାଜାଙ୍କର ପାଳିତ କନ୍ୟା
ପାଳନ୍ତେ କୋନ୍ତ ନୃପତି କନ୍ୟା ନାମ ହେଲା "କୁନ୍ତି"
ରୂପ ଗୁଣବନ୍ତୀ ନାରୀ ଗଣରେ ଧନ୍ୟା
ସେବା କରି ଦୁର୍ବାସା ମୁନି
ବାଲ୍ୟ କାଳେ ପ୍ରାପ୍ତ ହେଲେ ମନ୍ତ୍ର ମୁଣି । ୧୦

" କହିଥିଲେ ତପାଗୃଣି ଏ ମାଳୀକୁ କରେ ଧରି
ସ୍ମରଣ କରିବୁ ଯା'କୁ ମିଳିବ ଆସି
ଅବଜ୍ଞା କଲେ ବଚନ ଅକାଳେ ତେଜିବ ପ୍ରାଣ
ମନୋବାଞ୍ଛା ପୂରାଇବ ଶୃଙ୍ଗାରେ ରସି
ଅନ୍ୟଥା ନୋହିବ ବଚନ "
କଲ୍ୟାଣ କରି ମୁନି ହେଲେ ଅନ୍ତର୍ଦ୍ଧାନ । ୧୧

ମନ୍ତ୍ର ମାଳିର ଶକତି ପରୀକ୍ଷା କରିବା ଚିନ୍ତି
ଜାହ୍ନବୀ କୂଳରେ କୁନ୍ତି ବସି ଏକାନ୍ତେ
ସ୍ମରଣ କରନ୍ତେ ରବି ଧରି ନବ ରୂପ ଛବି
ସୁରତି କରିଲେ ଆସି କୁନ୍ତି ସଙ୍ଗତେ
କର୍ଣ୍ଣ ପଥେ ଜାତ ନନ୍ଦନ
ସୂର୍ଯ୍ୟସମ ତେଜସ୍ୱାନ୍ ନା'ମିତା କର୍ଣ୍ଣ । ୧୨

କର୍ଣ୍ଣେ ଅମୃତ କୁଣ୍ଡଳ ପିନ୍ଧାଇଲେ ଦିନକର
ଅଭେଦ୍ୟ କବଚେ ବର୍ଷ ଆବୃତ କଲେ
ଶରୀରେ ବଜ୍ର ଛଡ଼ିରି ଖଞ୍ଜିଲେ ଯତନ କରି
ବଜ୍ରରୁ କଠିନ କରି ଗଢି ତୋଳିଲେ
ମାତା କୋଳେ ଦେଇ ନନ୍ଦନ
ସୂର୍ଯ୍ୟଦେବ ଚଳିଗଲେ ବାହି ସ୍ୟନ୍ଦନ । ୧୩

ଆରକୋ।ବସ୍ଥା ସମୟେ    ଜାତ ହେବାରୁ ତନୟେ
ଅସଜ୍ଞା ଭୟରେ କୁନ୍ତୀ ପୁତ୍ର ତେଜିଲେ
ମଞ୍ଜୁଷାରେ ଭରି ବାଳେ    ଭସାଇ ଦେଲେ ସଲିଳେ
ସୂତପୁତ୍ର ଅଧିରଥ ଉଦ୍ଧାରି ନେଲେ
ଶରଧାରେ ରାଧା ପାଳିଲେ
ରାଧେୟ ବୋଲିଣ ପୁତ୍ର ନାମକୁ ଦେଲେ । ୧୪

କିଛି ଦିନ ଅନ୍ତେ କୁନ୍ତୀ    ଭୋଜରାଜାର ଦୁହିତା
ପାଣ୍ଡୁ ରାଜା ବିଭା କଲେ ବେଦ ବିଧାନେ
ମଦ୍ର ଦେଶ ରାଜକନ୍ୟା    ମାଦ୍ରୀ ଦେବୀ ନାମେ ଧନ୍ୟା
ଦ୍ୱିତୀୟ ପତ୍ନୀ ବରିଲେ ପାଣ୍ଡୁ ରାଜନେ
କୁନ୍ତୀ, ମାଦ୍ରି, ବେନି ବନିତା
ପାଣ୍ଡୁଙ୍କର ଦୁଇରାଣୀ ରୂପେ ମଣ୍ଡିତା । ୧୫

କାଶୀ ଦେଶ ନରପତି    କାଶୀଶ୍ୱର ଶୁଦ୍ର ଜାତି
ଉଦାନବତୀ ନାମରେ କନ୍ୟା ଏ ତାର
ବିଦୁର କରେ ପ୍ରଦାନ    କଲେ କାଶୀ ନରରାଣ
ସ୍ୱଭାବେ ବିଦୁର    ବିଷ୍ଣୁ ଅଂଶାବତାର
ଧୃତରାଷ୍ଟ୍ର, ପାଣ୍ଡୁ, ବିଦୁର
ବିବାହ କରି କ୍ରମରେ କଲେ ସଂସାର । ୧୬

ମନ୍ତ୍ରୀ ଭୀଷ୍ମଙ୍କ ନିଷ୍ପତ୍ତି    କ୍ରମେ ପାଣ୍ଡୁ ନରପତି
ହୋଇ ନ୍ୟାୟ୍ୟ ବଳେ ରାଜ୍ୟ କଲେ ଶାସନ
ନିଜରାଷ୍ଟ୍ର ପରରାଷ୍ଟ୍ର    ପ୍ରଜାଗଣେ ହୋଇ ତୁଷ୍ଟ
ପାଣ୍ଡୁ ରାଜାଙ୍କର କୀର୍ତ୍ତି କଲେ ଗାୟନ
ପ୍ରଜାମୁଖେ ଶୁଣି ପ୍ରଶଂସା
ଅନ୍ଧ ଧୃତରାଷ୍ଟ୍ରଙ୍କର ଉଡ଼ିଲା ହିଂସା । ୧୭
କୁଳେ ଜନ୍ମ ଜ୍ୟେଷ୍ଠ ସୁତ    ସିଂହାସନରୁ ବଞ୍ଚିତ
ଅସହ୍ୟ ହେବାରୁ ଅନ୍ଧ ହୋଇ ବିଷର୍ଣ୍ଣ
ତ୍ରିବେଣୀରେ ଆତ୍ମ ହତ୍ୟା    କରିବାକୁ କଲେ ଚିନ୍ତା
ଜନ୍ମାନ୍ଧ ହୋଇ ବଞ୍ଚିବା କି ପ୍ରୟୋଜନ

ଜନମ ମରଣ ସମାନ
ଉଚିତ ପ୍ରୟାଗ ତୀର୍ଥେ ତେଜିବା ପ୍ରାଣ । ୧୮

ଭ୍ରାତା ମନକଥା ଜାଣି କହିଲେ ପାଣ୍ଡୁ ନୃମଣି
ରାଜ୍ୟ ସିଂହାସନ ଚିନ୍ତା ନ କର ଭାଇ
ତୁମ୍ଭର ସେବକ ମୁହିଁ ସିଂହାସନ ଲୋଡା ନାହିଁ
ଯେତେ ରାଜ୍ୟ ସିଂହାସନ ଯାଉଛି ମୁହିଁ
ପତ୍ନୀ ସହ ପାଣ୍ଡୁ ନୃପତି
ଶତ ଶୃଙ୍ଗ ପର୍ବତରେ କଲେ ବସତି । ୧୯

ପଞ୍ଚ କଟକେ ନୃନାଥ ହେଲେ ଅନ୍ଧ ଧୃତରାଷ୍ଟ୍ର
ପରାମର୍ଶ ଦାତାରୂପେ ରହିଲେ କ୍ଷାତ୍ତ
ପାଣ୍ଡୁ କର ବନବାସ ବୁଝନ୍ତି ରାଜ୍ୟ ସନ୍ଦେଶ
ସେବକ ପ୍ରାୟେକ ମାନ ଭ୍ରାତା ବଚନ
ଶତ୍ରୁଭୟ କଲେ ବିନାଶ
ନ ପଶନ୍ତି ରାଜ୍ୟେ ଶତ୍ରୁ ପାଇଣ ତ୍ରାସ । ୨୦

ମଞ୍ଜୟ ବିଦୁର ଦୁଇ ଧୃତରାଷ୍ଟ୍ର ମନ୍ତ୍ରୀ ଥାଇ
ବୁଝୁଥାନ୍ତି ହାନି ଲାଭ ବୁଲି ରାଜ୍ୟରେ
ଏମ୍ଭଙ୍କୁ ଭୟ କରଣ ପରରାଷ୍ଟ୍ର ଶତ୍ରୁଗଣ
ନ ପଶନ୍ତି ଭ୍ରମେ ହସ୍ତିନା କଟକରେ
ଗୀତେ ଭଣିଲା ବୃନ୍ଦାବନ
ଏକୋଇଶି ପଦେ ଅଧ୍ୟା ହୋଇଲା ଶେଷ । ୨୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ପୂର୍ବମାନଙ୍କର
ବିବାହ ଓ ରାଜ୍ୟ ଶାସନେ
ନାମ ନବମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



**ବୋଲି -**

ରେ ମନ ବାଇ !
ଗୁରୁଙ୍କୁ ସେବଲେ ପାଇ ।
ଜ୍ଞାନ ନେତ୍ର ଯା'ର ଉଦୟ ହୋଇଛି
ତାହାକୁ ଅଦୃଶ୍ୟ ନାହିଁ ॥ ଘୋଷା ॥
ଯାଉଛି ଆସୁଛି ବାରଣ ନୋହୁଛି
ବହୁଛି ଅବନା ବାଇ
ବାକ କି ଯେ ବାନ୍ଧି ପାରନ୍ତି ମନୁଆ
ବାଇଆ ହୋଇଛି ମୋହି । ୧
ଘୃଣ ଆଠ ମଠ କାଟିଣ ନିକଟ
ମନ୍ଦିରେ ପହଁଲେ ପାଇ
ବୋଲେ ବୁଲା ଦାସ ବାଇ କଲେ ଯାଶ
ବାଇଆ ଦର୍ଶନ ପାଇ
ରେ ମନ ବାଇ । ୨



# ଦଶମ ଅଧ୍ୟାୟ
## ପାଣ୍ଡୁଙ୍କ ବ୍ରହ୍ମଶାପ ପ୍ରାପ୍ତି
### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କରହେ ରସିକ ଜନ
ପଦ ପଦକରେ ରସ ପୂରିଅଛି
ରସ କଲ୍ଲୋଳ ସମାନ । ୧

ମୃଗୟା ନିମନ୍ତେ ପାଣ୍ଡୁ ନରପତି
କାନନ ଭ୍ରମଣ କାଳେ
ଆଗ୍ନିକ ଋଷିଙ୍କୁ ଶରଘାତ କଲେ
ମୃଗିଣୀଙ୍କ ରମଣ ବେଳେ । ୨

ନୃପଙ୍କୁ କହିଲେ ଆଗ୍ନିକ ମହର୍ଷି
ଶୃଙ୍ଗାର କରିବା କାଳେ
ଶର ପ୍ରହାରଣ ଜୀବନ ନେଲ
ପ୍ରାଣ ଯାଉଛି ବିକଳେ । ୩

ଆମ୍ଭ ବାକ୍ୟେ ତୁମ୍ଭ ଶୃଙ୍ଗାର ସମୟେ
ହୋଇବ ଶର ପ୍ରହାର
ବ୍ରହ୍ମଶାପ ପାଇ କହିଲେ ରାଜନ
ଦୋଷ ମୋର କ୍ଷମାକର । ୪

କଏ ତୁମ୍ଭେ ଅଛ କ’ ନାମ ତୁମ୍ଭର
ଦିଅ ତୁମ୍ଭ ପରିଚୟ
ମୃଗଣୀ ମନୁଷ୍ୟ ମଧ୍ୟରେ ମୈଥୁନ
ପ୍ରପଞ୍ଚ ପ୍ରକୃତି ପ୍ରାୟ । ୫

ନୃପ କଥା ଶୁଣି ଉତ୍ତରିଲେ ମୁନି
ମୋନାମ ଆଗ୍ନିକ ଋଷି
ପାଠ ରୁଚି ଙ୍କଣେ ଜନମ ମୋହର
ଯୋଗ ସାଧୁଥିଲି ବସି । ୬

ଆଜନ୍ମ ଆହାର ନିଦ୍ରା ଓ ମୈଥୁନ
ଛାଡ଼ି ହେଲି ବ୍ରହ୍ମଋଷି
ତନ ମନୁ ଯାଏଁ ଯୋଗ ଧ୍ୟାନ କରି
ଚାଲିଗଲି ସ୍ୱର୍ଗପୁରୀ । ୭

ମାତ୍ର ଅଯୌକ୍ତିକ ହେତୁ, ସ୍ୱର୍ଗବାସ
ମନାକଲେ ସୁରପତି
ସ୍ୱର୍ଗପୁର ତେଜି ମର୍ତ୍ତ୍ୟକୁ ଆସିଲି
ଜନ୍ମାଇବାକୁ ସନ୍ତତି । ୮

ପୁତ୍ର ଜାତ ଅର୍ଥେ ଏକାନ୍ତେ ପର୍ବତେ
ବସି ମୁଁ ଭାବଲ କେତେ
ଶୃଙ୍ଗାର କରଲ ହରିଚା ମୃଗଣୀ
ସନ୍ତାନ ଲଭିବା ଅର୍ଥେ । ୯

ତୁମ୍ଭ ଶରାଘାତେ ପ୍ରାଣ ତେଜି ଏବେ
ଯାଉଅଛୁଁ ଦୁଇପ୍ରାଣୀ
ଏହା କହି ଋଷି ପୁତ୍ର ମୁଖ ଚୁମ୍ବି
ଦେହ ଛାଡିଲେ ତତ୍‌କ୍ଷଣି । ୧୦

ଆଗ୍ନିକ ଋଷିଙ୍କ ଔରସରୁ ଜାତ
ଶିଶୁ ନାମ ମୃଗ ଋଷି
ପୁତ୍ର ମୁଖ ଚୁମ୍ବି ମୁନି ଓ ମୃଗଣୀ
ହୋଇଗଲେ ସ୍ୱର୍ଗବାସୀ । ୧୧

ଜର୍ଢୋଷୀ ପ୍ରାଣୀଙ୍କୁ ବଧ କରି ପାତ୍ରୁ
ବିକଳେ କଲେ କ୍ରନ୍ଦନ
ବ୍ରହ୍ମ ହତ୍ୟା ଦୋଷ ଲାଗିଲା ତାହାଙ୍କୁ
ବ୍ୟଥିତ ହୋଇଲା ମନ । ୧୨

ରାଜା ମନଃସ୍ତାପ ଜାଣି ବ୍ୟାସଦେବ
ଆସି ହେଲେ ଉପଗତ
ରାଜାଙ୍କୁ ଆଶ୍ୱାସି କହିଲେ ମହର୍ଷି
ଶୋଚନା ନ କର ସୁତ । ୧୩

ବ୍ରହ୍ମ ହତ୍ୟା ଦୋଷ ମନରେ ନ ଧର
ନାମ ବ୍ରହ୍ମ ହୃଦେ ଚିନ୍ତ
ଅନ୍ଧ ମୁନି ହତ କରି ଦଶରଥ
ହୋଇଗଲେ ପାପମୁକ୍ତ । ୧୪

ବାମଦେବ ଠାରୁ ନାମ ବ୍ରହ୍ମ ଦୀକ୍ଷା
ପାଇ ରାଜା ଦଶରଥ
ରାମ ନାମ ଜପି ପାପ ମୁକ୍ତ ହେଲେ
ରାମାୟଣ କଥା ତତ୍ତ୍ୱ । ୧୫

ଆହେ ପଣ୍ଡୁ ନୃପ କୃଷ୍ଣ ନାମ ଜପ
ସର୍ବ ପାପ ହିବ ନାଶ
ଏହା କହି ବ୍ୟାସ କୃଷ୍ଣ ନାମ ତତ୍ତ୍ୱ
ଦୀକ୍ଷା ଦେଲେ ନୃପଙ୍କର । ୧୬

ରାଜାଙ୍କୁ ଆଶ୍ୱାସି କହିଲେ ମହର୍ଷି
ସତ୍ୟଯୁଗର କଥନ
ଏ ଆଗ୍ନିକ ଋଷି ଆପଣା ଦୋଷରୁ
ଆପଣେ ହେଲେ ନିଧନ । ୧୭

କୁଶଦ୍ୱୀପ ନୃପ ଶ୍ରୀ ଅନଙ୍ଗ ସେନ
ଭାର୍ଯ୍ୟା ନାମ ରତ୍ନାବତୀ
ରାଜାଥିଲେ ମୁନି ରାଣୀ ଦୋଷଚରଣୀ
ପରପୁଂସେ ଲୋଡେ ରତି । ୧୮
ଏକଦା ଆଗ୍ନିକ ଋଷି ଦେଖି ରାଣୀ
ବଳେ କଲେ ଆଲିଙ୍ଗନ
ଆରତେ ଡାକିଲେ ରାଜାଙ୍କୁ ମହର୍ଷି
ରକ୍ଷାକର ନରତ୍ରାଣ । ୧୯
ରାଣୀଙ୍କ ଘୃଣିତ ବ୍ୟବହାର ଦେଖି
ନୃପ ହୋଇ କୋପ ମାନ
ସହସା ଛେଦିଲେ ପତ୍ନୀର ମସ୍ତକ
ଉଚିତ ଦଣ୍ଡ ବିଧାନ । ୨୦
ମୃତ୍ୟୁପରେ ଆତ୍ମା ଯମପୁରେ ଗଲା
ବର୍ବର ହୋଇଲା ତହିଁ
ମୁନିଙ୍କୁ ମୈଥୁନ ମାଗିବାରୁ ରାଣୀ
ଜନ୍ମିଲେ ମୃଗଣୀ ହୋଇ । ୨୧
ସେ ମୃଗିଣୀ ଋଷି ରମଣ କରିଲେ
ଶାନ୍ତ ପୁତ୍ର ଜାତ ଧର୍ମ
ଆଗ୍ନିକ ଋଷିଙ୍କୁ ପ୍ରିତିଦାନ କରି
ପୂର୍ଣ୍ଣକଲା ମନସ୍କାମ । ୨୨

ଆଗ୍ନିକ ନିମନ୍ତେ ମରିଥିଲ ରାଣୀ
ଲଗିଥିଲା ହତ୍ୟା ଦୋଷ
ସେହି କାରଣରୁ ଆଗ୍ନିକ ଋଷିଙ୍କ
ଜୀବନ ହେଲା ବିନାଶ । ୨୩

ମୃଗଣୀ ସହିତ ମୁନିଙ୍କ ମୈଥୁନ
କାଳେ ହେଲା ଶରଘାତ
ମୁନି ଓ ମୃଗଣୀ ଜୀବନ ତେଜିଣ
ଭୋଗକଲେ କର୍ମ ଦୋଷ । ୨୪

ଆପଣା ସଞ୍ଚିତ କର୍ମ ଫଳମାନ
କାଳେ ହେଲା ପରାପତ
ସ୍ତ୍ରୀ ହତ୍ୟା ଦୋଷୁଁ ଆଗ୍ନିକ ମହର୍ଷି
ଶରଘାତରେ ନିହତ । ୨୫

ଶୃଙ୍ଗାର ନିର୍ଘାତ ଶର ପଡ଼ୁ ବୋଲି
ଋଷି ଯେଉଁ ଶାପ ଦେଲେ
ସେହି ବ୍ରହ୍ମଶାପ ଦୁର୍ବହ ହୋଇଲା
ଖଣ୍ଡନ ନ ହେବ କାଳେ । ୨୬

ଋଷି ମୁଖ ବାକ୍ୟ ସତ୍ୟ ନିରଛାଳ
ଅବଶ୍ୟ ଭୋଗିବୁ ରାଜା
ପ୍ରାଣ ରକ୍ଷା ପାଇଁ ଜୀବନେ ଶୃଙ୍ଗାର
ପାଣ୍ଡୁ ନୃପ କଲେ ତେଜ୍ୟା । ୨୭

ସନ୍ନ୍ୟାସ ଜୀବନ ଯାପନ କରିଲେ
ପତ୍ନୀ ଅଙ୍ଗ ସଙ୍ଗ ନାହିଁ
ପରମା ସୁନ୍ଦରୀ କୁନ୍ତୀ, ମାଦ୍ରି ବେନି
ଖଟି ଥାନ୍ତି ନରସାଇଁ । ୨୮

ତେଜି ରାଜ ଭୋଗ ସଂସାର ବୈରାଗ୍ୟ
ବାନପ୍ରସ୍ଥେ ନୃପଈଶ
ଅରଣ୍ୟରେ ବାସ ଫଳମୂଳ ଗ୍ରାସ
ଅଧାଦିନ ଉପବାସ । ୨୯

ଛାଡ଼ି ସର୍ବ କର୍ମ କୃଷ୍ଣ ପାଦେ ମନ
ନିବେଶିଲେ ପାଣ୍ଡୁ ନୃପ
ଭୋଜନ, ଶୟନ, ମୈଥୁନ, ଚେଙ୍କଣ
ପଡ଼ି ପତ୍ନୀ କଲେ ତପ । ୩୦
ଦିବସ, ରଜନୀ କୃଷ୍ଣ ନାମ ଗୁଣି
ବନେ କଟାଇଲେ ଦିନ
କୃଷ୍ଣ ପ୍ରେମ ଭକ୍ତି ଯା' ହୃଦେ ଉଦୟ
ଜୀବନ ତାହାର ଧନ୍ୟ । ୩୧
ମୁକ୍ତି ଦାତା କୃଷ୍ଣ ସୁଦୟା କରିଲେ
ଦୁଷ୍କୃତି ହୁଏ ବିନାଶ
ବତିଶ ପଦରେ ଅଧ୍ୟାୟ ସମ୍ପୂର୍ଣ୍ଣ
କହି ମୂଢ଼ ବୁଲି ଦାସ । ୩୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ପାଣ୍ଡୁ ବ୍ରହ୍ମଶାପେ ନାମ
ଦଶମ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

---

# ଏକାଦଶ ଅଧ୍ୟାୟ
## ଦ୍ରୋଣ ଉପାଖ୍ୟାନ
### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଧୀଜନ
କୃଷ୍ଣ ପ୍ରେମ ରସ ଧାର ବହିଯାଏ
ଉଚ୍ଛନ୍ନ ରତ୍ନ ସମାନ । ୧

କଶ୍ୟପ ଋଷିଙ୍କ ବଂଶେ ଜାତ ହେଲେ
ଭରଦ୍ୱାଜ ନାମେ ଋଷି
ଜାତସ୍ମର ହେତୁ ଗୁରୁ ସେବା ମାତ୍ରେ
ବ୍ରହ୍ମବିଦ୍ୟା ଗଲା ଧଣି । ୨

ମନ୍ଦପାଳ ଋଷି ଭାର୍ଯ୍ୟା ଭାନୁମତି
କନ୍ୟା ନାମ ସରସ୍ୱତୀ
ଭରଦ୍ୱାଜ ଋଷି ବିବାହ କଲେ
ମନ୍ଦପାଳଙ୍କ ଦୁହିତା । ୩

ସରସ୍ୱତୀଙ୍କର ମାନସ ତନୟ
ଦ୍ରୋଣ ନାମେ ପରିଚିତ
ଜାତ କର୍ମମାନ ସମ୍ପାଦନ କଲେ
ତୋଷେ ଭରଦ୍ୱାଜ ତାତ । ୪

ପଢାଇଲେ ପାଠ ପିତା ଭରଦ୍ୱାଜ
ବେଦ ସ୍ମୃତି ଆଦି ସୁତେ
ଯାତ ବର୍ଣ୍ଣ ଦୁଇ ମାନେ ବ୍ରତ କର୍ମ
କରାଇଲେ ବେଦ ମତେ । ୫

ବାଲ୍ୟ ବୟସରେ ଭରଦ୍ୱାଜ ପୁତ୍ର
ଅଗ୍ନିବେଶଙ୍କ ଗୃହରେ
ଉଚ୍ଚ ବିଦ୍ୟା ଶିକ୍ଷା କରୁ ଥିଲେ ଦ୍ରୋଣ
ଗୁରୁକୁଳ ଆଶ୍ରମରେ । ୬

ସେହି ସମୟରେ ଗୁରୁ ଆଶ୍ରମରେ
ପାଞ୍ଚାଳ ରାଜ ନନ୍ଦନ
ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରଣ
କରୁଥିଲେ ବିଦ୍ୟାର୍ଜ୍ଜନ । ୭

ନାମ ଅଦ୍ୟାକ୍ଷର ଥିବାରୁ ବେନକ
ଦ୍ରୋଣ - ଦ୍ରୁପଦ ମଧ୍ୟରେ
ଗୁରୁ ଆଶ୍ରମରୁ ମିତ୍ର ଭାବ ସୃଷ୍ଟି
ନୀରକ୍ଷୀର ପରକାରେ । ୮

ବିପ୍ର କୁଳେ ଜାତ ହୋଇଥିଲେ ଦୁଇ
ବୃତ୍ତିରେ ଥିଲା ତଫାତ
ଜାତିରେ ବ୍ରାହ୍ମଣ ବୃତ୍ତିରେ କ୍ଷତ୍ରିୟ
ଥିଲେ ପାଞ୍ଚାଳ ନୃନାଥ । ୯
ମାତ୍ର ଦ୍ରୋଣାଚାର୍ଯ୍ୟ ବିପ୍ର କୁଳେ ଜନ୍ମି
କରୁଥିଲେ ବିପ୍ର ବୃତ୍ତି
ବେଦ କର୍ମ କାଣ୍ଡ କାର୍ଯ୍ୟରେ ନିପୁଣ
ତାହାଙ୍କ ଜୀବିକା ବୃତ୍ତି । ୧୦
ବିଦ୍ୟା ବିଭୂଷିତ ଭରଦ୍ୱାଜ ସୁତ
ରୂପେ ଗୁଣେ କୀର୍ତ୍ତିମନ୍ତ
ଚାରି ବେଦ ପାଠି ଲଭିଲେ ପ୍ରସିଦ୍ଧି
ଭାରତେ ଶ୍ରେଷ୍ଠ ପଣ୍ଡିତ । ୧୧
ଶୁକ୍ଳ ବ୍ରହ୍ମା ପୁତ୍ର ନାମ କୃପବ୍ରହ୍ମା
ପ୍ରଜାପତି ଗୋଟେ ଜାତ
ଶରଦ୍ୱାଜ ନାମେ ତାହାଙ୍କ ତନୁଜ
କୃପାଚାର୍ଯ୍ୟ ତାଙ୍କ ସୁତ । ୧୨
କୃପାଚାର୍ଯ୍ୟ ଭଗ୍ନି ନାମ ଅଟେ କୃପୀ
ଦ୍ରୋଣଙ୍କୁ ବିବାହ କଲେ
ପ୍ରୟାଗ କ୍ଷେତ୍ରରେ ସୁର ଗଙ୍ଗା ତୀରେ
ଆଶ୍ରମ କରି ରହିଲେ । ୧୩
ବେଦାଧ୍ୟାୟୀ ଦ୍ରୋଣ ଜ୍ଞାନରେ ନିର୍ଜିତ
ବ୍ରାହ୍ମଣ କୁଳେ ବନ୍ଦିତ
ପ୍ରଣବ ଟେକିଣ ବେଦଗାନ କଲେ
ବ୍ରହ୍ମାଣ୍ଡ ହୁଏ କମ୍ପିତ । ୧୪
ବେଦ କର୍ମ କାଣ୍ଡ କରି ଦ୍ରୋଣ ବିପ୍ର
ପୋଷୁଥିଲେ ଦୁଇପେଟ
ପ୍ରୟାଗ ତୀର୍ଥରେ ବିଷ୍ଣୁଙ୍କୁ ସେବା ପୂଜା
କରି ରହିଥିଲେ ମଠ । ୧୫

ଶିଷ୍ୟଗଣେ ବେଦ- ବିଦ୍ୟା ଶିକ୍ଷା ଦେଇ
ସୁଖେ କାଟୁଥିଲେ ଦିନ
ବିପ୍ର ସମାଜରେ ଦ୍ରୋଣଙ୍କ ପାଣ୍ଡିତ୍ୟ
ବିସ୍ତାର ଥିଲା ପ୍ରାଧାନ୍ୟ । ୧୬
ପାଞ୍ଚାଳ ଦେଶର ଦ୍ରୁପଦ ରାଜନ
କରନ୍ତ ଯେନ ଯଜ୍ଞରେ
ବିବାଦୀ ହୋଇଣ ରାଜ୍ୟ ସିଂହାସନ
ତେଜି ପଳାଇଲେ ଦୂରେ । ୧୭
ଭଗ୍ନବଳ ହୋଇ ପ୍ରୟାଗ ତୀର୍ଥରେ
ବନ୍ଧୁ ଦ୍ରୋଣଙ୍କ ଆଶ୍ରମେ
ପହଞ୍ଚି ରାଜନ ଆଶ୍ରୟ ଲୋଡ଼ିଲେ
ରଖାଇଲେ ତୋଷ ମନେ । ୧୮
ଆଦର କରିଣ ବନ୍ଧୁ ଦ୍ରୁପଦଙ୍କୁ
ରଖାଇଲେ ବିପ୍ରଦ୍ରୋଣ
ଦ୍ରୋଣ ପତ୍ନୀ କୃପୀ ଦ୍ୱାଦଶ ବରଷ
ଭୁଞ୍ଜାଇଲେ ନରରାଣ । ୧୯
ମିତ୍ର ଦ୍ରୋଣ ଠାରୁ ଉପକାର ପାଇ
କୃତଜ୍ଞ ପାଞ୍ଚାଳ ପତି
କହିଲେ ହେ ମିତ୍ର ! ଶପଥ କରୁଛି
ରାଜ୍ୟରେ ହେଲେ ନୃପତି । ୨୦
ଅର୍ଦ୍ଧ ରାଜ୍ୟ ଦେଇ ଋଣ ମୁକ୍ତ ହେବି
କରୁଛି ସ୍ୱୀକାର ସତ୍ୟ
ଉତ୍ତରିଲେ ଦ୍ରୋଣ ପ୍ରତି ଉପକାର
ନ ଲୋଡ଼େ ବ୍ରାହ୍ମଣ ସୁତ । ୨୧
ବ୍ରାହ୍ମଣର ଧର୍ମ ପର ଉପକାର
ନ ଲୋଡ଼େ ପ୍ରତ୍ୟୁପକାର
ଜଗତ ମଙ୍ଗଳେ ସଦା ସର୍ବ ତ୍ୟାଗୀ
ଅଟଇ ବ୍ରାହ୍ମଣ ବର । ୨୨

ଲଜ୍ଜିତ ହୋଇଲେ ଦ୍ରୁପଦ ରାଜନ
ଶୁଣି ଦ୍ରୋଣଙ୍କ ବଚନ
ଅନ୍ତରେ କୃତଜ୍ଞ ହୋଇଣ ରହିଲେ
ବନ୍ଧୁ ଗୃହରେ ସ୍ୱଜନ । ୨୩
ବାର ବର୍ଷ ପରେ କଉରବ ରାଜନ
ପଳାଇଲେ ରାଜ୍ୟ ଛାଡ଼ି
ସମ୍ବାଦ ପାଇଣ ପାଞ୍ଚାଳ ନୃପତି
ବସିଲେ ସ୍ୱରାଜ୍ୟ ମାଡି । ୨୪
ରାଜ୍ୟେ ରାଜା ହୋଇ ପ୍ରଜାଙ୍କୁ ପାଳିଲେ
ସତ୍ୟ ଧର୍ମେ ନରବର
ଆଶ୍ରମେ ରହିଲେ ଦ୍ରୋଣ ମହାମତି
ଋତଗନ୍ଧ କଣ୍ଟ ବନ । ୨୫
ଛବଶ ପଦରେ ଅଧ୍ୟାୟ ସମ୍ପୂର୍ଣ୍ଣ
ସୁଜନେ କର ଶ୍ରବଣ
ଗୁରୁ ଅଭିରାମ କୃପାରୁ ଭଣିଲ
ବୃନ୍ଦାବନ ସୁତଜନ । ୨୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳାଖଣ୍ଡେ ଦ୍ରୋଣ ଉପାଖ୍ୟାନେ ନାମ
ଏକାଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।



# ଦ୍ୱାଦଶ ଅଧ୍ୟାୟ

# ଯଦୁବଂଶାନୁଚରିତ ଓ କଂସ ଜନ୍ମ

## ରାଗ - କଳଶା

ଶ୍ରୀକୃଷ୍ଣ ଚରିତ ମାନସ ଶୁଣ ସୁଜନ
ଯଦୁବଂଶ ଇତିହାସ ମଥୁରା ଆଖ୍ୟାନ । ୧
ତ୍ରେତା ଯୁଗେ ମଧୁ ଦୈତ୍ୟ ଯମୁନାର ତଟେ
ଗଢ଼ିଲା ନୂତନ ରାଜ୍ୟ ଆପଣା ନାମରେ । ୨
ମହା ପରାକ୍ରମଶାଳୀ ଥିଲା ମଧୁଦୈତ୍ୟ
ତାହାର ନନ୍ଦନ ନାମ ଲବଣ ଦଇତ୍ୟ । ୩
ମନ୍ଦବୁଦ୍ଧି ହେତୁ କଲା ଅଧର୍ମ କରମ
ଶତ୍ରୁଘ୍ନ ଙ୍କ ବାଣେ ଦୁଷ୍ଟ ହୋଇଲା ନିଧନ । ୪
ଶତ୍ରୁଘ୍ନଙ୍କ ପୁତ୍ର ରାଜା ହୋଇଲେ ସେଠାରେ
ସେ ଦିନୁ ମାନବେ ବାସ କଲେ ମଧୁପୁରେ । ୫
ତ୍ରେତୟା ଅନ୍ତେ ଦ୍ୱାପର ହୋଇଲା ପ୍ରବେଶ
ସୂର୍ଯ୍ୟବଂଶ ପରେ ବାସ କଲେ ସୋମ ବଂଶ । ୬
ସୋମବଂଶେ ଜାତ ହେଲେ ଯଯାତି ନୃପତି
ତାଙ୍କ ପୁତ୍ର ଯଦୁରାଜା ନହୁଷଙ୍କ ନାତି । ୭
ଯଦୁ ରାଜା ଠାରୁ ସୃଷ୍ଟି ହେଲା ଯଦୁବଂଶ
ବୁଦ୍ଧିମାନ ବଳବନ୍ତ ସେ ବଟନ୍ତି ରୁଦ୍ର ଅଂଶ । ୮
ଯଦୁରାଜାଙ୍କ ଭାରଯା ଦେବହୂତା ସୁନ୍ଦରୀ
ସାତପୁତ୍ର ଜାତ ହେଲେ ଗର୍ଭରୁ ତାଙ୍କର । ୯
ଭୋଜକ, ଅନ୍ଧକ, ଶୂର, କୁମୁଦ, ଚୂହାଣ
ବୃଷ୍ଣି ଓ ସାତ୍ତ୍ୱତ ନାମେ ସାତଟି ନନ୍ଦନ । ୧୦
ସାତ ପୁତ୍ର ଠାରୁ ସାତ ବଂଶ ସୃଷ୍ଟି ହେଲେ
ମଥୁରା କଟକେ ରାଜ୍ୟ କରିଣ ରହିଲେ । ୧୧
ସୋମ ବଂଶେ ଜନ୍ମି ଯଦୁବଂଶୀ ବୋଲାଇଲେ
ଯାଦବ ନାମରେ ଯଶ ଖ୍ୟାତି ଅରଜିଲେ । ୧୨

ଭୋଜକ ବଂଶେ ଜନମ ରାଜା ସୁରସେନ
ବଡ଼ ପ୍ରତାପୀ ନୃପତି ବୀର ବୀର୍ଯ୍ୟବାନ । ୧୩
ଉଗ୍ରସେନ ଓ ଦେବକ ଦୁଇଟି ସନ୍ତାନ
ଶସ୍ତ୍ରଶାସ୍ତ୍ରରେ ନିର୍ଜିତ ଜ୍ଞାନବନ୍ତ ଜନ । ୧୪
ଉଗ୍ରସେନ ମଧୁପୁରେ ହୋଇଲେ ରାଜନ
ପାତ୍ର ଅମାତ୍ୟ ପଣେ ଖଟିଲେ ଷଡ଼ଜଣ । ୧୫
ଅନ୍ଧକ ବଂଶରେ ଜାତ ଶଙ୍କାଜିତ ବୀର
ଚୂହ୍ବାଣ ବଂଶେ ଜନମ ସାତ୍ୟକ ପ୍ରବର । ୧୬
ସାତ୍ୱତ କୁଳେ ସମ୍ଭବ ହୋଇଲେ ଉଦ୍ଧବ
ଶ୍ରୀହରିଙ୍କ ପ୍ରିୟ ଭକ୍ତ ପରମ ବୈଷ୍ଣବ । ୧୭
ବୃଷ୍ଣି ବଂଶେ ସଫଳକ ଚିତ୍ରରଥ ଜାତ
ସଫଳକ ପତ୍ନୀ ଗାନ୍ଧିନୀ ଗର୍ଭେ ବାର ସୁତ । ୧୮
ଅକ୍ରୂର, ଅସାଙ୍ଗ, ମୃଦୁର, ଅରିମର୍ଦ୍ଦନ
ସାରମେୟ, ସୁକର୍ମ, ଗିରି, ଗନ୍ଧମାର୍ଦ୍ଦନ ।୧୯
ଧର୍ମବୃଦ୍ଧି, କ୍ଷେତ୍ରାପେକ୍ଷ, ପ୍ରତିବାହୁ, ଶତ୍ରୁଘ୍ନ
ସୁଫଳକର ବାର ପୁତ୍ର ସର୍ବେ କୀର୍ତ୍ତିମାନ । ୨୦
ଚିତ୍ରରଥର ଦୁଇ ସୁତ ପୃଥୁ, ବିଦୁରଥ
ପୃଥୁଙ୍କ ପୁତ୍ର ହୃଦିକ କୁଳେ ଜ୍ୟେଷ୍ଠ ସୁତ । ୨୧
ହୃଦିକ ଔରସେ ଜାତ ତିନୋଟି ସନ୍ତାନ
ଦେବମୀଢ, ଶତଧନୁ, କୃତକର୍ମା ନାମ । ୨୨
ଦେବମୀଢର ଜନମ ହେଲେ ଦଶସୁତ
ବସୁଦେବ, ଦେବ, ଭାବକ, ଆନନ୍ଦ, ବୃକ ।୨୩
ଦେବ ଶ୍ରମଣ, ସୃଜୟ, ଶ୍ୟାମଳ, ଶମିକ
ବତ୍ସକ, କଙ୍କ ସମେତ ପାଞ୍ଚ କନ୍ୟା ଠିକ ।୨୪
ପୃଥା, ଶ୍ରୁତଶ୍ରବା, ଶ୍ରୁତକୀର୍ତ୍ତି, ବୃଦ୍ଧଧର୍ମା
ରାଜାଧିଦେବୀ ସକଳ ରୂପେ ଗୁଣେ ଧନ୍ୟା ।୨୫
ବସୁଦେବଙ୍କର ଏହି ପାଞ୍ଚଟି ଭଉଣୀ
ପୃଥା କୋନ୍ତି ଭୋଜଙ୍କର ପାଳିତା ନନ୍ଦିନୀ ।୨୬

କୋନ୍ତ ଭୋଜ ପାଳିବାରୁ ପୃଥା ନାମ କୁନ୍ତୀ
ପାଣ୍ଡୁ ରାଜାଙ୍କୁ ବିବାହ କଲେ ସେ ଦୁହିତା । ୨୬

ଧୃଷ୍ଟଧର୍ମା କନ୍ୟାକୁ ଶ୍ରୁତଦେବ ବରିଲେ
ଦନ୍ତବକ୍ର ନାମେ ପୁତ୍ର ଗର୍ଭରୁ ଜନ୍ମିଲେ । ୨୮

ଶ୍ରୁତଶ୍ରବାଙ୍କୁ ବିବାହ କଲେ ଦମଘୋଷ
ପରାକ୍ରମୀ ଶିଶୁପାଳ ହୋଇଲେ ସମ୍ଭୂତ । ୨୯

ମାତ୍ର ବଂଶ ଯାଦବେ ଯେ ରାଜାଙ୍କ ବିଗ୍ରହ
ଉଗ୍ରସେନ ନୃପତିଙ୍କୁ କରୁଥାନ୍ତି ସ୍ନେହ । ୩୦

ଶତ୍ରାଜିତ, ଅନାଧୃଷ୍ଟ, ଅକ୍ରୂର, ସାତ୍ୟକି
ଉଦ୍ଧବ, ବସୁଦେବ, କୃତକର୍ମା ଏ ରଥି । ୩୧

ରାଜାଙ୍କ ସଙ୍ଗେ ଏମାନେ ରାଜ୍ୟକୁ କାରେଣି
ଲଙ୍ଘି ନ ପାରନ୍ତି ଉଗ୍ରସେନ ସ୍ବା'ଙ୍କ ବାଣୀ ।୩୨

ମତିଙ୍କୁ ସ୍ନେହ କରନ୍ତି ମଥୁରା ନୃପତି
ସାତ ସେନାପତି ଧରି ରାଜ୍ୟ ପାଳୁଥାନ୍ତି ।୩୩

ରଣ ରଙ୍ଗା ଯଦୁବୀରେ ସର୍ବେ ମହାଯୋଦ୍ଧା
ରୂପ, ଗୁଣ, ବଳ ବୀର୍ଯ୍ୟେ ସକଳେ ପ୍ରସିଦ୍ଧା ।୩୪

ପୃଥିବୀର ମହାଭାର ଉଶ୍ବାସିବା ପାଇଁ
ଯାଦବ ବଳ ବିଧାତା ଅଛନ୍ତି ଭିଆଇ । ୩୫

ଧନଧାନ୍ୟେ ପରିପୂର୍ଣ୍ଣ ମଧୁପୁର ଦୁର୍ଗ
ଚତୁଃସ୍ପଦେ ରାଜଲକ୍ଷ୍ମୀ କରୁଥାନ୍ତି ଭୋଗ ।୩୬

ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୁଦ୍ର ଚତୁଜାତି
ଯାଦବଙ୍କୁ ମୂଳକରି ବାସ କରୁଛନ୍ତି । ୩୭

ଦଶଲକ୍ଷ ଗୃହ ତହିଁ ବସେ ଜନପ୍ରଜା
ଶାସନ କରନ୍ତି ରାଜ୍ୟ ଉଗ୍ରସେନ ରାଜା ।୩୮

ଯମୁନା ଦକ୍ଷିଣ ତଟେ ଗୋପନଗ୍ର ଗୋଟି
ପୂର୍ବେ ସରସ୍ବତୀ ନଦୀ ରହିଅଛି ଘୋଟି । ୩୯

ବିରାଜିତ ଗି ରି ମା ଳା ସୁଉଚ୍ଚ ପର୍ବତ
ଘେରି ରହିଅଛି ରାଜ୍ୟ ଧନୁଷ୍କ ଯେମନ୍ତ ।୪୦

ଇନ୍ଦ୍ରଛତ୍ର ଗିରି ଯେଉଁଠି ଘେରିଛି କେଉଁଠି
ତାଦୃଶ୍ୟ ଗୋପପୁରକୁ ଘେରିଅଛି ଗିରି । ୪୧
ଯମୁନାର ତୀରଦେଶ ଅତ୍ୟନ୍ତ ଉର୍ବର
ଶସ୍ୟକ୍ଷେତ୍ରେ ପରିପୂର୍ଣ୍ଣ ଶ୍ୟାମଳ, ସୁନ୍ଦର । ୪୨
ଗିରି ଗୋବର୍ଦ୍ଧନ ବନ ଭୂମିରେ ଶୋଭିତ
ପରିପୂର୍ଣ୍ଣ ତୃଣଭୂମି ନିର୍ଝରେ ପ୍ଲାବିତ । ୪୩
ଗୋପାଳେ ବାସ କରନ୍ତି ସେ ଗୋପନଗର
ଦୁଧଭାତ ଖାଇ ସବେ ଆନନ୍ଦ ଅପାର । ୪୪
ବ୍ରଜଭୂମି ନାମେ ତାହା ଲୋକରେ ବିଦିତ
ନନ୍ଦଖୁଡ଼ ଗୋପପତି ମଥୁରା ସାମନ୍ତ । ୪୫
ମଥୁରାନଗ୍ରେ ବସନ୍ତି ଯାଦବ ପରଜା
ନ୍ୟାୟରେ ପାଳନ୍ତି ରାଜ୍ୟ ଉଗ୍ରସେନ ରାଜା ।୪୬
ପଦ୍ମବଳ ଦେଶ ରାଜା ପଦ୍ମନ କେଶରୀ
ଇନ୍ଦୁମତୀ ନାମେ କନ୍ୟା ପରମା ସୁନ୍ଦରୀ । ୪୭
ଉଗ୍ରସେନ ପାଟରାଣୀ ସଉଭାଗ୍ୟବତୀ
ଆଠଟି ସନ୍ତାନ ତାଙ୍କ ଗର୍ଭରୁ ଉତ୍ପତ୍ତି । ୪୮
ଗୋଟି ଗୋଟି କହୁ ଅଛି କରତା ଶ୍ରବଣ
କୃଷ୍ଣ ଚରିତ ମାନସ ରସେ ପରିପୂର୍ଣ୍ଣ । ୪୯
ସିଂହ ମାସ ଶୁକ୍ଳପକ୍ଷ ଦଶମୀ ଦିବସ
ଜ୍ୟେଷ୍ଠ ପୁତ୍ର ଜାତ ହେଲା ପୂର୍ଣ୍ଣ ଆଠ ମାସ । ୫୦
ମହାଭୟଙ୍କର ବାଳ କୁମର ମୂରତି
ଅସୁର-ସ୍ୱଭାବ ଘେନି ହୋଇଲା ଉତ୍ପତ୍ତି । ୫୧
ସେ କୁମର ନାମ ଗୋଟି ହେଲା କଂସାସୁର
ନାମ ଶୁଣି ନଗ୍ରବାସୀ ଭୟେ ଥରହର । ୫୨
ସୁନାମା, ନ୍ୟାଗ୍ରୋଧିକ, କଙ୍କ, ଶଙ୍କୁ ଓ ଧୃଷ୍ଟି
ସୁହୃ, ରାଷ୍ଟ୍ରପାଳ ନାମେ ପୁତ୍ର ସାତଗୋଟି ।୫୩
ସୁରଭି, ରାଷ୍ଟ୍ରପାଳିକା, କଂସା, କଂସବତୀ
କାଂକ ନାମେ ପାଞ୍ଚକନ୍ୟା ହୋଇଲେ ଉତ୍ପତ୍ତି ।୫୪

ଆଠ ପୁତ୍ର, ପାଞ୍ଚକନ୍ୟା ରାଣୀ ଗର୍ଭୁ ଜାତ
ସେମାନଙ୍କ ମଧ୍ୟେ କଂସ ଅଟେ ଜ୍ୟେଷ୍ଠ ସୁତ । ୫୫
ଦେବକ ଉଗ୍ରସେନଙ୍କ କନିଷ୍ଠ ସୋଦର
ଚାରିପୁତ୍ର, ସାତକନ୍ୟା ଜନ୍ମିଲେ ତାଙ୍କର । ୫୬
ଦେବବର୍ଦ୍ଧନ, ସୁଦେବ ସଙ୍ଗେ ଉପଦେବ
ଦେବଳ ମିଶାଇ ଚାରି କୁମର ସମ୍ଭବ । ୫୭
ଦେବକୀ, ଦୈବକୀ, ଦୈବଜ୍ଞା, ଦେବରକ୍ଷିତା
ଧ୍ରୁବଦେବା, ଶାନ୍ତିଦେବା, ବାସୁଦେବା ସୁତା । ୫୮
ଉଗ୍ରସେନ ଜ୍ୟେଷ୍ଠ ସୁତ କଂସ ମହାମଲ୍ଲ
କୁଳକୁ କଣ୍ଟକ ପୁଣି ପୃଥିବୀକୁ ସଲ । ୫୯
ଦେବ, ଦାନବ, ମାନବ- ନ କରେ ଖାତର
ଭୋଜକ ବଂଶରେ ଜନ୍ମି ପ୍ରକୃତି ଅସୁର । ୬୦
ଦିନୁଦିନ ବର୍ଦ୍ଧମାନ ହୋଇଲେ କୁମର
ବୟସ ବର୍ଦ୍ଧନେ ବୃଦ୍ଧି ପ୍ରକୃତି ତାଙ୍କର । ୬୧
ବାଳକେ କରନ୍ତି ଯେସ୍ନେ ବିଭିନ୍ନ ଉତ୍ପାତ
ତେସନ କରଇ କଂସ ଅମିତ ବହୁତ । ୬୨
ତେସମତି ପଦେ ଅଧ୍ୟାୟ ହୋଇଲା ସମ୍ପୂର୍ଣ୍ଣ
ଭଣିଲା ଶ୍ରୀ ବୁଲ୍ ଦାସ ଅଧମ ଅଜ୍ଞାନ । ୬୩

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଯଦୁବଂଶାନୁଚରିତ ଓ କଂସ ଜନ୍ମ
ଉପାଖ୍ୟାନେ ନାମ ଦ୍ୱାଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣମସ୍ତୁ





# ତ୍ରୟୋଦଶ ଅଧ୍ୟାୟ
## କଂସର ଉତ୍ପୀଡନ
### ରାଗ - ମଙ୍ଗଳ

କୃଷ୍ଣ ଚରିତ ମାନସ ଶୁଣ ସୁଜ୍ଞଜନ
ତରୁଣ ବୟସୁ କଂସ ଅନ୍ୟାୟରେ ମନ । ୧
ଗାଳବ ଋଷି ଆଶ୍ରମେ ଅଧ୍ୟୟନ କାଳେ
ଭୌମ, ବାଣ। ରାଜପୁତ୍ରେ ସହପାଠୀ ଥିଲେ । ୨
ଏହି ତିନି ବନ୍ଧୁଙ୍କର ସମାନ ପ୍ରକୃତି
ପରସ୍ପର କାର୍ଯ୍ୟପ୍ରତି ଥାଏ ସହମତି । ୩
ଗୁରୁକୁଳାଶ୍ରମେ ତିନି ପଠନ ସମୟେ
ସହପାଠୀ ଗଣେ ଧରି ବତ୍ସ୍ୟେ ନିର୍ଦ୍ଦୟେ । ୪
ଯେ କାରଣୁ ଗୁରୁଦେବ ହୋଇ କ୍ରୋଧାନ୍ୱିତ
ଗୁରୁକୁଳାଶ୍ରମୁ ତିନି କଲେ ବହିଷ୍କୃତ । ୫
ଏହି କାରଣରୁ କଂସ ବିପ୍ର, ତପୋବନ୍ତ
ପ୍ରତି ବିଦ୍ୱେଷ ଭାବନା ଥାଏ ଅବିରତ । ୬
ତେଣୁ ମଧୁପୁରେ ଯେତେ ବିଦ୍ୱାନ ପଣ୍ଡିତ
କଂସର ବୁଦ୍ଧି ବୃତ୍ତିରେ ହୋଇଲେ ବଞ୍ଚିତ । ୭
ନୀତି ବହିର୍ଗତ କାର୍ଯ୍ୟ କରିବାରୁ କଂସ
ରାଜ୍ୟବାସୀଙ୍କ ମନରୁ ତୁଟିଲା ବିଶ୍ୱାସ । ୮
କଂସର ଅନ୍ୟାୟ ଦେଖି ପ୍ରଜାଏ ନୀରବ
ପ୍ରତିବାଦ କଲେ ଦଣ୍ଡ ସହିବାକୁ ହେବ । ୯
ଭୟରେ ଯୁବକ ଶକ୍ତି ହୋଇଲେ ମଉନା
କି କରି ପାରିବେ ବୃଦ୍ଧେ ବଳବୀର୍ଯ୍ୟ ହୀନା । ୧୦
ଅନ୍ୟାୟର ପ୍ରତିବାଦ କରି ଉଗ୍ରସେନ
ବନ୍ଦୀ ହୋଇ କାରାଗାରେ କଟାଇଲ ଦିନ । ୧୧
ଆର୍ଯ୍ୟ ସମାଜରେ ପିତା ଦେବତା ସମାନ
ଅମର୍ଯ୍ୟାଦା କରି କଂସ କଲା ନୀତି ଭଗ୍ନ । ୧୨

ମାତ୍ର ବୃଷ୍ଣି ମାନଙ୍କର ମୁଖ୍ୟ ଯେ ଅକ୍ରୂର
ସମ୍ମାନ୍ୟ ଅଟନ୍ତି ସେ ଯାଦବ କୁଳର । ୧୩
ସାଧୁ ଓ ଧାର୍ମିକ ପଣେ ରାଜ୍ୟରେ ସୁଖ୍ୟାତ
ରାଜ୍ୟର ପ୍ରଜାଏ ତାଙ୍କୁ ସମ୍ମାନ ଦିଅନ୍ତି । ୧୪
କଂସର ଅନ୍ୟାୟ ଦେଖି କହିଲେ ବୁଝାଇ
ମାତ୍ର ଫଳ ବିପରୀତ ଲାଭ ହେଲା ନାହିଁ । ୧୫
ଫଳ କଂସ ଦ୍ୱାରା ସିଏ ହେଲେ ହତମାନ୍ୟ
ଯେ ବିରୋଧ କଲେ ତାଙ୍କ ଜୀବନ ବିପନ୍ନ । ୧୬
ପ୍ରତିପକ୍ଷ ଘରେ ବଳେ ଲଗାଇଲେ ନିଆଁ
ଘରଛାଡ ପଳାଇଲେ କେ ହୋଇ ଗୁନିଆଁ । ୧୭
ସୁନ୍ଦରୀ ରମଣୀ ଦେଖି କରିଲେ ହରଣ
ବଢିଗଲା ମଧୁପୁରେ ହତ୍ୟା ଧରଷଣ । ୧୮
ମଦ୍ୟପାନ କରି ଦୁଷ୍ଟେ ଉନ୍ମତ୍ତ ହୋଇଲେ
ହତ୍ୟା ବିଭୀଷିକାମାନ ଭିଆଇ ବସିଲେ । ୧୯
ନାରୀଏ ଦୁଃଖରେ ରହି କରିଲେ କ୍ରନ୍ଦନ
ଡାକିଲେ ବିକଳେ ରଖ ରଖ ନାରାୟଣ । ୨୦
ମୂଳୁ ଗମ୍ଭୀର ଭାବରେ ଗଲା ପ୍ରତିରୋଧ
କଂସର ବିରୋଧେ ଲୋକେ କଲେ ହୋଇ କ୍ଷୁବ୍ଧ । ୨୧
ବିଗିଡ଼ିଲା କଂସାସୁର ଉଦ୍ଧତ ଜନତା
ପ୍ରସ୍ତୁତ ନୁହଁନ୍ତି ମାନିବାକୁ ରାଜା କଥା । ୨୨
ତେଣୁ ସେ ପ୍ରୟୋଗ କଲା କଠିନ ଶାସନ
ରାଜଦ୍ରୋହେ ଧରି ନେଇ କରିଲା ନିଧନ । ୨୩
ପ୍ରତିବାଦ ନ କରିଣ ପ୍ରଜାଏ ନୀରବ
ଗଣସଙ୍ଗଠନ କଲେ ବହି ଗୁପ୍ତ ଭାବ । ୨୪
ସମର୍ଥନ ନ କରନ୍ତି କଂସ ଆଚରଣ
ରାଜା ଉଗ୍ରସେନ ପ୍ରତି ଥାଏ ସମର୍ଥନ । ୨୫
ନାରୀମାନେ ସ୍ୱାମୀ ପୁତ୍ରେ କରାନ୍ତି ଉତ୍କ୍ଷିପ୍ତ
ଅନ୍ୟାୟ ବିପକ୍ଷେ ହୋଇବାକୁ ସଙ୍ଗଠିତ । ୨୬

କଂସ ଶାସନ ବିପକ୍ଷେ ଗୁପ୍ତ ଆନ୍ଦୋଳନ
ମାନସିକ ସ୍ତରେ ହେଲା କ୍ରମେ ସଞ୍ଚାଳନ । ୨୭
ଦିନକୁ ଦିନ ରାଜ୍ୟରେ ବଢିଲା ଅଶାନ୍ତି
ବଳ ପ୍ରୟୋଗ କରିଲେ କଂସ ନରପତି । ୨୮
କୁଣ୍ଡଳ ପର୍ବତ ତଳେ ଅର୍ଗିରା ବନରେ
ଅଷ୍ଟମଲ୍ଲ ରହୁଥିଲେ କଂସ ଅପେକ୍ଷାରେ । ୨୯
କଂସହିତ କାର୍ଯ୍ୟ ପାଇଁ ରହୁଥିଲେ ଗୃହିଁ
ମିଳିଲେ କଂସର ପାଶେ ପୂର୍ବଜ୍ଞାନ ପାଇ । ୩୦
ଗଉରବ କରି ପାଶେ ରଖାଇଲା କଂସ
ସଖାମିତ୍ର ପଣେ ଥାଏ ଅଖଣ୍ଡ ବିଶ୍ୱାସ । ୩୧
ସେମାନେ ଅତ୍ୟନ୍ତ ବଡ଼ ମାୟାବୀ ଅସୁର
ମାୟାକରି କଂସ ଶତ୍ରୁ କରନ୍ତି ସଂହାର । ୩୨
ଅଷ୍ଟମଲ୍ଲ-ଙ୍କ ସହିତ କରେ ପରାମର୍ଶ
ସେ'ଦିନୁ ଯାଦବେ ଆଉ ନ କଲେ ବିଶ୍ୱାସ । ୩୩
ଅଷ୍ଟସଖାଙ୍କର କଥା ମନେ ଗୁରୁଜ୍ଞାନ
ନିଷ୍ଠତେ ମନ୍ତ୍ରଣା କରେ ସଖାଙ୍କୁ ଧରିଣ । ୩୪
ସଖାଙ୍କର ପରାମର୍ଶେ କଂସ ନରରାଣ
ମଧୁପୁରେ ଚାଲଇଲା ଯଥେଚ୍ଛା ଶାସନ । ୩୫
ସାତବଂଶ ଯଦୁବାରେ ସେବାକାଙ୍କ୍ଷୀ ପଣେ
ଖଟିଲେ ରାଜାର ପାଦେ ଆଜ୍ଞା ପରମାଣେ । ୩୬
ଷଣ୍ଢା, ବକା, ଅର୍ଘା, ବତ୍ସା, ଚାଣୁର, ମୁଷ୍ଟିକ
ଶକଟା, ଧେନୁକା ଆଦି ଅଷ୍ଟମଲ୍ଲ ଯାକ । ୩୭
ଏ ଆଠ ବାରେ ଅତ୍ୟନ୍ତ ରଣେ ରଣ ରଙ୍କା
ଦେବ-ଦାନବ-ମାନବେ ନ କରନ୍ତି ଶଙ୍କା । ୩୮
ସେମାନଙ୍କୁ ଧରି କଂସ ଦିଗ୍ ବିଜୟ କଲା
ଉତ୍ତର ଦିଗକୁ ଦର୍ପେ ସେନାନି ବାହିଲା । ୩୯
ମଗଧ ରାଜନ ଜରାସନ୍ଧ ପରାଜିତ
ଦୁଇ କନ୍ୟା ଦେଇ ସନ୍ଧି କଲା ନରନାଥ । ୪୦

ଯାଦବ ବୀରଙ୍କୁ କନ୍ୟା ଦେଇ ତୋଷ କଲା
ମାଗଧୀ ଯାଦବ ମଧ୍ୟେ ସମ୍ପର୍କ ବଢ଼ିଲା । ୪୧
ମାଗଧୀ ସେନାଙ୍କ ଧରି ପୃଥ୍ୱୀ ଜୟ କଲା
ମ୍ଲେଚ୍ଛଯାଏ ମେଦିନୀକୁ କରଗତ କଲା । ୪୨
ଦେବଗଣ ପଳାଇଲେ ଛାଡ଼ି ସ୍ୱର୍ଗପୁର
ଦେବ-ଦାନବ-ମାନବ ଖଟିଲେ ପଯ୍ୟନ୍ତ । ୪୩
ଦିଗ୍ ବିଜୟ କରି କଂସ ରାଜ୍ୟକୁ ଫେରିଲା
ମଥୁରା କଟକେ ରତ୍ନ ମେଦିନୀ ପାଳିଲା । ୪୪
ଖଟିଲେ ମଥୁରା ବାସୀ ରତ୍ନ ଛତ୍ୟ ପ୍ରାୟ
ଅଷ୍ଟମଲ୍ଲ ପ୍ରତି ଥାଏ ମନ ମଧ୍ୟେ ଭୟ । ୪୫
କଂସ ଅନୁଚର ମାନେ ନ ଥିଲେ ଯାଦବ
ସେମାନେ ତ ଦୁଷ୍ଟ ଖଳ ପ୍ରକୃତି ସ୍ୱଭାବ । ୪୬
ପ୍ରଚଳିତ ନୀତି ନିୟମ ମାନନ୍ତି ନାହିଁ
ଭୟଭୀତ କରି ଲୋକେ ରଖିଲେ ଦବାଇ । ୪୭
ମଗଧୁ ମାଧବୀ ସେନା ମଗାଇଲା କଂସ
ଶୃଙ୍ଖଳା ସୁରକ୍ଷା କାର୍ଯ୍ୟ ତାଙ୍କ ହାତେ ନ୍ୟସ୍ତ । ୪୮
କଂସ ପ୍ରତି ଅନୁରକ୍ତ ପରରାଷ୍ଟ୍ର ସୈନ୍ୟ
ଯାଦବମାନଙ୍କୁ କ୍ରମେ କରିଲେ ଦମନ । ୪୯
ପରରାଷ୍ଟ୍ର ସେନା ଦେଖି ପ୍ରଜାଏ ବନ୍ଧୁବଧ
ଦୃଢ଼ ସ୍ୱରେ ଯଦୁବୀରେ କଲେ ପ୍ରତିବାଦ । ୫୦
ଚାଲିଲା ଦେଶରେ ଆତଙ୍କରାଜ ଶାସନ
ହାହାହାହା ଡାକ ଦେଲେ ନରନାରୀ ଗଣ । ୫୧
ଏକାବନ ପଦେ ଅଧ୍ୟାୟ ହୋଇଲା ଶେଷ
ଗୀତରେ ଭଣିଲା କାଳକୂଳେ ବୁଲାଦାସ । ୫୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ କଂସର ଉତ୍ପୀଡ଼ନେ
ନାମ ତ୍ରୟୋଦଶ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



# ଚତୁର୍ଦ୍ଦଶ ଅଧ୍ୟାୟ

## ଦେବଗଣଙ୍କ ପ୍ରାର୍ଥନା

### ରାଗ - ଶଙ୍କରାଭରଣ

କୃଷ୍ଣ ଚରିତ ମାନସ ଶୁଣ ସୁଜ୍ଞଜନ
କଂସ ଭୟେ ଦେବଗଣେ ହୋଇଲେ ଉଛନ୍ନ
ତ୍ରାହି ତ୍ରାହି ଡାକ ଦେଲେ
ବେଧାବର ପାଶେ ଯାଇଁ ଦୁଃଖ ଜଣାଇଲେ । ୧

ଶିବ-ବ୍ରହ୍ମା-ଇନ୍ଦ୍ର ତୁଲେ ସର୍ବ ଦେବଗଣ
ମୁନଋଷି - ବୈକୁଣ୍ଠ ପୁରେ ମିଳିଲେ ବନ୍ଦନ
ଶ୍ରୀ ବିଷ୍ଣୁ ନିଦ୍ରାଭିଭୂତ
ସ୍ୱପ୍ନ - ସୁଷୁପ୍ତି - ଜାଗ୍ରତ କରି ଏକତ୍ରିତ । ୨

ଧବଳ ଚନ୍ଦ୍ର ନାମରେ ସେବଣ ଉରଗ
ପୃଷ୍ଠ ଦେଶେ ବହିଅଛି ମହାବିଷ୍ଣୁ ଅଙ୍ଗ
ବୀଣା ବଜାନ୍ତି ଭାରତୀ
ପାଦ ସେବା କରୁଛନ୍ତି ବରୁଣ ଦୁହିତା । ୩

ସମବେତ କଣ୍ଠେ ଶିବ-ବ୍ରହ୍ମା-ମଘବାନ
ଦେବଗଣ ସହିତରେ କଲେ ସ୍ତୁତି ଗାନ
ସାମ ବେଦ ଉମା ସାଇଁ
ନାରଦ କରିଲେ ନୃତ୍ୟ ବୀଣାକୁ ବଜାଇ । ୪

ଭାଙ୍ଗିଗଲା ଯୋଗନିଦ୍ରା ଜାଗିଲେ ଶ୍ରୀହରି
ଉଭା ହୋଇଛନ୍ତି ଦେବେ ଶିରେ କରଭରି
ଦେଖି ଦେବ ନାରାୟଣ
ପୁଛିଲେ କି କାର୍ଯ୍ୟେ ସର୍ବେ କଲ ଆଗମନ ? । ୫

ବିଷର୍ଣ୍ଣ ଦିଶୁଛି ମୁଖ ନେତ୍ରେ ଅଶ୍ରୁଜଳ
କେଉଁ ଦୁଃଖ ଉପଗତ କହ ଆଖଣ୍ଡଳ ?
ବୋଲୁଛନ୍ତି ସୁରବର
କଂସାସୁରଯୋଗୁଁ ସୃଷ୍ଟି ହେଲା ଛାରଖାର ।୬
ମେରୁଯାଏଁ ମେଦିନୀକୁ କଲା କରଗତ
କଂସଭୟେ ଦେବଗଣେ ଅତ୍ୟନ୍ତ ଶଙ୍କିତ
ରକ୍ଷାକର ନାରାୟଣ
ଏହା କହି ସୁରପତି ଧରିଲେ ଚରଣ ।୭
ଅଭିମାନେ ମହାପ୍ରଭୁ ନ ଦେଲେ ଉତ୍ତର
ମଉନ ହୋଇ ବସିଲେ ଦେବ ଚନ୍ଦ୍ରଧର
ଶଙ୍କର କହିଲେ ଶୁଣ
ଜାଣି ଶୁଣି ମିଛୁଟାରେ ପଚାର କାରଣ ।୮
ସର୍ବଜ୍ଞ ପୁରୁଷ ତୁମ୍ଭେ ସର୍ବ ଘଟେ ବାସ
ତୁମ୍ଭଙ୍କୁ ଅଜ୍ଞାତ କିସ ଆହେ ପୀତବାସ
ତୁମ୍ଭେ ତ ଜଗତନାଥ
ନିଦ୍ରାଗଲ ନିଶ୍ଚିନ୍ତରେ ନ ବୁଝିଲ ତତ୍ତ୍ୱ ? ।୯
କଂସ, କେଶି, ଜରାସନ୍ଧ, ଶାଲ୍ୱ, ଶିଶୁପାଳ
ପୌଣ୍ଡ୍ରକ, ରୁକ୍ମ, ବାଣା, ହେଲେଣି ପ୍ରବଳ
ଦୁଷ୍ଟଙ୍କୁ କର ଦଳନ
ଦେବହିତ କାର୍ଯ୍ୟ ପ୍ରଭୁ କର ସମ୍ପାଦନ ।୧୦
ତାଚ୍ଛଲ୍ୟ କରି କହିଲେ ରାବଣ ଅଇଲା
ବିପଦ ପଡ଼ୁଛି ବୋଲି କରୁଛ ଗୁହାରି
ସ୍ୱାର୍ଥପର ଅଟ ତୁମ୍ଭେ
ବ୍ରହ୍ମଘାତ କହି ମୁଖ ନ ଚାହିଁଲ ଦେବେ ।୧୧
ବଳାତ୍କାରେ ସ୍ୱର୍ଗ ଜିଣି ରାବଣ ରାକ୍ଷସ
ଖଟାଇଲା ପାଦତଳେ ନେଇଣ ଦିଗଦଶ
ଉଷ୍ଣଶିରେ କର ଦେଇ
ଭୃତ୍ୟ ପ୍ରାୟ ସେବା କଲ ଡ଼ରି ଲଙ୍କସାଇଁ ।୧୨

ଏ ବିଧିରେ ନାନାମତେ ଯାତନା ଭୋଗିଲ
ରାବଣ ନିଧନ ପାଇଁ ପ୍ରାର୍ଥନା କରିଲ
ଅଯୋଧାରେ ହେଲ ଜାତ
ଯୁବାକାଳେ ବନବାସେ କଷଣ ବହୁତ । ୧୩
କାନନେ ପତ୍ନୀ ସୀତାଙ୍କୁ ଦୁଷ୍ଟ କଲା ଚୋରି
ପତ୍ନୀ ଚୋର ରାବଣକୁ ପକାଇଲ ମାରି
ଦୁର୍ଜ୍ଜନ କରିଲ ବିନାଶ
ତୁମ୍ଭେ ତ ତାହାଙ୍କ ହେଲ ବ୍ରହ୍ମହତ୍ୟା ଦୋଷ । ୧୪
ଗୋ-ବ୍ରାହ୍ମଣେ ବଳାତ୍କାରେ ଦିଏ ଯେ କଷଣ
ପରଧନ, ପରନାରୀ କରଇ ହରଣ
ଅନ୍ୟାୟ କାର୍ଯ୍ୟରେ ମନ
ବ୍ରାହ୍ମଣ ହେଲେ ହେଁ ସେହି ଅଟଇ ଦୁର୍ଜ୍ଜନ । ୧୫
ବିଶ୍ରବା ବିପ୍ର ଅଂଶରେ ହେଲେହେଁ ଉତ୍ପତ୍ତି
ମାତା ଅଂଶେ ଅସୁରସେ ସୁମାଳିର ନାତି
ନିକଷା ଗର୍ଭରୁ ଜାତ
ଅସୁର ପ୍ରକୃତି ତାର କାର୍ଯ୍ୟ କଳୁଷିତ । ୧୬
ଜଗତର ଅପକାରୀ ଅଟେ ଯେ ପୁରୁଷ
ତାକୁ ପ୍ରାଣେ ବଧକଲେ ନାହିଁ କିଛି ଦୋଷ
ଉପକାର ନ ଘେନିଲ
ବ୍ରହ୍ମହତ୍ୟା ଦୋଷୀ କହି ମୁଖ ନ ଚାହିଁଲ । ୧୭
ପ୍ରାର୍ଥନା କରୁଛ ପୁଣି ମାତ୍ର ନାହିଁ ଲାଜ
ପାପିର ପାଦ ଧରୁଛ କମ୍ପା ଦେବରାଜ
ତୁମ୍ଭ ସମ ସ୍ୱାର୍ଥପର
ଏ ବିଶ୍ୱ ବ୍ରହ୍ମାଣ୍ଡେ ଜଣେ ନ ପଡ଼େ ନଜର । ୧୮
ଦେବଙ୍କ ମଙ୍ଗଳ ପାଇଁ ଅନନ୍ତ ଠାକୁର
ଜାତ ହେଲେ ଅଯୋଧାରେ ସୁମିତ୍ରା କୁମର
ଆତ୍ମର ଆତ୍ମା ସମାନ
ଯୁବକାଳେ ବନବାସେ କାଟିଲେ ସେ ଦିନ । ୧୯

ଆହାର - ନିଦ୍ରା - ମୈଥୁନ ସକଳ ତେଜିଣ
ଉପବାସେ - ଉଜାଗରେ କଟାଇଲେ ଦିନ
ଇନ୍ଦ୍ରଜିତ ବଧ ପାଇଁ
ଚୌଦବର୍ଷ ବ୍ରହ୍ମଚର୍ଯ୍ୟ ପାଳିଲା ମୋ ଭାଇ । ୨୦

ଯୁବ ବୟସେ ଯୁବତୀ ରମଣୀ ତେଜିଲା
କଣ୍ଟକ କାନନେ କଷ୍ଟେ କାଳ କଟାଇଲା
କମନୀୟ କାନ୍ତି ତାର
ଉପବାସେ - ଉଜାଗରେ ଉଦାସ ଶରୀର । ୨୧

ସେ ଭାଇକୁ ଯୁଦ୍ଧ କ୍ଷେତ୍ରେ ଇନ୍ଦ୍ରଜିତ ବୀର
ବଧିବାକୁ ବଜ୍ରଶୂଳ କରିଲା ପ୍ରହାର
ବକ୍ଷ ଭେଦ କରି ଶୂଳ
ଆଘାତ କରି ପଶିଲା ବିବର ପାତାଳ । ୨୨

ମୃତପ୍ରାୟ ହୋଇ ବୀର ପଡ଼ିଲା ମହୀରେ
ସେ କଥା ସ୍ମରଣେ ମୋର ଶରୀର ଶିହରେ
ସୁଷେଣ ରଖିଲା ପ୍ରାଣ
ବିଶଲ୍ୟକରଣି ଆଣି ଦେଲା ହନୁମାନ । ୨୩

ଲକ୍ଷ୍ମଣଙ୍କ ପ୍ରିୟ ପତ୍ନୀ ପ୍ରମିଳା ତରୁଣୀ
ଯୁବାକାଳେ ସ୍ୱାମୀତେଜି ହେଲେ ସନ୍ୟାସିନୀ
ଆମ୍ଭର ସେବା ନିମନ୍ତେ
କାନନେ ପେଶିଲେ ସ୍ୱାମୀଙ୍କି ଆନନ୍ଦ ଚିତ୍ତେ । ୨୪

ଅଭିଷେକ ଦିବସରେ ଛଳନା କରିଣ
ବନକୁ ପେଶିଲ ମୋତେ କୂଟେ ଦେବଗଣ
ପିତା ପ୍ରାଣ ତ୍ୟାଗ କଲେ
ପୁତ୍ର ଜାତ କରି ପୁତ୍ର ମୁଖ ନ ଦେଖିଲେ । ୨୫

ଜନନୀମାନେ ମୋହର ବିଧବା ହୋଇଲେ
ସାନ୍ତ୍ୱନା ଦେବାକୁ ଜଣେ ପାଖେ ନ ରହିଲେ
ଭରତ ଭାଇ ମୋହର
ଏକ ଆତ୍ମା ଏକରୂପ ଅଭିନ୍ନ ଶରୀର । ୨୬

ରାଜ୍ୟ ସିଂହାସନ ତେଜି ବୈରାଗୀ ହୋଇଲ
ଆମ୍ଭର ପାଦୁକା ପୂଜି କାଳ କଟାଇଲ
ଶାକ କରିଲ ଭୋଜନ
ତଥାପି ତ୍ୟାଗକୁ ତାର ନ କଲି ସମ୍ମାନ । ୨୭

ଭରତ ସମାନ ତ୍ୟାଗୀ ନାମେ ଅଭିଯୋଗ
ଆରୋପ କରିଲେ ଲୋକେ ଛାଡ଼ି ଧର୍ମ ମାର୍ଗ
ଅନ୍ନ ବସ୍ତ୍ର ତ୍ୟାଗ କରି
ଦୁଃଖେ କଟାଇଲ କାଳ ସତ୍ୟ ଅନୁସରି । ୨୮

ଆମ୍ଭ ପାଶେ ଅଭିଯୋଗ କଲେ ଦୁଷ୍ଟ ଜନେ
"ଶାକପତ୍ର ନ ମିଳଇ ଭରତ ଶାସନେ"
କି କହିବା ବ୍ୟବହାର
ଅସତ୍ୟ କହିଲେ ପୁଣି ପତ୍ନୀକୁ ମୋହର । ୨୯

ପତିବ୍ରତା ସତୀନାରୀ ଜନକ ନନ୍ଦନୀ
ସେ ପୁଣି ପରୀକ୍ଷା ଦେଲେ ପ୍ରବେଶିଣ ଅଗ୍ନି
ନ ମିଳିଲା ସୁଖ ଭୋଗ
ଧୋବଣୀ କଥାରେ ପତ୍ନୀ କରିଦେଲି ତ୍ୟାଗ । ୩୦

ବଣ୍ଣ ହେତେ ବଂଶ ମୋର ହୋଇଲା ଉଚ୍ଛନ୍ନ
ପାତାଳେ ପଶିଲି ପତ୍ନୀ ଭଇ ଜଳମଗ୍ନ
ଆଶ୍ରମେ ଜାତ ତନୟ
ନ ଜାଣିଲେ ରାଜସୁଖ ହୋଇ ରାଜାପୁଅ । ୩୧

ଏତେ କଷ୍ଟ ସହିଲି ମୁଁ ନ ଦେଲି ସମ୍ମାନ
ନିର୍ଲ୍ଲଜ ବଦନେ ପୁଣି କରି ନିବେଦନ
ଏହା କହି ବିଷ୍ଣୁ ମୌନ
ନୀରବ ହୋଇଲେ ଦେବେ ଶୁଣି ଏ ବଚନ । ୩୨

ଏ ସମୟେ ପୃଥ୍ୱୀ ଦେଖା ମିଳିଲେ ସେଠାରେ
ଝରୁଛି ଶୋଣିତ ନବଦ୍ୱାରୁ ସପ୍ରଧାରେ
ମହା ଶୋକେ ବ୍ୟାକୁଳିତ
ଆରତେ ଡ଼ାକିଲେ ରଖ ରଖ ଜଗନ୍ନାଥ । ୩୩

କାଳେ କାଳେ ଦୁଃଖ ମୋର କରିଅଛ ଦୂର
ସଙ୍କଟ ସିନ୍ଧୁରେ ତୁମ୍ଭେ ଅଟ କର୍ଣ୍ଣଧାର
ହିରଣାକ୍ଷ୍ୟ ନେଲା ହରି
ବରାହାବତାରେ ଉଦ୍ଧାରିଲ ବସୁନ୍ଧରା । ୩୪

ବଳିରାଜା ପୃଥ୍ୱୀ ଦାନ କରିବା କାଳରେ
କୂଟେ ଦାନ ନେଇଗଲ ବାମନାବତାରେ
ଏବେ ସୃଷ୍ଟି ଯାଏ ନାଶ
ମହାପାପ ଭରା ଆସି କରିଲାଣି ଗ୍ରାସ । ୩୫

ତୁମ୍ଭର ସନ୍ତାନେ ସୁଖ ଭୋଗରେ ଉନ୍ମତ୍ତ
ନ ମାନିଲେ ନ୍ୟାୟାନ୍ୟାୟ ଭୁଲିଗଲେ ପଥ
ସର୍ବେ ନିଷ୍ଠୁର ହୋଇଲେ
ଅପକର୍ମ ମାନ କରି ଅଧର୍ମ ଅର୍ଜିଲେ । ୩୬

ରାଜ୍ୟର ଶାସନ କର୍ତ୍ତା ହେଲେ ଦୁଷ୍ଟନର
ପ୍ରଜାସ୍ୱାର୍ଥ ଭୁଲି ନିଜ ସ୍ୱାର୍ଥରେ ବିଭୋର
କରନ୍ତି ପ୍ରଜାପୀଡନ
ଦିନୁଦିନ ଅତ୍ୟାଚାର କ୍ରମେ ବର୍ଦ୍ଧମାନ । ୩୭

ଧର୍ମ ଓ ନ୍ୟାୟ ମାର୍ଗର ବିରୁଦ୍ଧା ଚରଣ
ପତ୍ନୀ ଠାରୁ ପତି, ପିତା ମାତାଠୁଁ ସନ୍ତାନ
ନେଇ କରନ୍ତି ନିଧନ
ଧନ-ଜୀବନ-ଯୌବନ ସକଳ ବିପନ୍ନ । ୩୮

ଯେଉଁଠାରେ ଥିଲା ସ୍ନେହ-ଶାନ୍ତି-ମୈତ୍ରୀ-ପ୍ରୀତି
ସେଠାରେ ଘୃଣା ଅସୂୟା କରୁଛି ରାଜୁତି
କୌଶଳେ ଶାସକ ଗଣ
ପ୍ରଜା ସ୍ୱାଧୀନତା କରୁଅଛନ୍ତି ହରଣ । ୩୯

ଧର୍ମ ବିଶ୍ୱାସ କ୍ରମଶଃ ହେଲାଣି ବିନାଶ
ଦେବ-ମନ୍ଦିର-ବିଗ୍ରହ - ମଠମାନ ଧ୍ୱଂସ
ଧ୍ୱଂସମୁଖୀ ସାରା ବିଶ୍ୱ
ଦୁଷ୍ଟ ନାଶି ମହୀଭରା କରନ୍ତୁ ଉଶ୍ୱାସ । ୪୦

ଏହା କହି ପୃଥ୍ୱୀ ଦେବୀ ହୋଇଲେ ମୋଉନ
ବୋଲୁଛନ୍ତି ବେଦବର ଶୁଣ ନାରାୟଣ
ଆମ୍ଭ ଜୀବନ ବିପନ୍ନ
ଆଶ୍ରିତରେ ଅଭିମାନ କର ଅକାରଣ । ୪୧

ରାମ ଅବତାରେ ଦୁଃଖ ପାଇଛ ଆପଣ
ରଙ୍ଗା ଅବତାରେ ତାହା ହୋଇବ ପୂରଣ
ସ୍ୱର୍ଗ ଛାଡ଼ି ସୁରଗଣେ
ଜାତ ହେବେ ଗୋପପୁରେ ସେବକର ପଣେ । ୪୨

ଯମୁନା ତଟିନୀ ତଟେ ନୀପ ତରୁ ତଳେ
ସ୍ୱର୍ଗରୁ କୋଟିଏ ଗୁଣେ ସୁଖ ତହିଁ ମିଳେ
ତହିଁ ସକଳ ପଦାର୍ଥ
ଯୋଗାଡ଼ କରି ଅଛନ୍ତି ଦେବ ସୁରନାଥ । ୪୩
ଋଷୀମାନେ ଜନ୍ମିଛନ୍ତି ଗୋପୀ ରୂପେ ତହିଁ
ସେମାନଙ୍କୁ ମୁଖ ଦିଅ ଗୋପପୁରେ ତହିଁ
ତ୍ରେତା ଯୁଗେ ପ୍ରଭାକର
ଠାରୁ ଦୁଗ୍ଧ ପାନ କରି ଦେଇଅଛ ବର । ୪୪
ନନ୍ଦ ନାମେ ପ୍ରଭାକର ଗୋପପୁରେ ଜାତ
କୃଷ୍ଣାବତାରେ ହୋଇବେ ସେ ପାଳକ ତାତ
ଜାତ ହୋଇ ମଥୁରାରେ
ବାଲ୍ୟଲୀଳା ଆଚରିବ ରହି ଗୋପପୁରେ । ୪୫
ରାମ ଅବତାରେ ପ୍ରିୟ ଭକ୍ତ ଜାମ୍ବବାନ
ମଲ୍ଲଯୁଦ୍ଧ କରିବାକୁ ବଳାଇଲା ମନ
ବର କରିଛ ପ୍ରଦାନ
ଦ୍ୱାପର ଯୁଗରେ ତାହା ହୋଇବ ପୂରଣ । ୪୬
ଜାମ୍ବବାନ କନ୍ୟା ନାମ ଅଟେ ଜାମ୍ବବତୀ
କନ୍ୟା ବିଭା ଦେବାପାଇଁ ମନେ ଥିଲା ଚିନ୍ତା
ମାତ୍ର ଏକ ପତ୍ନୀ ବ୍ରତ
ପାଳିବାରୁ ଜାମ୍ବବାନ ରହିଲେ ବିରତ । ୪୭

ଅବବାହ୍ମ ରହି କନ୍ୟା କାଟୁଅଛୁ କାଳ
କୃଷ୍ଣାବତାରେ ଅଭିଷ୍ଟ ହୋଇବ ସଫଳ
କାମଦେବ କଂସ ଜନ୍ମ
ପ୍ରଭୁ ହାତେ ମରି ଜାତ ହୋଇବ ପ୍ରଦ୍ୟୁମ୍ନ । ୪୮

ତୁମ୍ଭର ସମ୍ମୁଖେ ହେବ ଭାରତ ସମର
ପୃଥ୍ୱୀ ଭାର ନିବାରିବ ଶଙ୍ଖ ଚକ୍ରଧର
ଦୁଷ୍ଟ ଦଳନ କରିବ
ଭଗବତ ଗୀତା ଧର୍ମ ପୃଥ୍ୱୀରେ ସ୍ଥାପିବ । ୪୯

ପବିତ୍ର କ୍ଷତ୍ରିୟ ଧର୍ମ ସ୍ଥାପନ ନିମନ୍ତେ
କୃଷ୍ଣ ଅବତାର ହେବ ପବିତ୍ର ଭାରତେ
ଶାଲ୍ୱ ଶିଶୁପାଳ ନାମେ
ସମ୍ଭୂତ ଜୟ ବିଜୟ କ୍ଷତ୍ରିୟ ସମ୍ଭ୍ରମେ । ୫୦

ସୁଦର୍ଶନ ଚକ୍ରେ ମରି ହେବେ ଶାପ ମୁକ୍ତ
ଦ୍ୱାରପାଳ ହେବେ ଆସି ଗୋଲକ ବୈକୁଣ୍ଠ
ତେଣୁ କୃଷ୍ଣ ଅବତାର
ଚକ୍ର ଧରି ଦୁଷ୍ଟ ଗଣେ କରିବ ସଂହାର । ୫୧

ବାଳି ନନ୍ଦନ ଅଙ୍ଗଦେ ଦେଇଅଛି ବର
ପିତୃହତ୍ୟା ପ୍ରତିଶୋଧ ନେବାକୁ କୁମର
ଜନ୍ମିଛି ଜରା ଶବର
ଆପଣାର ସତ୍ୟ ବାକ୍ୟ ଗୋଟି ରକ୍ଷାକର । ୫୨

ଥାଉ ଆଉ କଥାମାନ ରହିଛି ବହୁତ
ସେହି ସବୁ କାର୍ଯ୍ୟମାନ ହେବ ସମ୍ପାଦିତ
କୃଷ୍ଣ ଅବତାର ସାର
ମୋକ୍ଷ ହୋଇଯିବେ ଦେଖି ପାପି ଦୁରାଚାର । ୫୩

ଗୋଲକେଶ୍ୱରୀ ଶ୍ରୀରାଧା ହୋଇଛନ୍ତି ଜାତ
ଗୁଜ୍ଜରୀ ରାସ ଦ୍ୱାପରେ ହେବ ପ୍ରବୃତ୍ତ
ତପୀମାନେ ଗୋପୀ ରୂପରେ
ଜନ୍ମିଛନ୍ତି ଅଙ୍ଗ ସଙ୍ଗ ଲଭିବା ଆଶାରେ । ୫୪

ବ୍ରହ୍ମାଙ୍କ ବଚନ ଶୁଣି ଲକ୍ଷ୍ମୀ ଦେବୀ ଯାଇଁ
ଜାଣିଲେ ଦେବଙ୍କ ମନେ ମାୟା ତଳେ ନାହିଁ
ବୋଇଲେ ଶ୍ରୀ ନାରାୟଣ
ଶୁଣ ଆହେ ସୁରପତି ଆମ୍ଭର ବଚନ । ୫୫

"ସଂସାର ଜନଙ୍କ ଦୁଃଖେ ସଦାକାଳେ ଦୁଃଖୀ
ତେଣୁ ନରତନୁ ଧରୁ ବୈକୁଣ୍ଠ ଉପେକ୍ଷି
ଅଜାତ ଅଦେହ ହୋଇ
ରକ୍ତ ମାଂସ କାୟାଧରୁ ବିଶ୍ୱ ହିତ ପାଇଁ । ୫୬

ଯେ ଯାହା ନିୟୋଗେ କର କାର୍ଯ୍ୟ ସମ୍ପାଦନ
ନର୍ଭପୁରେ ମର୍ତ୍ତ୍ୟପୁରେ କର ବିଚରଣ
ଦେବକୀ ଦେବୀ ଗର୍ଭରେ
ଜାତ ହେବୁ ବେନି ଭାଇ ମାନବ ଶରୀରେ । ୫୭

ସର୍ବଜୀବ ଅଂଶ ବେନି ନର କଳେବର
ଯଶମୟ ଯଦୁବଂଶେ ହେବୁ ଅବତାର"
ଶ୍ରୀ ମୁ ଖ ରୁ ଆ ଜ୍ଞା ପା ଇ
ଫେରିଲେ ଦେବତାଗଣ ପ୍ରଣିପାତ ହୋଇ । ୫୮

ଅଣଷଠି ପଦେ ଗୀତ ଗାଏବୁଲ୍ଦାସ
ଶରଣ ରକ୍ଷଣ ସ୍ୱାମୀ କର ମଲାଙ୍କଶ
କର ବାରେ ପରିତ୍ରାଣ
କୃଷ୍ଣମାତା କାନ୍ତ ଆହେ କମଳ ଲୋଚନ ।୫୯

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଦେବଗଣଙ୍କ ପ୍ରାର୍ଥନା ବର୍ଣ୍ଣନେ
ନାମ ଚତୁର୍ଦ୍ଦଶ ଅଧ୍ୟାୟ ସମାପ୍ତଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



**ବୋଲ -**

ମନ ବାଇରେ
କରନ୍ତୁ ଶ୍ରୀହରି ଦର୍ଶନ

ରଙ୍ଗା ଅଧରରେ ମନ୍ଦେ ମନ୍ଦେ ହସି
କହନ୍ତି ରାଧା ରମଣ
ମୋର ଐଶ୍ୱରିକ ରୂପ ଯେ ଦେଖନ୍ତି
ଜନମ ତାହାର ଧନ୍ୟ ।୧
ଶଙ୍କର ଧରନ୍ତି ସଂହାର ଶକତି
ବ୍ରହ୍ମା ଯେ ଉତ୍ପତ୍ତି ଶକ୍ତି
ଦେବଗଣେ ବନ୍ଧ ଶକତି ଧରିଣ
ମୋତେ ଚିହ୍ନ ନ ପାରନ୍ତି ।୨
ମାତ୍ର ମୋ ଭକତ ଭକତି କରଇ
ଭକ୍ତିରେ ନ ଥାଏ ମଳି
ଭକତ ଭାବରେ ଭୋଳ ହୋଇ ମୁହିଁ
ଖେଳୁଥାଏ ଲୁଚକାଳି ।୩
ଭକତ ଲୁଚିଲେ ଧରି ମୁଁ ପାରଇ
ସେ ମୋତେ ନ ପାରେ ଧରି
ଆପେ ଆପେ ଆସି ଧରା ଦିଏ ମୁହିଁ
ଆପଣା ସ୍ୱରୂପ ଧରି ।୪
ଅଚେତାରେ ଜୀବ ପରମ ଭେଟିଲେ
ଥାଏ କିସ ପ୍ରୟୋଜନ
ଜୀବକୁ ଧରିଣ ପରମ ଚଳିବେ
ଦେହ ଅନ୍ତେ ଏକ ଦିନ ।୫
ଚେତା ଦେହ ଭକ୍ତ ଚୈତନ୍ୟ ଜାଗିଲେ
ଭେଟିବ ଶ୍ରୀ ଚଇତନ
ଅନ୍ତରଙ୍ଗ ସଙ୍ଗୀ- ତିନ ସୂତ୍ରେ ପାଇ
ଶ୍ରୀରାଧାକୃଷ୍ଣ ଦର୍ଶନ ।୬



# ପଞ୍ଚଦଶ ଅଧ୍ୟାୟ
# ଦେବକୀ ବିବାହ
## ରାଗ - ପଞ୍ଚମଞ୍ଜରୀ

ଶ୍ରୀକୃଷ୍ଣ ଚରିତ ମାନସ ଶୁଣ ସୁଜନ
ଝରୁଛି ଅମିୟ ରସ ନିର୍ଝର ସମାନ । ୧
ଦେବକୀ ଦେବୀ ବିବାହ ବର ବସୁଦେବ
ମଥୁରା ପୁରେ ଲଗିଛି ଆନନ୍ଦ ଉତ୍ସବ । ୨
ଶଙ୍ଖ, ଭେରୀ, ତୁରୀ, ବଂଶୀ, ମର୍ଦ୍ଦଳ, ମହୁରୀ
ବାଦ୍ୟ ନାଦେ କମ୍ପୁଅଛି ମଥୁରା ନଗରୀ । ୩
ବସୁଦେବ ଓ ଦେବକୀ ବିବାହର ଶେଷେ
ରଥେ ବସି ଯାଉଥିଲେ ମନର ହରଷେ । ୪
ସୁବର୍ଣ୍ଣେ ନିର୍ମିତ ଏକଶତ ଗୋଟି ରଥ
ରତ୍ନ ଭୂଷଣେ ମଣ୍ଡିତ ହସ୍ତୀ ଏକ ଶତ । ୫
ସହସ୍ର ସଂଖ୍ୟାରେ ଅଶ୍ୱାରୋହୀ ସୁସଜ୍ଜିତ
ଶୋଭାଯାତ୍ରା କରୁଥିଲେ ସଇନ୍ୟ ସାମନ୍ତ । ୬
ମଣି, ମାଣିକ୍ୟ, ବୈଦୁର୍ଯ୍ୟ, ସ୍ୱର୍ଣ୍ଣ ଆଭୂଷଣ
ନବବସ୍ତ୍ର ପରିଧାନେ ସୁନ୍ଦରୀ ନାରୀଗଣ । ୭
ମଙ୍ଗଳ ଉତ୍ସବେ ସର୍ବେ ହୋଇଛନ୍ତି ମତ୍ତ
ସୁଲକ୍ଷଣା ନାରୀମାନେ ଗାଉଛନ୍ତି ଗୀତ । ୮
ଏମନ୍ତ ସମୟେ ଆସି ମହର୍ଷି ନାରଦ
ମିଳିଲେ କଂସ ସମ୍ମୁଖରେ କରି ବୀଣା ନାଦ । ୯
ନାରଦ ମୁନିଙ୍କୁ ଦେଖି କଲା ନମସ୍କାର
ଆସନେ ବସିଲେ ଋଷି ପାଇଣ ଆଦର । ୧୦
ପୁଛେ କଂସାସୁର ମୁନି କେମନ୍ତ ସମ୍ବାଦ ?
ନାରଦ କହିଲେ ତୋତେ ପଡ଼ିଲା ପ୍ରମାଦ । ୧୧

ବିଷ୍ଣୁଙ୍କ ଶରଣାଗତ ହୋଇ ଦେବଗଣ
ସୁନଧି ବୈକୁଣ୍ଠେ କଲେ ଚରଣ ବନ୍ଦନ ।୧୨
ଗୁରୁତର ଅଭିଯୋଗ କରି ଆଗତ
ତୋହର ନିଧନ ପାଇଁ ବିଷ୍ଣୁ ହେବେ ଜାତ ।୧୩
ଦେବଗଣେ ଦେଇଛନ୍ତି ଅଭୟ ବଚନ
ସେକଥା ଶୁଣି ତୋ'ଠାରେ ମିଳିଲି ରାଜନ ।୧୪
ତୋହର ମଙ୍ଗଳ ଚିନ୍ତା କରୁଅଛି ମୁହିଁ
ଅଧର୍ମେ ନ ଦିଅ ମନ ମଥୁରା ନୃସାଇଁ ।୧୫

## କଂସ ଉବାଚ

ଅଟ୍ଟହାସ କରି ଉଚ୍ଚେ କହେ କଂସାସୁର
ଶାନ୍ତିବା ଅଶାନ୍ତି କିଛି ନାହିଁ ମୋ ବିଚାର ।୧୬
ମୋ ଶକ୍ତି ବଳରେ ମୁହିଁ ମହା ବଳିୟାର
କେ ଈଶ୍ୱର ତାହା ପ୍ରତି ଭୟ ନାହିଁ ମୋର ।୧୭
ଦୁର୍ବଳ ରକ୍ଷା କବଚ ଅଟଇ ଧରମ
ଦୁର୍ବଳ ମୁଁ ନୁହେଁ ମୁନି ବହେ ପରାକ୍ରମ ।୧୮
ମୋହର ଯେ ଇଚ୍ଛା ଶକ୍ତି ସେହି ମୋର ଧର୍ମ
ଏହା ବ୍ୟତିରେକେ ଜଣା ନାହିଁ ଅନ୍ୟ ଧର୍ମ ।୧୯
ମୋହର ଏହି ମତକୁ ଲୋକ ସମାଜରେ
ଗ୍ରହଣ କରାଇ ନେବି ଶକ୍ତି ପ୍ରୟୋଗରେ ।୨୦
କାରଣ ମୁଁ ନରପତି ମୋହର ଆଦେଶ
ପ୍ରଜାପକ୍ଷେ ପାଳନୀୟ ଅଟଇ ଅବଶ୍ୟ ।୨୧
ଏହା ବ୍ୟତିକ୍ରମ କଲେ ଶାସ୍ତିର ବିଧାନ
କରିବା ଉଚିତ ମାର୍ଗ ନୃପତିର ଧର୍ମ ।୨୨

## ନାରଦ ଉବାଚ

କଂସ କଥା ଶୁଣି ଋଷି ସ୍ମିତ ହାସ୍ୟ କଲେ
ଅପରିବର୍ତ୍ତନୀୟ ଧର୍ମନୀତି ବୋଇଲେ ।୨୩

ସେଥିରୁ ରକ୍ଷା ପାଇବା କଠିନ ବ୍ୟାପାର
ଧର୍ମରକ୍ଷା ପାଇଁ ବିଷ୍ଣୁ ଧରନ୍ତି ଶରୀର । ୨୪
ବହୁକାଳୁ ରହିଅଛୁ ବହୁ ଅନୁଭୂତ
ଆଖିରେ ଦେଖିଛୁ ବହୁ ନୃପ ପରିଣତି । ୨୫
ତୁମଠାରୁ ବହୁ ପରାକ୍ରମୀ ନରପତି
ମନ୍ଦକର୍ମ କରି ବିଷ୍ଣୁ ହାତେ ମରିଛନ୍ତି । ୨୬
ଦୁଷ୍ଟଙ୍କ ଦଳନ ପାଇଁ ଦେବ ନାରାୟଣ
ଯୁଗେ ଯୁଗେ ନରରୂପ କରନ୍ତି ଧାରଣ । ୨୭
ଅଧର୍ମ ବିନାଶି ଧର୍ମ କରନ୍ତି ସ୍ଥାପନ
ସୃଷ୍ଟିର ନିୟମ ଏହା କେ କରେ ଲଙ୍ଘନ ? ୨୮

## କଂସ ଉବାଚ

ପଚାରିଲା କଂସାସୁର ଆହେ ମୁନିବର
ସନ୍ଦେହ ଆସୁଛି ମନେ ଶୁଣି ତୁମ୍ଭ ଗିର । ୨୯
ବିଷ୍ଣୁ ତ ଚିନ୍ମୟ ବ୍ରହ୍ମ ଚିର ଅବିନାଶୀ
ସକଳ ରହିତ ସର୍ବ ହୃଦୟ ନିବାସୀ । ୩୦
ଯେଉଁ ଭଗବାନ ସ୍ୱୟଂ ଅଚ୍ୟୁତ, ଅନନ୍ତ
ଅଣାକାର ପରଂବ୍ରହ୍ମ ଅଲେଖ, ଅବ୍ୟକ୍ତ । ୩୧
ଅନଙ୍ଗ, ଅରୂପ ବୋଲି ଯାହାଙ୍କୁ ବୋଲନ୍ତି
ଅଜ ହୋଇ ଜଠରରୁ ଜନ୍ମିବେ କେମିତି ? । ୩୨
ସେ ପୁଣି ଧରିବେ କିମ୍ପା ମାନବ ଶରୀର
ଅମର ହୋଇ ମରିବେ ଜନ୍ମି ମର୍ତ୍ତ୍ୟପୁର ? । ୩୩
ସେଥିର କାରଣ ମୋତେ କହ ମୁନିବର
ଶ୍ରବଣେ ମନୁ ସଂଶୟ ଯୋଇଯିବ ଦୂର ? । ୩୪

## ନାରଦ ଉବାଚ

ବୋଲନ୍ତି ନାରଦ ମୁନି ଶୁଣ କଂସରାଜ
ସୃଷ୍ଟି ସଂଚରଣ କଥା ପୂରାଣ ଆଖ୍ୟାନ । ୩୫

ବ୍ରହ୍ମ ପ୍ରଳୟର ଅନ୍ତେ ବ୍ରହ୍ମ ନିରଞ୍ଜନ
ବିଚାରିଲେ ନବ ସୃଷ୍ଟି କରିବେ ସୃଜନ । ୩୬
କଳ୍ପଣା କରନ୍ତେ ସୃଷ୍ଟି ମଧୁକଇଟଭ
ନାମେ ଏକ ଦୈତ୍ୟ ହେଲା ଅଙ୍ଗରୁ ସମ୍ଭବ । ୩୭
ପ୍ରଳୟର ଜଳ ତାକୁ ଆଣ୍ଠୁଏ ହୋଇଲା
ନିର୍ଭୟେ ଭ୍ରମଣ କରି ସଂଗ୍ରାମ ମାଗିଲା । ୩୮
ମହା ବିଷ୍ଣୁଙ୍କ ସହିତ ହୋଇଗଲା ଭେଟ
ସଂଗ୍ରାମେ ମାତିଲେ ବେନି କଷ୍ଟ କାଳଗତ । ୩୯
ମଧୁକୈଟଭ ଦୈତ୍ୟକୁ ମର୍ଦ୍ଦନ କରିଣ
ତା' ମେଦ ମଜାରୁ ମେଦିନୀ କଲେ ସୃଜନ ।୪୦
ମେଦିନୀ ସୃଷ୍ଟି କରିଣ ଦେବ ନାରାୟଣ
ବ୍ରହ୍ମାଙ୍କୁ କହିଲେ କର ସୃଷ୍ଟି ସଂଚରଣ । ୪୧
ଆଜ୍ଞାପାଇ ବେଦବର ବେଦ ଜ୍ଞାନ ବଳେ
ସୃଷ୍ଟି ସରଜନା କଲେ ଅବନୀ ମଣ୍ଡଳେ । ୪୨
ସୃଷ୍ଟିର ପ୍ରଥମ କଳ୍ପରେ ପ୍ରଥମମନୁ
ଜାତହୋଇ ଜ୍ଞାତ ହେଲେ ସ୍ୱୟଂ ଭୁବମନୁ ।୪୩
ତାଙ୍କ ପତ୍ନୀ ଶତରୂପା ନାମରେ ବିଦିତ
ସଂସାର ନ କରି ଦେଲେ ବ୍ରହ୍ମ ପାଦେ ଚିତ୍ତ ।୪୪
ନିଟକାରେ ଲୟ ରଖି କଲେ ଯୋଗାସନ
ଶରୀର କ୍ଷୀଣ ହୋଇଲା କ୍ରମେ ଦିନୁ ଦିନ । ୪୫
ମନମୁନ ବିଷ୍ଣୁପାଦେ କରିଲେ ଅର୍ପଣ
ତୋଷେ ବରଯାଚ ଦେଲେ ଦେବ ନାରାୟଣ ।୪୬
ମୋକ୍ଷରବର ନ ମାଗିଣ ମାଗିଲେ କୁମର
ବୋଇଲେ ତୁମ୍ଭେ ହୋଇବ ତନୟ ଆମ୍ଭର ।୪୭
ତଥାସ୍ତୁ କହିଣବିଷ୍ଣୁ ଅନ୍ତର୍ଦ୍ଧାନ ହେଲେ
ପତିପତ୍ନୀ ବେନି ଜନ ସଂସାର କରିଲେ । ୪୮
ତିନି କନ୍ୟା ଦୁଇ ପୁତ୍ର ହୋଇଲେ ସମ୍ଭୂତ
ଆକୃତି, ପ୍ରସୂତି, ଦେବହୁତି ନାମେ ଖ୍ୟାତ ।୪୯

ପ୍ରିୟବ୍ରତ, ଉତ୍ତାନପାଦ ସୁତଙ୍କ ନାମ
'ପୃଷ୍ଣି ଗର୍ଭ' ନାଶେ ସ୍ୱସ୍ତୁ ହୋଇଲେ ଜନମ ।୫୦
କିଛୁ କାଳ ସୁଖଭୋଗ କଲା ପରେ ଯାଇ
ବସିଲେ ଯୋଗାସନରେ ପତିପତ୍ନୀ ଦୁଇ ।୫୧
ଏକଦା ଯେ ପଥେ ଦୈତ୍ୟ ଦଳ ଯିବାକାଳେ
ପତିପତ୍ନୀ ଭକ୍ଷିବାକୁ ଦେଖଣ ଧାଇଁଲେ ।୫୨
ଆକୁତି ଗର୍ଭୁ ସମ୍ଭୂତ ଯଜ୍ଞ ଭଗବାନ
ସେଠାରେ ପହଞ୍ଚି ରକ୍ଷା କଲେ ତାଙ୍କ ପ୍ରାଣ ।୫୩
ଯଜ୍ଞ ଭଗବାନ କାର୍ଯ୍ୟେ ଦେବେ ତୁଷ୍ଟ ହୋଇ
ପ୍ରାର୍ଥନା କଲେ ଯଜ୍ଞଙ୍କୁ ଇନ୍ଦ୍ର ହେବା ପାଇଁ ।୫୪
ଭଗବାନ ଯଜ୍ଞ ତାହା ସ୍ୱୀକାର କରିଲେ
ସ୍ୱର୍ଗପୁରେ ଇନ୍ଦ୍ର ହୋଇ ଜଗତ ପାଳଲେ ।୫୫
ଯଜ୍ଞପୁତ୍ରେ ଗଣଦେବ ନାମରେ ବନ୍ଦିତ
ଇନ୍ଦ୍ରଙ୍କ ସେନାନୀ ତାଙ୍କ ବଳ ଅପ୍ରମିତ ।୫୬
ସ୍ୱର୍ଗେ ଯଜ୍ଞ ଇନ୍ଦ୍ର ହୋଇ ଦେବଋଷି ଗଣେ
ସଚେତନ କରାଇଲେ କର୍ତ୍ତବ୍ୟ ବିଧାନେ ।୫୭
ସୃଷ୍ଟି ଶାସନ ଖସଡ଼ା ହୋଇଲା ପ୍ରସ୍ତୁତ
ସେ ଖସଡ଼ା ଗୋଟି ସଦା ଅପରି ବର୍ତ୍ତିତ ।୫୮
ଅଦ୍ୟାବଧି ଯେତେ ମନୁ ମାନବା ଆସିଲେ
ଯଜ୍ଞକୃତ ଖସଡ଼ାକୁ ମାନିଣ ଚଳଲେ ।୫୯
ଏବେ ଶୁଣ ଜୀବସୃଷ୍ଟି ହୋଇଲା ଯେମନ୍ତ
ସ୍ୱୟମ୍ଭୁବ, ଶତରୂପା ଜନମ ବୃତ୍ତାନ୍ତ ।୬୦
ପରବର୍ତ୍ତୀ କାଳେ ସୃଷ୍ଟି ସଚରଣ ପାଇଁ
ଋଷିଅଂଶେ ଜାତ ହେଲେ ପତିପତ୍ନୀ ଦୁଇ ।୬୧
ମରୀଚ ଋଷିଙ୍କ ପତ୍ନୀ ସୁଖଦା ଗର୍ଭରେ
ସ୍ୱୟଂଭୁବ ଜାତ ହେଲେ କଶ୍ୟପ ନାମରେ ।୬୨
ଦକ୍ଷ ପ୍ରଜାପତି ଅଂଶେ ଶତରୂପା ଜାତ
ଷାଠିଏ କନ୍ୟାଙ୍କ ମଧ୍ୟେ ଅଷ୍ଟମ ସେ ଜ୍ୟେଷ୍ଠ ।୬୩

କଶ୍ୟପଙ୍କୁ ତେର କନ୍ୟା ଦେଇ ପ୍ରଜାପତି
କହିଲେ ଏମାନେ ହେଲେ ତୁମ୍ଭ ଧର୍ମପତ୍ନୀ । ୬୪
ଏମାନଙ୍କୁ ବିଭା କରି ସୃଷ୍ଟି ସଂଚରଣ
କରହେ କଶ୍ୟପ ଋଷି ମଙ୍ଗଳ କାରଣ । ୬୫

## କଶ୍ୟପ ଉବାଚ

ତେର କନ୍ୟା ଦେଖି ନେଲେ ମରୀଚ ନନ୍ଦନ
କହିଲେ ମୋହର ଚଳ ଏବେ ଅଛି ପଣ । ୬୬
ସନ୍ନ୍ୟାସ ଦୀକ୍ଷାରେ ଥିବ ନ କରି ସଂସାର
ଏଥିକୁ ହେ ପ୍ରଜାପତି କରନ୍ତୁ ବିଚାର । ୬୭

## ପ୍ରଜାପତି ଉବାଚ

ନିବେଦିଲେ ପ୍ରଜାପତି ହେ କଶ୍ୟପ ଶୁଣ
ପୁତ୍ର ଉପୁଯାଇ ଯିଏ ଭଜେ ନାରାୟଣ । ୬୮
ଆପଣାର ଆତ୍ମାରୁ ଆତ୍ମାକୁ ଜାତ କରେ
ସେ ଆତ୍ମାକୁ ପାଳେ ପୁତ୍ରକନ୍ୟା ରୂପ ଧରେ । ୬୯
ସେହି ମହାତ୍ମା ମାନଙ୍କୁ କହି ମହାପତି
ଆତ୍ମାରୁ ଆତ୍ମା ସଚରି ସୃଷ୍ଟି ସରଜନ୍ତି । ୭୦
ଭାରିଯା ଥିବାର ଲୋକ ସନ୍ଥ ବୋଲି ଜାଣ
ତାହାଙ୍କୁ ସରି ନୁହଁନ୍ତି ବ୍ରହ୍ମଚାରୀ ଗଣ । ୭୧
ଗୃହ ସଂସାରରେ ଥାଇ ବିଷ୍ଣୁ ସେ କରେ
ଗୋବିନ୍ଦେ ଭକତି କଲେ ବୈଷ୍ଣବରୁ ବଳେ । ୭୨
କରେ କରୁଥାଏ କାମ ମୁଖେ ହରିନାମ
ଏ ବେନି କର୍ମ ଅଟଇ ଗୃହସ୍ଥ ଧରମ । ୭୩
ଆପେ ଉପବାସ ରହି ସନ୍ତାନ ପୋଷଇ
ତ୍ୟାଗ ଧର୍ମ ଗୋଟି ଗୃହସ୍ଥର କର୍ମ କହି । ୭୪
ଭାରିଯା କରିଲେ ଯେବେ ପତି ପଣ ଯାନ୍ତା
ଶିବ କାହିଁକି ଶିବାକୁ ବିବାହ କରନ୍ତା ? । ୭୫

ବ୍ରହ୍ମାଠାରୁ କହ ବଡ ବୈଷ୍ଣବ କେ ଅଛି
ଗୁରୁମୁଖେ ଗୁରୁବେଦ ସର୍ବଦା ଘୋଷୁଛି । ୭୬

ଗାୟତ୍ରୀ, ସାବିତ୍ରୀ, ନାମେ ଦୁଇପତ୍ନୀ ତାର
ସେମାନଙ୍କୁ ଧରି ବ୍ରହ୍ମା କରନ୍ତି ସଂସାର । ୭୭

ତୁ ଯାହାକୁ ଜପୁଅଛୁ ନାରାୟଣ ଜାଣି
ଲକ୍ଷ୍ମୀ, ସରସ୍ୱତୀ ନାମେ ତାଙ୍କ ଦୁଇ ପତ୍ନୀ । ୭୮

ଏସବୁ ଦୃଷ୍ଟାନ୍ତ ଥାଉ ଆମ୍ଭ ବୋଲକର
କନ୍ୟାଙ୍କୁ ବିବାହ କରି ଜୀବ ସୃଷ୍ଟି କର । ୭୯

ଜୀବ ସୃଷ୍ଟି କରିବାକୁ ଜନ୍ମିଛନ୍ତି ନାରୀ
ବୁଝିଲେ ତାଙ୍କ ପରିକେ ନାହିଁ ଉପକାରୀ । ୮୦

ସକଳ ସୌନ୍ଦର୍ଯ୍ୟମାନ ଏକତ୍ର ମନ୍ଥିଣ
ନାରୀ ଅଙ୍ଗ ଗୋଟି ଧାତା କରିଲେ ଭିଆଣ । ୮୧

ମୋହିନୀ ଶକତି ସେଣୁ ନାରୀ ଠାରେ ଅଛି
ବ୍ରହ୍ମା, ବିଷ୍ଣୁ-ଶିବ ମଧ୍ୟ ନ ପାରନ୍ତି ମୂର୍ଚ୍ଛି । ୮୨

ପତି ଠାରେ ପ୍ରଭୁନାମ ଗୋଟି ପବର୍ତ୍ତଇ
ଏଣୁ ପତ୍ନୀର ଅଙ୍ଗକୁ ପତି ଯେ ରମଇ । ୮୩

ପୁରୁଷର ଉପଭୋଗ୍ୟ ହେଲେ ମଧ୍ୟ ନାରୀ
ପୁରୁଷ ଦେଖଇ ତାକୁ ସଦା ବନ୍ଧ କରି । ୮୪

ମାତା-ପତ୍ନୀ-ଭଗ୍ନୀ-କନ୍ୟା ଧରେ ରୂପ ଚାରି
ଏଣୁ ସଦା ମାନନୀୟା ଜଗତରେ ନାରୀ । ୮୫

ଆତ୍ମଜ୍ଞାନ ବଳେ ଯେହୁ ଆତ୍ମାକୁ ରମଇ
ଆତ୍ମାରୁ ଆତ୍ମାକୁ ଜାତ କରି ସେ ପାରଇ । ୮୬

ଆତ୍ମାରାମ ଚିହ୍ନି କରେ ଆତ୍ମୀୟତା ଭାବ
ବ୍ରହ୍ମ ହେଲେ ମଧ୍ୟ ସେହି ପରମ ବୈଷ୍ଣବ । ୮୭

ଶୁଣହେ କଶ୍ୟପ ଋଷି ସୃଷ୍ଟିର ବିଧାନ
ତୁମ୍ଭର ଔରସୁ ଜାତ ହେବେ ଜୀବଗଣ । ୮୮

ହରି-ହର-ବ୍ରହ୍ମା ଅଂଶେ ବିଭୂତି ଜନ୍ମିବେ
ଇନ୍ଦ୍ର-ଆଦିତ୍ୟ-ବରୁଣ ନାମକୁ କହିବେ । ୮୯

ପବନ ମଧ୍ୟ ତୁମ୍ଭର ହୋଇବେ ନନ୍ଦନ
ସର୍ବଜୀବ ହୃଦେ ବସି ବୋଲାଇବେ ପ୍ରାଣ । ୯୦
ତେବେ ଯାଇଁ ଜୀବଗଣେ ଧରିବେ ଜୀବନ
ସୁନ୍ଦର ଦିଶିବ ପୃଥ୍ୱୀ ଆମ୍ଭେ ହେବୁ ଧନ୍ୟ । ୯୧
ଦେବ-ଦାନବ-ମାନବ ହୋଇବେକ ଜାତ
ଜୀବମନ୍ତ୍ର ହେବ ବିଶ୍ୱ ଧ୍ୱନି ମୁଖରିତ । ୯୨
ବ୍ରହ୍ମାଙ୍କ ବଚନେ କଶ୍ୟପ ସମ୍ମତ ହେଲେ
ତେର କନ୍ୟା ବିଭାହୋଇ ସଂସାର ରଚିଲେ । ୯୩
ଅଦିତି, ଦିତି, ଦନୁ, ବିନତା, କଦ୍ରୁ, କାଷ୍ଠା
ଇଳା, ତାମ୍ରା, ତିମି, ମନୁ, ସୁରମା, ଅରିଷ୍ଟା । ୯୪
ସୁରଭି ମିଶାଇ ଏହି ତେର କନ୍ୟା ଜଣ
କଶ୍ୟପଙ୍କ ତେର ପତ୍ନୀ ସୃଷ୍ଟିର କାରଣ । ୯୫
କେଉଁ ନାରୀ ଗର୍ଭୁ କେଉଁ ଜୀବ ହେଲେ ସୃଷ୍ଟି
ସେହି କଥା କହୁ ଅଛୁ ଶୁଣ ଗୋଟି ଗୋଟି । ୯୬
ଅଦିତି ଗର୍ଭରୁ ବିଷ୍ଣୁ ଅଂଶେ ଇନ୍ଦ୍ର ଜନ୍ମ
ହସ୍ତ ପାଦେ ଶଙ୍ଖ ପଦ୍ମ ନିଧି ଶୋଭାବନ । ୯୭
ଇନ୍ଦ୍ର ପଦ ଠାରୁ ନାହିଁ ବଡ଼ ଅଧିକାର
ଯାହାର ଆଜ୍ଞାରେ ଚଳେ ଚତୁର୍ଦ୍ଦଶପୁର । ୯୮
ଆଦିତ୍ୟ ବରୁଣ ବେନି ତାହାଙ୍କ ସୋଦର
ସ୍ୱର୍ଗ, ଶୂନ୍ୟ, ସଲିଳରେ ହୋଇଲେ ନୃବର । ୯୯
ଅ ଦି ତି ର ତନପୁସ ମହା ବଳୟାର
ତନପୁର ଅଧିକାର ପାଇଲେ କୁମର । ୧୦୦
ସଙ୍କଟେ କହିଲେ ନାରଦ ହେ କଂସ ଶୁଣ
ସୁରପତି ଇନ୍ଦ୍ର ଦେବ ହିଂସା-ଈର୍ଷା-ପୂର୍ଣ୍ଣ । ୧୦୧
ତା'ଠାରୁ ଅଧିକ କେହି ହେଲେ ବଳବାନ
କୂଟକପଟରେ ନେଇ ଯାଏ ତା ଜୀବନ । ୧୦୨
ଦୃଷ୍ଟାନ୍ତ ଦେଇ କହୁଛି କରତା ଶ୍ରବଣ
ସପତ୍ନୀ ଦିତି ଗର୍ଭେ ରହିଲେ ପବନ । ୧୦୩

ଇନ୍ଦ୍ର ଠାରୁ ଶତ ଗୁଣେ ବାୟୁ ବଳବାନ
ଏ କଥା ଜାଣି ତା ମାତା ବିଷାଦିତ ମନ ।୧୦୪
ପୁତ୍ର ପାଶେ ଯାଇ ମାତା ଛିଦ୍ର ବତାଇଲେ
ଶତ୍ରୁ ନାଶ ପାଇଁ ଇନ୍ଦ୍ର ଗର୍ଭରେ ପଶିଲେ ।୧୦୫
ଗର୍ଭେ ସାତମାସ ଶିଶୁ ସାତ ଖଣ୍ଡ କଲେ
ନ ଛିଣ୍ଡନ୍ତେ ପ୍ରତିଖଣ୍ଡ ସାତ ଖଣ୍ଡ କଲେ । ୧୦୬
ଅଣଚାଶ ଖଣ୍ଡ ହୋଇ ନ ହେଲା ନିଃଶେଷ
କ୍ରୋଧରେ କହିଲା ଶିଶୁ ଶୁଣ ସୁରଶ୍ରେଷ୍ଠ । ୧୦୭
ବିନା ଦୋଷେ ଅସ୍ତ୍ରେ ମୋତେ କରିଲୁ ଛେଦନ
ଅଧିକ କାଟିଲେ ଆଉ ଯିବନି ଜୀବନ । ୧୦୮
ବାୟୁ ବାକ୍ୟେ ଭୟ ପାଇ ଇନ୍ଦ୍ର ପଳାଇଲେ
ଅଣଚାଶ ମୂର୍ତ୍ତି ଧରି ପବନ ଜନ୍ମିଲେ । ୧୦୯
ଦେଖ ସପତ୍ନୀ ବାଦେ ଅଦିତି ଜନନୀ
ପୁତ୍ର ହସ୍ତେ ଦିତିପୁତ୍ରେ ପକାଇଲେ ହାଣି । ୧୧୦
ମାତା ପୁତ୍ର ଦେବଙ୍କର ସମାନ ଚରିତ୍ର
ପରୀକ୍ଷା ଦେଖ ତାଙ୍କ ଶରୀର କର୍ମିତ ।୧୧୧
ଅତି ସ୍ୱାର୍ଥପର ଅଟେ ଅଦିତି ସନ୍ତତି
ଅନ୍ୟର ପ୍ରଗତି ଦେଖି ନ ସହେ ତା ଚିତ୍ତ ।୧୧୨
ନାରଦ କହିଲେ ଶୁଣ ବୀର କଂସାସୁର
କଶ୍ୟପ ତୃଷ୍ଣାୟୁ ପତ୍ନୀ କଦ୍ରୁ ନାମ ତାର । ୧୧୩
ସେ ଦେଖିଲା ଦିତି ପୁତ୍ର ଜନ୍ମିଲା ସମୀର
ମହାବଳ ବନ୍ତ ହୋଇ ବ୍ୟାପିଲା ସଂସାର । ୧୧୪
ଏହା ଦେଖି କଦ୍ରୁ ବୋଲେ ଦିଅ ହେ ନନ୍ଦନ
ଦିତିର ପୁତ୍ରକୁ ଖାଇ ଧରିବ ଜୀବନ । ୧୧୫
କଶ୍ୟପ କହିଲେ ବାୟୁ ନ ହୋଇବ କ୍ଷୟ
ବାୟୁକୁ ଭକ୍ଷି ବଞ୍ଚିବେ ଅବଶ୍ୟ ତୋ ପୁଅ । ୧୧୬
ଏହା କହିଣ କଶ୍ୟପ ରତି କ୍ରୀଡା କଲେ
କଦ୍ରୁ ଗର୍ଭୁ ସର୍ପଗଣେ ଜନମ ହୋଇଲେ । ୧୧୭

ବାସୁକୁ ଭକ୍ଷଣ କରି ଯେବେ ଲେ ଜୀବନ
ପାତାଳପୁରରେ ଯାଇ କରିଲେ ବିଶ୍ରାମ । ୧୧୮

ସର୍ପକୁଳ। ଅହିମାନେ କଦ୍ରୁଙ୍କ ତନୟ
ଭୟଙ୍କର ମୂର୍ତ୍ତି ଦେଖି ସର୍ବେ କଲେ ଭୟ ।୧୧୯

କଶ୍ୟପ ଋଷିଙ୍କ ପତ୍ନୀ ବିନତା ସୁନ୍ଦରୀ
କଦ୍ରୁ ପୁତ୍ର ସର୍ପଗଣେ ଦେଖି ଭୟ କରି । ୧୨୦
ସ୍ୱାମୀଙ୍କୁ କହିଲେ ସର୍ପେ ମର୍ତ୍ତ୍ୟରେ ରହିଲେ
ଆଉ କି ବଞ୍ଚିବେ ପ୍ରାଣୀ ବିଷ ଜ୍ୱାଳାବଳେ ? ୧୨୧
ସଧୀରେ କହିଲେ ସ୍ୱାମୀ ଶୁଣରେ ସଜନୀ
ପୃଥ୍ୱୀ ଛାଡ଼ି ରହିଅଛି କାହିଁ କେଉଁ ପ୍ରାଣୀ ? ୧୨୨
ବୁଝିଲେତ ଏ ପୃଥିବୀ ସଭିଙ୍କର ଘର
ସଭିଙ୍କର ରହିଅଛି ସମ ଅଧିକାର । ୧୨୩
ଏ ପୃଥିବୀ ବିଷ୍ଣୁ ଯେବେ କରିଲେ ସୃଜନ
ମୋର ବୋଲି ନ କହିଲେ ହୋଇ ଭଗବାନ ୧୨୪
ଯାବତ ଜୀବମାନଙ୍କୁ ବାଣ୍ଟିଦେଲେ ମହୀ
ସାମ୍ୟବାଦ ନୀତି ମତେ ସମଭାଗ ହୋଇ । ୧୨୫
ଜଣେ ଜଣେ ବେନି ବେନି ପାଦ ମାଗିନେଲେ
ରଜାରୁ ପରଜା ଯାଏଁ ସମଭାଗ କଲେ । ୧୨୬
କାହାକୁ ଅଧିକ ଭୂମି ନାହାଁନ୍ତି ସେ ଦେଇ
ସ୍ୱାର୍ଥପର ଲୋକ ମାତ୍ର ଅଧିକ ଲୋଡଇ । ୧୨୭
ବୁଝିଲେ ତ ବେନି ପାଦ ସଭିଙ୍କର ପ୍ରାପ୍ୟ
ଯେତେ ବଳବାନ ହେଉ ସେତିକ ତା ପ୍ରାପ୍ୟ ୧୨୮
ଦେବ-ଦାନବ- ମାନବ ଯାହା ଅବା ହେଉ
ଦ'ପାଦୁ ଅଧିକ ଭୂମି ପାଇବ ବା କାହୁଁ ? ୧୨୯
ତୁମ୍ଭେ ବୋଲୁଅଛ କଦ୍ରୁ ପୁତ୍ରଙ୍କୁ ନ ରଖି
ଭୂମିଛାଡି କାହିଁ କେଉଁଠାରେ ଅଛି ଲୋକ ? ୧୩୦

ଏଣୁ କରି ନାଗ କୁଳ ମର୍ତ୍ତ୍ୟରେ ରହିବେ
ବିନା ଦୋଷେ କାହାର ସେ କିଛି ନକରିବେ ୧୩୧

ଯଦ୍ୟପି ଅନ୍ୟାୟେ ବାଳେ ଅରଜିବେ ମନ୍ଦ
ତେବେ ଜନେ ତୋ ପୁତ୍ରକୁ ସୁମରିବେ ହୃଦ ୧୩୨
ତୋ ପୁତ୍ର ନାମ ସ୍ମରନ୍ତେ ବଡ ହରିଯିବ
କର୍ମ ଫଳ ଦୋଷ ହେତୁ କେ ଅବା ମରିବ ।୧୩୩
କହିଲେ ସଜମା କଦ୍ରୁ ଶୋଚନା କରୁଛୁ
ଏବେ ତୋର ପୁତ୍ର ଜନ୍ମି ତାଙ୍କୁ ଖାଇ ବଞ୍ଚୁ ।୧୩୪
ବେନ ପାଦ, କେନି ନଖ ମୁଖେ ଚଞ୍ଚୁ ଧରି
ଜନ୍ମିଲେ ଗରୁଡ ପକ୍ଷୀ ଆସି ମର୍ତ୍ତ୍ୟପୁରୀ । ୧୩୫
ସୁରଭି ଗର୍ଭରୁ ଗୋରୁ ମହିଷାଦି ଯେତେ
ଦୁଇ ଖୁରା ପ୍ରାଣୀ କୁଳ ଜନ୍ମିଲେ ଜଗତେ ।୧୩୬
କାଷ୍ଠାଠାରୁ ଗଧ, ଘୋଡା ଏକ ଖୁରା ପ୍ରାଣୀ
ଅରିଷ୍ଟା ଉଦରୁ ଜାତ ସର୍ପ-ସୃପ ଶ୍ରେଣୀ । ୧୩୭
ସୁରମା ଗର୍ଭରୁ କ୍ଷେପ ହିଂସ୍ର ପ୍ରାଣୀ ଗଣ
ବାଘ, ସିଂହ, ବରାହ, ଭଲ୍ଲୁକ ଉତପନ୍ନ ।୧୩୮
ତାମ୍ରାଙ୍କ ଉଦରୁ ମାଂସାସୀ ଗୃଧ୍ର, ସଞ୍ଚାଣ
ତିମିର ଉଦରୁ ଜଳଚର ପ୍ରାଣୀଗଣ । ୧୩୯
ଇଳାଙ୍କ ଉଦରୁ ଜାତ ହେଲେ ବୃକ୍ଷଗଣ
ସ୍ଥାବର, ଜଙ୍ଗମ, କୀଟ, ପତଙ୍ଗ, ଉତ୍ପନ୍ନ । ୧୪୦
ଉଡା, ବୁଡା, ଜଳ, ସ୍ଥଳ ବୃକ୍ଷଖାନ ଜୀବ
ଜାତରେ ଛପନ କୋଟି କରହେ। ହିସାବ ।୧୪୧
ସଂସାରରେ ଭାରସାମ୍ୟ ରକ୍ଷିବା ନିମନ୍ତେ
ଏକ କୁଆରକେ ବଳବାନ୍ କଲେ ମର୍ତ୍ତ୍ୟେ । ୧୪୨
ଖାଦ୍ୟ ଖାଦକର ନୀତି କଲେ ସ୍ଥାପନ
ଦୁର୍ବଳ ଭକ୍ଷି ସବଳ ଧରଇ ଜୀବନ ।୧୪୩
ଜୈବିକ-ପ୍ରବୃତ୍ତି-ବାଦ ସ୍ଥାପିଲେ ମହର୍ଷି
ସବଳ ବଞ୍ଚେ ସଂସାରେ ଦୁର୍ବଳକୁ ଗ୍ରାସି । ୧୪୪
ତେଣୁ ଜୀବ ଜଗତରେ ଲାଗିଅଛି ଦ୍ୱନ୍ଦ
ସବଳ-ଦୁର୍ବଳ ଦ୍ୱନ୍ଦ ଡାରୱିନ୍ ବାଦ । ୧୪୫

ଇନ୍ଦ୍ରଠାରୁ ବଳବାନ ହେଲେ ପ୍ରଭଞ୍ଜନ
ପ୍ରଭଞ୍ଜନେ ଭୁଞ୍ଜି ସର୍ପେ ଧଇଲେ ଜୀବନ । ୧୪୬
ସର୍ପଙ୍କୁ ଭକ୍ଷଣ କଲେ ବିନତା ନନ୍ଦନ
ଖାଦ୍ୟ ଖାଦକର ମାତ୍ର ସୃଷ୍ଟି ସଂଚରଣ । ୧୪୭
ଦନୁ ନାମେ ପତ୍ନୀ ଗର୍ଭୁଁ ଜନ୍ମିଲେ ଦାନବ
ମହାବଳବନ୍ତ ସର୍ବେ ଦୁର୍ଦ୍ଧାନ୍ତ ଅଶିବ । ୧୪୮
ଦନୁ ଦୁଷ୍ଟ ପୁତ୍ରେ ଦେଖି ଭାବିଲେ ତାପସ
ଦାନବଙ୍କ ଯୋଗୁ ସୃଷ୍ଟି ହୋଇବ ବିନାଶ ।୧୪୯
ଠାବ ନ ପାଇଣ ଯହୁଁ ହୋଇଲେ ଅନାଥ
ଆଖଡ଼ା କରିଲେ ସାଇଁ ଅଶ୍ୱିନ୍ନି ବନସ୍ଥ । ୧୫୦
ବୃଦ୍ଧ ଆହେ କଂସାସୁର କଶ୍ୟପ ବିଗୃତ
ନିଜ ପୁତ୍ର ପ୍ରତି କଲେ ପାତର ଅନ୍ତର । ୧୫୧
ଦେବ ଦୈତ୍ୟ ଦୁଇ ଭାଇ ଆପଣା ନନ୍ଦନ
ଭାଇ ଭାଇରେ ବଇରି ଲଗେ ସଦାଦିନ । ୧୫୨
ସମ୍ପଦ ପାଇଁ ବଢ଼ିଲା ଭାଇରେ ବିବାଦ
ଜଣେ ବନବାସୀ ଆନ ଭୋଗଇ ସମ୍ପଦ । ୧୫୩
ପିତାଙ୍କ ଅନ୍ୟାୟ ପଣ ଦେଖି ଦନୁସୁତ
ସ୍ଥିରକଲେ ବଳାତ୍କାରେ ନେବ ସେବେ ବିତ୍ତ ।୧୫୪
ବାହୁବଳ, ତପବଳ ଦୁଇବଳ ଧରି
ବଳାତ୍କାରେ କ୍ଷେପି ଗଲେ ଅମର ନଗରୀ ।୧୫୫
ସ୍ୱର୍ଗୀୟ ସମ୍ପଦମାନ ବଳାତ୍କାରେ ହରି
ଭୋଗକଲେ ଦୈତ୍ୟଗଣେ ଦେବଲୋକ ଶିରୀ ।୧୫୬
ଭାଇ ଭାଗ ପାଇବାକୁ ଲାଗିଲା ସମର
ଶାନ୍ତି ନଷ୍ଟହୋଇ ପୃଥ୍ୱୀ ହେଲା ଛାରଖାର । ୧୫୭
ମନୁ ନାମେ ଋଷି ପତ୍ନୀ ଦେଖି ଏହି ରୀତି
ବିଗୃହିଲେ ମନେ ଶାନ୍ତି ସ୍ଥାପିବାକୁ ପୃଥ୍ୱୀ । ୧୫୮
ଶାନ୍ତିରେ ରହିଲେ ସର୍ବେ ନ ହୋଇବ ଦ୍ୱନ୍ଦ
ସମାଧାନ ହୋଇଯିବ ବାଦ ପ୍ରତିବାଦ । ୧୫୯

ଶତପାଶେ ପତ୍ନୀବୋଲେ ଦଅନ୍ତୁ ନନ୍ଦନ
ଯାଳିବ ବିଶ୍ୱର ସୃଷ୍ଟି ମାନ ସମ୍ବିଧାନ । ୧୬୦

ଦେବ ଦାନବ ସମେତ ଯେତେ ଭୂମ ସୃଷ୍ଟି
ଥିକଲେ ଖଟିବେ ପାଦେ ମୋ ପୁତ୍ର ନୃପତି ।୧୬୧

ନମ୍ର ପାଦ, ଊର୍ଦ୍ଧ୍ୱ ଶିର, କର, ଚରଣାଦି
ସୁନ୍ଦର ତନୁରେ ପୂର୍ଣ୍ଣଜ୍ଞାନ-ବିଦ୍ୟା-ବୁଦ୍ଧି ।୧୬୨
ଦେବ-ଦୈତ୍ୟ-ପଶୁ-ପକ୍ଷୀ-ସ୍ଥାବର-ଜଙ୍ଗମ
ସେହି ସେହି ଶକ୍ତି ଧରି ହୋଇବ ଜନମ । ୧୬୩
ବୋଲିବା, ଶୁଣିବା, ଶକ୍ତି ରହିବ ତାହାର
ଦୁଇପାଦ, ଦୁଇକର, ଗୋଟିଏକ ଶିର । ୧୬୪
ଆଗୁର, ବିଗୁର, ତର୍କ, ତର୍କମା ଶକତି
ଦାନ, ଧର୍ମ, ବୁଦ୍ଧି, ଧ୍ୟାନ, ଧାରଣା ସୁମତି ।୧୬୫
ନର ନାରାୟଣ ଅଂଶେ ହେବ ଅବତୀର୍ଣ୍ଣ
ଦୁଷ୍ଟଙ୍କୁ ବିନାଶି ସନ୍ଥ କରିବ ପାଳନ । ୧୬୬
ମନୁ କଥା ଶୁଣି ମୁନି ମନରେ ହରଷ
ମୈଥୁନେମାତନ୍ତ୍ରେ ଜାତ ହୋଇଲେ ମନୁଷ୍ୟ ।୧୬୭
କେହୁ କୃଷ୍ଣବର୍ଣ୍ଣ କେହୁ ଗୋଉର ହୋଇଲେ
ଦୃର୍ଲ୍ଲଭ ଶରୀର ଧରି ମର୍ତ୍ତ୍ୟରେ ଜନ୍ମିଲେ । ୧୬୮
ମନୁର ପୁତ୍ର ମାନବେ ହେଲେ ମର୍ତ୍ତ୍ୟପତି
ଖଟିଲେ ଚରଣ ତଳେ ଯେତେ ଜୀବ ସୃଷ୍ଟି । ୧୬୯
ରାଜା ବୋଲାଇଲା ହୋଇ ପ୍ରଜାର ସେବକ
ପ୍ରଜାପତି ସୃଷ୍ଟି ପାଳେ ଖଟାଇ ବିବେକ । ୧୭୦
ନ୍ୟାୟୁ ବିଗୁର ଦେବାରେ ଦେବଗଣୁ ଶ୍ରେଷ୍ଠ
ଦେବ ଦାନବଙ୍କ ଠାରୁ ଗୁଣରେ ଗରିଷ୍ଠ । ୧୭୧
ଦାନବଙ୍କୁ ଭୟ କରେ ଦେବେ ନମସ୍କାର
ଭୟ-ଭକ୍ତି ଦୁଇ ଗୁଣ ଧରି ଅବତାର । ୧୭୨
ମନୁଙ୍କ ଗର୍ଭରୁ ଜନ୍ମି ମନୁଷ୍ୟ ନାମରେ
କଥିତ ହୋଇଲେ ବେଦଶାସ୍ତ୍ର ପୁରାଣରେ ।୧୭୩

କେ ବୋଲେ କାସ୍ପିୟାନ୍ ହ୍ରଦ ତଟ ଦେଶରେ
ଆର୍ଯ୍ୟ ମାନଙ୍କ ବସତି ଥିଲା କ ଆଦ୍ୟରେ । ୧୭୪
ଯେଉଁ ଠାରୁ ଆର୍ଯ୍ୟମାନେ ଏ ଆର୍ଯ୍ୟାବର୍ତ୍ତରେ
ଆସି ବସତି ସ୍ଥାପନ କଲେ ତତ୍‌ପରେ । ୧୭୫
"ଆର୍ଯ୍ୟ ପୁତ୍ର" ଅର୍ଥ ଭଦ୍ର ଅର୍ଥେ ବ୍ୟବହୃତ
ସେମାନଙ୍କ ଜନ୍ମଭୂମି ଆଦ୍ୟରୁ ଭାରତ । ୧୭୬
ଭାରତ ଭୂଖଣ୍ଡେ ଜନ୍ମି ବ୍ୟାପିଲେ ମେଦିନୀ
"ବସୁଧୈବ କୁଟୁମ୍ବକମ୍" ମଣିଲେ ଅବନୀ । ୧୭୭
କଶ୍ୟପ ଅଂଶରେ ଜନ୍ମି କାଶ୍ୟପୀ ହୋଇଲେ
କାସ୍ପିଆନ୍ ହ୍ରଦଗ୍ରାମରେ ବାସ କେନ୍ଦ୍ର ବୋଲେ ।୧୭୯
ଶୁଣ ଆହେ କଂସାସୁର କଶ୍ୟପ ମହିମା
ଜୀବ ସୃଷ୍ଟି କଲ ସେହି ପ୍ରଜାପତି ବ୍ରହ୍ମା । ୧୮୦
ଦେବ-ଦାନବ-ମାନବ-ଜୀବ ଗୃହଖାନି
ଜାତ ହେଲେ ଅବନୀରେ ଋଷି ଅଂଶ ଘେନି ।୧୮୧
ଜଳ-ସ୍ଥଳ ଉଡା-ବୁଡା ଜୀବ ଚରାଚର
ଶ୍ୱେତଜ ଚୋକୁ ଛପନ ମୃଣାଳ ବଳ୍କାମ । ୧୮୨
ସ୍ଥାବର ଜଙ୍ଗମ - କୀଟ ପତଙ୍ଗ ମହିତ
ସକଳ କଶ୍ୟପ ଋଷି ଔରସୁ ସମ୍ଭୂତ । ୧୮୩
ଜୀବ ଜଗତର ସୃଷ୍ଟି ଦେଖି ନାରାୟଣ
ଆନନ୍ଦ ହୋଇ ବ୍ରହ୍ମାଙ୍କୁ ବୋଇଲେ ବଚନ । ୧୮୪
ଆହାର-ନିଦ୍ରା-ମୈଥୁନ- ଜୀବ ବ୍ରହ୍ମରସ
ନବେଶିଲେ ଜୀବ ଧର୍ମେ ଜୈବିକ ନର୍ଯ୍ୟାସ ।୧୮୫
ଏହି ତିନି କର୍ମୁ ଜାତ କାମନା-କଳ୍ପନା
ହିଂସା-ଈର୍ଷା-ଦ୍ୱେଷ ଆଦି ଭୌତିକ ଭାବନା ।୧୮୬
ପଞ୍ଚଭୂତ - ପଞ୍ଚପ୍ରାଣ - ପଚଶ ପ୍ରକୃତି
ସକାମ-ନିଷ୍କାମ-ଭେଦେ ପ୍ରବୃତ୍ତି-ନିବୃତ୍ତି । ୧୮୭
ଏକ ବ୍ରହ୍ମ ଗୁଣ ଭେଦେ ତିନି ଭାଗ ହେଲେ
ଦେବ-ଦାନବ-ମାନବ ରୂପକୁ ବହିଲେ ।୧୮୮

ତେଣୁ କରି ଜଗତରେ ଶାବ ଦ୍ୱନ୍ଦ ଭାବ
ଏହି ତିନ ପ୍ରାଣୀ ଯୋଗୁଁ ମହାଗୋଳ ହେବ ।୧୮୯
ଦୁର୍ବଳ ଉପରେ ସବଳ କରି ଆକ୍ରମଣ
ମେଣ୍ଟାଇବ କ୍ଷୁଧାତୃଷା କରି ରକ୍ତ ପାନ । ୧୯୦
ସ୍ୱର୍ଗପୁରେ ଦେବଗଣେ କରିଲେ ବସତି
ଆପଣା ସୁଖରେ ସଦା ବୁଡ଼ି ରହିଥାନ୍ତି । ୧୯୧
ଅପରର ସୁଖ ଦେବେ ନ ପାରନ୍ତି ଦେଖି
ବନ୍ଧୁକର୍ତ୍ତା ବୋଲିଅନ୍ତି ବିଧାନ ଉପେକ୍ଷି । ୧୯୨
ଦାନବେ ଯେ କାମରୂପୀ ମହାଶକ୍ତିଧର
ସ୍ୱାର୍ଥସିଦ୍ଧି ପାଇଁ ସଦା କରନ୍ତି ସମର । ୧୯୩
ସେମାନେ ସମାନ୍ୟ ବୋଲି ନ କର ବିଚାର
ଯାହା ଯୋଗୁଁ ମର୍ତ୍ତ୍ୟେ ଜାତ ହୁଅନ୍ତି ଈଶ୍ୱର ।୧୯୪
ତପଶକ୍ତି ବଳେ ବ୍ରହ୍ମା-ଶିବ ତୋଷ କରି
ବରପ୍ରାପ୍ତ ହୋଇ ବଳେ ହେନ ଯାନ୍ତି ଶିରୀ ।୧୯୫
ତିନିପୁର ଲୋକ ତାଙ୍କୁ କରୁଥାନ୍ତି ଭୟ
ଆସୁରି ଶକ୍ତି ବଳରେ ଅଟନ୍ତି ଦୁର୍ଜୟ । ୧୯୬
ଦାନବଙ୍କ ଆଧି ନାହିଁ ବ୍ରହ୍ମାଣ୍ଡରେ ଲକ୍ଷ
ଦୁଷ୍ଟପଣେ ଦ୍ରୋହକରି ହୋଇଯାନ୍ତି ମୋକ୍ଷ ।୧୯୭
ଦୈତ୍ୟଙ୍କ ନିଧନ ପାଇଁ ଦେବ ନାରାୟଣ
ମନୁଷ୍ୟ ରୂପରେ ହୋଇଥାନ୍ତି ଆସି ଜନ୍ମ । ୧୯୮
ମାନବେ ଜାତ ହୋଇଲେ ମୁଖେ ବିଷ୍ଣୁଭକ୍ତ
ଦେବ ଦୈତ୍ୟେ ଡରୁଥାନ୍ତି ଦୁଃଖେ ହୋଇଗଞ୍ଜି ୧୯୯
ଦେବ ଆରାଧନା କରେ ମଙ୍ଗଳ ନିମନ୍ତେ
ଦୁର୍ବଳ ହେବାରୁ ଡରୁଥାଏ ଦେଖି ଦୈତ୍ୟେ ।୨୦୦
ମର୍ତ୍ତ୍ୟରେ ମାନବ ଗଣେ ହେଲେ ଅଧିପତି
ପାତାଳେ ରହିଲେ ସର୍ପେ ସ୍ୱର୍ଗେ ସୁରପତି ।୨୦୧
ଶୂନ୍ୟ ମଣ୍ଡଳରେ ସୂର୍ଯ୍ୟ ଜଳରେ ବରୁଣ
ବିଶ୍ୱ ବ୍ରହ୍ମାଣ୍ଡ ବ୍ୟାପିଲେ ଅଦିତି ନନ୍ଦନ । ୨୦୨

ଅସୁରଙ୍କ ବାସ ପାଇଁ ନ ମିଳିଲା ସ୍ଥାନ
ତେଣୁ ଦ୍ୱନ୍ଦ ଭିଆଅନ୍ତି ବଳେ ଯାତୁଧାନ ।୧୦୩
ଜୀବଗଣେ ଦୈତ୍ୟ ସୃଷ୍ଟି ଶ୍ରେଷ୍ଠ ସୃଷ୍ଟି କହି
ଜୀବ ଥିବାଯାଏ ଭୋଗ ମଲେ ମୋକ୍ଷ ପାଇ ।୧୦୪
ଏଣୁ ଅସୁରଙ୍କ ଜନ୍ମ ଜଗତରେ ସାର
ଅସୁର ଦଳନ ପାଇଁ ଜନ୍ମନ୍ତି ଶ୍ରୀଧର । ୧୦୫
ଯୁଦ୍ଧଘୋର ମହାବିଷ୍ଣୁ ଶଙ୍ଖଚକ୍ରଧାରୀ
ଏଣୁ ନାମ ବହିଥାନ୍ତି ଦେବ ଦଇତ୍ୟାରି । ୧୦୬
କହନ୍ତି ନାରଦ ମୁନି ବିଷ୍ଣୁ ଜନ୍ମ ତତ୍ତ୍ୱ
ଅଛି ପୁଣ୍ୟମୟ ଗାଥା ଶ୍ରୀହରି ଚରିତ । ୧୦୭
ବିଷ୍ଣୁଙ୍କ ମାନବ ଲୀଳା ଗହନ ଏ ତତ୍ତ୍ୱ
ସଗୁଣ ଲୀଳା ବର୍ଣ୍ଣିବେ କେ ହେବ ସାମର୍ଥ ।୧୦୮
କି ପାଇଁ ଧରନ୍ତି ପ୍ରଭୁ ମାନବ ଶରୀର
ସହଜ ନୁହଁଇ ତାହା ହେତୁ କରିବାର । ୧୦୯
ଯେତେବେଳେ ଧର୍ମଗ୍ଲାନି ହୁଏ ଧରା ତଳେ
ଅସୁର ଭୋଗ୍ୟ ହୁଅଇ ଏ ଧରଣୀ ବଳେ । ୧୧୦
ସେତେବେଳେ ନାରାୟଣ ନରତନୁ ଧରି
ହରନ୍ତି ପୃଥିବୀ ଭାର ଦୁର୍ଜ୍ଜନ ସଂହାରି । ୧୧୧
ପ୍ରଭୁଙ୍କ ସଗୁଣ ଲୀଳା ଗାଇ ବୁଲେ ଭକ୍ତ
ଭକ୍ତଭାବେ ଭାବଗ୍ରାହୀ ଭବେ ପ୍ରକଟିତ ।୧୧୨
ସକଳ ଶରୀରେ ଶ୍ରେଷ୍ଠ ନର କଳେବର
ଜ୍ଞାନମୟ, ପ୍ରେମମୟ ଅନିନ୍ଦ୍ୟ ସୁନ୍ଦର । ୧୧୩
ଏଣୁ ଏ ଦିବ୍ୟ ଶରୀରେ ବିଷ୍ଣୁ ଅବତାର
ହୋଇ କରିଥାନ୍ତି ଖେଳ ମର୍ତ୍ତ୍ୟେ ବାରମ୍ବାର ।୧୧୪
ସର୍ବ ଶକ୍ତିମାନ ବିଷ୍ଣୁ ହେଲେ ଚକ୍ରଧାରୀ
ନିର୍ଗୁଣ ଶରୀରେ ଦୁଷ୍ଟ ନ ପାରନ୍ତି ମାରି । ୧୧୫
ପରାପର ଭେଦ ଶୂନ୍ୟ ସେ ପରମ ବ୍ରହ୍ମ
କ୍ରିୟା ଶକ୍ତି ଶୂନ୍ୟ ହେତୁ ନିଷ୍କ୍ରିୟ, ନିର୍ଗୁଣ ।୧୧୬

ଶତ୍ରୁ ମିତ୍ର ନାହିଁ ତାଙ୍କ ଜଗତର ନାଥ
ପୁତ୍ରସମ କରନ୍ତି ସେ ସମଗ୍ର ଜଗତ । ୨୧୭
କାମ୍ୟା-ଛାୟା-ମାୟା-ଶୂନ୍ୟ ନିର୍ଗୁଣ, ନିର୍ଲେପ
ଅନାଦି ସେ ଅଣାକାର ନିଷ୍କୋପ, ନିଷ୍ପାପ । ୨୧୮
ଦୁର୍ଜ୍ଜନ ଦଳନ ପାଇଁ ନିରାକାର ବ୍ରହ୍ମ
କାମ୍ୟା-ମାୟା-ଦେହ ଧରି ହୁଅନ୍ତି ଜନମ । ୨୧୯
ଗୁଣାତ୍ମକ ଶରୀରରେ ପ୍ରବୃତ୍ତି ଜାଗ୍ରତ
ପ୍ରବୃତ୍ତି ହେତୁ ପ୍ରକୃତ ହୁଅଇ ବର୍ଦ୍ଧିତ । ୨୨୦
ଷଡରିପୁ, ପାଞ୍ଚମନ, ପଚିଶ ପ୍ରକୃତି
ଦଶଇନ୍ଦ୍ରି ସଙ୍ଗେ ମିଶି ବିବିଧ ପ୍ରବୃତ୍ତି । ୨୨୧
କ୍ରୋଧଶକ୍ତି ଧରି ମର୍ତ୍ତ୍ୟେ ହୁଅନ୍ତି ଜନମ
ଦୁର୍ଜ୍ଜନ ବିନାଶି ସନ୍ଥ କରନ୍ତି ପାଳନ । ୨୨୨
ଗୁଣାତ୍ମକ ଶରୀରରେ ଜାଗେ ଅହଂକାର
ତେଣୁ ପ୍ରଭୁ ହୋଇଥାନ୍ତି ଅସ୍ତ୍ରଶସ୍ତ୍ର କର । ୨୨୩
ଅନାଦି ପରମ ବ୍ରହ୍ମ ଯେଉଁ ଚିତ୍ତବାସ
ସତ୍ତ୍ୱ-ରଜୋ-ତମୋ ତିନି ଗୁଣରେ ପ୍ରକାଶ । ୨୨୪
ତ୍ରିଗୁଣାତ୍ମକ ଶରୀରେ କରନ୍ତି ସଂହାର
ଷୋଡ଼ଶ କଳା ଧାରଣ ସଗୁଣ ଶରୀର । ୨୨୫
ପଞ୍ଚଭୂତ, ପଞ୍ଚଇନ୍ଦ୍ରି, ଷଡରିପୁ ଗଣ
ଏସବୁ ଲକ୍ଷଣ ଧରି ମର୍ତ୍ତ୍ୟେ ଅବତୀର୍ଣ୍ଣ । ୨୨୬
ପତିତ, ଆରତ, ଆଶ୍ରିତ ଓ ଅନୁରକ୍ତ
ତାହାଙ୍କ ଉଦ୍ଧାର ପାଇଁ ହୋଇଥାନ୍ତି ଜାତ । ୨୨୭
ଅଲେଖ, ଅରୂପ ଯେଉଁ ନିତ୍ୟ ନିରଞ୍ଜନ
ଯୋଗୀ-ଜ୍ଞାନୀ-ଗୁଣୀ ଗଣେ ଦିଅନ୍ତି ଦର୍ଶନ । ୨୨୮
ମହା-ମହାପୁରୀ ଶକ୍ତି ପ୍ରକାଶ ନିମନ୍ତେ
ମାନବ ଶରୀରେ ଜାତ ହୋଇଥାନ୍ତି ମର୍ତ୍ତ୍ୟେ । ୨୨୯
ଦର୍ଶନ-ସ୍ପର୍ଶ - ଶ୍ରବଣ ଲଭି ଜୀବଗଣ
ଯୁଗାନ୍ତକ ପାପ ନାଶି ଲଭନ୍ତି ନିର୍ବାଣ । ୨୩୦

ମୁନିଋଷି ମାନେ ଗୁଣ କରନ୍ତି କୀର୍ତ୍ତନ
ପବନ ହୁଅଇ ପୃଥ୍ୱୀ ପାଇଣ ଦର୍ଶନ । ୨୩୧
ଅବତାର କାଳେ ପ୍ରଭୁ ଏକା ନ ଆସିଣ
ଆସନ୍ତି ଆପଣାଜନେ ସଙ୍ଗରେ ଘେନିଣ । ୨୩୨
ପିତା-ମାତା-ଭ୍ରାତା-ଭଗ୍ନୀ-ଆତ୍ମୀୟ ସ୍ୱଜନ
ପ୍ରେମିକ-ପ୍ରେୟସୀ-ଦାସୀ-ସଖୀ-ପରିଜନ ।୨୩୩
ସଖା-ସାଥି-ଭକ୍ତ-ଗୁରୁ-ଆଚାର୍ଯ୍ୟ-ବିଦ୍ୱାନ
ସେବକ-ପ୍ରଚାରକ କବି-ଗାୟକ ଜନ । ୨୩୪
ଆନନ୍ଦମୟ ଲୀଳାର ପ୍ରଦର୍ଶନ ପାଇଁ
ସ୍ୱରୂପ ଧରି ଆସନ୍ତି ମର୍ତ୍ତ୍ୟକୁ ଓହ୍ଲାଇ । ୨୩୫
ନରତନୁ ନ ଧରିଲେ ନର ଉଦ୍ଧାରଣ
ନ ହୋଇବ ବୋଲି ରୂପ କରନ୍ତି ଧାରଣ ।୨୩୬
ବିପ୍ର ବାକ୍ୟ ମାନି ତଥା ଭୃତ୍ୟ ହିତ ପାଇଁ
ମର୍ତ୍ତ୍ୟଲୋକେ ନରତନୁ ଧରନ୍ତି ଗୋସାଇଁ । ୨୩୭
ବିଷ୍ଣୁଙ୍କ ମାନବ ଜନ୍ମର ମୂଳକାରଣ
ଦେବ-ଦୈତ୍ୟ ମଧ୍ୟେ ଦ୍ୱନ୍ଦ ହେତୁ କରି ଜାଣ ୨୩୮
ଏ ଦୁଇ ବର୍ଗଙ୍କ ମଧ୍ୟେ ନ ହୋଇଲେ ଯୁଦ୍ଧ
ନ ଜନ୍ମନ୍ତେ ବିଷ୍ଣୁ ନାଥ ବୁଝ ଗୂଢ଼ ଭେଦ । ୨୩୯
ନାରଦ କହିଲେ ଏହା ବିଷ୍ଣୁ କୃଷ୍ଣ ମାୟା
କହିବ ପର ଅଧ୍ୟାୟେ ଶୁଣ ରାଜା ତାହା । ୨୪୦
ଦୁଇଶ ଏକଚାଳିଶ ପଦରେ ସମ୍ପୂର୍ଣ୍ଣ
ମୂଳ ବୃନ୍ଦାବନ କଲା ସଙ୍ଗୀତ ରଚନ । ୨୪୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଦେବକୀ ବିବାହ ବର୍ଣ୍ଣନେ
ନାମ ପଞ୍ଚଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



**ବୋଲି -**

ମନ ବାଉରେ
ଏକାନ୍ତ ଭଜନ କର
ଅଜପା ଜପିଲେ ଅମାପ ମାପିଲେ
ଅଭକ୍ଷ ଭକ୍ଷିଲେ ହୋଇବୁ ପାର ॥ ଘୋଷା ॥

କାଲ ଶୁଣୁଥାଉ ଅନ୍ଧ ଦେଖୁଥାଉ
ଅମନ ସ୍ପନ୍ଦରେ ହଅଁ ଗୋଚର
ଏକ ଘଣ୍ଟା ହେଲେ ଦର୍ଶନ ମିଳଇ
ହୋ ହୋ ପାଞ୍ଚେ ହଅଁ ବହୁତ ଦୂର । ୨

ପାଞ୍ଚ ପାଞ୍ଚ କଲେ ପଚଶ ହୋଇବ
ପରତେ ନ ହେବ ଚନ୍ଦ୍ର ପସୁର
ପ୍ରେମମୟୀ ଚିତ୍ତ ଅଟଇ ଯାହାର
ତା'ଠାରୁ ନୁହଁନ୍ତି ବହୁତ ଦୂର । ୨

ବୋଲେ ବୁଲଦାସ ଅନୁଭବ ସୂତ୍ରେ
ଅଭିନ୍ନ ସୁନ୍ଦର ଦର୍ଶନ କର
ଅଭିରାମ ନାମେ ଅ' ରା' ଲୋପ କରି
ଭିମ ଶକ୍ତି ଗୋଟି ଶାସ୍ତ୍ରରେ ଧର । ୩



# ଷୋଡଶ ଅଧ୍ୟାୟ

## ବିଷ୍ଣୁଙ୍କ ମାନବ ଜନ୍ମ ବିବରଣୀ

### ରାଗ - ରସକୁଲ୍ୟା

କୃଷ୍ଣ ଚରିତ ମାନସ ଶ୍ରବଣ
କର ସୁଜନେ ଦେଇ ମନକର୍ଣ୍ଣ
କଂସ ନାରଦ କଥୋପକଥନ
ମାନବ ବିଷ୍ଣୁ ଜନ୍ମ ବିବରଣ
ସଗୁଣ ଲୀଳା ଚରିତ ସେ
ଶ୍ରବଣେ ଦୁରିତ    ଖଣ୍ଡନ ହୋଇବ
କୃଷ୍ଣ ପ୍ରେମେ ଶାନ୍ତାମୃତ ସେ ।୧

କଂସ ଉବାଚ

ଜିଜ୍ଞାସିଲେ କଂସ ହେ ମୁନିବର
ପିତାମାତା କେ ମାନବ ବିଷ୍ଣୁର
ସର୍ବ ଆତ୍ମନ ସେହିଁ ନାରାୟଣ
"ଅଜ" ବୋଲି ବର୍ଣ୍ଣେ ଶାସ୍ତ୍ର ପୁରାଣ
ଜଠରୁ କିପରି ଜନ୍ମ ସେ
କେ ତାଙ୍କ ଜନକ    କେ ତାଙ୍କ ଜନନୀ
ଗର୍ଭେ କରିଲେ ଧାରଣ ସେ ? ।୨

ନାରଦ ଉବାଚ

ବୋଲନ୍ତି ନାରଦ ହେ କଂସାସୁର
ପୁଚ୍ଛିଲ ଯେ ପ୍ରଶ୍ନ ଶୁଣ ଉତ୍ତର
ଦେବ ଦୈତ୍ୟ ଦୁଇ ଜଣ ସୋଦର
କଶ୍ୟପ ଅଦିତି ଦେବୀ କୁମର
ଐଶ୍ବର୍ଯ୍ୟ ଭୋଗ କାରଣେ ସେ
ଭାଇ ଭାଇ ମଧ୍ୟେ    ସମର କରିଣ
ହତ ହେଲେ ଦେବ ଗଣେ ସେ ।୩

ଦେବ ବାଣେ ହତ ଯେ ଯାତୁଧାନ
ଗୁରୁ ଶୁକ୍ରାଚାର୍ଯ୍ୟ ଦଅନ୍ତି ପ୍ରାଣ
ମୃତ ସଞ୍ଜିବନୀ ମନ୍ତ୍ର ବଳରେ
ମରି ଦୈତ୍ୟ ଗଣ ଉଠନ୍ତି ଖରେ
ଅକ୍ଷୟ ଅସୁର ଶକ୍ତି ଯେ
ଦୈତ୍ୟ ବାଣେ ଦେବେ ଜୀବନ ତେଜିଣ
କ୍ରମେ କ୍ରମେ ବିନଶ୍ୟନ୍ତି ଯେ ।୪

ଦେବତାଙ୍କ | ଶକ୍ତି ହେଲା ନ୍ୟୁନ
ବିଷ୍ଣୁଙ୍କ ଚରଣେ ଦେବେ ଶରଣ
ଦେବଗଣ ଦୁଃଖ ଦେଖି ଦୈତାରି
ସକୂଟେ କହିଲେ ହେ ବଜ୍ରଧାରୀ
ଦୈତ୍ୟ ବଳ ତୁଳନାରେ ଯେ
ଦେବତାଙ୍କ ବଳ ନ୍ୟୁନ ଥିବାରୁ
ଶୁଣ କୁହନ୍ତି ନୃବରେ ଯେ ।୫

ଯେତେ ଦିନ ଯାଏ ଅଛ ଦୁର୍ବଳ
ଦୈତ୍ୟଗଣ ସଙ୍ଗେ ନ କର ଗୋଳ
ଛଳେ ସନ୍ଧି କରି ହେ ସୁରଗଣ
ଆପଣାର ଶକ୍ତି କର ବର୍ଦ୍ଧନ
କେଳା ପେଡ଼ିରେ ବନ୍ଧନ ଯେ
ଥିବା ସର୍ପ ଯେହ୍ନେ ମୁକତି ନିମନ୍ତେ
ମୂଷିକରେ ବନ୍ଧୁ ପଣ ଯେ ।୬

ପେଡ଼ାରୁ ବାହାରି ଅହିରାଜନ
ଆନନ୍ଦେ କରେ ମୂଷିକ ଭକ୍ଷଣ
ତେସନେ ମିତ୍ରତା କର ରାଜନ
ନାଶ ଯିବେ ଶତ୍ରୁ ରହିବ ପ୍ରାଣ
ଦୈତ୍ୟ ପତି ବଳି ରାଣ ଯେ
ସଙ୍ଗେ ମିତ୍ର ଭାବ କର ସୁରଦେବ
ଯେହ୍ନେ ଲକ୍ଷ ହେବ ପୂର୍ଣ୍ଣ ଯେ ।୭

ସୁଯୋଗ ଦେଖିଣ ଦୈତ୍ୟ ସାଧନ
କୌଶଳେ କରିବ ସୁରବ୍ରଜନ
ଆପଣା ଉଦ୍ଦେଶ୍ୟ ପୂରଣ ପାଇଁ
ଶତ୍ରୁ ସଙ୍ଗେ ମିଶ ହବ ଯୋଗାଇ
ଦେବ ଗଣଙ୍କୁ ଅମୃତ ଯେ
ଖାଇବାକୁ ଦେଇ ଅମର କରାଇ
ଯୁଦ୍ଧ କର ସୁରନାଥ ଯେ । ୮

ଅମର ହୋଇଲେ ଦେବତାଗଣ
ନ ମରି ଯୁଦ୍ଧରେ ରହିବ ପ୍ରାଣ
ଦୈତ୍ୟଗଣ ସଙ୍ଗେ ସମର କରି
ଜିଣିବ ତାହାଙ୍କୁ ହେ ବଜ୍ରଧାରୀ
ଦେବଙ୍କ ଶକ୍ତି ବର୍ଦ୍ଧନ ଯେ
ଅସୁରଙ୍କ ଶକ୍ତି ନିଊନ ହୋଇବ
ଜୟୀହେବେ ଦେବଗଣ ଯେ । ୯

ସମୁଦ୍ର ମନ୍ଥନ କଲେ ଅମୃତ
ଜାତ ହେବ ଜାଣ ହେ ସୁରନାଥ
ଦୈତ୍ୟ ବଳ ବିନା ନୁହେଁ ସମ୍ଭବ
ଦୈତ୍ୟ ପତି ସଙ୍ଗେ ମଇତ୍ର ହେବ
ଦେବ ଦୈତ୍ୟ ଦୁଇ ଶକ୍ତି ଯେ
ମିଶିଣ ମନ୍ଥନ କରିଲେ ସାଗର
ଅମୃତ ହେବ ଉତ୍ପତ୍ତି ଯେ । ୧୦
ମନ୍ଦର ପର୍ବତ ମନ୍ଥନ ଦଣ୍ଡ
ବାସୁକି ନାଗଟି ରଜ୍ଜୁ ପ୍ରଚଣ୍ଡ
କ୍ଷୀରସାଗରେ ଅମ୍ଳ ଭାଗ ଦେଇ
ଦଧି କରାଇବ ହେ ସୁରସାଇଁ
ଦ୍ୱି ପକ୍ଷ ମିଶି ମନ୍ଥିବ ଯେ
ସାଗର ମନ୍ଥନୁ ମିଳିବ ଯେ ଦ୍ରବ୍ୟ
ଦେଖି ଲୋଭ ନ କରିବ ଯେ । ୧୧

କୌଶଳେ କରିବା ଦ୍ରବ୍ୟ ହରଣ
ଏ କଥା ମନରେ ରଖି ଗୋପନ
ଅସୁରଙ୍କ ଶ୍ରମ ବିନା ମନ୍ଥନ
ମନ୍ଥିବ ନୁହଁଇ ହେ ସୁରଗଣ
କାର୍ଯ୍ୟ ସାଧିଲ ନିମନ୍ତେ ସେ
ଦୈତ୍ୟ ମନଯୋଗ ଅତି ପ୍ରୟୋଜନ
ବିଶ୍ୱର କର ସ୍ମିତରେ ସେ ।୧୨
ଉଦ୍ଦେଶ୍ୟ ସାଧାନ ଚିନ୍ତଣ ମନେ
କ୍ରୋଧ ନ କରିବ ସୁରଜନେ
ଦୈତ୍ୟଙ୍କ କଥାରେ ହେବ ସମ୍ମତ
ମନ କଥା ଗୋଟି ରଖିବ ଗୁପ୍ତ
କାର୍ଯ୍ୟ ଲଭେ ଧୈର୍ଯ୍ୟ ଲୋଡ଼ା ସେ
କାପଟ ମଇଷ ଯୋଜନାକୁ ନୃପ
କରିବ ନାହିଁ କର ଛଡ଼ା ସେ ।୧୩
ମିଶ ଭାବେ ଯେଉଁ କାର୍ଯ୍ୟ ସାଧନ
ଶତ୍ରୁତା ପଣରେ ନ ହେବ ଜାଣ
ପ୍ରାଣୀ ପକ୍ଷେ ବଡ଼ ଶତ୍ରୁତା ରାଗ
ରାଗ ଦମନେ ସା'ରେ ଅନୁରାଗ
ଏଥି ପ୍ରତି ଦେବ ଧ୍ୟାନ ସେ
ବିରାଗ ମାନସେ ସରାଗ ସହିତ
ଅନୁରାଗେ ଲକ୍ଷ ପୂର୍ଣ୍ଣ ସେ ।୧୪
ସାଗର ମନ୍ଥନୁ ବିଷ ଅମୃତ
ଉଭୟ ପଦାର୍ଥ ହୋଇବ ଜାତ
ଅମୃତ ପାନେ ଯେ ଆଗ୍ରହାନ୍ୱିତ
ବିଷପାନ ପାଇଁ ଥିବ ପ୍ରସ୍ତୁତ
ଜାତ ଦୁର୍ଲ୍ଲଭ ପଦାର୍ଥ ସେ
ସେ ସବୁକୁ ଦେଖି ଲୋଭ ନ କରିବ
ନ ବଳାଇବ ଦ୍ରବ୍ୟେ ଚିତ୍ତ ସେ ।୧୫

ପ୍ରଥମରୁ ଦ୍ରବ୍ୟ କଲେ ଗ୍ରହଣ
କାର୍ଯ୍ୟସିଦ୍ଧି ହେବ ନାହିଁ ରାଜନ
ବିଘ୍ନର କରିବ କାର୍ଯ୍ୟ ସାଧନ
ଯେପରେ ଅମୃତ ହେବ ଉତ୍ପନ୍ନ
କେବଳ ଅମୃତ ପଣ ଯେ
ଏଣୁ ଅନ୍ୟ ଦ୍ରବ୍ୟ ପ୍ରତି ସୁରପତି
ନ ବଳାଇ ଥିଲେ ମନ ଯେ ।୧୬

ସମୁଦ୍ର ମନ୍ଥନ କାଳେ ସତତ
ଏକ ପଟେ ଦେବେ ଅନ୍ୟେ ଦୈତ୍ୟ
ଆଗ ମୁଣ୍ଡ ପାଖ ଧରିବ ଧାଇଁ
ପ୍ରତିବାଦ କଲେ ଗୁଡ଼ିବ ଯାଇ
ମୁଣ୍ଡ ଧରିବେ ଦଇତେ ଯେ
ଲାଞ୍ଜ ପାଖ ତୁମ୍ଭେ ଧାରଣ କରିବ
ଲାଜ ନ କର ସୁଚିତ୍ତେ ଯେ ।୧୭

ବିଷ୍ଣୁ ଠାରୁ ପରାମର୍ଶ ପାଇଣ
ଚଳିଗଲେ ସୁରପତି ବହନ
ଦୈତ୍ୟପତି ବଳିରାଜ ସଙ୍ଗତେ
ନିରସ୍ତ୍ର ହୋଇଣ ଯାଇ ମିଳିଲେ
ଇନ୍ଦ୍ର ଦେଖି ଦୈତ୍ୟପତି ଯେ
ସମାଦର କରି ପାଖେ ବସାଇଣ
ସାଦରେ ପୁଚ୍ଛେ ଖବରଣ୍ଟ ଯେ ।୧୮

ବିଷ୍ଣୁ ନିର୍ଦ୍ଦେଶ ମତେ ମଘବାନ
ଦନୁଜେ ବୋଇଲେ ଶୁଣ ରାଜନ
ବନ୍ଧୁତା, ମିତ୍ରତା, ସନ୍ଧି ବିଗ୍ରହ
ଚକ୍ର ଆସିଅଛି ଅସୁର ରାପୂ
ମଙ୍ଗଳ ହେବ ସାଧନ ଯେ
ଦୁଇ ଭାଇ ମିଶି ସାଗର ମନ୍ଥିଲେ
ଅମୃତ ହେବ ଉତ୍ପନ୍ନ ଯେ ।୧୯

ଅମୃତ ଖାଇଲେ ହେବା ଅମର
କମାଇ କରିବା ଆଜ ସମର
ଏ ମହତ କାର୍ଯ୍ୟ ଲୋଡ଼ା ସମ୍ପ୍ରତି
ଶୁଣି ଦୈତ୍ୟରାଜ ଆନନ୍ଦ ମତି
ଶକ୍ର କଥାରେ ସମ୍ମତ ଯେ
ଭାବିଲେ ମନ୍ଥନୁ ଜନ୍ମିଲେ ଅମୃତ
କରିବେ ମୋ କବଳିତ ଯେ ।୨୦

ମନେ କୂଟ ପାଞ୍ଚି ବଳି ରାଜନ
ସାଗର ମନ୍ଥନେ ନିବେଶି ମନ
ମନ୍ଦର ଗିରିକୁ ଉପାଡି ନେଇ
ସାଗର ଗର୍ଭରେ ଦେଲେ ପକାଇ
ସ୍ଥଳ ନ ପାଇ ମନ୍ଦର ଯେ
ବୁଡ଼ି ଯା'ନ୍ତେ ଜଳେ କଚ୍ଛପ ରୂପରେ
ପୃଷ୍ଠେ ଧରିଲେ ଶ୍ରୀଧର ଯେ ।୨୧

ବାସୁକୀ ହୋଇଲା ରଜ୍ଜୁ ପ୍ରମାଣ
ବନ ପ୍ରଦେଶୁ ଅମ୍ଳ ଦ୍ରବ୍ୟମାନ
ସଂଗ୍ରହ କରିଣ କ୍ଷୀର ସାଗରେ
ପକାନ୍ତେ ଦଧି ହୋଇଲା ସ୍ୱଧିରେ
ମୁଣ୍ଡ ପାଖ ଦୈତ୍ୟେ ଧରିଲେ
ଲାଞ୍ଜ ପାଖ ଦେବେ ଧାରଣ କରିଣ
ବଳେ ସାଗର ମନ୍ଥିଲେ ଯେ ।୨୨

ଜନ୍ମିଲା ବହୁ ଦୁର୍ଲ୍ଲଭ ପଦାର୍ଥ
ଗଜାଶ୍ୱ, ଚନ୍ଦ୍ର, ଲକ୍ଷ୍ମୀ, ପାରିଜାତ
ନ କଲେ ଯେ ଦ୍ରବ୍ୟ କେହି ଗ୍ରହଣ
ଅମୃତ ଲୋଭରେ ବଳାଇ ମନ
ହଳାହଳ ବିଷ ଜାତ ଯେ
କୂଟ କରି ପ୍ରଭୁ ଶଙ୍କରେ ପିଆଇ
ସାଗର କରିଲେ ଶାନ୍ତ ଯେ ।୨୩

ଶେଷରେ ଅମୃତ ହେଲା ଉତ୍ପନ୍ନ
ବଳାତ୍କାରେ ନେଲେ ଦୈତ୍ୟ ଗଣ
ଦେବ ପକ୍ଷ ମଧ୍ୟେ ଲାଗିଲା ଗୋଳ
ପିଟାପିଟି ହେଲେ ଉଭୟ ଦଳ
ମୋହିନୀ ରୂପକୁ ଧରି ଯେ
ସମାଧାନ ପାଇଁ ଅସୁରଙ୍କ ଠାରୁ
ବିଷ୍ଣୁ ଭାଣ୍ଡ ନେଲେ ହରି ଯେ । ୨୪

ଦେବଗଣେ ସୁଧା କଲେ ପ୍ରଦାନ
ଅମର ହୋଇଲେ କରି ଭୋଜନ
ଦେବଙ୍କ ଉଦ୍ଦେଶ୍ୟ ହେଲା ପୂରଣ
ବଞ୍ଚିତ ହୋଇଲେ ଦଇତଗଣ
ନ ପାଇ ଶ୍ରମର ମୂଲ୍ୟ ଯେ
ସକ୍ରୋଧେ ଅସୁରେ ହୃଦ ଭିଆଇଲେ
ସ୍ୱର୍ଗକୁ କଲେ କବଳ ଯେ । ୨୫
ଦେବାସୁର ମଧ୍ୟେ ଲାଗିଲା ଯୁଦ୍ଧ
ଦେବଗଣେ କଲେ ଅସୁର ବଧ
ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ଦେଖିଲା
ସଞ୍ଜିବନୀ ମନ୍ତ୍ରେ ଦେଲେ କ ପ୍ରାଣ
ଜଣିଲେ ଅସୁର ଶକ୍ତି ଯେ
ଦେବ-ଦୈତ୍ୟ ଯୁଦ୍ଧେ ଦେବେ ହାରିଗଲେ
ବୃଦ୍ଧି ପାଇଲା ଦୁର୍ଗତି ଯେ । ୨୬
ଶୁକ୍ରାଚାର୍ଯ୍ୟ ଠାରୁ ମନ୍ତ୍ର ହରଣ
କ ରି ବା କୁ ଇନ୍ଦ୍ର କଲେ ମନ
ଗୁରୁ ବୃହସ୍ପତି ତନୟ କଚ
ପଠାଇଲେ ତାଙ୍କୁ କରଣ ପେଞ୍ଚ
ଶୁକ୍ରାଚାର୍ଯ୍ୟଙ୍କ ଚରଣେ ଯେ
ପ୍ରଣାମ କରଣ ଶିଷ୍ୟତ୍ୱ ଗ୍ରହଣ
କଲେ କପଟାଚରଣେ ଯେ । ୨୭

କନ୍ୟା ଦେବଯାନୀ ସଙ୍ଗ ଲଭିଣ
ଶୁକ୍ର ଠାରୁ ବିଦ୍ୟା କଲେ ଗ୍ରହଣ
ମୃତ ସଞ୍ଜୀବନୀ ବିଦ୍ୟା ହରଣ
କରି ସ୍ୱର୍ଗକୁ ଫେରିଲେ ବହନ
ସଞ୍ଜୀବନୀ ବିଦ୍ୟାମୃତ ଯେ
ଏ ଦୁଇ ପଦାର୍ଥ ପାଇ ସୁରନାଥ
ଦୈତ୍ୟ ଠାରୁ ବଳବନ୍ତ ଯେ । ୨୮

କ୍ଷୀରମଣ୍ଡଳରେ ପୂର୍ଣ୍ଣ ଭଗବାନ
ସହାୟ ତାହାଙ୍କୁ ଶ୍ରୀ ନାରାୟଣ
କାଳେ କାଳେ ବିଷ୍ଣୁ ଦୈତ୍ୟ ଅସୁର
ହେତୁ କରି ମନେ ହେ ଦଣ୍ଡଧାରୀ
ଅତି ନିର୍ଦ୍ଦୟ ନିଷ୍ଠୁର ଯେ
କୂଟେ କଉଣସି କରନ୍ତି ନିଧନ
ସେ ଯେଣୁ ଦୈତ୍ୟ ଅସୁର ଯେ । ୨୯

ବିଗୃରିଲେ ମନେ ବଳି ରାଜନ
ବାହୁ ବଳୁ ଧର୍ମ ବଳ ପ୍ରଧାନ
ଦାନ ପୁଣ୍ୟେ ତେଣୁ ରଖିଲେ ମତି
ପୁଣ୍ୟ ଫଳେ ସ୍ୱର୍ଗେ ହେବେ ନୃପତି
ଦେଖି ଇନ୍ଦ୍ର ଭୟଭୀତ ଯେ
ଜଣାଇଲେ ବିଷ୍ଣୁ ପାଖରେ ଯାଇଁ
ଆପଣା ଦୁଃଖ ଚରିତ ଯେ । ୩୦
କଶ୍ୟପ, ଅଦିତି କୋଳେ ବାମନ
ରୂପେ ନାରାୟଣ ହୋଇଲେ ଜନ୍ମ
ବଳିକୁ ମାଗିଲେ ତ୍ରିପାଦ ଭୂମି
ସତ୍ୟ କଲେ ବଳି ଦେବାକୁ ଜମି
ମନ୍ତ୍ରୀ କରିଲେ ବାରଣ ଯେ
ମାତ୍ର ନ ଶୁଣିଲେ ଗୁରୁଙ୍କ ବଚନ
କଲେ ଶଙ୍ଖେ ଜଳ ଦାନ ଯେ । ୩୧

ଶାଙ୍ଗ କଣ୍ଠ ଶୁକ୍ରାଚାର୍ଯ୍ୟ ରୋଧିଲେ
ଜଳ ଦାନେ ବାଧା ସୃଷ୍ଟି କରିଲେ
ନ ପଡ଼ନ୍ତେ ଜଳ ଜାଣି ବାମନ
କୁଶେ ବିଧ କଲେ ଶ୍ରୀ ନାରାୟଣ
ଫୁଟି ଗଲା ଏକ ନୟନ
ଛାଡ଼ି ଦେଲେ ପଥ ହେଲା ଜଳପାତ
ଘେନଲେ ଜଳ ବାମନ ଯେ । ୩୨

ଦାନ ପାଇଁ ବଳି ବଚନ ବଦ୍ଧ
ତି'ପାଦ ବାମନ ହେଲେ ତ୍ରିପାଦ
ନାଭିରୁ ପାଦେକ ହେଲା ଉତ୍ପନ୍ନ
ବ୍ରହ୍ମପାଦ ବଳି କଲେ ବର୍ଣ୍ଣନ
ଦି ପାଦେ ଆକାଶ ମର୍ତ୍ତ୍ୟ ଯେ
ବ୍ୟାପିବାରୁ ବଳି ଶିର ଦାନ କରି
ହୋଇଲେ ଚରଣାଶ୍ରିତ ଯେ । ୩୩

ବଳି ମଥା ପରେ ପାଦକୁ ଥୋଇ
ପାତାଳେ ପୂରିଲେ କମଳାସାଇଁ
ଛଳନା କରି ପ୍ରଭୁ ରଖିଲେ ବଳି
କେ ପାରିବ ତାଙ୍କ ବୁଦ୍ଧିକୁ କଳି
ଏଥୁ ବୁଝ କଂସ ରାଜନ
ଦ୍ୱିପାଦ ମଣିଷ ତିନି ପାଦ ହୋଇ
ସଙ୍କଟେ କାର୍ଯ୍ୟ ସାଧନ ଯେ । ୩୪

ଅଭୟ ଚରଣେ ରଖିଲେ ବଳି
ଦିନେ ସେ ହୋଇବେ ସୁର ମଉଳି
ଅସୁର ଜନ୍ମିଣ ସୁର ରାଜନ
ପୁଣ୍ୟ ଫଳେ ବଳି କଲେ ଅର୍ଜ୍ଜନ
ଥିବାରୁ ଧରମ ଶକ୍ତି ଯେ
ଦୈତ୍ୟପତି ଥାଇ ସୁରପତି ହୋଇ
ରଖିଲେ ଅମର କୀର୍ତ୍ତି ଯେ । ୩୫

ଅମୃତ ନ ଖାଇ ହେଲେ ଅମର
ଅଭୟ ପାଦରେ ସମର୍ପି ଶିର
ଦୈତ୍ୟ କୁଳେ ବଳି ଭକତ ଶ୍ରେଷ୍ଠ
ସଦୟ ଅଛନ୍ତି ବୈକୁଣ୍ଠ ନାଥ
ବଳି ପାତାଳ ଗମନ ଯେ
ଦେଖି ପ୍ରାଣ ଭୟେ ପଳାଇଲେ ଦୈତ୍ୟ
ଶଙ୍କା ଶୂନ୍ୟ ଦେବ ଗଣ ଯେ ।୩୬

ଏଥୁ ଅନ୍ତେ କଂସ କର ଶ୍ରବଣ
ଗତ ହୋଇଗଲା କେତେକ ଦିନ
ଜୟ ବିଜୟ ବିଷ୍ଣୁ ଦ୍ୱାରପାଳ
ଦୁର୍ବାସା ଶାପେ ହେଲେ ଅସୁର
ବ୍ରହ୍ମା-ଉର୍ବଶୀ ଔରସେ ଯେ
ମୁର ଓ ଦାରୁଣ ନାମରେ ଜନ୍ମିଣ
ସ୍ୱର୍ଗେ ଦେବଙ୍କୁ ପୀଡ଼ିଲେ ଯେ ।୩୭

ଭୟ ପାଇ ଦେବେ କଲେ କ୍ରନ୍ଦନ
ଶରଣ ପଶିଲେ ବିଷ୍ଣୁ ଚରଣ
ଶ୍ରୀ ବିଷ୍ଣୁ ପୁଚ୍ଛିଲେ ହେ ମଘବାନ
କାହିଁ ମୋ ପିତା ମାତା ହେବୁ ଜନ୍ମ ?
ଧରିବି ନର ଶରୀର ଯେ
ବିଷ୍ଣୁ କଥା ଶୁଣି ବ୍ରହ୍ମା-ଶିବ-ଇନ୍ଦ୍ର
ଉପାୟ କଲେ ସତ୍ୱର ଯେ ।୩୮

ଜ୍ଞାନ କର୍ମ ଗୁଣ ବେଦ ମନ୍ଥନ
କରିବାରୁ ବୀଜ ମନ୍ତ୍ର ଉତ୍ପନ୍ନ
ବ୍ରହ୍ମ ଗାୟତ୍ରୀ ଚୌଷଠି ଅକ୍ଷର
ଜପ କରନ୍ତେ ହୃଦେ ବେଦବର
ପଞ୍ଚ ତନ୍ମାତ୍ରା ସମ୍ଭୂତ ଯେ
ରୂପ-ରସ-ଗନ୍ଧ- ଶବ୍ଦ-ସ୍ପର୍ଶ ଆଦି
ପଞ୍ଚତନ୍ମାତ୍ରାରୁ ଜାତ ଯେ ।୩୯

ଏ ପଞ୍ଚଙ୍କୁ ପଞ୍ଚଭୂତ ଜନ୍ମ
ବାୟୁ-ବାରି ବିଦ୍ୟୁ-ବସୁଧା-ବ୍ୟୋମ
ପଞ୍ଚଭୂତରୁ ଉତ୍ପନ୍ନ ଶରୀର
ବାସ କଲା କାମନା ଅହଂକାର
ନାମ ହେଲା ବେଦ ତତ୍ତ୍ୱ ଯେ
ବିଷ୍ଣୁ ପିତା ହେବା ପାଇଁ ଦେବ ଗଣ
ବେଦମନ୍ତ୍ର କଲେ ଜାତ ଯେ ।୪୦

ହେମ ମନ୍ତ୍ରେ ଆହୁତି କଲେ ପ୍ରଦାନ
ଜଙ୍ଘରୁ କଶ୍ୟପ ଅଂଶେ ଉତ୍ପନ୍ନ
ସୁବେଣୀ ବିପ୍ର କୁଳେ ଜାତ ହେଲେ
କୃଷ୍ଣ ବଲ୍ଲଭ ନାମକୁ ବହିଲେ
ବିଷ୍ଣୁ ପିତା ଅବତାର ଯେ
କହନ୍ତି ନାରଦ ସୃଷ୍ଟି ତତ୍ତ୍ୱ କଥା
ଶୁଣେ ବସି କଂସାସୁର ଯେ ।୪୧

ଦେବ ଋଷି ଗଣେ ଯଜ୍ଞାରମ୍ଭିଲେ
ପୁତପାବକ ମନ୍ତ୍ରେ ଛନ୍ଦ କଲେ
ଯଜ୍ଞାନଳେ ଘୃତାହୁତି ପ୍ରଦାନ
ଅଗ୍ନିରେ କନ୍ୟା ଏ ହେଲା ଉତ୍ପନ୍ନ
ଅଦିତି ଅଂଶେ ଜନ୍ମିଲେ ଯେ
ମାନବୀ ବିଷ୍ଣୁଙ୍କ ମାତା ହୋଇବାକୁ
ଯଜ୍ଞାନଳୁ ଜାତ ହେଲେ ଯେ ।୪୨

ଦିବ୍ୟ ଶକ୍ତି ଧରି ଦେବୀ ଉତ୍ପନ୍ନ
ଅନଳ ସମ ତେଜ-କାନ୍ତି-ବର୍ଣ୍ଣ
ଗୋଲକ ଦେଶ ରାଜା ଭାଗ୍ୟବନ୍ତ
ପାଳନ୍ତେ ଭଗବତୀ ନାମେ ଖ୍ୟାତ
କୃଷ୍ଣ ବଲ୍ଲଭ ନୃପତି ଯେ
ଜାତିରେ ବ୍ରାହ୍ମଣ ବୃତ୍ତିରେ କ୍ଷତ୍ରିୟ
ବିଭା ହେଲେ ଭଗବତୀ ଯେ ।୪୩

ଶେଷ ନୃସିଂହ ଲକ୍ଷ୍ମୀ ନାରାୟଣ
ଭଗବନ୍ତ ଗର୍ଭୁ ହେଲେ ଉତ୍ପନ୍ନ
ଦୈତ୍ୟ ବଧିବାକୁ ନର ଶରୀର
ବର୍ଣ୍ଣିକା ଧନ୍ୟର ବ୍ରଜ କୁମାର
ଜୟ ବିଜୟ ଦ୍ୱାରପାଳ ଯେ
ବ୍ରହ୍ମ ଅଭିଶାପ ପାଇ ଜନ୍ମି ଥିଲେ
ମୁର, ଦାରୁଣ ବ' ଅସୁର ଯେ ।୪୪

ଘୋର ତପ କରି ମାଗିଲେ ବର
ନ ମରି ରହିବେ ହୋଇ ଅମର
ଉତ୍ତରଲେ ବ୍ରହ୍ମା ନ ପାରେ ଦେଇ
ଜନମି ନ ମରି ଜଣେକେ ନାହିଁ
ଜନ୍ମିଲେ ନଶ୍ଚେ ମରଣ ଯେ
ମର୍ତ୍ତ୍ୟ ନିୟତାଳ ଅଟେ ଏ ବଚନ
କିଏ କରିବ ଲଂଘନ ଯେ ? ।୪୫

ଛଳରେ କହିଲେ ଦୁଇ ସୋଦର
ନ ଦେବ ଯଦ୍ୟପି ଅମର ବର
ଦିଅ ତେବେ ପିତା ଏମନ୍ତ ବର
ଶସ୍ତ୍ରାସ୍ତ୍ରେ ମୃତ୍ୟୁ ନ ହେବ ଆମ୍ଭର
ନ ହୋଇବୁ ଦେବେ ହତ ଯେ
ବୋଲୁଛନ୍ତି ବ୍ରହ୍ମା ମାନବା ବସ୍ତୁରେ
ଅବଶ୍ୟ ହେବ ନିହତ ଯେ ।୪୬

ବ୍ରହ୍ମା କଥା ଶୁଣି ବୋଲଇ ମୁର
ସପ୍ତପାଦ ହୋଇଥିବ ଯେ ନର
ସେ ପାଦେ ମୋ ଶିରେ କଲେ ପ୍ରହାର
ମୃତ୍ୟୁ ହେବ ମୋର ଦିଅ ଏ ବର
"ତଥାସ୍ତୁ" କହିଲେ ବ୍ରହ୍ମା ଯେ
ବର ପାଇ ମନେ ବିଗୁରିଲା ମୁର
ନୋହିଲି କି ମୁଁ ଅମର ଯେ ।୪୭

ସପ୍ତ ପାଦ ଶିଶୁ ହେବ କି ଜାତ
ହେଲେ ମାତା ସଙ୍ଗେ ମରିବ ପୁତ
ଦ୍ୱିପାଦ ସନ୍ତାନ ଜନମ କଷ୍ଟ
ସହି ନ ପାରଣ କାନ୍ଦଇ ମାତ
ସପ୍ତ ପାଦେ କେ ଜନ୍ମଇ ଯେ
ଅସମ୍ଭବ କଥା ହୋଇଣ ଥିବାରୁ
ଅମର ନୁହେଁ କି ମୂର୍ଖ ଯେ ? ।୪୮

ତଦନ୍ତେ ଦାରୁଣ ମାଗିଲା ବର
ମାଗୁଅଛୁ ପିତା ଦିଅ ଏ ବର
ସପ୍ତଫଣି ହୋଇଥିବ ସେ ନର
ସପ୍ତ ମୁଖୁ ବିଷ କଲେ ଉଦ୍‌ଗାର
ତେବେ ହୋଇବ ମରଣ ଯେ
ତଥାସ୍ତୁ କହିଣ ଚଳିଗଲେ ବ୍ରହ୍ମା
ବଗୁରନ୍ତି ଦୁହିଜଣ ଯେ ।୪୯

ସହସ୍ର ପାଦେକ ଜନ୍ମିବ ନର
ସହସ୍ର-ଫଣୀ କି ହେବ କୁମର
ଅସମ୍ଭବ ଅଟେ ବ୍ରହ୍ମାଙ୍କ ଗିର
ଏଣୁ କରି ଆମ୍ଭେ ହେଲୁ ଅମର
ଏମନ୍ତ ବଗୁରି ଦୁଇ ଯେ
ସ୍ୱର୍ଗ ପୁରେ ପଶି ଦେବଙ୍କୁ ଦଣ୍ଡନ୍ତେ
ଡାକିଲେ କମଳା ସାଇଁ ଯେ ।୫୦

ଦେବଗଣ ଦୁଃଖ କରି ଶ୍ରବଣ
ଜନ୍ମିଲେ ଶ୍ରୀହରି ନର ରୂପେଣ
କୃଷ୍ଣ ବଲ୍ଲଭ ବଦ୍ରିକା ନୃପତି
ରାଣୀ ଭଗବତୀ ଗର୍ଭୁ ଉତ୍ପତ୍ତି
ଶେଷ ନୃସିଂହ ନାମରେ ଯେ
ବଦ୍ରିକା ନଗ୍ରରେ ଅବତୀର୍ଣ୍ଣ ହେଲେ
ଆସି ମାନବ ଶରୀରେ ଯେ ।୫୧

ଗରୁଡ ପୃଷ୍ଠରେ ଆସୀନ ହୋଇ
ଲଢ଼ିଲେ ଅସୁର ସଙ୍ଗେ ଯେ ଯାଇ
ପ୍ରଭୁ ନୃସିଂହ ଲକ୍ଷ୍ମୀ ନାରାୟଣ
ପ୍ରହାରିଲେ ଶିରେ ସପ୍ତଚରଣ
ନିହତ ହେଲା ମୁରାସୁର ଯେ
ଶେଷ ଦେବ ସପ୍ତ ଫଣିହୋଇ ବକ୍ଷେ
ମାରିଲେ ଦାରୁଣାସୁର ଯେ । ୫୨

ବୁଝ କଂସ ଏଥୁ ବିଷ୍ଣୁ ଚରିତ
ଅସମ୍ଭବ କିଛି ନୁହେଁ ଜଗତ
ସର୍ବଶକ୍ତି - ମାନ ଶ୍ରୀ ନାରାୟଣ
କୌଶଳେ କରନ୍ତି ଦୈତ୍ୟ ଦଳନ
ମୁରଦାରୁଣ ଆଖ୍ୟାନ ଯେ
ସପ୍ତ ପାଦ ସପ୍ତ ଫଣି ହୋଇ ପ୍ରଭୁ
ବଧିଲେ ମୁରଦାରୁଣ ଯେ । ୫୩

ଦୈତ୍ୟଙ୍କୁ ମାରି ରଖିଲେ ଅବନୀ
ବୈକୁଣ୍ଠେ ଚଳିଲେ ସୋଦର ବେନି
ସତ୍ୟଯୁଗ ଲୀଳା ହୋଇଲା ଶେଷ
ପୃଥିବୀର ଭାର ହେଲା ଉଶ୍ୱାସ
ଦେବ-ଋଷି-ବିପ୍ର ଶାନ୍ତ ଯେ
ଭକ୍ତଙ୍କୁ ଦର୍ଶନ ଦେଇ ଭଗବାନ
ଭବ ସାଗରୁ କଲେ ମୁକ୍ତ ଯେ । ୫୪

ରାବଣ ନିଧନେ ତ୍ରେତୟା ଯୁଗେ
ଅଦିତି କଶ୍ୟପ ଅଯୋଧ୍ୟା ଭାଗେ
କୌଶଲ୍ୟା ଦଶରଥ ନାମକୁ ବହି
ବିଷ୍ଣୁ ମାତା ପିତା ଜନ୍ମିଲେ ମହୀ
ରାମ ନାମେ ବିଷ୍ଣୁ ଜନ୍ମ ଯେ
ଜୟ ଓ ବିଜୟ ଦୈତ୍ୟ ଭ୍ରାତା ଦ୍ୱୟ
ରାବଣ ଓ କୁମ୍ଭକର୍ଣ୍ଣ ଯେ । ୫୫

ରାମ ପତ୍ନୀ ସୀତା କରି ହରଣ
ରାମ ବାଣେ ଗଲା ରାବଣ ପ୍ରାଣ
ଛପ୍ନାଗଣ୍ଡା ଯୁଗ ଥିଲା ଆୟୁଷ
ଛପନ ଯୁଗରେ ପ୍ରାଣେ ବିନାଶ
ଆୟୁ ଥାଉଁ ଥାଉଁ ମୃତ ଯେ
ରାବଣ ଓ କୁମ୍ଭ- କର୍ଣ୍ଣଙ୍କୁ ବିନାଶି
ବୈକୁଣ୍ଠେ କଲେ ଗମନ ଯେ । ୫୬

ତ୍ରେତାଯୁଗ ଲୀଳା ହୋଇଲା ଶେଷ
ଦଶାନନ ବଂଶ ଗଲେ ବିନାଶ
ରାମ ଲକ୍ଷ୍ମଣ - ଭରତ - ଶତ୍ରୁଘ୍ନ
ବିଷ୍ଣୁ ଅଂଶେ ଚାରି ଭ୍ରାତା ଉତ୍ପନ୍ନ
ଦୈତ୍ୟେ ମାରି ଉଦ୍ଧରନ୍ତି ଯେ
ଅଯୋଧ୍ୟା ନଗରେ ନୃପତି ହୋଇଲେ
ବସୁମତୀ ହେଲା ଶାନ୍ତ ଯେ । ୫୭

ବିଚିତ୍ର ଶ୍ରୀରାମ ମହିମା ଜାଣ
ବନ୍ୟ ପଶୁ କଲେ ଦୈତ୍ୟ ନିଧନ
ଖାଦ୍ୟ ଖାଦକରେ ଲାଗିଲା ଯୁଦ୍ଧ
ଖାଦ୍ୟର ହାତରେ ଖାଦକ ବଧ
ନାମ ମହିମା ଅପାର ଯେ
ରାମ ନାମ ଧରି ଦରି ଜେଉଁ ହରି
ଧୂଳି କଲା ଲଙ୍କା ପୁରୀ ଯେ । ୫୮

ରାମ ନାମର ମହିମା ଅପାର
ଜଳରେ ଭାସିଲା ଶିଳା, ପଥର
ଅଶାନ୍ତ ସାଗର ହୋଇଲା ସ୍ଥିର
ସେତୁ ନିର୍ମିତ ଗଭୀର ସାଗର
ଜଗତେ ଏହା ଦୁର୍ଲ୍ଲଭ ଯେ
ଭଲ୍ଲୁକ ମର୍କଟେ ଶ୍ରୀରାମ ବାହିନୀ
ଅସମ୍ଭବକୁ ସମ୍ଭବ ଯେ । ୫୯

ଏଥୁ ବୁଝ କଂସ ବିଶ୍ବର ମାୟା
ଅସୁର ନିଧନେ ଧରନ୍ତି କାୟା
ଦୟାନିଧି ହୋଇ ବଡ଼ ନିର୍ଦ୍ଦୟ
ଦଇତ୍ୟ ଦଳନ ପାଇଁ ଉଦୟ
ସର୍ବଦା ଦୈତ୍ୟ ବିରୋଧି ସେ
ଦୁର୍ଜ୍ଜନ ଦଳନ ସଜ୍ଜନ ପାଳନ
କରନ୍ତି ସେ ନିରବଧି ଯେ ।୬୦

ମହାବିଷ୍ଣୁଙ୍କର ଦଶାବତାର
ସାତ ଅବତାର ନରାବତାର
ନୃସିଂହ, ବାମନ, ପର୍ଶୁ, ଶ୍ରୀରାମ
ବଳରାମ, ଶ୍ରୀକୃଷ୍ଣ, କଳ୍କି ରାମ
ଏ ମଧ୍ୟେ ପାଞ୍ଚାବତାର ଯେ
ନରସିଂହ, ପର୍ଶୁ- ରାମ, ଶ୍ରୀରାମ
ବଳରାମ, ଚକ୍ରଧର ଯେ ।୬୧

ସମର ମୁଖର ପାଞ୍ଚାବତାର
ବୀର ଅଗ୍ରଗଣ୍ୟ ଆୟୁଧ କର
ପାଞ୍ଚାବତାରୁ ଚତୁଃ ଅବତାର
କଶ୍ୟପ ଅଦିତି ଦେବୀ କୁମର
ନରାବତାରେ ପ୍ରଧାନ ଯେ
ଅସୁର ଦଳନେ ମର୍ତ୍ତ୍ୟେ ଅବତୀର୍ଣ୍ଣ
କଶ୍ୟପାଦିତି ନନ୍ଦନ ଯେ ।୬୨

ସତ୍ୟ-ତ୍ରେତୟା - ଦ୍ୱାପର ପ୍ରମାଣ
ମର୍ତ୍ତ୍ୟେ ଅବତୀର୍ଣ୍ଣ ଶ୍ରୀ ନାରାୟଣ
କରନ୍ତି ସଗୁଣ ଲୀଳା ରଚନ
ଭକତେ କରନ୍ତି ରୂପ ଦର୍ଶନ
ସାଧୁ ଏ ଗୁଣ କୀର୍ତ୍ତନ ଯେ
ମହା ପ୍ରଭୁଙ୍କର ମାନବୀୟ ଲୀଳା
ଦର୍ଶନେ ଦୁଃଖ ଖଣ୍ଡନ ଯେ ।୬୩

ତ୍ରେତା ଯୁଗ ଲୀଳା କରିଣ ଶେଷ
ବୈକୁଣ୍ଠରେ ପ୍ରଭୁ କରିଲେ ବାସ
ଚଉଷଠି ପଦେ ଅଧ୍ୟାୟ ଶେଷ
ଗୀତରେ ଭଣିଲ ଏ ବୃନ୍ଦ ଦାସ
ଅଭିନ୍ନ ସୁନ୍ଦର ରାମ ଯେ
ଅଭୟ ଚରଣେ ଶରଣ ପଶିଛୁ
ଶାନ୍ତ ଆନନ୍ଦ ଆଶ୍ରମ ଯେ ।୬୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଛନ୍ଦେ ମହାବିଷ୍ଣୁ ଜନ୍ମ ବିବରଣେ ନାମ
ଷୋଡଶ ଅଧ୍ୟାୟ ସମ୍ପୂର୍ଣ୍ଣଂ
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି -**

ବାଇ ମନରେ
ଭଜ ହରେ-ରାମ-କୃଷ୍ଣ - ଶ୍ୟାମାଭିରାମ
ହରେ ରାମ - କୃଷ୍ଣ - ଶ୍ୟାମକୁ ଭଜିଲେ
କି କରି ପାରିବ ଏ କାଳଯମ ?
ଛାଡ଼ି ସବୁ କର୍ମ ମୁଖେ ରଟ ନାମ
ହରେ ରାମ - କୃଷ୍ଣ - ଶ୍ୟାମାଭିରାମ
ବୋଲେ ବୃନ୍ଦଦାସ ଉଦ୍ଧରି ଧରିବେ
ଅଭିନ୍ନ ସୁନ୍ଦର ଶ୍ରୀଅଭିରାମ ।
କମଳାନାଥ କୃଷ୍ଣା ମାତା କାନ୍ତ
ନୟନାଭିରାମ ଆନନ୍ଦଧାମା
ଅନନ୍ତ ଗୁମ୍ଫାରେ ଅଜପା ସୂତ୍ରରେ
ଗୁନ୍ଥିଣ ହୃଦରେ ସଦା ନମସ୍ତ ।



# ସପ୍ତଦଶ ଅଧ୍ୟାୟ

## ଦେବକୀ ବସୁଦେବ ଉପାଖ୍ୟାନ

### ରାଗ - ମାଳତୀ ଗଉଡ଼ା

କୃଷ୍ଣ ଚରିତ ମାନସ ଶୁଣ ସୁଜ୍ଞଜନ
ଝରୁଅଛି ସୁଧା ଧାର ଅମୃତ ସମାନ ଯେ । ୧
ନାରଦ କହନ୍ତି ଶୁଣ ରାଜା କଂସାସୁର
ଦକ୍ଷଙ୍କ ତନୟେ ହେଲେ ଅଦିତିର ଈଶ୍ୱର ଯେ । ୨
ସ୍ୱର୍ଗ, ମର୍ତ୍ତ୍ୟ, ଶୂନ୍ୟ, ଜଳ, ସ୍ଥଳ ଆବୋରିଲେ
ନୃପତି ହୋଇଣ ପ୍ରଜା ପାଳନ କରିଲେ ଯେ । ୩
ଅଦିତି ଉଦରୁ ଦଶ ଆଦିତ୍ୟ ଉତ୍ପନ୍ନ
ସେମାନଙ୍କ ମଧ୍ୟେ ଅନ୍ୟତମ ବିବସ୍ୱାନ ଯେ । ୪
ବିବସ୍ୱାନ ସୂର୍ଯ୍ୟନାମେ ହେଲେ ବିଖ୍ୟାତ
ସଂଜ୍ଞା ତାଙ୍କ ଧର୍ମପତ୍ନୀ ଶ୍ରାଦ୍ଧ ଦେବ ସୁତ ଯେ । ୫
ବିବସ୍ୱାନ ପୁତ୍ର ହେତୁ ନାମ ବୈବସ୍ୱତ
ତାଙ୍କ ଠାରୁ ସୂର୍ଯ୍ୟ ବଂଶ ହୋଇଲେ ଅମୃତ ଯେ । ୬
ଅଯୋଧ୍ୟା ରାଜ୍ୟେ ସେମାନେ କଲେ ରାଜପଣ
ସତ୍ୟ, ନ୍ୟାୟ ଧର୍ମ ବଳେ ପରଜା ପାଳନ ଯେ । ୭
ତାଙ୍କ ପତ୍ନୀ ଶ୍ରଦ୍ଧା ଗର୍ଭୁ ନ ଜନ୍ମିଲେ ସୁତ
ବଶିଷ୍ଠଙ୍କୁ ବର ମାଗି କଲେ ନରନାଥ ଯେ । ୮
ଯଜ୍ଞଚରୁ ଖାଇ ଇଳା ନାମେ କନ୍ୟା ଜାତ
କନ୍ୟା ଦେଖି ନରନାଥ ହେଲେ ବିଷାଦିତ ଯେ । ୯
ସେ କନ୍ୟାକୁ ପୁତ୍ର କରି ଦେବା ମାନସରେ
ବଶିଷ୍ଠ ପଦ୍ମରେ ରାଜା ପ୍ରାର୍ଥନା କରିଲେ ଯେ । ୧୦
ବଶିଷ୍ଠଙ୍କ ତପୋବଳେ କନ୍ୟା ହେଲା ପୁତ୍ର
ଇଳା ନାମ ପରିବର୍ତ୍ତେ ସୁଦ୍ୟୁମ୍ନ କଥିତ ଯେ । ୧୧

ସୁଦ୍ୟୁମ୍ନ ନୃପତି ହୋଇ ପ୍ରଜା ପାଳିଲେ
ମୃଗୟାକୁ ଯାଇ ହର ବନେ ପ୍ରବେଶିଲେ ଯେ । ୧୨

ସେହି ବନର ମହାତ୍ମ୍ୟ ଏମନ୍ତ ପ୍ରକାର
ପୁରୁଷ ହୋଇବ ନାରୀ ଈଶ୍ବରଙ୍କ ବର ଯେ । ୧୩

ସେ ବନେ ପ୍ରବେଶି ସୁଦ୍ୟୁମ୍ନ ନାରୀ ହୋଇଲେ
ଚନ୍ଦ୍ର ପୁତ୍ର ବୁଧ ତାଙ୍କୁ ରମଣ କରିଲେ ଯେ । ୧୪

ପୁରୁରବା ନାମେ ପୁତ୍ର ହୋଇଲେ ଉତ୍ପନ୍ନ
ପୃଥିବୀରେ ସୋମବଂଶ କଲେ ସେ ସ୍ଥାପନ ଯେ । ୧୫

ପୁତ୍ର ସୁଦ୍ୟୁମ୍ନ ଦୁଃଖରେ ପିତା ବୈବସ୍ୱତ
ଶିବଙ୍କୁ ପ୍ରାର୍ଥନା କଲେ ମୁକତି ନିମିତ୍ତ ଯେ । ୧୬

ତୋଷ ହୋଇ ଆଶୁତୋଷ ଯାଚି ଦେଲେ ବର
ମାସେ ନାରୀ ମାସେ ପୁଂସ ହୋଇଲେ ନୃବର ଯେ । ୧୭

"ତ୍ୱମେବ ପିତା ତ୍ୱମେବ ମାତା ତୁମେ ସର୍ବସ୍ୱ"
ସେ ଦିନୁ ପ୍ରବୃତ୍ତ ହେଲା ବଂଶେ ଏହି ଭାବ ଯେ । ୧୮

ପୁତ୍ର ହେନ ବୈବସ୍ୱତ ଅଯୋଧ୍ୟା ଫେରିଲେ
ସୂର୍ଯ୍ୟ ବଂଶେ ଯଶକୀର୍ତ୍ତିମାନ ରଖାଇଲେ ଯେ । ୧୯

ସେହି ସୂର୍ଯ୍ୟ ବଂଶେ ଶ୍ରୀରାମ ହୋଇଲେ ଜନମ
ରଖିଲେ ଅକ୍ଷୟ କୀର୍ତ୍ତି ପୂର୍ବରୁ ବର୍ଣ୍ଣନ ଯେ । ୨୦

ଅଯୋଧ୍ୟା ପରେ ମଥୁରା ରାଜ୍ୟର ପ୍ରଧାନ୍ୟ
ଶୁଣ ଆହେ କଂସାସୁର ଶାସ୍ତ୍ରର ପ୍ରମାଣ ଯେ । ୨୧

ଚନ୍ଦ୍ର ପୁତ୍ର ବୁଧ ଠାରୁ ପୁରୁରବା ଜନ୍ମ
ହୋଇ ଚନ୍ଦ୍ର ବଂଶ କଲେ ପୃଥ୍ୱୀରେ ସ୍ଥାପନ ଯେ । ୨୨

ଚନ୍ଦ୍ରବଂଶୀ ରାଜା ମାନେ ହସ୍ତିନା ନଗରେ
ରାଜପଣ କଲେ ସତ୍ୟ ନ୍ୟାୟ ଧର୍ମ ବଳେ ଯେ । ୨୩

ହସ୍ତିନା ପରେ ମଥୁରା କଲେ କବଳିତ
ଚନ୍ଦ୍ର ବଂଶୁ ଯଦୁବଂଶ ଶାଖା ଏକ ଜାତ ଯେ । ୨୪

ସେ ବଂଶେ ହୋଇର ଜନ୍ମ ଉଗ୍ରସେନ ତାତ
ପ୍ରସିଦ୍ଧ ଏ ଯଦୁ ବଂଶ ଦ୍ୱାପରେ ବିଖ୍ୟାତ ଯେ । ୨୫

ଏହି ଯଦୁ ବଂଶେ ଜାତ ହେବେ ନାରାୟଣ
ବୁଝାଇ କହୁଛି ତାହା କର ହେ ଶ୍ରବଣ ଯେ । ୨୬
ଅଦିତି କଶ୍ୟପ ଦୁଇ ଦ୍ୱାପର ଯୁଗରେ
ଗୁପ୍ତ ଜାତ ହୋଇଛନ୍ତି ମଥୁରା ନଗରେ ଯେ । ୨୭
ତୋ ପିତା ଉଗ୍ରସେନ କନିଷ୍ଠ ସୋଦର
ଦେବକ ଗୃହେ ଅଦିତି ଦେବକୀ ସଭର ଯେ । ୨୮
ବୃଷ୍ଣି ବଂଶେ ବସୁଦେବ କଶ୍ୟପ ସମ୍ଭୂତ
ବିଷ୍ଣୁ ପିତାମାତା ହେବେ ଏବାହେ ସମ୍ପୃକ୍ତ ଯେ । ୨୯
ତୋହର ନିଧନ ପାଇଁ ଦେବ ଦଇତ୍ୟାରି
ଜନ୍ମିବେ ଦେବକୀ ଗର୍ଭୁ ରଖ ହେତୁ କରି ଯେ । ୩୦
ଦେବକୀ ଅଷ୍ଟମ ଗର୍ଭେ ଜନ୍ମିବ ଯେ ସୁତ
ସେ ବାଳକ ହାତେ ତୁହି ହୋଇବୁ ନିହତ ଯେ । ୩୧
ଅଷ୍ଟମ ଗରଭ ଯାଏଁ ଉପ୍ରୋଧ ଛାଡ଼ିବୁ
ଭଣଜା ବୋଲି ମନେ ଦୟା ନ କରିବୁ ଯେ । ୩୨
ସାମାନ୍ୟ ବାଳକ ବୋଲି ନ ଘେନିବୁ ମନ
ବାଳକ କାଳରୁ ଶତ୍ରୁ କରିବୁ ନିଧନ ଯେ । ୩୩
ମାୟାବି ମୂର୍ତ୍ତି ବିଷ୍ଣୁ ଜାଣେ ବହୁ ମାୟା
କାର୍ଯ୍ୟ ସାଧନ ନିମନ୍ତେ ଧରେ ବହୁ କାୟା ଯେ । ୩୪
ସ୍ତ୍ରୀ, ପୁଲ୍ଲିଙ୍ଗ, ନପୁଂସକ ଯହିଁ ଯେ ପ୍ରକାରେ
ସେ ରୂପ ଧାରଣ କରେ ଆପଣା ଇଚ୍ଛାରେ ଯେ । ୩୫
ଏବେ ସେ ବିଷ୍ଣୁ ଜନ୍ମିବେ ଦେବକୀ ଗର୍ଭରେ
ଶତ୍ରୁ ଆସି ହସ୍ତଗତ ତୋ ହାତ ମୁଠାରେ ଯେ । ୩୬
ବାଳକ କାଳରୁ ଯଦି କର ପାରୁ ବଧ
ନ ପଡ଼ିବ ତୋତେ ଆଉ ପଛକୁ ପ୍ରମାଦ ଯେ । ୩୭
ନାରଦ କଥାକୁ ଶୁଣି କୋପାନ୍ୱିତ ହୋଇ
କରବାଳ କମ୍ପାଇଣ କହେ କଂସ ସାଇଁ ଯେ । ୩୮
କରବାଳ ଛୁଇଁ ମୁଁ କରୁଛି ଶପଥ
ଭଉଣୀ ଦେବକୀ ଆଜ କରିବ ନିହତ ଯେ । ୩୯

ବୁଝାଇ କହିଲେ ମୁନି ନ କର ଏମନ୍ତ
କୌଶଳେ ଶତ୍ରୁ ସାଧନ କର ନର ନାଥ ଯେ । ୮୦
ଏକା ଏକା ନରହତ୍ୟା ନ କର ଭୁଆଣ
ପ୍ରଥମେ ବିଶ୍ୱାସୀ ସେନା କର ହୋ ଗଠନ ଯେ । ୮୧
ଯଦୁବୀର ଗଣେ ତୋର ନୁହଁନ୍ତି ବିଶ୍ୱସ୍ତ
ତୋହ ଅପନିନ୍ଦାମାନ ଗାଉଛନ୍ତି ନିତ୍ୟ ଯେ । ୮୨
ସେମାନେ ଚିନ୍ତା କରନ୍ତି ତୋହର ଅହିତ
ତାହାଙ୍କୁ ବିଶ୍ୱାସ କଲେ ଆପେ ହେବୁ ହତ ଯେ । ୮୩
ଅଷ୍ଟମଲ୍ଲ ମାନେ ତୋର ଅତ୍ୟନ୍ତ ବିଶ୍ୱସ୍ତ
କାର୍ଯ୍ୟସିଦ୍ଧି କରିବାରେ ପୁଣି ସିଦ୍ଧ ହସ୍ତ ଯେ । ୮୪
ସ୍ୱଭାବେ ସେମାନେ ବଡ ମାୟାବୀ ଅସୁର
ମାୟା କରି ଶତ୍ରୁ ତୋର କରିବେ ସଂହାର ଯେ । ୮୫
ସେମାନଙ୍କ ହାତେ କର ଦାୟିତ୍ୱ ଅର୍ପଣ
ବିନାଶିବେ ଶତ୍ରୁ କରି ଗୁପତେ ମାରଣ ଯେ । ୮୬
କୁଣ୍ଡଳୀ ପର୍ବତେ ରହିଅଛନ୍ତି ଗୋପନ
ସମସ୍ତାନେ ସେମାନଙ୍କୁ ଯାଇ ଡାକି ଆଣ ଯେ । ୮୭
ସେମାନେ ରହିଲେ ପାଶେ ବଢିବ ଶକତି
ବନ୍ଧୁ ପଣେ ବାନ୍ଧି ରଖ ତାହାଙ୍କୁ ନୃପତି ଯେ । ୮୮
କଂସାସୁରେ ଗୂଢ଼କଥା କହି ବ୍ରହ୍ମ ସୁତ
ବିଚରିଲେ ଦୁଷ୍ଟ ଏବେ ହୋଇବ ନିହତ ଯେ । ୮୯
ବାଳକ ଭଣଜା ବଧ ମହାପାପ ଫଳେ
ଆୟୁକ୍ଷୟ ହୋଇଯିବ ମରିବ ଅକାଳେ ଯେ । ୯୦
ମନକଥା ମନେ ରଖି କଳିପ୍ରିୟ ମୁନି
ମନ ଯାନେ ଚଳିଗଲେ ଝାଡି କଳି ମୁଣି ଯେ । ୯୧
ମୁନିଙ୍କ ବିଦାୟୁ ଅନ୍ତେ କଂସ ମହାରାଣ
ଧାଇଁଲା କରେ ଧରି ଖଣ୍ଡା ଦେବଦଳନ ଯେ । ୯୨
ବସୁଦେବ ଓ ଦେବକୀ ବିବାହର ଶେଷେ
ରଥେ ବସି ଯାଉଥିଲେ ମନର ହରଷେ ଯେ । ୯୩

ମଙ୍ଗଳ ଉତ୍ସବେ ସର୍ବେ ହୋଇଥିଲେ ମତ୍ତ
ସୁଲକ୍ଷଣା ନାରୀ ମାନେ ଗାଉଥିଲେ ଗୀତ ଯେ । ୫୪
ସସମ୍ମାନେ ବର କନ୍ୟା ବିଦାୟ ସମୟେ
ମହାକ୍ରୋଧେ ଚଳିଗଲା ତହିଁ କଂସ ରାୟେ ଯେ । ୫୫
ପିତା ଉଗ୍ରସେନ ତଥା ପିତୃବ୍ୟ ଦେବକ
ପୁରବାସୀ ଗଣେ ଦେଖି ହୋଇଲେ ଅବାକ ଯେ । ୫୬
କଂସ ଭୟଙ୍କର ରୂପ ଦେଖି ଭୟଭୀତ
ପ୍ରତିରୋଧ କରିବାକୁ ନ ହେଲେ ସାମର୍ଥ ଯେ । ୫୭
ଦେବକୀର କେଶ ଧରି ଆକର୍ଷି ଆଣିଲା
ଶିରଚ୍ଛେଦ କରିବାକୁ ଖଣ୍ଡା ଉଞ୍ଚାଇଲା ଯେ । ୫୮
ଶୂର ପୁତ୍ର ବସୁଦେବ ରଥରୁ ଓହ୍ଲାଇ
କଂସ କର ଧରି ଧୀରେ କହିଲେ ବୁଝାଇ ଯେ । ୫୯
ଆହେ ! ଭୋଜୋତ୍ତମ କ୍ଷମା କରୁଅଛ ରୋଷ
କିଛି ଦୋଷ କରି ନାହିଁ ଦେବକୀ ଅବଶ୍ୟ ଯେ । ୬୦
କର୍କଶ କଣ୍ଠେ କହିଲା କଂସ ମହାରାଣ
ଦେବକୀ ଅଷ୍ଟମ ଗର୍ଭ ମୋ ମୃତ୍ୟୁ କାରଣ ଯେ । ୬୧
ଅଷ୍ଟମ ଗର୍ଭରେ ବିଷ୍ଣୁ ହୋଇଣ ଜନମ
ବିନାଶ କରିବେ ମୋତେ ନାରଦ ବଚନ ଯେ । ୬୨
ନାରଦ ବଚନ ଯେହ୍ନେ ନ ହେବ ପୂରଣ
ମାରିବ ଦେବକୀ ଭଗ୍ନୀ କରିଅଛୁ ପଣ ଯେ । ୬୩
ବୋଲୁଛନ୍ତି ବସୁଦେବ ହେ ଭଦ୍ର ଉତ୍ତମ
କହୁଛି ଉପାୟ ତାର ଘେନ ନିବେଦନ ଯେ । ୬୪
ଦେବକୀ ଦେବୀ ନୁହଁନ୍ତି ଭୟର କାରଣ
ତୁମ୍ଭର ଶତ୍ରୁ ଅଟନ୍ତି ତାହାଙ୍କ ନନ୍ଦନ ଯେ । ୬୫
ତେଣୁ ନାରୀ ହତ୍ୟା କ୍ଷମା କରିବ ରାଜନ
ତୁମ୍ଭ ଶତ୍ରୁ ନାଶ ପାଇଁ ଶୁଣ ମୋ ବଚନ ଯେ । ୬୬
ସତ୍ୟ କରୁଅଛି ଭାଇ ଅଷ୍ଟ ଗର୍ଭ ଯାଏଁ
ସମର୍ପିବି ନବଜାତ ଆହେ ନରରାୟେ ଯେ । ୬୭

ସେମାନଙ୍କୁ ମାରି ତୁମ୍ଭେ ନିର୍ଭୟ ହୋଇବ
ବିପଦରୁ ଉଦ୍ଧାରିବ ବାକ୍ୟ ମୋର ଧ୍ରୁବ ଯେ । ୬୮
ଦେବକୀକୁ ବଞ୍ଚିବାକୁ ଦିଅ ମହାମନ
ରଦ ହୋଇଯିବ ଶେଷେ ନାରଦ ବଚନ ଯେ । ୬୯
ବସୁଦେବ କଥା ଶୁଣି ବିଚାରଇ କଂସ
କହିବା କଥା ଏହାର ଯଥାର୍ଥ ଅବଶ୍ୟ ଯେ । ୭୦
ପୁତ୍ରେ ସିନା ଶତ୍ରୁ ମୋର ନୁହଇ ଜନନୀ
ଦେବକୀ ବଧିଲେ ଦୋଷ ଦେବେ ପ୍ରଜା ଶ୍ରେଣୀ । ୭୧
ପିତା, ପିତୃବ୍ୟ, ଆତ୍ମୀୟ, ବନ୍ଧୁ, ପରିଜନ
ଏମାନଙ୍କ ମନେ ଦୁଃଖ ଦେବା ଅକାରଣ ଯେ । ୭୨
ନ ଛାଡ଼ି ଦେବକୀ ଯେବେ କରିବି ନିଧନ
ଯାଦବେ ବିରୋଧି ହେବେ ଏକଥା ପ୍ରମାଣ ଯେ । ୭୩
ଗୃହକୂଟ ନୀତି କଥା ଚିନ୍ତି କଂସ ମନ୍ତ୍ରଣ
ଛାଡ଼ିଲା ଦେବକୀ ପ୍ରାଣେ ନ କରି ନିଧନ ଯେ । ୭୪
ଭଉଣୀ, ଭଣେଇ, ବନ୍ଧ କରିଣ ରଖିଲା
ଶୁଣିବା ଲୋକର ମନେ ଘୃଣା ଜାତହେଲା ଯେ । ୭୫
ଭାବିଲେ ତାହାଙ୍କ ଦୁଃଖ ସେମାନଙ୍କ ଦୁଃଖ
ନାରୀପ୍ରତି ଅପମାନେ ହୋଇଲେ ବିମୁଖ ଯେ । ୭୬
ଗୁପ୍ତ ଗମ୍ଭୀର ଭାବରେ ଗଣ ପ୍ରତିରୋଧ
କରିଲେ ମଥୁରା ବାସୀ ମନେ ବହ୍ନି କ୍ରୋଧ ଯେ । ୭୭
କଂସାସୁର ବିଚାରିଲା ଉଦ୍ଧତ ଜନତା
ପ୍ରସ୍ତୁତ ନୁହଁନ୍ତି ମାନିବାକୁ ରଜା କଥା ଯେ । ୭୮
ଏହା ଜାଣି ଜାରି କଲା କଠିନ ଶାସନ
ରାଜଦ୍ରୋହୀ ଆଖ୍ୟା ଦେଇ କଲା ନିଧନ ଯେ । ୭୯
କ୍ରମେ ଦେବକୀର ଷଡପୁତ୍ର ହେଲେ ଜାତ
ବନ୍ଦୀ ଘରୁ ନେଇ ଶିଶୁ କଲା ନିହତ ଯେ । ୮୦
ଦିନୁଦିନ ମହାପାପ କଲା ଦୁରାଚାର
କଂସ ଭୟେ ମଧୁପୁର ବାସୀ ଥରହର ଯେ । ୮୧

ନାଗଗଣେ ଉପୁଯୁକ୍ତ କରିବା ନିମନ୍ତେ
ପୁତନା ନିଯୁକ୍ତ କଲି ରାଜ୍ୟରେ ଗୁପତେ ଯେ । ୮୨

ନାଗ ମହଲରୁ ଗୁପ୍ତ ସମ୍ବାଦ ଆଣିଣ
ଯୋଗାଏ ପୁତନା ନିତି କଂସ ସନ୍ନିଧାନ ଯେ । ୮୩

ଦେବକୀ ଓ ବସୁଦେବ ପ୍ରତି ଅନୁରକ୍ତ
ଭାବନ୍ତି ଅଷ୍ଟମ ଗର୍ଭେ ବିଷ୍ଣୁ ହେବେ ଜାତ ଯେ । ୮୪

ମୁକ୍ତିଦାତା ଆଗମନ ଚାହିଁ ନାଗ ଗଣ
ଶିବ ପୂଜା କଲେ ସର୍ବେ ମଙ୍ଗଳ ବିଧାନ ଯେ । ୮୫

ମଗଧୁ ବିଶ୍ୱାସୀ ସେନା ମଗାଇଲି କଂସ
ଶୃଙ୍ଖଳା ରକ୍ଷା ଦାୟିତ୍ୱ ତାଙ୍କ ହାତେ ନ୍ୟସ୍ତ ଯେ । ୮୬

କଂସ ପ୍ରତି ଅନୁରକ୍ତ ପରରାଷ୍ଟ୍ର ସୈନ୍ୟ
ଯାଦବମାନଙ୍କୁ କୂଟେ କରିଲେ ଦମନ ଯେ । ୮୭

ପରରାଷ୍ଟ୍ର ସେନା କାର୍ଯ୍ୟେ ପ୍ରଜାଏ କ୍ଷୁବ୍ଧ
ସହିଲେ ଉତ୍ପୀଡ଼ନ ନ କରି ପ୍ରତିବାଦ ଯେ । ୮୮

ଏକ ମୁଖ ହୋଇ ଡାକ ଦେଲେ ନାରାୟଣ
ରଖ ତୋ ଆଶ୍ରିତ ଜନେ ଦୀନ ନିବେଦନ ଯେ । ୮୯

ନବେ ପଦରେ ଅଧ୍ୟାୟ ଏଠି ହେଲା ଶେଷ
ଦୀନ ସୁଜନେ ସୁରସ ବୋଲେ ବୃନ୍ଦାବନ ଦାସ ଯେ । ୯୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଦେବକୀ ବସୁଦେବ ବନ୍ଦୀ ଉପାଖ୍ୟାନେ
ନାମ ସପ୍ତଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।



**ବୋଲି -**

ବାଇ ମନରେ ! ବଢାଇ କରୁଛୁ କିଆଁ
ଅଟେଇ ଧନକୁ ଲଟେଇ କରୁଛୁ
ଗ୍ଲାନିଆଁ ହେଲଣି ଗୋଟା ଦୁନିଆଁ ॥ ଘୋଷା ॥
କରିଚ୍ଛୁ ବଢେଇ ଦେବୁକ ନଢେଇ
ଜଗତ ଯାଁକର ବଡପଣିଆ ।
ତୋହ ପରି କେତେ ଆସିଣ ଗଲେଣି
ଦେଖ ଜଳୁଅଛୁ ମଶାଣି ନିଆଁ
ବୋଲେ ବୃନ୍ଦାବନ ନ କର ସାହାସ
ମିଛେ ହଟହଟା ହୋଇବୁ କିଆଁ
କୃଷ୍ଣ ଚରଣରେ ଶରଣ ପଶିଲେ
ଉଦ୍ଧାର କରିବେ ଚକାଡୋଳିଆ ।



# ଅଷ୍ଟାଦଶ ଅଧ୍ୟାୟ

## ବଳରାମ ଜନ୍ମ

### ରାଗ - ଆଷାଢଶୁକ୍ଳ

କୃଷ୍ଣ ଚରିତ ମାନସ ଶ୍ରବଣ
କର ସୁଜନେ ଦେଇ ମନ କର୍ଣ୍ଣ
ବ୍ରଜ ଭୂମିରେ ପଡ଼ିଲା ଦୁର୍ଭିକ୍ଷ
ପଡିବାରୁ ଲୋକେ ଦୁଃଖେ ବିମୁଖ
ଜଳ ତୃଣ ଶୂନ୍ୟ
ହୋଇବାରୁ ଲୋକେ ଘୋର କଷଣ ।୧

ମନେ ବିଷାଦିତ ନନ୍ଦ ରାଜନ
ଅନ୍ନ ଜଳ ବିହୁନେ ଲୋକେ ଉଚ୍ଛନ୍ନ
ପ୍ରଜାଏ ନ ଦିଲେ କର ପ୍ରଦାନ
ଅର୍ଥାଭାବ ଯୋଗୁଁ ଭଣ୍ଡାର ଶୂନ୍ୟ
କଂସର ପାଉଣା
ଦେଇ ନ ପାରି ନନ୍ଦ ଦୁଃଖ ମନା । ୨

ନନ୍ଦଙ୍କୁ ଡକାଇ ନେଇଣ କଂସ
ପଚାରେ କିମ୍ପା ନ ଦେଲ ରାଜସ୍ୱ ?
ବିନମ୍ରେ ବୋଇଲେ ବ୍ରଜ ପତି
ମରୁଡ଼ି ହେତୁରୁ ଲୋକେ ବିପତ୍ତି
ଘରେ ନାହିଁ ଭାତ
ଅନାବୃଷ୍ଟି ହେତୁ ପଡ଼ିଆ କ୍ଷେତ । ୩

ପେଟକୁ ନ ମିଳେ ମୁଠିଏ ଦାନା
ଶରୀରେ ଆବୃତ୍ତି କନ୍ଥା କନା
ଦୁର୍ଭିକ୍ଷ ମରୁଡ଼ି ଅତି ପ୍ରଖର
ଏଣୁ ଅନାଦେୟ ଏ ବର୍ଷ କର
ଲୋକେ ସୁସ୍ଥ ହେଲେ
ଦେଇ ଆଣି ଦେବେ ଆପଣା ବଳେ । ୪

ବକେୟା ମୂଳ ସଙ୍ଗେ କାଳାନ୍ତର
ଭରଣା କରିବେ ରାଜ ଭଣ୍ଡାର
ନନ୍ଦ କଥା ଶୁଣି ବୋଲଇ କଂସ
ନିୟମେ ନ ଦେଲେ ପ୍ରଜା ରାଜସ୍ୱ
ରାଜ କର୍ମଚାରୀ
ବେତନ ପାଇବେ କହ କିପରି ? । ୫

ପ୍ରଜାଠାରୁ ଜମି ଛଡ଼ାଇ ନେବ
କର୍ମଚାରୀ ଗଣେ ବାଣ୍ଟି ଦେବ
ସେମାନେ କରିବେ ଭୂମି କର୍ଷଣ
ଅଧିକ ହୋଇବ ଶସ୍ୟ ଉତ୍ପନ୍ନ

ବେତନ ବଦଳେ
ଭୂମି ବୃତ୍ତି ଖଞ୍ଜି ଦେବ-ମୁଁ ହେଲେ ।୬
ରହୁ ବା ନ ରହୁ ରାଜ୍ୟ ପରଜା
ସେଥିପାଇଁ ଚିନ୍ତା ନ କରେ ରଜା
ତୁମେ ଭୂପତି, ନୁହଁ ପ୍ରଜାପତି
ପ୍ରଜାଙ୍କ ପାଳନେ ପାଇବ ଶାନ୍ତି ?

ଦୁର୍ଭିକ୍ଷ ମରୁଡ଼ି
ପ୍ରଜାଭାଗ୍ୟେ ଲେଖା ଦଇବ ଖଡ଼ି ।୭
ରଜାର ଏଥିରେ ନାହିଁ ସମ୍ପର୍କ
ଆପଣାର ଭାଗ୍ୟ ଭୋଗନ୍ତି ଲୋକ
ହେବକ ନ ହେବ ଭୂମିରେ ଶସ୍ୟ
ସେଥିପାଇଁ ଦାୟୀ ନୁହେଁ ନରେଶ

ପ୍ରକୃତିର ଖେଳ
ଭେଟିବାକୁ ଜାତ ପରଜା କୁଳ ।୮
ରାଜନୀତି ଶୁଣ ନନ୍ଦ ନନ୍ଦନ
ପ୍ରଜା, ଦ୍ରାକ୍ଷ୍ୟା, ଦୁଇ ଗୁଣେ ସମାନ
ଯେତେ ଚିପୁଡ଼ିବ ଝରିବ ରସ
ତୃଷା ନିବାରିବ କରିଣ ଗ୍ରାସ

ଚିପୁଡ଼ି ନିଃଶେଷ
କରି ପାରିଲେ ଧନ୍ୟ ସେ ନରେଶ ।୯
ପ୍ରଜାଙ୍କୁ କଷଣ ନ ଦଏ ଯେହୁ
ଶାସକ ପଦକୁ ଯୋଗ୍ୟ ନୁହଇ
ଶାସିତର ନାହିଁ ସ୍ୱାଧୀନ ମତ
ଶାସକର ମତ ତାହାର ମତ

ରାଜ୍ୟକୁ ଶାସନ
ଏ ନିୟମେ ରଜା କରନ୍ତି ଜାଣ ।୧୦
ଏଥିକୁ ବିସ୍ତର କର ହେ କାହ୍ନ
ଯେମନ୍ତ ନ ପଡ଼େ ପଛେ ପ୍ରମାଦ

ବୋଲୁଛନ୍ତି ନନ୍ଦ ଯୋଡ଼ି କର
ମହାରାଜା ତୁମ୍ଭେ ନର ଈଶ୍ୱର
ବାରେ ମୋ ବଚନ
ମହତ୍ୱ ହୃଦୟେ କର ଶ୍ରବଣ । ୧୧
" ପ୍ରଜା ପାଇଁ ରାଜା " ଶାସ୍ତ୍ର ବଚନ
ପ୍ରଜାଙ୍କ କଷ୍ଟରେ ରାଜ୍ୟ ଶାସନ
କଲେ ରାଜ୍ୟ ହୋଇବ ହେବ ଶ୍ମଶାନ
ଶ୍ମଶାନେ ନୃପତି କି ପ୍ରୟୋଜନ ?
ଏହା ମୋ ବିଚାର
ପ୍ରଜା ଯୋଗୁ ରାଜ୍ୟ, ରାଜା ସୁନ୍ଦର । ୧୨
ପ୍ରଜାର ସେବକ ଅଟେ ରାଜନ
ପ୍ରଜାହିତେ କରେ ରାଜ୍ୟ ଶାସନ
ରାଜ୍ୟର ମଙ୍ଗଳ ରାଜାର ଧର୍ମ
ପ୍ରଜାଶୂନ୍ୟ ରାଜ୍ୟ କି ପ୍ରୟୋଜନ ?
ଶୁଣ ନୃପବର
ଧର୍ମ ରାଜନୀତି ବେଦ ବେଦାନ୍ତର । ୧୩
ଭୂମି ତ ସମ୍ପଦା ଅଟେ ପ୍ରଜାର
ଲଙ୍ଗଳ ଯାହାର ଜମି ତାହାର
କୁଣ୍ଡା ତାଡ଼ିଛି ତା ହୁଏ ପୁରୁଷ
ପୁରୁଷାନୁକ୍ରମେ କରଇ କୃଷ
ଭିଟା ମାଟି ତାର
ତହିଁରେ ନାହିଁତ ରାଜାଧିକାର ? । ୧୪
ଖଣ୍ଡା ଉଡ଼ା ରାଜା ଅଟଇ ପ୍ରଜା
ତା ଭୂମି ଖଣ୍ଡକେ ସେ ଅଟେ ରାଜା
ଲହୁଲୁହ ଦେଇ ଅର୍ଜିଛି ଭୂମି
ଜୀବନୁ ଅଧିକ ତା' କୃଷି ଜମି
ମାଟିର ମମତା
ମା' ମାଇପ ପରି ସନ୍ନେ ସାଇତା । ୧୫

ପ୍ରଜାର ଜମିରେ ରାଜା କର୍ତ୍ତୃତ୍ୱ
ଜାହିର କରିଲେ ହେବ ବିଭ୍ରାଟ
କଲେ ଏପରି ପକ୍ଷପାତ ମାତ୍ର
ବଢ଼ିବ ରାଜ୍ୟରେ ପ୍ରଜା ଅଶାନ୍ତି
ନନ୍ଦ କଥା ଶୁଣି
ଗମ୍ଭୀରେ ବୋଲଇ କଂସ ନୃପଣି । ୧୬
ତାଗିଦ କରିଣ କହିଲା କଂସ
ଶୁଣ ମୋ ବଚନ ହେ ଗୋପଈଶ
ପ୍ରଥମ ଥରକ ଦେଉଛି ଛାଡ଼ି
ଆଉବାରେ ହେଲେ ଆଣିବ ଭିଡ଼ି
ନୃଷ୍ଟା ମୋ ବଚନ
ଆଜ୍ଞା ମାନି ଏଥୁ ଚଳ ବହନ । ୧୭
କଂସକୁ ପ୍ରଣାମ କରିଣ ନନ୍ଦ
ଫେରିଲେ ସଭୟେ ଚିନ୍ତି ପ୍ରମାଦ
ପଥେ ଭେଟ ଗାର୍ଗ୍ୟାଚାର୍ଯ୍ୟ, ଅକ୍ରୂର
ତିନିଜଣ ବସି କଲେ ବିଚାର
ଦେବକୀ ସପ୍ତମ
ଗର୍ଭରୁ ଅନନ୍ତ ହୋଇବେ ଜନ୍ମ । ୧୮
ନାରାୟଣଙ୍କ ଅଭିନ୍ନ ଆଧାର
ଜନମିବେ ବିଷ୍ଣୁ ଜ୍ୟେଷ୍ଠ ସୋଦର
ବିଶ୍ୱ ନିୟନ୍ତାଙ୍କ ଅନୁଜ୍ଞା ବଳେ
ଜନମି ରହିବେ ଗୋପ ମଣ୍ଡଳେ
ବିଧିର ବିଧାନ
ବଞ୍ଚାଇବା ଶିଶୁ ବୁଦ୍ଧି କରିଣ । ୧୯
ଅକ୍ରୂର କହିଲେ ହେ ନନ୍ଦ ଶୁଣ
ତୁମ୍ଭ ଯୋଗୁଁ ହେବ କାର୍ଯ୍ୟ ସାଧନ
ଦେବକୀ ସପ୍ତମ ଗର୍ଭ ସମୟ
ଆସି ଉପଗତ ହେ ନନ୍ଦ ରାୟ

ଗର୍ଭର ସନ୍ତାନ
ବଞ୍ଚାଇବା ପାଇଁ ବଅ ହୋ ମନ । ୨୦
ବସୁଦେବ ବିମର୍ଷ କରଣ ତନ
ବନ୍ଦୀ ଘରେ ଯାଇ ମିଳିଲେ ତୁନ
ନାସ୍ତିନେ ନସୂନେ ସଙ୍କଟେ ଠାର
ସଙ୍କେତ ଦେଇଣ ଆସିଲେ ଫେର
ଭେଟିଲେ ରୋହଣୀ
ଦେଖିଲେ ଆସନ୍ନ ପ୍ରସବା ରଣୀ । ୨୧
ନନ୍ଦ ରଜା ସଙ୍ଗେ ଆସିଲେ ଧେନ
ଗୋପରେ ରହିଲେ ଦେବୀ ରୋହିଣୀ
ନବମ ସପ୍ତେ ମୃତ ବତ୍ସା ଜାତ
କର ସଜ୍ଜାହୀନା ରୋହିଣୀ ମାତ
ମୃତ ବତ୍ସା ଧେନ
ଚଳିଲେ ମଥୁରା ଅର୍ଦ୍ଧ ଜାମିନୀ । ୨୨
କାରାଗାର କୂଳେ ଲାଗିଲ ତଣ୍ଡୀ
ଓହ୍ଲାଇଲେ ଗୃହ ଘୁଳୁଳା ଧରି
ପାଚେରୀ ଡେଇଁ ଭିତରେ ପଶିଲେ
ଧାଈମାନେ ନିଜ କାର୍ଯ୍ୟେ ଲାଗିଲେ
କିଛି କାଳ ଗତ
ଆକର୍ଷଣେ ଶିଶୁ ହୋଇଲା ଜାତ । ୨୩
ଶ୍ରାବଣ ପୂର୍ଣ୍ଣିମା ଅଟେ ସେ ଦିନ
ଶ୍ରବଣା ନକ୍ଷତ୍ରେ ଚନ୍ଦ୍ର ମିଳନ
ଅଭିଜିତ ମୁହୂର୍ତ୍ତ ହିମାଗତ
ମଧ୍ୟାକାଶେ ପୂର୍ଣ୍ଣ ଚନ୍ଦ୍ର ଶୋଭିତ
ଶଶାଙ୍କ ଧବଳ
ଶିଶୁ ପୁତ୍ର ଜନ୍ମି ମଣ୍ଡିଲ କୋଳ । ୨୪
ଅଭିରାମ ସୌମ୍ୟ ଦିବ୍ୟ ମୂରତି
ଦୁଗ୍ଧ ଫେନ ସମ ଶରୀର ଜ୍ୟୋତି

ମୁଖ ମଣ୍ଡଳେ ନୟନ ଯୁଗଳ
କି'ବା ଶୋଭିତ ବିକଚ କମଳ
କଣ୍ଠେ ଦିବ୍ୟ ମାଳ
କର୍ଣ୍ଣ ଯୁଗଳେ ଧବଳ କୁଣ୍ଡଳ । ୨୫
ମହାବଳ ବପୁବନ୍ତ ନନ୍ଦନ
କରେ ଶୋଭା ହଳମୂଷଳ ଚକ୍ର
ମହାବଳବାନ ମୂର୍ତ୍ତି ଦର୍ଶନ
ବଳରାମ ନାମ କଲେ ପ୍ରଦାନ
କଂସ କାଳ ଯମ
ଜାଣିଲେ ଜନନୀ ଜଠରୁ ଜନ୍ମ । ୨୬
ଆକର୍ଷଣେ ଶିଶୁ ହେବାରୁ ଜାତ
ସଙ୍କର୍ଷଣ ନାମେ ହେଲେ ବିଦିତ
କୋଳେ ଧରି ପୁତ୍ର ଜନନୀ ତାତ
ଅନାଦ୍ୟ ଆନନ୍ଦ ହୋଇଲେ ପ୍ରାପ୍ତ
ବିଳମ୍ବ ନ କରି
ଠେକି ଦେଲେ ପୁତ୍ର ମଙ୍ଗଳ ସ୍ମରି । ୨୭
ସଙ୍ଗେ ଆଣିଥିବା ମୃତ ସନ୍ତାନ
ଦେବକୀ କୋଳରେ କରି ପ୍ରଦାନ
ବୁଜୁଳିରେ ଭରି ନବ ଜାତକ
ଫେରିଗଲେ ନାବେ ଆସିବା ଲୋକ
ଗୋପରେ ପ୍ରବେଶ
ନ ଜାଣିଲେ କେହି ଗୁପ୍ତ ସନ୍ଦେଶ । ୨୮
ପ୍ରସବ କରିଣ ଦେବୀ ରୋହିଣୀ
ଚେତାଶୂନ୍ୟେ ପଡ଼ିଥିଲେ ଧରଣୀ
ତାଙ୍କ କୋଳେ ଶିଶୁ କଲେ ପ୍ରଦାନ
ଜାଗିଲେ ରୋହିଣୀ ଖୁଣି ସ୍ପନ୍ଦନ
ଜାତ କର୍ମମାନ
ବିଧାନେ କରିଲେ ଧାଈ ସମ୍ମାନ । ୨୯

ଦାସୀ ଜଣାଇଲା କଂସ ଆଗରେ
ମୃତ ବତ୍ସା ଜାତ ଭଗ୍ନୀ ଉଦରେ
ସପ୍ତମ ଗର୍ଭଟା ହୋଇଲା ନଷ୍ଟ
ଶୁଣି କଂସାସୁର ହେଲା ସନ୍ତୁଷ୍ଟ
ବଡ଼ୁରଇ ମନେ
ମୁଁ କଣ୍ଠା ମାରନ୍ତ ମଲା ଆପଣେ । ୩୦
ଶ୍ରାବଣ ପୂର୍ଣ୍ଣିମା ଶୁକ୍ରବାରରେ
ରାମ ରହିଲେ ରୋହିଣୀ ପୁରେ
ନୀଳାମ୍ବର ଜନମ ଜାଣି ନନ୍ଦ
କୋଳେ ଧରି ଶିଶୁ ହେଲେ ଆନନ୍ଦ
ଧନ୍ୟ ତା' ଜୀବନ
ଅନନ୍ତଙ୍କୁ କୋଳେ କଲେ ଧାରଣ । ୩୧
ରୋହିଣୀ ଉଦରେ ତନୟ ଜାତ
ପ୍ରଚାର ହେବାରୁ ଗୋପେ ଉଦନ୍ତ
ଶିଶୁ ଦେଖିବାକୁ ଧାଇଁଲେ ବାଳ
କୋଳ କରିନେଲେ ଗୋପ ଗୁଆଳୀ
ଜାଣିଲେ ଅନନ୍ତ
ଆସି ଗୋପପୁରେ ହୋଇଲେ ଜାତ । ୩୨
ଏଥିରୁ ଏ କଥା ହେଲା ପ୍ରମାଣ
ଏଥର ଜନ୍ମିବେ ଶ୍ରୀନାରାୟଣ
ଗୋପରେ ହୋଇବ ମହାମିଳନ
ରାମ, 'କୃଷ୍ଣ' ରଙ୍ଗାବତାର ପୁଣ
ମାନବୀୟ ଲୀଳା
କରିବେ ଗୋପରେ ଯଶୋଦା ବଳା । ୩୩
ଗୋମତ ରକ୍ଷିଙ୍କ ଉପରେ କଂସ
କରେ ନାହିଁ ଗୋପପୁରେ ପ୍ରବେଶ
ବଳାତ୍କାରେ ଯେବେ ପଶିବ ଦୁଷ୍ଟ
ଛାତି ଫାଟି ପ୍ରାଣେ ହେବ ବିନଷ୍ଟ

ନଗପଦ ଭୂମି
ବାସ କଲେ ଧାମ ଅନନ୍ତ ସ୍ୱାମୀ । ୩୪
ଗୋପରୁ ମଥୁରା ଯୋଜନ ବାର
ମଝିରେ ଯମୁନା ବନ୍ଧେ ତୁଷର
ନର୍ଭୟେ ଗୋପାଳ ବାସ କରନ୍ତି
ନନ୍ଦ ବନ୍ଧୁ ଆନେ ନ ଥାଏ ଭ୍ରାନ୍ତି
ଖାଇ ଦୁଧ ଘୃତ
ଗୋପାଳ ସକଳେ ସବଳ ସୁସ୍ଥ । ୩୫
ଷଡ଼ଶ ପଦରେ ଆଧ୍ୟାୟ ଶେଷ
ସୁଜନେ ପାନ କର କୃଷ୍ଣ ରସ
ଆଶା ବୈଷଣୀ ଘାଟେ ବସାବାନ୍ଧ
ତୁଲ୍‌ଦାସ ଭାଷା ପ୍ରବନ୍ଧେ ଛନ୍ଦ
ମାନସ ରଚନ
ପ୍ରଭୁ ଆଜ୍ଞା ଶିରଧାର୍ଯ୍ୟ କରଣା । ୩୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପ ଲୀଳାଖଣ୍ଡେ ବଳରାମ ଜନ୍ମ ବିବରଣୀ ବର୍ଣ୍ଣନେ
ନାମ ଅଷ୍ଟାଦଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।



# ଊନବିଂଶ ଅଧ୍ୟାୟ
## ବ୍ୟାସଦେବଙ୍କ
## ମଥୁରା-ହସ୍ତିନା-ଗୋପ ଗମନ
### ରାଗ - ବସନ୍ତ ଭୈରବ

ଶୁଣ ସୁଜନେ ଶ୍ରୀକୃଷ୍ଣ ଚରିତ ମାନସ
ପଦ ପଦକରେ ଝରୁଅଛି ସୁଧାରସ
ଯମୁନା ନଦୀ ତୀରରେ ହସ୍ତିନା ନଗର
ପଞ୍ଚ କଟକକୁ ନେଇ ଗଠିତ ନଗର
ଧବଳ ସଉଧ ମାନ ମାଳ ମାଳ ହୋଇ
ଟେକିଛନ୍ତି ଊର୍ଦ୍ଧ୍ୱ ଶିର ମେଘମାଳ ଛୁଇଁ । ୧
ସେ ରାଜ୍ୟ ରକ୍ଷକ ଭୀଷ୍ମ ଶାନ୍ତନୁ ନନ୍ଦନ
ନାମଶୁଣି ଶତ୍ରୁ ଗଣେ ଭୟେ ଛନ୍ନ ଛନ୍ନ
ସେ ରାଜ ପ୍ରାସାଦେ ରାଜମାତା ସତ୍ୟବତୀ
ମୃତ ଶାନ୍ତନୁ ରାଜାଙ୍କର ବିଧବା ପତ୍ନୀ
ବାର୍ଦ୍ଧକ୍ୟ ପ୍ରାପ୍ତ କରିଥିଲେ ହେଁ ଶରୀର
ସୁଦୀପ୍ତ ମୁଖ ମଣ୍ଡଳ ଦିଶଇ ସୁନ୍ଦର । ୨
ବିଧବା ପୁତ୍ର ବଧୂଏ ଅଛନ୍ତି ପ୍ରାସାଦେ
ଦିନ କାଟୁଛନ୍ତି ସର୍ବେ ଘୋର ଅବସାଦେ
ଜନ୍ମାନ୍ଧ ଥିବାରୁ ଧୃତରାଷ୍ଟ୍ର ଜ୍ୟେଷ୍ଠ ସୁତ
ରାଜା ହେବାକୁ ଅଯୋଗ୍ୟ ବିବେଚିତ
କନିଷ୍ଠ ସନ୍ତାନ ପାଣ୍ଡୁ ସୁଗୁଣ ସମ୍ପନ୍ନ
ବିଧାନେ ସେ ହୋଇଥିଲେ ରାଜ୍ୟେ ନରରାଣ । ୩
ମାତ୍ର ଜ୍ୟେଷ୍ଠ ଭ୍ରାତା ପ୍ରତି ସଦା ଅନୁରକ୍ତ
ରାଜ୍ୟ ସିଂହାସନ ତେଜି ବନେ ଅନାସକ୍ତ
କୁନ୍ତୀ ଓ ମାଦ୍ରି ନାମରେ ତାଙ୍କ ଦୁଇ ପତ୍ନୀ
ଘେନି ବନେ ବାସ କଲେ ପାଣ୍ଡୁ ନରପତି

ରମଣ କାଳେ ଆଙ୍ଗିକ ଋଷିଙ୍କୁ ବଧିଲେ
ବ୍ରହ୍ମ ଅଭିଶାପ ପାଇ ରମଣ ତେଜିଲେ । ୪
ପାଶେ ଦୁଇ ପତ୍ନୀ ଥାଇ ନ ହୁଏ ମିଳନ
କୁନ୍ତୀ, ମାଦ୍ରି ଦୁଇ ସ୍ତ୍ରୀ ଦୁର୍ବାସାଦତ୍ତ ମନ୍ତ୍ର
ଧୃତରାଷ୍ଟ୍ରଙ୍କ ଭାରିଜା ଗାନ୍ଧାରୀ ରମଣୀ
ଜନ୍ମ ଦୋଷୁଁ କି ହୋଇବେ କେବେ ସେ ଜନନୀ
ଗର୍ଭ ଧାରଣ ମାସକେ ହେଉଅଛି ନଷ୍ଟ
ଗାନ୍ଧାରୀ ଉଦରୁ ପୁତ୍ର ନ ହୋଇବ ଜାତ
ସନ୍ତାନ କାମନା କରି ବଧୂଏ ଦୁଃଖିତ
ରାଜମାତା ସତ୍ୟବତୀ ଦୁଃଖେ ମର୍ମାହତ । ୫
କୁରୁବଂଶ ରକ୍ଷା ପାଇଁ ବିହ୍ୱଳିତ ହୋଇ
ବ୍ୟାସଦେବଙ୍କୁ ଜନନୀ ଅଣାନ୍ତି ଡକାଇ
ପ୍ରୟାଗ ତୀର୍ଥରୁ ହସ୍ତିନା ଆସିବା ପଥେ
ମଥୁରା ନଗ୍ର ଭ୍ରମଣ ଚିନ୍ତା କଲେ ଚିତ୍ତେ
ମଥୁରାକୁ ବ୍ୟାସଦେବ ଆଗମନ ଜାଣି
ଅକ୍ରୂରେ ଡକାଇ ପୁଚ୍ଛା କଲେ କଂସ ମନ୍ତ୍ରୀ ? ।୬
"ହେ ଅକ୍ରୂର ! ଶୁଣୁ ଅଛି କୃଷ୍ଣ ଦ୍ୱୈପାୟନ
ମଥୁରାକୁ ଆସୁଛନ୍ତି କେବଳ କାରଣେ ?
ସମ୍ବାଦ ପଠାଇଥିଲେ ଭୀଷ୍ମ ମୋହ ଠାଇଁ
ଦେବକୀ ବସୁଦେବଙ୍କୁ ଦେବାକୁ ପଠାଇ
ବର୍ତ୍ତା ଘେନି ଆସିଥିଲା ହସ୍ତିନାର ଦୂତ
ଲେଉଟାଇ ଦେଲି ତାଙ୍କୁ ହୋଇ ଅସମ୍ମତ । ୭
ହସ୍ତିନାକୁ ଗଲେ କାଳେ ନ ଆସିବେ ଫେରି
ଫେରାଇ ଦେଲି ଦୂତକୁ ଏ ସନ୍ଦେହ କରି
ଏବେ ମଥୁରାକୁ ଆସୁଛନ୍ତି ବ୍ୟାସଦେବ
ବାଟରେ ପଠାଇଛନ୍ତି ତାଙ୍କୁ ଭୀଷ୍ମଦେବ
ବ୍ୟାସଦେବ ଆସିବାରେ ଅଛି କି ରହସ୍ୟ
ଜାଣିକି ଅକ୍ରୂର ତଥ୍ୟ କର ହେ ପ୍ରକାଶ ? ୮

କୁଟିଳ ନୟନେ ଚାହିଁ ବିଦ୍ରୂପ ସ୍ୱରରେ
ପୁଛାକଲା କଂସାସୁର କ'ଣ ନିର୍ଦ୍ଦେଶରେ ?
ବ୍ୟାସ ମାତା ସତ୍ୟବତୀ ନିୟୋଗ ପ୍ରଥାରେ
ଜାତ ହେଲେ ଚିତ୍ରବୀର୍ଯ୍ୟ ରାଜାଙ୍କ କୋଳରେ ?
କୈବର୍ତ୍ତୀ କନ୍ୟାର ପୁତ୍ର ବ୍ୟାସ ମହାସନ୍ତ
ପରାଶର ଋଷି ଅଂଶେ ନାବରେ ଉତ୍ପତ୍ତି ? । ୯
ଭ୍ରମଣ ଶେଷରେ ଋଷି କଲେ ପଳାୟନ
ତାଙ୍କୁ ପୁଣି ବିଭା ହେଲେ ଶାନ୍ତନୁ ରାଜନ ?
ଦ୍ୱିତୀୟା ପତ୍ନୀ ହେଲେ ପୁଣି ବ୍ୟାସଙ୍କ ଜନନୀ
ଏଣୁ ସତ୍ୟବତୀ ନୋହିଲେ କି ଦୋଷୀ ରମଣୀ ?
ଯାହାଙ୍କ ଜନ୍ମ ଜାରଜ କଳଙ୍କରେ ପୂର୍ଣ୍ଣ
ତାଙ୍କ ପୁତ୍ର ବ୍ୟାସ ପୁଣି ମୁନି ଅଗ୍ରଗଣ୍ୟ ? ।୧୦
ସେ ପୁଣି ନିୟୋଗ ମାର୍ଗେ ଅଗମ୍ୟା ଗମନ
କରନ୍ତେ ଭାଇ ବୋହୂଠୁଁ ଜନ୍ମିଲେ ସନ୍ତାନ
ଧୃତରାଷ୍ଟ୍ର, ପାଣ୍ଡୁ , ବିଦୁର ଏ ତିନି ସୁତ
ଜାତ କରାଇ ତଥାପି ନୁହଁନ୍ତି ନିନ୍ଦିତ ?
କଂସ କଥାରେ ଅକ୍ରୂର ହୋଇଲେ ଲଜ୍ଜିତ
ସଙ୍କୁଚିତେ କହିଲେ ଶୁଣ ଉଗ୍ରସେନ ସୁତ । ୧୧
ଆଶ୍ଚର୍ଯ୍ୟ ବ୍ୟାସ ଦେବଙ୍କ ହୃଦୟ ଉନ୍ମୁକ୍ତ
ଆପଣା ବିଷୟେ କିଛି ନ ରଖନ୍ତି ଗୁପ୍ତ
ସେଥିପାଇଁ ମଧ୍ୟ ବ୍ୟାସ ନୁହଁନ୍ତି ଲଜ୍ଜିତ
ସତ୍ୟବତୀ ସୁତ ହେଉ ଅଧିକ ଗର୍ବିତ
କୁରୁ କୁଳରେ ଅଟନ୍ତି ପୂଜ୍ୟ ପିତାମହ
ବେଦଭୂମି ଭା ର ତ ର ମହାମାନବୀୟ । ୧୨
ବେଦକୁ ବିଭାଗ କରି ନାମ ବେଦବ୍ୟାସ
ବିଦ୍ୟା ଗୁରୁ ଅଟନ୍ତି ସେ ଏ ଭାରତ ବର୍ଷ
କୈବର୍ତ୍ତୀ କନ୍ୟା ହେଲେ ହେଁ ଦେବୀ ସତ୍ୟବତୀ
ବ୍ୟାସ ପରି ତନୟକୁ କରିଲେ ଉତ୍ପତ୍ତି

ସେ ବ୍ୟାସଙ୍କୁ କୋଳେ ଧରି ଭାରତ ଜନନୀ
ଧନ୍ୟ ହୋଇଅଛି କାଳେ କାଳେ ନୃପଣୀ ।୧୩
ସ୍ୱରୂପ କରି କହିଲ କଂସ ମନ୍ଦମତି
ଲୋକେ କହନ୍ତି ଅତି ସୁନ୍ଦରୀ ସତ୍ୟବତୀ
ବୃଦ୍ଧା ବୟସରେ ଏବେ କାଟୁଛନ୍ତି କାଳ
ତଥାପି ଅଙ୍ଗର ଶୋଭା ଦିଶଇ ମଞ୍ଜୁଳ ।
କଂସାସୁର କଥା ଶୁଣି ଅକ୍ରୂର ଲକ୍ଷିତ
ଭବଚିନ୍ତି ଉତ୍ତରିଲେ ବଚନ ଯଥାର୍ଥ ।୧୪
ମହିମାମୟୀ ସାମ୍ରାଜ୍ଞୀ ଯେପରି ଦିଶନ୍ତି
ମାନନୀୟା ସତ୍ୟବତୀ ସେପରି ଅଟନ୍ତି
ରାଜକୀୟ ମହିମାର ଦିବ୍ୟ ପ୍ରତିମୂର୍ତ୍ତି
ଧରି ଦେବୀ ସତ୍ୟବତୀ ପୂଜା ପାଉଛନ୍ତି
ତାହାଙ୍କ ଦର୍ଶନେ ଧନ୍ୟ ହେଉଛନ୍ତି ଜନ
କଲ୍ୟାଣମୟୀ ଜନନୀ ସର୍ବ ଜନ ମାନ୍ୟ ।୧୫
ଅକ୍ରୂରଙ୍କୁ ପୁଣି ପଚାରିଲା କଂସାସୁର
ଅତି ଭୀଷଣ ଅଟନ୍ତି ଯେଉଁ ଭୀଷ୍ମବୀର
ପ୍ରକୃତ ପକ୍ଷେ ଅଟନ୍ତି ସେ ଅଦ୍ଭୁତ ବ୍ୟକ୍ତି
ନିଜ ପିତା ତଥା ନିଜ ଜନନୀ କୈବର୍ତ୍ତୀ
ପାଇଁ ପ୍ରତିଜ୍ଞା କରିଣ ତେଜିଲେ ସଂସାର
ଭୀଷ୍ମଙ୍କ ପକ୍ଷରେ ଏହା ନୁହେଁ କି ଖିଆଲ ? ୧୬
ନିଜକୁ ସଂଯତ କରି କହିଲେ ଅକ୍ରୂର
କୁରୁକୁଳେ ଗାଙ୍ଗେୟ ଅଟନ୍ତି ସୁକୁମାର
ବାସ୍ତବରେ ଅଟନ୍ତି ସେ ପୁରୁଷ ମହାନ
ଭାରତୀୟ ଜନ ମାନସରେ ମହାମାନ୍ୟ
ଆଦର୍ଶ ପୁରୁଷ ଭୀଷ୍ମ କୁଳ ଉଦ୍ଧାରକ
ଭାରତୀୟ ସଂସ୍କୃତିର ସେ ମୂର୍ତ୍ତି ପ୍ରତୀକ ।୧୭
ବୀର ଗଣେ ଅଗ୍ରଗଣ୍ୟ ଅସୀମ ସାମର୍ଥ୍ୟ
ମହାନ୍ ପୁରୁଷ ରୂପେ ଭାରତେ ବିଖ୍ୟାତ

ତାହାଙ୍କୁ ବୁଝିବା ଆମ ପକ୍ଷେ କଷ୍ଟକର
ତାଙ୍କ ପାଖେ ତାଙ୍କ ପିତା ସାକ୍ଷାତ ଈଶ୍ୱର
ପିତୃଭକ୍ତିର ଜୀବନ୍ତ ବ୍ୟକ୍ତିତ୍ୱ ଗାଙ୍ଗେୟ
ଏଥିରେ ଦ୍ୱିମତ ନାହିଁ ଆହେ କଂସ ରାୟ । ୧୮
ଅକ୍ରୂର ବଚନ ଶୁଣି ବିଚାରିଲା କଂସ
ଅକ୍ରୂର ବଚନ ତାହା ପ୍ରତି ଉପହାସ
ତା'ପିତା ପ୍ରତି ତା ବ୍ୟବହାର ସମ୍ପର୍କରେ
ଏହା ଯେ ଇଙ୍ଗିତ ଅଟେ ବୁଝିଲା ମନରେ
ନିଜ ପ୍ରତିକ୍ରିୟା ମାତ୍ର ନ କରି ପ୍ରକାଶ
ପୁଣି ପଚାରିଲା କଂସ କରି ଉପହାସ । ୧୯
ଯେଉଁ ବଂଶେ ଜନ୍ମ ପରି କୁମର ସମ୍ଭୂତ
ଶାନ୍ତନୁଙ୍କ ପରି ପିତା ସତ୍ୟବତୀ ମାତ
ସେ ବଂଶର ପୁତ୍ର ମଲେ ହୋଇ ନିଃସନ୍ତାନ
ବଂଶରକ୍ଷା ପାଇଁ ମାତା ପୁତ୍ରେ ନିବେଦନ
ସେ ଜନନୀ ନିଜ ପୁତ୍ର ବ୍ୟାସଙ୍କୁ ମନାଇ
ନିର୍ଲ୍ଲଜ ଭାବେ କହିଲା ବଂଶରକ୍ଷା ରକ୍ଷା ପାଇଁ ।୨୦
ମାତାଙ୍କ ଆଦେଶ ବ୍ୟାସ କରିଣ ପାଳନ
ବୈମାତୃକ ଭ୍ରାତା ପତ୍ନୀ କରିଲେ ରମଣ
ତଦ୍ଦ୍ୱାରା କୁରୁକୁଳରେ ଗୌରବ ବିନଷ୍ଟ
ହେଲା ନାହିଁକି ଅକ୍ରୂର ବିଚାରି କହତ ?
ଅକ୍ରୂର କହିଲେ ଏହା ପରମ୍ପରା ଗତ
ନିଯୋଗ ପ୍ରଥା ଯେ ହେତୁ ଶାସ୍ତ୍ରେ ସମର୍ଥିତ । ୨୧
ପୁଣି ପଚାରିଲା କଂସ କହହେ ଅକ୍ରୂର
ଗାନ୍ଧାରୀ ଉଦରୁ ଜାତ ନ ହେବେ କୁମର
ବ୍ରହ୍ମଶାପ ପାଇ ପାଣ୍ଡୁ ରମଣୁ ବଞ୍ଚିତ
ନିଃସନ୍ତାନ କୁରୁକୁଳ ହୋଇଲା ନିଶ୍ଚିତ
ସେଥିକି ଉପାୟ କିସ ଅଛି ତାହାଙ୍କର
ସେମାନଙ୍କ ମୃତ୍ୟୁ ଅନ୍ତେ କେହେବ ନୃପବର । ୨୨

ଅକ୍ରୁର କହିରେ ଯେତେ ଦିନ ଗଙ୍ଗା ସୁତ
ବଞ୍ଚିଛନ୍ତି କୁରୁକୁଳ ଅଟେ ସୁରକ୍ଷିତ
ଇଚ୍ଛାମୃତ୍ୟୁ ପାଇ ଭୀଷ୍ମ ଅଟନ୍ତି ଅମର
ସେହି ବଂଶେ କି'ବପଦ ପଡ଼ିବ ନୃବର ?
କେବଳ କୌରବ ମାନେ ନୁହଁନ୍ତି ଶାସକ
ପରମ ଧାର୍ମିକ ତଥା ପ୍ରଜାଙ୍କ ସେବକ । ୨୩

ଯେମାନଙ୍କ ଶାସନରେ ଶଠତା ନ ଥାଇ
ବଳ ପ୍ରୟୋଗେ ଶାସନ ସେ କରନ୍ତି ନାହିଁ
ପ୍ରଜାଙ୍କୁ ସେ ପୁତ୍ର ପରି କରନ୍ତି ପାଳନ
ନାରୀ ଜାତି ପ୍ରତି ରହିଥାଏ ବହୁମାନ୍ୟ
ବଳାତ୍କାରେ ପ୍ରଜା ଧନ ନ ନିଅନ୍ତି ଲୁଟି
କୌରବ ମାନେ ଅଟନ୍ତି ଆଦର୍ଶ ନୃପତି । ୨୪
ତାହାଙ୍କ ଶାସନେ ଧନଜନ ସୁରକ୍ଷିତ
ଶିଶୁ, ନାରୀ, ବିପ୍ର, ଋଷି, ସୁଖରେ ପାଳିତ
ଭରତ ବଂଶର ଅଛି ବହୁତ ସୁଖ୍ୟାତି
ମର୍ତ୍ତ୍ୟେନ୍ଦ୍ର ପ୍ରାୟ ଅଟନ୍ତି ହସ୍ତିନା ନୃପତି
ଅନ୍ୟ ନରପତି ମାନେ କରୁଥାନ୍ତି ମାନ୍ୟ
ଧର୍ମ ନ୍ୟାୟ ବଳେ ରାଜ୍ୟ କରନ୍ତି ଶାସନ । ୨୫
କ୍ରୁଦ୍ଧ କରି ପରୁଛିଲ କଂସ ମନ୍ଦମତି
ବସୁଦେବ ଦେବକୀଙ୍କୁ ଭୀଷ୍ମ ଡାକିଛନ୍ତି
ମନେ ହୁଏ ଭୀଷ୍ମଙ୍କର ଏହା କୂଟମତି
ସେମାନଙ୍କୁ ଡାକି ନେଇ କରାଇବେ ମୁକ୍ତି
ତେଣୁ ପତିପତ୍ନୀ ବେନି ନ ଛାଡ଼ିବି ମୁହିଁ
ଏ କଥା ତୁମ୍ଭ ମନକୁ କେମନ୍ତ ଆସଇ ? ୨୬
ଅକ୍ରୁର କହିଲେ ଯାହା ତୁମ୍ଭର ବିଚାର
ଅନ୍ୟଥା କରିବା ପାଇଁ ଶକତି କାହାର
ମାତ୍ର ମୋ ବିଚାରେ ଭୀଷ୍ମେ କଲେ ଅସମ୍ମାନ
ସେ କ୍ରୋଧ କରିଲେ କ୍ଷତି ହେବ ନରତ୍ରାଣ

ପର୍ଣ୍ଣ ଗ୍ରାମ ପରି ଖାର ଯୁଦ୍ଧେ ଗଲେ ହାରି
ଏ ଖିରତେ କାଏ ଅଛି ଖ୍ରୀଷ୍ଣ ସମ ସରି ? ୨୭

କଂସ କହେ ପାହା ହେଉ ନ ଛାଡ଼ିବ ମୁହିଁ
ଅକ୍ରୂର କହିଲେ କୃଷ୍ଣେ ମତ ବଦଳାଇ
ମୋହର ମତ ଉଦ୍ବ୍ରପ ଅଟେ ନୃପଦେବ
ଉଭୟଙ୍କୁ ହସ୍ତିନାକୁ କେଭେ ନ ଛାଡ଼ିବ
ଯଦ୍ୟପି ନ ଫେରି ତହିଁ ରହିଯିବେ ଦୁଇ
ସେଠାରେ ଜନ୍ମିଲେ ଶତ୍ରୁ ହତ ହେବ ନାହିଁ ।୨୮

ଭୟର କାରଣ ହେବ ବସୁଦେବ ସୁତ
ମୋ ବଗ୍ଚରେ ହସ୍ତିନାକୁ ନ ଛାଡ଼ ନୃନାଥ
ଅକ୍ରୂରର କୃଷ୍ଣ କଥା ବୁଝି କଂସାସୁର
କହିଲା ନଜକୁ ମଣୁ ଅଧିକ ଚତୁର
ଛଡ଼ ହେବା ପରି କଥା କହୁଛୁ କମାଇ
ତୋହ କଥା ଶୁଣି ମନେ ସନ୍ଦେହ ଆସଇ । ୨୯

ବସୁଦେବ ନ ଯିବା କଥା କମା କହିବ
ଦେବକୀ ଛାଡ଼ିବ ନାହିଁ ବୋଲି ମୁଁ କହିବ
କାରଣ ଦେବକୀ ଦେହେ ଅଛି ଗର୍ଭବାସ
ଦୂରଦେଶେ ଗଲେ ହେବ ଶଙ୍କର ପରଶ
ଏହା କହି ବ୍ୟାସଦେବ ଫେରାଇଣ ଦେବା
ମନା କରି ଦେଇ କମା ଦୋଷ ଅରକବା ।୩୦

ଦେବକୀ ନ ଗଲେ ବସୁଦେବ ତ ନଯିବ
କାର୍ଯ୍ୟସିଦ୍ଧି ହେବ ମୋତେ ଦୋଷ ନ ଲାଗିବ
ସେମାନଙ୍କ ପରିବର୍ତ୍ତେ ତୁମ୍ଭେ ତହିଁ ଯିବ
ତୁମ୍ଭଙ୍କୁ ଦେଖିଲେ ଖ୍ରୀଷ୍ମ ଶାନ୍ତ ଶତ୍ରୁ ହେବ
ଏହା କହି ରୁଷକଣ୍ଠେ ବୋଲେ କଂସାସୁର
ବନେ ଯାଉଛି ମୁହିଁ କରିବାକୁ ଶିକାର । ୩୧
କାଲି ବ୍ୟାସଦେବ ମଥୁରା ପୁରେ ଆସିଲେ
ତୁମ୍ଭେ ହସ୍ତିନାକୁ ଯିବ ମୁନଙ୍କର ତୁଲେ

ଏହା କହି କଂସାସୁର ବନେ ଚାଲିଗଲେ
ବିଦାୟ ଦେଇ ଅକ୍ରୂର ଘରକୁ ଫେରିଲେ
ପରଦିନ ବ୍ୟାସଦେବ ନଉକା ଆରୋହି
ମିଳିଲେ ହସ୍ତିନା ପୁରେ ଶ୍ରଦ୍ଧାଭାବ ବହି । ୩୨

ଦେବକ, ଅକ୍ରୂର ଦେଇ ସ୍ୱାଗତ କରିଲେ
ମୁନି ପାଦ ପଦ୍ମେ ପଡ଼ ପ୍ରଣିପାତ ହେଲେ
ମଥୁରାର ନରନାଥ କଲେ ବହୁମାନ୍ୟ
ବ୍ୟାସଙ୍କୁ ଦର୍ଶନ କରି ହୋଇଗଲେ ଧନ୍ୟ
ସତ୍ୟବତୀ ସୁତ ବ୍ୟାସ ସିଦ୍ଧ ତପୋଧନ
ଶରୀରର ରୂପ ଶୋଭା ଘନ କୃଷ୍ଣବନ । ୩୩

ଶ୍ୟାମଳ ବର୍ଣ୍ଣ ଶରୀରେ ଭସ୍ମ ବିଲେପନ
ଶ୍ୟାମଳ-ପାଂଶୁର ଦେଇ ବର୍ଣ୍ଣର ମିଳନ
କୃଷ୍ଣବର୍ଣ୍ଣ ଅଙ୍ଗଶୋଭା କୃଷ୍ଣ ଦ୍ୱିପାୟନ-
ଋଷି ନାମେ ପରିଚିତ କୃଷ୍ଣ ପ୍ରିୟଜନ
ବେଦକୁ ବିଭାଗ କରି ନାମ ବେଦବ୍ୟାସ
ବିଦ୍ୱାନ, ପଣ୍ଡିତ, ପ୍ରଥିତଯଶା ତାପସ । ୩୪
ବିଶାଳ ମସ୍ତକେ ଦେଇ ଚକ୍ଷୁ ଦୀପ୍ତିମନ୍ତ
ତପଃଶ୍ଚର୍ଯ୍ୟାରେ ନର୍ଜିତ, ମୃଗ ଚର୍ମାବୃତ
ବଳିଷ୍ଠ, ସୁପୁଷ୍ଟ ବପୁ ଦୀର୍ଘ ଅବୟବ
ଦର୍ଶନେ ଅନ୍ତରେ ଭରିଯାଏ ଭକ୍ତିଭାବ
ବିଦ୍ୱାନ ସେ ବେଦବିଦ୍, କବି, ସାହିତ୍ୟିକ
ବିଷ୍ଣୁ ପ୍ରିୟ ଭକ୍ତ ସତ୍ୟ ଧର୍ମ ପ୍ରଚାରକ । ୩୫
ପ୍ରେରଣା ଦ୍ୱାରା ଯେ ବେଦ ମୁନିଋଷି ମାନେ
ଲଭ କରୁଥିଲେ ଶିକ୍ଷା ଗୁରୁକୁଳା ଶ୍ରମେ
ସେ ବେଦକୁ ବ୍ୟାସଦେବ ସଂଗ୍ରହ କରିଣ
ଲିଖିତାକାରେ କରିଲେ ଲୋକେ ବିତରଣ
ତେଣୁ ସୁଧୀମାନେ ଦେଲେ ନାମ ବେଦବ୍ୟାସ
ସର୍ବମାନ୍ୟ ଅଟନ୍ତି ସେ ଏ ଭାରତ ବର୍ଷ । ୩୬

ବ୍ୟାସଙ୍କ ଦର୍ଶନ ପାଇ ମଧୁପୁର ବାସୀ
ଚରଣ ପରଶ କରି ହେଲେ ବହୁ ଖୁସି
ଅକ୍ରୂର ନବରେ ରାତି ଯାଇ ବାସ କଲେ
ଦୁଗ୍ଧ ଫଳ ଦେଇ ଅକ୍ରୂର ଚଉଗ୍ଣ କଲେ
ଅକ୍ରୂର ଠାରୁ ବ୍ୟାସ ଦେବକୀ ବସୁଦେବ
ସମ୍ପର୍କେ ସକଳ କଥା ଶୁଣି ଦୁଃଖ ଭାବ । ୩୭
ଯେଉଁ ପ୍ରକୋଷ୍ଠେ ସେମାନେ ବନ୍ଦୀ ରହିଥିଲେ
ଗାର୍ଗାଚାର୍ଯ୍ୟ ବ୍ୟାସ ଅକ୍ରୂର ଯାଇଁ ମିଳିଲେ
କୃଷ୍ଣ ପିତାମାତା ଦେଖି ବ୍ୟାସ ଆନନ୍ଦିତ
ଦେବକୀ ଓ ବସୁଦେବ ଚରଣେ ପ୍ରଣତ
ପାଦ ପ୍ରକ୍ଷାଳନ କରି ପୁଷ୍ପ ଅର୍ଘ୍ୟ ଦେଲେ
ଅଶ୍ରୁ ପୂର୍ଣ୍ଣ ନୟନରେ ଦୁଃଖ ଜଣାଇଲେ । ୩୮
ଗଭୀର ସ୍ନେହ, ଶ୍ରଦ୍ଧା ତଥା ସହାନୁଭୂତି
ସହକାରେ, ସବୁ କଥା ଶୁଣିଲେ କ ସତି
ସ୍ନେହାର୍ଦ୍ର କଣ୍ଠେ କହିଲେ ବ୍ୟାସ ମହାମୁନି
କଂସ ଅତ୍ୟାଚାରେ ବହୁ ଦୁଃଖ ଭୋଗିଲଣି
ଦୁଃଖ ଦେବା ପାଇଁ କଂସ ହୋଇଅଛି ଜାତ
ତାହାର ବିନାଶ କାଳ ଆସି ଉପଗତ । ୩୯
ତୁମ୍ଭ ଦୁଃଖ ଜଣାଇବା ପାଇଁ ଅକ୍ରୂରଙ୍କୁ
ପ୍ରତିନିଧି ରୂପେ ପେଷ ହସ୍ତିନା ପୁରକୁ
ବିଦ୍ୱାନ, ବିଜ୍ଞ, ବ୍ୟକ୍ତିତ୍ୱ ଅଟନ୍ତି ଗାଙ୍ଗେୟ
ସେ ନିଶ୍ଚେ କରିବେ ତାହାଙ୍କ ଯୋଗ୍ୟ ଉପାୟ
ଗାର୍ଗାଚାର୍ଯ୍ୟ ରହିଛନ୍ତି ତୁମ୍ଭର ସହାୟ
ତୁମ୍ଭର ମଙ୍ଗଳ ପାଇଁ ଚିନ୍ତିତ ହୃଦୟ । ୪୦
ପାଞ୍ଚଜଣ ନିଭୃତରେ ଯୋଜନା କରିଣ
ହସ୍ତିନା ପୁରେ ଚଳିଲେ ବ୍ୟାସ ତପୋଧନ
ମାତାଙ୍କ ଚରଣେ ଯାଇଁ କରିଲେ ପ୍ରଣାମ
କୋଳାଗ୍ରତ କରି ମାତା ଆଙ୍କିଲେ ଚୁମ୍ବନ

ପୁତ୍ରଙ୍କୁ କହିଲେ ମାତା ଶୁଣ ମୋ ଭରଷା
ସମ୍ରାଟ ଭରତ ବଂଶେ ପଡ଼ିଛି ବିପତ୍ତି । ୪୧
କୁରୁକୁଳ ରକ୍ଷା ଚିନ୍ତା ବିଷାଦିତ ଚିତ୍ତ
ବନବାସେ ପାଣ୍ଡୁ ରାଜା ଅଭିଶାପ ଗ୍ରସ୍ତ
ଗଙ୍ଗାଦେବୀ କୋପେ କୁରୁବଂଶ ନିଃସନ୍ତାନ
ପୁତ୍ରଙ୍କ ଔରସୁ ପୁତ୍ର ନ ହୋଇବ ଜନ୍ମ
ଗର୍ଭ ଧାରଣେ ଗାନ୍ଧାରୀ ଅଟେ ଅସମର୍ଥ
ବ୍ରହ୍ମଶାପେ କୁନ୍ତି, ମାଦ୍ରି ମାତୃତ୍ୱ ବଞ୍ଚିତ । ୪୨

ରକ୍ଷା ହେବ କୁରୁକୁଳ କପଟ ନନ୍ଦନ
ସେଥିପାଇଁ ଡକାଇଛି କର ବୁଦ୍ଧି ଦାନ
ମାତାଙ୍କ କଥାରେ ବ୍ୟାସ ହୋଇଲେ ଗମ୍ଭୀର
ସତ୍ୟବତୀ ଚରଣରେ ନମିଲେ ଅକ୍ରୂର
ଭୀଷ୍ମଙ୍କ ଚରଣ ତଳେ ହୋଇ ପ୍ରଣିପାତ
ବିସ୍ତାରି କହିଲେ ମଥୁରା କଥା ସମସ୍ତ । ୪୩

ଦେବକୀ, ବସୁଦେବଙ୍କୁ ହସ୍ତିନା ନଗରେ
ଛାଡ଼ିବାକୁ ମନାକଲା କଂସ ଆଶଙ୍କାରେ
ସେମାନଙ୍କ ଦୁଃଖ କଥା ଜଣାଇବା ପାଇଁ
ବ୍ୟାସଙ୍କ ସହିତ ମୋତେ ଅଛନ୍ତି ପଠାଇ
ଷଡ଼୍‌ବର୍ଷେ ଷଡ଼ଶିଶୁ ପୁତ୍ରଙ୍କୁ ମାଇଲା
ସପ୍ତମ ଗର୍ଭ କୌଶଳେ ରକ୍ଷା ପାଇଗଲା । ୪୪
ଅଷ୍ଟମ ଗର୍ଭ ତାହାର ଆସି ଉପସ୍ଥିତ
ଏଇ ଗର୍ଭେ ବିଷ୍ଣୁନାଥ ହୋଇବେ ସମ୍ଭୂତ
ଦେବକୀ ବସୁଦେବଙ୍କ ଦୁଃଖ କଥା ଶୁଣି
ମନ ମଧ୍ୟେ ମହାକୋପ କଲେ ଭୀଷ୍ମମଣି
କୁନ୍ତୀ ଦେବକୀ ଅଟନ୍ତି ଦୁଇଟି ଭଉଣୀ
ବସୁଦେବ ପାଣ୍ଡୁଙ୍କର ଜ୍ୟେଷ୍ଠ ଶାଳୀ ଭୂଣି । ୪୫
ଏଣୁ ବସୁଦେବ ଦୁଃଖେ ହସ୍ତିନା ଦୁଃଖିତ
କୌରବ ଯାଦବ ବେନି କୁଳ ବିଷାଦିତ

କଂସ ଶାସନ ବିଷୟେ ହସ୍ତିନା ନଗରେ
ଜନମତ ସୃଷ୍ଟି ହେଲା ପ୍ରଖର ବେଗରେ
ଅଷ୍ଟମ ଗର୍ଭରେ ବିଷ୍ଣୁ ଜନ୍ମ ହେବା ଶୁଣି
ଆଶ୍ୱସ୍ତ ହୋଇଲେ ଭୀଷ୍ମ ମନ୍ତ୍ରୀ କଥାଶୁଣି । ୪୬

ହସ୍ତିନାରୁ ଚଳିଗଲେ ପରାଶର ସୁତ
ଶତଶୃଙ୍ଗ ଠାରେ ପାଣ୍ଡୁ କରିଲେ ସାକ୍ଷାତ
ପିତାଙ୍କ ଦର୍ଶନ ପାଇ ପାଣ୍ଡୁ ନରତ୍ରାଣ
ପତ୍ନୀଙ୍କ ସହିତ କଲେ ଚରଣ ବନ୍ଦନ
ପାଦ୍ୟ ଅର୍ଘ୍ୟ ଦେଇ ମାନ୍ୟେ ବସାଇଲେ ନେଇ
କୁଶଳ ଜିଜ୍ଞାସା କଲେ ପୁତ୍ର, ବଧୂ, ଗୃହିଁ । ୪୭
ଫଳାହାର ଶେଷ କରି ବ୍ୟାସ ମହାଯତି
ପାଣ୍ଡୁ, କୁନ୍ତୀ, ମାଦ୍ରୀଜନ ବସାଇ ବୋଲନ୍ତି
ମୁନିଋଷି ମାନେ ଦେଇ ଅଛନ୍ତି ସ୍ୱମତ
ବଂଶରକ୍ଷା ଶ୍ରେଷ୍ଠ ଧର୍ମ ଭାବେ ବିବେଚିତ
ସ୍ନେହମୟୀ ପତ୍ନୀ ପତି ପୁତ୍ରଙ୍କ ନିମନ୍ତେ
ବଞ୍ଚିରହେ ପ୍ରେମ ପ୍ରୀତି ଦେଇ ଏ ଜଗତେ । ୪୮
ନିୟୋଗ ନିୟମେ ପୁତ୍ର ଜାତ କରାଇଣ
ବଂଶରକ୍ଷା କରି ନାରୀ ହୋଇଥାଏ ଧନ୍ୟ
ଯେଉଁ ବ୍ରତକଥା ଗୋଟି କରୁଛୁ ପ୍ରକାଶ
ପାଳନ କଲେ ସେ ବ୍ରତ ଜାତ ହେବେ ଶିଷ୍ୟ
ବିନୟେ କହିଲେ ବେନି ମାନିବୁ ନିର୍ଦ୍ଦେଶ
ପାତିବ୍ରତ୍ୟ ଯେଉଁ ପରି ନ ହେବ ବିନାଶ । ୪୯
ଅସତୀ ହୋଇଲେ କୁଳଯଶ ନାଶଯିବ
ଏଥିକୁ ଉପାୟ କର ଅହେ ପିତୃଦେବ
ବ୍ୟାସ କହିଲେ ଶୋଚନା ନକର ହେ ମନ
ସତୀ ମଧ୍ୟେ ମହାସତୀ ରୂପେ ହେବ ଗଣ୍ୟ
ପୁତ୍ରଜାତ କର ମାତେ ବେନି ଉପଦେଶ
ଗୁରୁଜନ ମାନଙ୍କର ରହିଛି ଆଶିଷ । ୫୦

ଯଥାର୍ଥ ଅର୍ଘ୍ୟ ବିଗ୍ରହ ତୁମ୍ଭ ଅପଦନ
ଦେବତା ଉଦ୍ଦେଶ୍ୟ ତାହା କର ସମର୍ପଣ
ଏହା କଲାବେଳେ ହୃଦେ ସ୍ୱାମୀଙ୍କ ଚିନ୍ତନ
ବ୍ୟତୀତ ଅନ୍ୟ କାହାକୁ ନ କରିବ ଧ୍ୟାନ
ସ୍ୱାମୀଙ୍କ ଛଡ଼ା ଅନ୍ୟ କାହାରି ଉଦ୍ଦେଶ୍ୟରେ
କାମ ପିପାସା ନରଖିବ ଅନ୍ତର ମଧ୍ୟରେ । ୫୧
ନାରୀ ପକ୍ଷରେ ପ୍ରଧାନ ଅଟେତ! ମାତୃଭ୍ୱ
ସ୍ୱାମୀ ପ୍ରତି ପୂର୍ଣ୍ଣ ଭକ୍ତି ଶ୍ରଦ୍ଧାନ୍ୱିତ, ଗରିଷ୍ଠ
ସେହି ଆଦର୍ଶରେ ତୁମ୍ଭେ ଜନନୀ ହୋଇଣ
ସ୍ୱାମୀ ପୁତ୍ର ପାଇଁ କର ଜୀବନ ଧାରଣ
ସୋମବଂଶ ରକ୍ଷା ପାଇଁ ଦେବଙ୍କ ଔରସେ
ପୁତ୍ରଜାତ କର ମାଗୋ ଆମ୍ଭ ଉପଦେଶେ । ୫୨
ଦ୍ୱାପର ଯୁଗର ଲୀଳା କରିବା ନିମନ୍ତେ
ଦେବକୀ ଗର୍ଭରେ ଜାତ ହେବେ ବିଷ୍ଣୁ ନାଥେ
ଅନନ୍ତ ଜାତ ହେଲେଣି ଦେବକୀ ଗର୍ଭରେ
ବିଷ୍ଣୁ ଜାତ ହେବେ ଆସି ଅଳପ ଦିନରେ
ଦ୍ୱାପର ଯୁଗର ଲୀଳା କରିବା ନିମନ୍ତେ
ବିଷ୍ଣୁ ପଞ୍ଚ ସଖା ଜାତ ହେବେ ଆସି ମର୍ତ୍ତ୍ୟେ ।୫୩
ବ୍ରହ୍ମା ସୃଷ୍ଟି କୋପେଇନ୍ଦ୍ର ନିହତ କାଳରେ
ପଞ୍ଚପ୍ରାଣ ଥୋଇଛନ୍ତି ପଞ୍ଚଦେବ ଠାରେ
ଇନ୍ଦ୍ର ପଞ୍ଚ ପ୍ରାଣ ପଞ୍ଚ ତନୟ ଭାବରେ
ମର୍ତ୍ତ୍ୟ ଲୀଳାପାଇଁ ଜାତ ହେବେ ହସ୍ତିନାରେ
ତୁମ୍ଭର ଉଦରୁ ତିନ ମାଦ୍ରି ଗର୍ଭୁ ଦୁଇ
ଜାତ ହେବେ ପାଞ୍ଚ ପୁତ୍ର ଏ ସତ୍ୟ ଅଟଇ । ୫୪
ଧର୍ମ, ବାୟୁ, ଇନ୍ଦ୍ର ଏହି ତିନଙ୍କ ଅଂଶରେ
ତିନପୁତ୍ର ଜାତ ହେବେ ତୁମ୍ଭର ଉଦରେ
ଅଶ୍ୱିନୀ କୁମାର ଅଂଶେ ଜନ୍ମିବେ ଦି,ସୁତ
ଧର୍ମରକ୍ଷା କରିବେ ଏ ପାଣ୍ଡୁ ପାଞ୍ଚସୁତ

ଏହାହିଁ ହେଉଛି ମାଗୋ ନିୟନ୍ତା ନିର୍ଦ୍ଦେଶ
ବ୍ୟାସଙ୍କ କଥାରେ ବଧୂ କରିଲେ ବିଶ୍ୱାସ । ୫୫

ଶତଶୃଙ୍ଗ ପର୍ବତରୁ ବିଦାୟ ଘେନିଣ
ହସ୍ତିନା ପୁରେ ମିଳିଲେ ବ୍ୟାସ ତପୋଧନ
ମାତାଙ୍କ ଆଗରେ ତଥ୍ୟ କରିଲେ ପ୍ରକାଶ
ଶୁଣି ସତ୍ୟବତୀ ହେଲେ ମନରେ ହରଷ
ଗାନ୍ଧାରୀଙ୍କ ଗର୍ଭୁ ପୁତ୍ର ଜାତ ହେବା ପାଇଁ
ପୁତ୍ରେଷ୍ଟି ଯଜ୍ଞାୟୋଜନ କହିଲେ ବୁଝାଇ । ୫୬

ହସ୍ତିନାରେ କିଛି ଦିନ ରହି ବ୍ୟାସଦେବ
ଗୋପପୁରେ ଚଳିଗଲେ ବନ୍ଧୁ ପ୍ରିୟଭାବ
ବ୍ୟାସ, ଅକ୍ରୂର, ନନ୍ଦ, ଗାର୍ଗଋଷ୍ୟ ବସିଣ
ଗୁପ୍ତ ପରାମର୍ଶ କଲେ ଏକତ୍ର ହୋଇଣ
ଦେବକୀ ଅଷ୍ଟମ ଗର୍ଭ ଜଠର ଗୋପରେ
ଲାଳିତ ପାଳିତ ହେବେ ଆସି ଗୋପନରେ । ୫୭

ବିହିତ ବ୍ୟବସ୍ଥା କରି ବ୍ୟାସ ତପୋବନ
ଅନନ୍ତଙ୍କୁ କୋଳ କରି ଆଙ୍କିଲେ ଚୁମ୍ବନ
ଗୋପରୁ ପ୍ରୟାଗ ତୀର୍ଥେ ଚଳିଗଲେ ବ୍ୟାସ
ଅକ୍ରୂର ଗାର୍ଗ୍ୟର୍ଷ୍ୟ ମଥୁରାରେ ପ୍ରବେଶ
ଅଠାବନ ପଦେ ଅଧ୍ୟାୟ ହୋଇଲା ସଂପୂର୍ଣ୍ଣ
ବୃନ୍ଦଦାସ ବୋଲେ କୃଷ୍ଣ ରସ କର ପାନ । ୫୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ଗୋପଲୀଳା ଖଣ୍ଡେ ବ୍ୟାସଦେବଙ୍କ ମଥୁରା, ହସ୍ତିନା ଭ୍ରମଣ ବୃତ୍ତାନ୍ତ ନାମ ଊନବିଂଶ ଅଧ୍ୟାୟ ସଂପୂର୍ଣ୍ଣ ।

ଶ୍ରୀକୃଷ୍ଣାର୍ପଣମସ୍ତୁ



# ବିଂଶ ଅଧ୍ୟାୟ

## ଯୁଧିଷ୍ଠିର ଜନ୍ମ

### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କରହୋ ରସିକ ଜନ
ପଦ ପଦକରେ ରସ ପୂରିଅଛି
ରସ ସରିତ ସମାନ । ୧

ବ୍ୟାସ ଉପଦେଶ ପାଇ ପାଟରାଣୀ
ମନ୍ତ୍ରମାଳ ଧ୍ୟାନ କରେ
ହୃଦଗତେ ଧର୍ମ ଦେବଙ୍କୁ ସ୍ମରନ୍ତେ
ମିଳିଲେ ଆସି ସେଠାରେ । ୨

ଧର୍ମ ନିରଞ୍ଜନ ସ୍ୱରୂପ ଧଇଲେ
ଦୁର୍ବାସା ମନ୍ତ୍ର ଉପାୟେ
କୁନ୍ତୀ ଦେଖା ନେତ୍ରେ ଦୃଶ୍ୟମାନ ହେଲେ
ମହା ମାନବ ପରାୟେ । ୩

କୁନ୍ତୀଙ୍କ ସେବାରେ ସନ୍ତୁଷ୍ଟ ହୋଇଣ
କଲେ ପୁତ୍ର ଏକ ଦାନ
ଧର୍ମଙ୍କ ଆତ୍ମାରୁ ଜନ୍ମନ୍ତେ ନନ୍ଦନ
ରୂପ ଦିଶେ ଶୁକ୍ଳ ବର୍ଣ୍ଣ । ୪

ଆଜାନୁ ଲମ୍ବିତ ବାହୁ ସୁଶୋଭିତ
ଧରଣୀ ଶୋଭା ମଣ୍ଡନ
ରକ୍ତ ପଦ୍ମ ଜିଣି କରତଳ ଶୋଭା
ସୁଗଠିତ ଆଁପନ୍ଦନ । ୫

ଶାନ୍ତି ପ୍ରଦାୟକ    ଅଭୟ ଦାୟକ
ସତ୍ୟ ସନ୍ଧ ଧର୍ମସୁତ
ଦୟା-ଧର୍ମ-ଜ୍ଞାନ-    ଧୈର୍ଯ୍ୟ ସତ୍ୟ ଏହି
ପାଞ୍ଚ ମୁଦ୍ରା ହେବ ଜାତ । ୬
କୁନ୍ତୀ ମୁଖ ଚାହିଁ    କହୁଛନ୍ତି ଧର୍ମ
ଜୀବନ ତୁମ୍ଭର ଧନ୍ୟ
ଏ ମର୍ତ୍ତ୍ୟ ମଣ୍ଡଳେ    ଜାତ ହୋଇ ବସ୍ତୁ
ଖଟିବେ ତୁମ୍ଭ ସନ୍ତାନ । ୭
ପୁତ୍ର କୋଳେ ଧରି    ଶିକ୍ଷା ଦେଲେ ଧର୍ମ
ସତ୍ୟ ଠାରେ ରଖ ମନ
ମାତା ପୁତ୍ରେ ବର    ଦେଇ ଧର୍ମ ଦେବ
ହୋଇଗଲେ ଅନ୍ତର୍ଦ୍ଧାନ । ୮
ପିତାଙ୍କୁ ସୁମରି    କାନ୍ଦନ୍ତେ ନନ୍ଦନ
ଶୁଭେ ଧର୍ମ ଧର୍ମ ସ୍ୱନ
ଶିଶୁ କଣ୍ଠ ସ୍ୱନ    ଶୁଣି ପାଣ୍ଡୁ ରାଣୀ
ଧାଇଁ ଧଇଲେ ନନ୍ଦନ । ୯
ବରୃଣଲେ ମନେ    ବୁଡ଼ିଗଲା ବଂଶ
ପତ୍ନୀର ଯୋଗୁଁ ଉଦ୍ଧାର
ମାଦ୍ରୀ ସାଧ୍ୱୀ ପ୍ରିୟେ    ସୌଭାଗ୍ୟ ଆମ୍ଭର
କୋଳେ ଧଇଲେ କୁମର । ୧୦
ଏକାଳେ ବ୍ରାହ୍ମଣ    ରୂପଧରି ଚର୍ଣ୍ଣ
ଦେଖା ଦେଲେ ବୃହସ୍ପତି
ମହତାଙ୍କ ପୋଥି    କାଖେ ଜାକିଛନ୍ତି
ମୁଖେ କୃଷ୍ଣ ନାମ ଗୋଟି । ୧୧
ପିତା ମାତା ମୁଖ    ଚାହିଁ ସେ କହିଲେ
ହେଲା ନାମ ଯୁଧିଷ୍ଠିର
ଯୁଧିଷ୍ଠିର ନାମ    ଜନ ହିତକର
ନାଶ କରେ ପାପ ଘୋର । ୧୨

ଗୁରୁଙ୍କ ମୁଖରୁ ପୁତ୍ର ନାମ ଶୁଣି
ତୋଷ ହେଲେ ପିତାମାତା
ଯୁଧିଷ୍ଠିର ନାମ ପ୍ରଚୁର ହୁଅନ୍ତେ
ଶୁଣି ଶାନ୍ତ ବସୁମାତା ।୧୩
ମୁନି ଋଷି ମାନେ ଶତ ଶୃଙ୍ଗେ ମିଳି
ପୁତ୍ରେ ଆଶୀର୍ବାଦ କଲେ
ଧର୍ମରେ ବର୍ଦ୍ଧିତ ହେଉ କଳେବର
ଧର୍ମ ରକ୍ଷା କର ଭଲେ ।୧୪
ଋଷିଏ କହିଲେ ଧନ୍ୟ କୁନ୍ତୀ ମାତା
ଭାରତ ଜନନୀ ତୁହି
ଧର୍ମ ନିରଞ୍ଜନ ତୋହର ନନ୍ଦନ
ଧର୍ମରେ ଥାଇବେ ମହୀ ।୧୫
ସ୍ୱଭାବରେ ଶାନ୍ତ ଗୁଣରେ ଗରିଷ୍ଠ
ସତ୍ୟନିଷ୍ଠ, ବପୁବନ୍ତ
ତୋ ପୁତ୍ର ପାଦରେ ଖଟିବେ ଶ୍ରୀହରି
ମର୍ତ୍ତ୍ୟରେ ହୋଇଣ ଜାତ ।୧୬
ଧର୍ମ ଯୁଧିଷ୍ଠିର କୁରୁକୁଳେ ଜ୍ୟେଷ୍ଠ
ସୁତ ରୂପେ ହେଲେ ଜାତ
ଆଶୀର୍ବାଦ କରି ଋଷି ବିପ୍ର ଗଲେ
ଦମ୍ପତ୍ତି ପାଳିଲେ ପୁତ୍ର ।୧୭
ଜାତ ହେଲେ ଧର୍ମ ପାଳିବାକୁ ଧର୍ମ
ଅଧର୍ମ କରିବେ ନାଶ
ଅଠର ପଦରେ ଅଧ୍ୟାୟ ସମ୍ପୂର୍ଣ୍ଣ
ଗୀତେ ଭଣେ କୃଷ୍ଣ ଦାସ ।୧୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଯୁଧିଷ୍ଠିର ଜନ୍ମ ବୃତ୍ତାନ୍ତେ ନାମ
ବଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

# ଏକବିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣାବତାର

### ରାଗ - କଷ୍ଟକଳାବୃତ୍ତେ

ଏଥୁ ଅନ୍ତେ ଶୁଣ ଜନେ ଦେଇ ମନ କର୍ଣ୍ଣ
କୃଷ୍ଣ ଚରିତ ମାନସ ଦିବ୍ୟରସ ପୂର୍ଣ୍ଣ
ଦେବକୀ ଅଷ୍ଟମ ଗର୍ଭ ବଢ଼ିଲା ଉଦର
କଂସାସୁର ପାଶେ ଦାସୀ କହିଲା ଖବର । ୧
ମୃଦୁସ୍ୱନା ଠାରୁ ବାର୍ତ୍ତା ପାଇ କଂସ ରାୟେ
ଆତ୍ମାକୁ ଲାଗିଲା ଭୟ ଶରୀର କଂପାଏ
ଅଷ୍ଟମଲ୍ଲ ଡକାଇଣ କରିଲା ବିଚାର
ଏହି ଗର୍ଭ ଶିଶୁ ହାତେ ମୃତ୍ୟୁ ଅଛି ମୋର । ୨
ବୋଲୁଛନ୍ତି ଅଷ୍ଟମଲ୍ଲ ନହୁଅ ଉଦ୍‌ବିଗ୍ନ
ଦୃଢ଼ରେ ଦେବକୀ ଦେହୀ କରହୋ ବନ୍ଧନ
ମନ୍ତ୍ରୀଙ୍କର ପରାମର୍ଶେ ମଥୁରା ରାଜନ
ପଥର ଘରେ ଦେବକୀ ଘେରିଲା ବନ୍ଧନ । ୩
ଜଗିଲେ ପ୍ରହରୀ ଗଣେ ଯେ ଯାହା ଖଞ୍ଜାରେ
ଅଶ୍ୱାରୋହୀ, ଗଜାରୋହୀ, ପଦାତି ଦୃଢ଼ରେ
ରାତ୍ର ଦିବସରେ ଜଗି ରହିଲେ ପ୍ରହରୀ
ପହରା ଦେଉଣ ଥାନ୍ତି ଅସ୍ତ୍ର ଶସ୍ତ୍ର ଧରି । ୪
ଅଷ୍ଟମ ଗର୍ଭର ଶିଶୁ ହତ୍ୟା କଲାପରେ
ଗଣ ବିଦ୍ରୋହ ହୋଇବ କାଳେ ମଥୁରାରେ
ଆଶଙ୍କା କରିଣ କଂସ ଜଗାଇଲା ସୈନ୍ୟ
ମାଗଧୀ ସୈନ୍ୟରେ ରାଜବସ୍ତୀ ପରିପୂର୍ଣ୍ଣ । ୫
ବେଳ ଦଣ୍ଡେ ଥାଉଁ ଲୋକେ କାମଧାମ ସାରି
କବାଟ କିଳି ପଶିଲେ ଭିତର ଗମ୍ଭୀରୀ
ଭୟଙ୍କର ଘରୁ କେହି ନ ହେଲେ ବାହାର
ଜାତ ହୋଇଅଛି ରାଜ୍ୟେ ମାର୍ଶାଲ ଅର୍ଡର । ୬

ନଗରଗୋଷ୍ଠୀ ହୋଇଗଲା, ନର ନାରୀ ଶୂନ୍ୟ
ବଳବନ୍ତର ହୋଇଲା ସାନ୍ଧ୍ୟ ଯେ ଆଇନ
ଫାଟକମାନଙ୍କ ଜଗିଲେ ସୈନ୍ୟ ଆଗ୍ନେୟାସ୍ତ୍ର ଧରି
କମାଣ୍ଡୋ ମାନେ ବୁଲିଲେ ଗଜ ଅଶ୍ୱ ଚଢ଼ି । ୭

ନିରାପତ୍ତା ବ୍ୟବସ୍ଥାକୁ ସୁଦୃଢ଼ କରିଣ
ତଥାପି ଭୟରେ କଂସ ମନ ଛନ୍ନ ଛନ୍ନ
ମରଣ ଭୟ ମନକୁ କଲା କବଳିତ
ଦେବକୀ ଅଷ୍ଟମ ଗର୍ଭ ସାତ ମାସ ଗତ । ୮

କଂସର ପ୍ରଧାନ ସେନାପତି ଯେ ପ୍ରଦ୍ୟୋତ
ତାହାର ପତ୍ନୀ ପୂତନା ରାଜାର ବିଶ୍ୱସ୍ତ
ତାହାକୁ ଜଗାଇଲା ନେଇଣ କାରାଗାରେ
ଦେବକୀ ଦେବୀ ଖବର ଦେବାର କାର୍ଯ୍ୟରେ । ୯
ପୂର୍ଣ୍ଣ ଆଠ ମାସ ଆସି ହୋଇଲା ସଂପୂର୍ଣ୍ଣ
ଅବଶ ଦେବକୀ ଦେବୀ ଉଦର କମ୍ପଣ
ଭାଦ୍ରବ କୃଷ୍ଣ ଅଷ୍ଟମୀ ବର୍ଷଣ ମୁଖର
ସର୍ବେ ନିଦ୍ରା ଯାଇଛନ୍ତି ଚେତାନାହିଁ କାର । ୧୦
ଝଞ୍ଜାଘାତେ ବସୁମତୀ ବକ୍ଷ କଂପମାନ
ପ୍ରବଳ ଜଳ ସ୍ରୋତରେ ନଗର ପ୍ଲାବନ
ସେଦିନ ପୂତନା ନିଜ ଗୃହେ ଯାଇଥିଲା
ଝଡ଼ବାତ୍ୟା ହୋଇବାରୁ ଫେରି ନ ପାରିଲା ।୧୧
ଦେବରାଜ ଇନ୍ଦ୍ର ବିଷ୍ଣୁ ଶୁଭାଗମନରେ
ଉତ୍ସବପାଳନ କରୁ ଥାଆନ୍ତି ସ୍ୱର୍ଗରେ
ପୁଷ୍ପବୃଷ୍ଟି କରୁଥାଆନ୍ତି ଆକାଶ ମଣ୍ଡଳେ
ମେଘ ଘଡ଼ ଘଡ଼ ରଡ଼ ବିଜୁଳି ହିଲ୍ଲୋଳେ । ୧୨
ଗୋପ ମଥୁରାରେ ସମ ପରିମାଣେ ବୃଷ୍ଟି
ଅଷ୍ଟମ ପ୍ରହର ଆସି ହୋଇଅଛି ରାତ୍ରି
ଏକାଳେ ଯଶୋଦା ଦେବୀ ଗର୍ଭ କଷ୍ଟ ପାଇ
କନ୍ୟା ଏକ ଜାତ କରି ଚେତାକୁ ହରାଇ । ୧୩

ଘୋରୁଛନ୍ତି ଭୂମିତଳରେ ନ ଜାଣନ୍ତି କେହି
ଜାଗ୍ରତ ଅଛନ୍ତି ନନ୍ଦ ଗୋପ ଗୃହେ ଦୁଇ
କୁସୁମ ଶଯ୍ୟା କରିଣ ବୋଝରେ ଶୁଆଇ
ଘେନି ଗଲେ କନ୍ୟା ପୂର୍ବ ବ୍ୟବସ୍ଥାନୁଯାୟୀ । ୧୪
ବଜ୍ରାଘାତେ ବସୁମତୀ ବକ୍ଷ କମ୍ପମାନ
ସର୍ବେ ନିଦ୍ରା ଯାଇଛନ୍ତି ମଥୁରା ଭୁବନ
ପୂତନା ଫେରିବା ପାଇଁ ଉନ୍ମୁକ୍ତ କପାଟ
ବନ୍ଧନ ଫିଟିଲେ ବନ୍ଦୀ ଘର ଆଲୋକିତ । ୧୫
ଅଭିଜିତ ନକ୍ଷତ୍ରର ସଂଯୋଗ କାଳରେ
ପୂର୍ଣ୍ଣ ଆଠମାସେ ଶିଶୁ ଜନ୍ମିଲ ମର୍ତ୍ତ୍ୟରେ
ବସୁଦେବ ଧାଇ କାର୍ଯ୍ୟ କଲେ ସମାପନ
ଦେଖିଲେ ଶ୍ରୀ ନାରାୟଣ ଶଙ୍ଖ ଚକ୍ର ଚିହ୍ନ । ୧୬
ଶଙ୍ଖ, ଚକ୍ର, ଗଦା, ପଦ୍ମ ଚତୁର୍ଦ୍ଧା ମୂରତି
ମହାବିଷ୍ଣୁ ରୂପ ଗୋଟି ଧରିଣ ଅଛନ୍ତି
ନିରାକାର ପରଂବ୍ରହ୍ମ ସ୍ୱରୂପ ଧାରଣ
ସଗୁଣ ଶରୀରେ ଆସି ସ୍ୱୟଂ ଅବତୀର୍ଣ୍ଣ । ୧୭
ଶ୍ରୁତି, ସ୍ମୃତି, ଉପନିଷଦ, ବେଦ, ପୁରାଣ
ଶ୍ରୀକୃଷ୍ଣ ପୂର୍ଣ୍ଣ ପରଂବ୍ରହ୍ମ ପ୍ରତିପାଦନ
ଧର୍ମ, ଯଶ, ଶ୍ରୀ, ଜ୍ଞାନ, ବଇରାଗ୍ୟ ବିଭୂତି
ଷଡ ଐଶ୍ୱର୍ଯ୍ୟବାନଯେ ଶ୍ରୀକୃଷ୍ଣ ଅଟନ୍ତି । ୧୮
ଶ୍ରୀ, ଭୂ, କୀର୍ତ୍ତି, କାନ୍ତି, ଲୀଳା, ଇଳା, ଉତ୍କର୍ଷିଣୀ
ବିଦ୍ୟା, ଜ୍ଞାନା, ଯୋଗ୍ୟା, ସତ୍ୟା, ଶାବ୍ୟ, ଗ୍ରହଣୀ
ବିମଳ, ଅନୁଗ୍ରହ, ଯୁଦ୍ଧନ, ଷୋଳକଳା
ଘେନି ଜାତ ବନ୍ଦୀ ଘରେ ଦେବକୀର ବାଳା । ୧୯
ସଗୁଣ ଶରୀରେ ପ୍ରଭୁ ହେଲେ ଅବତୀର୍ଣ୍ଣ
ଶ୍ରୀକୃଷ୍ଣ ଆନନ୍ଦାପ୍ଲବନ ପରମବ୍ରହ୍ମ
ସର୍ବାତ୍ମୀତ, ସର୍ବମୟ ପୁରୁଷ ଉତ୍ତମ
ବସୁଦେବ ଦେବକୀଙ୍କ ଗର୍ଭେ ହୋଇଲେ ଜନମ । ୨୦

ପିତା ବସୁଦେବ ଦେଖି ଭାବେ ବିସ୍ମିତ
ପୁତ୍ର ଭାବ ଛାଡି ପ୍ରଭୁ ଭାବେ ନମସ୍କୃତ
ହୋଇଣ ଅନ୍ତର ମଧ୍ୟେ କଲେ ସ୍ତୁତିଗାନ
ଜୟ ଜୟ ଜଗନ୍ନାଥ ଜଗତ ଜୀବନ । ୨୧
ସେ ରୂପ ଦେଖି ଦେବକୀ ବିହ୍ୱଳିତ ହୋଇ
ଅନ୍ତରେ ପ୍ରଣାମ କଲେ ଭକ୍ତିଭାବ ବହି
କହିଲେ ହେ ନାରାୟଣ ନ ଦେଖା ଏରୂପ
ଏ ରୂପ ଦେଖି ହୃଦୟ ମଧ୍ୟରେ ପ୍ରକମ୍ପ । ୨୨
ଯୋଗ ବଳେ ଯୋଗୀ କରେ ଯେ ରୂପ ଦର୍ଶନ
ସେ ରୂପ ଦେଖି ମୋ ଚିତ୍ତ ହୁଏ ଛନ୍ନ ଛନ୍ନ
ମାନବ ରୂପକୁ ପ୍ରଭୁ କରନ୍ତୁ ଧାରଣ
ଯେ ରୂପ ଦର୍ଶନେ ଲୋକେ ହେବେ ତୋଷମନ । ୨୩
ତୁମ୍ଭେ ମୋ ତନୟ ବୋଲି କରିବେ ବିଶ୍ୱାସ
କଂସକୁ ବିନାଶି ମର୍ତ୍ତ୍ୟ କରିବ ଉଶ୍ୱାସ
ମାତା କଥା ଶୁଣି ପ୍ରଭୁ ମାନବ ରୂପରେ
ଦେଖା ଦେଲେ ଅକସ୍ମାତ ଜନନୀ ନେତ୍ରରେ । ୨୪
ଫୁଟିଲ ପଦ୍ମ ପ୍ରାୟେକ ନେତ୍ର ମନୋହର
ସର୍ବାଙ୍ଗ ସୁନ୍ଦର ବପୁ ଦେବକୀ କୁମର
ଦ୍ୱିଭୁଜ ମୁରଲୀ କର କିଶୋର ସୁନ୍ଦର
ଅମିୟ ଆନନ୍ଦ ହାସ୍ୟ କମଳ ଅଧର । ୨୫
ପୁତ୍ରକୁ ଦେଖି ବିଚାରେ ଶୂରଦେବର ସୁତ
କି ବୁଦ୍ଧି କରିବ ଆସି ପଡ଼ିଲା ସଙ୍କଟ
କଂସକୁ ନ ଦେଲେ ପୁତ୍ର ହେବ ସତ୍ୟଭ୍ରଷ୍ଟ
ପୁତ୍ର ଦେଲେ କଂସାସୁର କରିବ ବିନଷ୍ଟ । ୨୬
ବନ୍ଦୀଘରୁ ପୁତ୍ର ଗୋଟି ନେଲେ ମୁଁ ଗୋପାଇ
ଚୌର୍ଯ୍ୟ ବୃତ୍ତି ହେବ ମୋର ନିନ୍ଦିତ ହେବଇଁ
ମାନବ୍ୟାସ ପରାମର୍ଶ ମନରେ ପକାଇ
ସିଦ୍ଧାନ୍ତ କରିଲେ ଶିଶୁ ଘେନିଯିବା ପାଇଁ । ୨୭

ଟୋକେଇ ମଧ୍ୟରେ ଶିଶୁ ଯତନେ ଶୁଆଇ
ଉପରେ ଗୁଦର ଖଣ୍ଡେ ଦେଲେକ ଘୋଡାଇ
ବୋଝର ଉପରେ ପୁଣି ମଶିଣାକୁ ଥୋଇ
ଚାଲିଗଲେ ବସୁଦେବ ପ୍ରଭୁପାଦ ଧ୍ୟାୟୀ । ୨୮

ଆପଣାର ମଥା ପରେ ଟୋକେଇ କି ଧରି
ଚାଲିଗଲେ ଅନ୍ଧକାରେ କ୍ଷିପ୍ରଗତି କରି
ପବନ ଆଘାତେ ଚାଲିଯାଏ ବେଗେ ବେଗେ
ଶୃଗାଳ ପଥ କଢାଏ ଧାଇଁ ଆଗେ ଆଗେ । ୨୯

ଗନ୍ଧର୍ବ ଗଣଙ୍କୁ ରଥେ ଘେନି ଚିତ୍ରସେନ
ଶୂନ୍ୟପଥ ଆବୋରିଛି ବାହ୍ମଣ ସ୍ୟନ୍ଦନ
ଅନନ୍ତ ବାସୁକି ଶିରେ ଟେକି ଅଛି ଫଣା
ଖଗେଶ୍ୱର ବିସ୍ତାରିଛି ଛତ୍ର ପ୍ରାୟ ଡେଣା । ୩୦
ସୁଦର୍ଶନ ଚକ୍ର ଘୂରେ ହୋଇ ଘର ଘର
ଧୂଳି ନିରପତ୍ତି ମଧ୍ୟେ ଚାଲିଲେ ଶ୍ରୀଧର
ବସୁଦେବେ ଆଗୋଚର ବାସୁଦେବ ମାୟା
ମାଧୁପକ୍ଷେ ସ୍ଥୈର୍ଯ୍ୟ ବୃଦ୍ଧି ଉଦୟେ ଥରେ କାୟା ।୩୧
ଯମୁନା ନଦୀକୁ ପାରି ହୋଇ ଚାଲି ଗଲେ
ନଦୀ ଘାଟେ ନନ୍ଦ ଗାର୍ଗ୍ୟ ଜଗି ରହିଥିଲେ
ବସୁଦେବ ନେଇଥିବା ବୋଝ ତାଙ୍କୁ ଦେଇ
ସେମାନେ ଆଣିଥିବା ଟୋକେଇକୁ ମୁଣ୍ଡାଇ । ୩୨
ମୁହୂର୍ତ୍ତକେ ବନ୍ଦୀଶାଳେ ବାହୁଡି ଆସିଲେ
ଦେବକୀ କୋଳରେ କନ୍ୟା ଶୁଆଇଣ ଦେଲେ
କୃଷ୍ଣଙ୍କ ଜନ୍ମ ସଙ୍କେତ ପଡିଥିଲା ତଳେ
ସଞ୍ଜିଲା ବିଜୁଳି କନ୍ୟା ସେହି ରକ୍ତ ନାଳେ । ୩୩
ଏଣେ ନନ୍ଦ ଗାର୍ଗ୍ୟ ସେ ବୋଝକୁ ନେଇ
ଯଶୋଦା କୋଳେ ସମ୍ଭ୍ରମେ ଦେଲେକ ଶୁଆଇ
ନିର୍ଭୟେ ଶୋଇଲେ ପ୍ରଭୁ ଯଶୋଦା କୋଳରେ
ନନ୍ଦ ଗାର୍ଗ୍ୟ ଜଗି ରହିଲେ ଅଦୂରେ । ୩୪

କଂସ ବନ୍ଦୀ ଶାଳେ ଶିଶୁ କରନ୍ତେ କ୍ରନ୍ଦନ
ଜାଣିଲେ ପ୍ରହରୀ ଗଣେ ହୋଇ ସଚେତନ
ନିଶାନ୍ତ କାଳେ ସୂଚନା ଯାଇଣ ମିଳିଲା
କନ୍ୟା ଜାତ ହେବା କଥା କଂସେ ଜଣାଇଲା । ୩୫
ବାର୍ତ୍ତା ପାଇ କଂସାସୁର ତକ୍ଷଣେ ଚଳିଲା
ବନ୍ଦୀଶାଳେ ମିଳି ଶିଶୁ ଆକର୍ଷି ଧଇଲା
ଦେବକୀ କହିଲେ ଭାଇ କନ୍ୟା ହେଲା ଜାତ
ଏ କନ୍ୟାକୁ ଛାଡ଼ି ଦିଅ ନକର ନିହତ । ୩୬
ମୋହର ତନୟ ଯିନା ତୁମ୍ଭର ବଇରୀ
ପୁଣ ନୁହେଁ ପୁତ୍ରୀଟିର କି ପାରିବ କରି ?
କଂସ କହିଲା ଭଉଣୀ ଅଷ୍ଟ ଗର୍ଭ ଯାଏ"
ପୁଣ ହେଉକି ଦୁହିତା ତାକୁ ମୋର ଭୟେ । ୩୭
ତୁ କହିଲୁ ଦୁହିତା କି କରିବ ମୋହର
ନାରୀ ରୂପେ ବିଷ୍ଣୁ ମଧ୍ୟ ଧରିଲ ଶରୀର
ତୋହର ଗର୍ଭରେ ସେ ଅବା ଜନ୍ମହୋଇଛି
ନ ବୋଲ ଛାଡ଼ିବା କଥା କନ୍ୟା ବିଶ୍ୱମୂର୍ତ୍ତି । ୩୮
ଏହା କହି କଂସାସୁର ବଳେନେଇ ଯାଇ
କଚାଡ଼ିଲା କନ୍ୟା କୋପେ ଶିଳାପରେ ନେଇ
କଚାଡ଼ିବା କାଳେ କନ୍ୟା କରୁ ଖସିଗଲା
ଗର୍ବବଳେ ଗୋଇଠାଏ ବକ୍ଷକୁ ମାରିଲା । ୩୯
ପଦାଘାତେ ମୁଖବାଟେ ବହିଲା ରୁଧିର
କଚାଡ଼ି ପଡ଼ିଲା କଂସ ଘୂରି ଗଲା ଶିର
ଡାକିଣ କହିଲେ ଦେବୀ ଶୁଣ ଦୁଷ୍ଟ ଆରେ
"ତୋତେ ଯେ ମାରିବ ଜନ୍ମି ଅଛି ଗୋପନରେ । ୪୦
ଦେବକୀର ଷଡ଼ ପୁତ୍ର କରିଲୁ ନିଧନ
ଶିଶୁପୁତ୍ର ହତ୍ୟା ଦୋଷେ ହେବ ତୋ ମରଣ
ଆୟୁ-ଯଶ-ବଳ-ବୀର୍ଯ୍ୟ-କ୍ଷମତା-ସାହସ"
ଥାଇ ବାକେ ହିଂସାକଲୁ ପ୍ରାଣେ ଯିବୁ ନାଶ । ୪୧

ଦେବକୀ ବନ୍ଧନ ଫେଡ଼ି ଘରେ ବେଗେ ନିଅ
ଭଉଣୀ ଭଣେଇ ପ୍ରାଣେ କଷ୍ଟରୁ ନ ଦିଅ
କଂସ ମନକୁ ଉଦ୍‌ବୃଷ୍ଟ କରି ମହାମାୟୀ
ଚାଲିଗଲେ ଶୂନ୍ୟ ପଥେ ସତର୍କ କରାଇ । ୪୨
ଦେବକୀ ବସୁଦେବଙ୍କୁ କାରା ମୁକ୍ତ କରି
ପ୍ରାସାଦେ ଫେରି ଆସିଲେ କଂସ ଦଣ୍ଡଧାରୀ
ଶୁଣିଲେ ଦେବତା ମାନେ ଚକ୍ରକୂଟ କଲେ
ପୁତ୍ର ଜାତ ସ୍ଥଳେ କନ୍ୟାଜାତ କରାଇଲେ । ୪୩
ସପ୍ତମ ଗର୍ଭର ଶିଶୁ ଆପେ ଗଲା ନାଶି
ମୁଦୁସୁଲ କଥା ଶୁଣି କରିଲା ବିଶ୍ୱାସ
ଅଷ୍ଟମ ଗର୍ଭରେ ପୁତ୍ର ଜାତ ହେବ ବୋଲି
ନାରଦ କଥାକୁ ସତ୍ୟ ଜ୍ଞାନ କରିଥିଲା । ୪୪
ମାତ୍ର ନାରଦଙ୍କ କଥା ହୋଇଲା ଅସତ୍ୟ
ଅଷ୍ଟମ ଗର୍ଭରେ କନ୍ୟା ହୋଇଲା ସଂଜାତ
ମାରି ନ ପାରିଲା ତାକୁ ଗଲା ସେ ପଳାଇ
ତା'ର କଥା ପଡ଼ିଲେ ମନେ ଅନ୍ତର ଥରଇ । ୪୫
ପୁତନା ଡାକାଇ ଗୁପ୍ତେ କହିଲା ସକଳ
ଆଜ୍ଞା ଦେଲା ଦଶ ଦିନେ ଯେତେଜାତ ବାଳ
ସେମାନଙ୍କୁ ହତ୍ୟା କର ଗୋପନରେ ଯାଇ
ପୁତନା ନଗରରେ ବୁଲି ଶିଶୁଙ୍କୁ ମାରଇ । ୪୬
କଂସର ଏ ଜଘନ୍ୟ ଆଦେଶ କର୍ଣ୍ଣେ ଶୁଣି
ଲୁଚାଇ ରଖିଲେ ଶିଶୁ ପୁତ୍ରଙ୍କୁ ଜନନୀ
ପୁତନାକୁ ଦେଖି ଘର ତାଟି କଳ ଦେଲେ
ନିନ୍ଦା କଥା ମାନ କହି ମୁଖ ନ ବୁହିଁଲେ । ୪୭
ଦେବକୀ ଓ ବସୁଦେବ ଆପଣା ଗୃହରେ
ଯାଇଣ ରହିଲେ ଦୁଃଖେ ବଚନ ନ ସ୍ଫୁରେ
ନେତ୍ରେ ଦେଖିଥିବା ଶିଶୁ ରୂପ ଅନୁଯାୟୀ
କୃଷ୍ଣ ମାର୍ବଲ ପଥରେ ମୂରତି ଗଢ଼ାଇ । ୪୮

ଈଶ୍ବର ଜ୍ଞାନ କରଣ ଦେବକୀ ପୂଜିଲେ
ଘନଶ୍ୟାମ ନାମ ଧରି ଶ୍ରଦ୍ଧାରେ ଡାକିଲେ
ବେଣୁ କରେ ଶଙ୍ଖଚକ୍ର ପାଉଅଛି ଶୋଭା
ମଥାରେ ମୟୂର ଚୂଳ ଝଟକଇ ପ୍ରଭା । ୪୯
କଟିରେ ପିତ ବସନ କଣ୍ଠେ ପୁଷ୍ପହାର
ଧୂପ ଦୀପ ନୈବେଦ୍ୟ ନାନା ଉପହାର
ଦୁଧ ଦହି କ୍ଷୀର ସର ନାନାଦି ପଦାର୍ଥ
ସମର୍ପଣ କରି ଦେବୀ ମନେ ଆନନ୍ଦିତ । ୫୦
ମଉନେ ରହି ଦେବକୀ କରିଲେ ପୂଜନ
ସନ୍ନ୍ୟାସିନୀ ର ଜୀବନ କରିଲେ ଯାପନ
ବସୁଦେବ, ଗାର୍ଗାଚାର୍ଯ୍ୟ, ଅକ୍ରୂର ବର୍ଜିତ
ଅନ୍ୟ କାହାସଙ୍ଗେ କଥା ନ ହୁଅନ୍ତି ମାତ । ୫୧
ଘନଶ୍ୟାମ ବିଗ୍ରହ ଯେ ତାହାଙ୍କ ନନ୍ଦନ
ଏ ଗୂଢ଼ ରହସ୍ୟ ଜାଣି ନ କରିଲେ ଆନ
ପୁଅ ପରି ପ୍ରତିମାକୁ କରିଲେ ପାଳନ
ପ୍ରତିମା ଭିତରେ ପ୍ରଭୁ ଦିଅନ୍ତି ଦର୍ଶନ । ୫୨
ତେପନ ପଦେ ଅଧ୍ୟାୟ ହୋଇଲା ଶେଷ
ଗୀତରେ ଭଣିଲା ମୂଢ଼ ମତି ବୁଲ୍ଲାଦାସ
ସେ ପ୍ରଭୁ ଚରଣେ ଶତ ପ୍ରଣିପାତ ମୋର
ଆଶ୍ରିତ ଜନେ ଉଦ୍ଧାର ଦେବକୀ କୁମର । ୫୩

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ ଡଥମେ
ଗୋଲୋକଲୀଳା ଖଣ୍ଡେ ଶ୍ରୀକୃଷ୍ଣ ଅବତାର ବର୍ଣ୍ଣନେ
ନାମ ଏକ ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।



**ବୋଲି -**

ଭଜୁଥାରେ ମନ ଦେବକୀ ନନ୍ଦନ
ଶରଣ ରକ୍ଷଣ ହରିଙ୍କି
ଧରଣ କରିବେ ତୋ ଦୁଃଖ ଘଣିକ
ପାରି କରି ଦୁଃଖ ନଗରୀ ॥ ଘୋଷା ॥

ଆରତ ଥାଣଙ୍କୁ ଆତୁରେ ଡାକଲେ
ଶୁଣନ୍ତି ଶ୍ରୁତିକି ଡେରିକ
ଶରଣ ରକ୍ଷଣ ବାନା ଉଡୁଅଛି
ଦେଖ ତୋ ନୟନ ଟେକିକି । ୧

ତାରିଛନ୍ତି କେତେ ଆରତ ଜନଙ୍କୁ
ନାରକା, ନନ୍ଦଲୁ ନାଣିକି
ରଖିଛନ୍ତି ବନେ ମୃଗଣୀ, ପକ୍ଷୀଙ୍କି
ପ୍ରବଳ ବନାଗ୍ନି ଭକ୍ଷିକି । ୨

ଏମନ୍ତ ଦୟାଳୁ ପ୍ରଭୁଙ୍କୁ ଡାକିଲେ
କୋଳ କରିନେବେ କନ୍ତକ
ବୃନ୍ଦାବନ ସଦା ଆଶ୍ରୟ କରିଛି
ଅଭୟ ପାଦ ଦୁଇକ । ୩



# ଦ୍ୱାବିଂଶ ଅଧ୍ୟାୟ

# ଗୋପରେ ଜନ୍ମୋତ୍ସବ

## ରାଗ - ବଙ୍ଗଳାଶ୍ରୀ

ବଦାନ୍ୟ ରସିକେ ଶୁଣ ମନ ଦେଇ
କୃଷ୍ଣ ଚରିତ ମାନସ
ମଦ ମଦକରେ ଅମୃତ ଝରୁଛି
ପାନ କର ହୁଅ ତୋଷ । ୧

ନନ୍ଦ ଗାର୍ଗାର୍ଯ୍ୟ ବସୁଦେବ ଠାରୁ
ଦେବକୀ ନନ୍ଦନ ଆଣି
ଯଶୋଦା କୋଳରେ ଶୁଆଇଣ ଦେଲେ
କେହି ନ ପାରିଲେ ଜାଣି । ୨

ବ୍ୟାସ ପରାମର୍ଶେ ଉଲଟ ପାଲଟ
କରାଇଲେ ସୁତ, ସୁତା
ନନ୍ଦ, ବସୁଦେବ, ଆଗ୍ର୍ୟ, ଅକ୍ରୁର
ଦେବକୀ ଜାଣନ୍ତି କଥା । ୩

ଦେବକୀଙ୍କୁ ଜ୍ଞାତ ଯଶୋଦା ଅଜ୍ଞାତ
ଯେଣୁ ଥିଲେ ସଜ୍ଞାହୀନ
ଯଶୋଦା କୋଳରେ ଦେବକୀ ସୁତଙ୍କୁ
ରଖିଲେ ନନ୍ଦ ରାଜନ । ୪

ଜନ୍ମର ସଙ୍କେତ ପଡ଼ିଥିଲା ତହିଁ
ଯେ ସ୍ଥାନେ ଶୋଇ କୁମର
କ୍ରନ୍ଦନ କରନ୍ତେ ଯଶୋଦା ଜନନୀ
ଜାଗି ଉଠିଲେ ସତ୍ୱର । ୫

ଅନ୍ତକାରେ ଧାଇଁ ଧାତ୍ରୀ ମୃଦୁମୂଳ
କଲେ ଜାତକର୍ମ ମାନ
ସୁବର୍ଣ୍ଣ ଶାମୁକା ଯେତ୍ନ ଧାତ୍ରୀ ମାତା
ନାଭି କରଲେ ଛେଦନ । ୬
ଲୁମିର ଶିଶୁକୁ ତୋଳ ଧର କରେ
ଶ୍ରୀ ଅଙ୍ଗ ମାର୍ଜନା କଲେ
ଗର୍ଭ ଜଳେ ସ୍ନାନ କରାଇ ନନ୍ଦନ
ସୂତିକା ବନ୍ଧ ସାରଲେ । ୭
ଅମୁଅ ଘରରେ ପୁଅ ଜାତ ଦେଖି
ଆନନ୍ଦିତ ଧାତ୍ରୀମାତା
ତପତ ପାଣିରେ ପଞ୍ଚାମୃତ ଭରି
କରିଲେ ବିଧାନ ଯଥା । ୮
ତିଳ ଓ ଅଁଳା, ତଇଳ କୁଙ୍କୁମ
ଏକତ୍ର ମିଶାଇ ଦେଇ
ଶିଶୁର କୋମଳ ଅଙ୍ଗରେ ବୋଳିଣ
ଗୁନସ୍ତ ଦେଲେ ଗାଧୋଇ । ୯
ବଦରି, ଅଗୁରୁ, ଦେବଦାରୁ ସଙ୍ଗେ
ପଳାସ ଚନ୍ଦନ କାଷ୍ଠେ
ଏନ୍ତୁଡ଼ି ଶାଳରେ ଧୂନା ଲଗାଇଣ
ସେକିଲେ ଶିଶୁକୁ ଆଣ୍ଠେ । ୧୦
ଗାଈ ଘିଅ ଅଙ୍ଗେ ମର୍ଦ୍ଦନ କରିଣ
ସେକ ଦେଲେ ଧାତ୍ରୀ ମାଏ
ଏନ୍ତୁଡ଼ି ଶାଳରେ ଶୁଆଇ ରଖିଲେ
ଉଷୁମ ହେବାକୁ କାୟେ । ୧୧
ସୁବର୍ଣ୍ଣ ଶାମୁକା ଦେଇଣ ଜନନୀ
ସ୍ତନ୍ୟ କ୍ଷୀର ନିଗାଡ଼ିଣ
ଶିଶୁକୁ ପିଆଇ କୋଳରେ ଶୁଆଇ
ନିଦ୍ରା ଗଲେ ବେନିଜନ । ୧୨

ନନ୍ଦ ଜ୍ୟେଷ୍ଠ ଶଳା ଚନ୍ଦ୍ରସେଣା ଝିଅ
ସଙ୍ଗେ ଶତେକ ଗୋପାଳ
କରେ କେନ୍ଦୁକାଠ ଲଗୁଡ ଧରିଣ
ଜଗିଲେ ଏନ୍ତୁଡ଼ିଶାଳ । ୧୩

ରାଜାଙ୍କ ଆଦେଶେ ରାଜ୍ୟରେ ଉତ୍ସବ
ସମ୍ଭବେ ଯୋଗାଡ କଲେ
ହାଟ, ବାଟ, ଘାଟ, କୋଣେ ସଜାଇଲେ
ପୂର୍ଣ୍ଣ କୁମ୍ଭ ରଖ ଦ୍ୱାରେ । ୧୪

କନକ କୁମ୍ଭରେ ତୀର୍ଥ ଜଳ ଭରି
ଆମ୍ବ ଡାଳ ଓ ଶିରିଫଳ
କଦଳୀ ଗଛକୁ ଦ୍ୱାରଦେଶେ ପୋତି
ବାନ୍ଧିଲେ ତୋରଣ ମାଳ । ୧୫

ନାରୀମାନେ ଛୁଣ୍ଡ ହୋଇ ହରଷିତ
ନନ୍ଦଙ୍କ ଅଙ୍ଗରେ ବୋଳ
ସୁବାସିତ ଜଳ ସସ୍ନେହେ ଢ଼ାଳିଲେ
କରେ ଦେଇ କରତାଳ । ୧୬

ଚନ୍ଦନ, କସ୍ତୁରୀ, କର୍ପୂର, କୁଙ୍କୁମ
ଅତରେ ମିଶାଇ ବାରି
ପିଚକାରି ମାରି ସୁଗନ୍ଧ ବିତରି
ନାଚିଲେ ଗୋପାଳ ନାରୀ । ୧୭

ବାଜଣା ବଜାଇ ନାଚିଲେ ଗୋପାଳେ
ଗୋପଦାଣ୍ଡ ମୁଖରିତ
ଗୋପାଳ ବାଳକେ ଦଳ ଦଳ ହୋଇ
ଗାଇଲେ ଓଗାଳ ଗୀତ । ୧୮

ଜାତ କର୍ମ୍ମ ହୋବ ଲଗିଲା ଗୋପରେ
ନନ୍ଦ କଲେ ଦାନ ପୁଣ୍ୟ
ବ୍ରଜବାସୀ ଗଣେ ଆନନ୍ଦ ହୋଇଲେ
ଖାଇ କ୍ଷୀର, ପୁର, ଅନ୍ନ । ୧୯

ମୂତ୍ତିକା ଶାଳରେ ଶିଶୁ ଶୋଇ ଥିଲେ
କରନ୍ତେ ଉଚ୍ଚେ ସ୍ୱନ
ପ୍ରକଟ ହେଲା କିବା ବ୍ରହ୍ମ ବାଣୀସ୍ୱନ
ହଂସ ସୋଽହଂ କରେ ଗାନ । ୨୦

ସେ ଶବଦ ଶୁଣି ଗୋପର ତରୁଣୀ
ଧାଇଁଲେ ଉନ୍ମତ୍ତ ହୋଇ
ହୃଦେ ହେଲେ ଜାତ ଗୋପେ ହେଲେ ଜାତ
ଗୋପୀନାଥ ସଧାସାଇଁ । ୨୧

ବନ୍ଦାପନା କରି ସସ୍ନେହେ ଗୁଆଳୀ
ଧଇଲେ ବାଳକ କୋଳେ
କମଳ ଚରଣେ ଚୁମ୍ବନ ଆଙ୍କିଲେ
ପ୍ରଭୁ ଚହ୍ନି ପ୍ରେମଭୋଳେ । ୨୨

ପୁତ୍ର ଧରି କୋଳେ ନନ୍ଦ ନୃପ ଭଲେ
କରଗତ ବିଶ୍ବନାଥ
ପାଇ ଅଙ୍ଗ ସ୍ପର୍ଶ ପୁଲକିତ ବପୁ
ପ୍ରେମାଶ୍ରୁ ନେତ୍ର ପ୍ଲାବିତ । ୨୩

ବକ୍ଷେ ଚୂପି ସୁତ ଚିନ୍ତି ବିଶ୍ବନାଥ
କରିଲେ ମାନସ ସ୍ତୁତି
ଗାର୍ଗାଚାର୍ଯ୍ୟ ଆସି ମିଳନ୍ତେ ସେଠାରେ
ପୁତ୍ରଙ୍କୁ ଦେଲେ ଝଟିତି । ୨୪

ଶ୍ରୀହରିଙ୍କୁ କୋଳେ ଧରି ଗାର୍ଗାଚାର୍ଯ୍ୟ
ହୋଇଲେ ବହୁ ଆନନ୍ଦ
ବିଚାରିଲେ ମନେ ମୋ ଜୀବନ ଧନ୍ୟ
ଧଇଲି ପରମାନନ୍ଦ । ୨୫

ଏ କାଳେ ସ୍ୱର୍ଗରୁ ପୁଷ୍ପ ବୃଷ୍ଟି ହେଲା
ଗୋଷ୍ଠେ ପଞ୍ଚିଲା ଚହଳ
ଋଷି ବିପ୍ର ଗଣେ ମନ୍ତ୍ର ଗାନ କଲେ
ବନ୍ଧୁ ପ୍ରେମେ ହୋଇ ଭୋଳ । ୨୬

ଧନ, ରତ୍ନ, ଗାଭି, ଦାନ ଦେଲେ ନନ୍ଦ
ବ୍ରାହ୍ମଣ ମାନଙ୍କୁ ବର
ଅପୁଅ ଘରରେ ପୁଅ ଜାତ ଦେଖି
ପ୍ରୀତ ହେଲେ ନରନାରୀ । ୨୭
ନନ୍ଦ ଘରେ ଆସି ଗୁପ୍ତ ବାସ କଲେ
ସ୍ୱୟଂ ବିଷ୍ଣୁ ଭଗବାନ
ଧର୍ମ ସଂସ୍ଥାପନେ ସ୍ୱଦେହରେ ଜନ୍ମ
ରୂପରେଖ ଯା'ର ଶୂନ୍ୟ । ୨୮
ଅଣତିଂଶ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ପରିପୂର୍ଣ୍ଣ ଦିବ୍ୟ ରସ
ଗୁରୁ ଅଭିରାମ ଚରଣ ସ୍ମରଣ
କରଇ ଏ ବୃନ୍ଦାଦାସ । ୨୯

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଜନ୍ମୋତ୍ସବ ବର୍ଣ୍ଣନେ
ନାମ ଦ୍ୱାବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ
ଶ୍ରୀକୃଷ୍ଣାର୍ପଣମସ୍ତୁ ।



**ବୋଲି-**

ଆଜ ନନ୍ଦରାଜା ଘରେ ଆନନ୍ଦ
ଜାତ ହୋଇଲେଣି ଜଗଦାନନ୍ଦ । ଘୋଷା
ଅପୁଅ ଘରରେ ପୁଅ ଜାତ ଦେଖି
ଉଆଁସ ରହେ କି ଉଇଁଲ ଚାନ୍ଦ ?
ଗୋପ ବାଳେ ମିଳି ଦେଇ କର ତାଳି
ନାଚନ୍ତି ଖେମଟା ହୋଇ ଆନନ୍ଦ ।
ଗୋପର ଗୁଆଳୀ ଦେଇ ହୁଳହୁଳି
କୋଳରେ ଧରିଲେ ଯଦୁର ଚାନ୍ଦ
ଯଶୋଦା ଜନନୀ ପୁତ୍ର କୋଳେ ଘେନି
[illegible] ଆକାଶ ଚାନ୍ଦ ।

ନନ୍ଦଙ୍କ ନେତ୍ରରୁ ପ୍ରେମ ନୀର ଝରେ
ନିରେଖି ନୟନାନନ୍ଦ
ଭାବରେ ଭଣିଲା ଭକ୍ତ ବୃନ୍ଦା ଦାସ
ଶ୍ରବଣ ପଦାର ବନ୍ଧ ।



# ତ୍ରୟୋଦଶ ଅଧ୍ୟାୟ
## ପୂତନା ବଧ
### ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
କଂସ ଆଦେଶରେ ପୂତନା ଅସୁରୀ
ଶିଶୁ କରିଲା ନିଧନ । ୧
ଗୋଟି ଗୋଟି କରି ବହୁ ଗୋଟି ଶିଶୁ
ଗୃହରୁ ହରଣ କରି
ଗୋପନେ ପୂତନା ବିନାଶ କରନ୍ତେ
ମଥୁରାରେ ପଡ଼େ ହୁରି । ୨
ପ୍ରଜାଏ ଜାଣିଲେ ବିବେକ ବିଧ୍ୱଂସ
ହୋଇଅଛି କଂସ ରାଣ
ବିନାଶ କାଳରେ ବିପରୀତ ବୁଦ୍ଧି
ସନ୍ନିପାତେ କଲ୍ୟାଣ । ୩
ଅକ୍ରୂରାଦି ସବେ ବିସ୍ମିତ ହୋଇଲେ
ଶୁଣି ଜଘନ୍ୟ ଆଦେଶ
ବିଚାରିଲେ ମନେ କି ବୁଦ୍ଧି କରିବା
ମଥୁରାକୁ ହେବ ଧ୍ୱଂସ ? । ୪

ଏମନ୍ତ ସମୟେ ଗୁପ୍ତଚର ଆସି
ସତ୍ୱରେ ଦେଲା ସନ୍ଦେଶ
ଗତ କାଲି ରାତ୍ରେ ନନ୍ଦ ରାଜା ଘରେ
ଜନ୍ମି ଅଛି ଏକ ସୁତ । ୫
ତାଙ୍କ ଜନମରେ ଜାତ କର୍ମ ହୁଏ
ଲାଗିଅଛି ମହୋତ୍ସବ
ଗୀତ, ନାଚେ, ଗୋପ- ଦାଣ୍ଡ ମୁଖରିତ
ଦେଖି ଆସିଲୁ ହେ ଦେବ ! ୬
ସମ୍ବାଦ ପାଇଣ କଂସ ନରରାଣା
ହେଲା ମନେ ଭୟଭୀତ
ବାଲ୍ୟରେ ବଡ଼ଙ୍କ କହିଥିବା କଥା
ଆସି କି ହୋଇଲା ସତ୍ୟ ? । ୭
ଲୋକଙ୍କ ଗୋଚରେ ମାରିଲେ ଶିଶୁକୁ
ହେବ ମୋର ଅପଯଶ
ଲୁଚେଇ ମରାଇବି ଅଷ୍ଟ ମଲ୍ଲ ହାତେ
ନ ଲାଗିବ ହତ୍ୟା ଦୋଷ । ୮
ଅଷ୍ଟ ମଲ୍ଲେ ଜାଣି- ଛନ୍ଦ ବନ୍ଧୁଛନ୍ଦ
ତାଙ୍କ ହାତେ ମରାଇବି
ସଖାଙ୍କୁ ଡକାଇ ଆଲୋଚନା କଲା
ମନରେ କପଟ ଭାବି । ୯
ସଖାଏ କହିଲେ ସାମାନ୍ୟ ଶିଶୁକୁ
ମନେ ଭୟ କର ନାହିଁ
କଂସ ବୋଲେ ସଖା ଶିଶୁ ପ୍ରତି ମୋର
ମନ ମଧ୍ୟେ ଭୟ ନାହିଁ । ୧୦
ମାତ୍ର ମୁଁ ଗୋପନ ଋଷି ଅଭିଶାପେ
ଶୋଣିକୁ ନ ପାରେ ପାଇ
ବଳାତ୍କାରେ ଗଲେ ଗୁଣ୍ଡ ଫାଟି ଯିବ
ହାନାଣି ହୋଇବ ତହିଁ । ୧୧

ଅନ୍ତର ବେଦନା ମିଟାଇ କହିଲ
ତହିଁକ ଉପାୟ କର
ଅଷ୍ଟ ମଲ୍ଲେ କହୁ- ଛନ୍ତି ତୁମ୍ଭର ଯେ
ଶତ୍ରୁ, ଶତ୍ରୁ ସେ ଆମ୍ଭର । ୧୨
ଶତ୍ରୁକୁ ନିଧନ କର୍ତ୍ତବ୍ୟ ଆମ୍ଭର
ମନେ ଶୋଚନା ନ କର
ଗୋପ ଆକ୍ରମଣ କରି ଛାରଖାର
କରି ଦେବା ନୃପବର । ୧୩
ସଖା କଥା ଶୁଣି କଂସାସୁର ବୋଲେ
ନନ୍ଦ ସଙ୍ଗେ ଯୁଦ୍ଧ କଲେ
ଲୋକ ମୁଖେ ଆମ୍ଭେ ନିନ୍ଦିତ ହୋଇବା
କଳଙ୍କ ଲାଗିବ କୁଳେ । ୧୪
ନନ୍ଦ ନିୟମିତ କର ଦେଉଅଛି
ନୁହଁଇ ସେ ରାଜଦ୍ରୋହୀ
ତାଙ୍କ ଲୋକେ ତାଙ୍କୁ ଶ୍ରଦ୍ଧା କରୁଛନ୍ତି
ସଭାରେ ପ୍ରଶଂସା ଗାଇ । ୧୫
ଗୋପରେ ଗୋପାଳେ ଅତିଶୟ ଧନୀ
ଶକ୍ତିଶାଳୀ, ବଳବାନ
ଯାଦବ ମାନଙ୍କ ସଙ୍ଗେ ମିଶିଛନ୍ତି
ବନ୍ଧୁ ଆତ୍ମୀୟ ସ୍ୱଜନ । ୧୬
ମଥୁରାର ବହୁ ଶକ୍ତିଶାଳୀ ଲୋକ
ସହିତ ସମ୍ପର୍କ ଅଛି
ଗୋପ ଓ ମଥୁରା ଉଭୟ ରାଜ୍ୟରେ
ନନ୍ଦର ଖ୍ୟାତି ରହିଛି । ୧୭
ଗୋପପୁର ବାସୀ ସ୍ୱଭାବେ ନିର୍ଭୀକ
ସ୍ୱାଧୀନ ଚେତା ଅଟନ୍ତି
ସେମାନଙ୍କ ସଙ୍ଗେ ଶତ୍ରୁତା କରିଲେ
ହେବ ଆମ୍ଭ ଅପଖ୍ୟାତି । ୧୮

ନନ୍ଦ ବସୁଦେବ ମଧ୍ୟରେ ମର୍ମ
ଅଛଇ ନିବିଡ଼ତର
ଶୂରପନ୍ତ ଭାବେ ବସୁଦେବ ପୂଜ୍ୟ
ନନ୍ଦ ଆତ୍ମୀୟ ତାଙ୍କର । ୧୯

ବସୁଦେବ ଭଗ୍ନି ହସ୍ତିନାର ରାଜା
ପାଣ୍ଡୁଙ୍କର ପାଟରାଣୀ
ଶୂର ବଂଶ ସଙ୍ଗେ କୌରବ ବଂଶର
ସମ୍ପର୍କ ରହିଛି ପୁଣି । ୨୦

କାରଣ ନ ଥାଇ ଶୂରଙ୍କ ବିପକ୍ଷେ
କରି ରାଜ୍ୟ ଆକ୍ରମଣ
ନବ ଜାତ ଶିଶୁ ନିଧନ କରିଲେ
ବିନାଶ ହେବ ସମ୍ମାନ । ୨୧

ହସ୍ତିନା, ପାଞ୍ଚାଳ ଗୋପ, ମଥୁରାର
ରାଜ୍ୟରେ ନିନ୍ଦା ରଟିବ
ଯାଦବ ଓ ଶୂର ମଧ୍ୟେ ସାଠ ହୋଇ
ବିବାଦ ବଢ଼ିଣ ଯିବ । ୨୨

ହସ୍ତିନା ରକ୍ଷକ ଭୀଷ୍ମ ମହାବୀର
ଅଟନ୍ତି ସେ ଭୟଙ୍କର
ତାହାଙ୍କ ବିପକ୍ଷେ ଅସ୍ତ୍ର ଧରିବାକୁ
ଭୀତ ସୁରାସୁର ନର । ୨୩

ମୋହର ବଳରେ ସମ୍ମୁଖ ସମରେ
ଶିଶୁଙ୍କୁ ନ କର ହତ
କୂଟ କପଟରେ ବିନାଶ କରିବା
ଅଟଇ ସୁଗମ ପଥ । ୨୪

ପ୍ରଦ୍ୟୋତି କହନ୍ତି ନାରଦ ମୁନିଙ୍କ
ବାଣୀ ମିଥ୍ୟା ପ୍ରମାଣିତ
ଅଷ୍ଟମ ଗର୍ଭରେ କୁମର ନ ଜନ୍ମି
କନ୍ୟାଏ ହୋଇଲା ଜାତ । ୨୫

ରାଜନୀତି କୂଟ      କପଟ କଥାରେ
ଭୁଲାଇ ଦେଲେ ରାଜନ
ସପ୍ତମ, ଅଷ୍ଟମ      ଏ ଦୁଇ ଗର୍ଭର
କଥା ଅଟେ ବର୍ତ୍ତମାନ । ୨୬
ସପ୍ତମ ଗର୍ଭ-      ପାତ ହୋଇଗଲା
ଅଷ୍ଟମେ କନ୍ୟା ଜନମ
ସପ୍ତମ, ଅଷ୍ଟମ      ଗର୍ଭଙ୍କୁ ରାଜନ
ଭୟ ନ ଯୋଗାଏ ମନ । ୨୭
କଂସ ପ୍ରକାଶିଲ      ନାରଦ ବଚନ
କେବେ ହୁଏ ନାହିଁ ରଦ
ସତ୍ୟ ବିନା ମିଥ୍ୟା      ନ କୁହନ୍ତି ମୁନି
ନ ହେବ ବାକ୍ୟ ନାରଦ । ୨୮
ପ୍ରଦ୍ୟୋତ କହିଲ      ଦେବଦୂତ ମୁନି
ପ୍ରସିଦ୍ଧ ରାଜ ମାଣ୍ଡଙ୍କ
ରାଜନୀତି ତାଙ୍କୁ      ଭଲ ଜଣା ଅଛି
କୂଟନୀତିରେ ଅଭିଜ୍ଞ । ୨୯
ରାଜନୀତିଙ୍କର      ପକ୍ଷେ ସତ୍ୟ ମିଥ୍ୟା
ମୁଦ୍ରାର ଦୁଇଟି ପାର୍ଶ୍ୱ
ଉପଯୋଗିତାର      ଆଧାର ଉପରେ
ସର୍ବଦା ପର୍ଯ୍ୟବେସିତ । ୩୦

ରାଜନୀତିଙ୍କତା      ଇଚ୍ଛା ଅନୁସାରେ
ଚାଳନ କରଇ ଗୋଷ୍ଠି
ସତ୍ୟ ପ୍ରତି ମୋଟେ      ଆସକ୍ତି ନ ଥାଏ
ମିଥ୍ୟାପ୍ରତି ଅନୁରକ୍ତ । ୩୧

ରାଜନୀତି ଘୋର      ଥିବାରୁ ନାରଦ
କହି ଅଛନ୍ତି କୂଟୋକ୍ତି
ତାହାଙ୍କ କଥାରେ      ବିଶ୍ୱାସ ନ କର
ନ ହେଉ ସେ ଛଳ ଉକ୍ତି । ୩୨

ଅଷ୍ଟମ ଗର୍ଭରେ ପୁତ୍ର ଜାତ ହୋଇ
କରିବ ପ୍ରାଣେ ନିଧନ
ଏହି କଥା କହି ନାରଦ ମହର୍ଷି
ହୃଦ କରିଲେ ଭିଆଣ । ୩୩
ନାରଦ କଥାରେ ଭଗ୍ନି, ଭଗ୍ନୀପତି
କଲ ରାଜା କାରାରୁଦ୍ଧ
ତହାର କୁଟୁମ୍ବେ କଳହ ଉପୁଜି
ବଢିଲା ଗୃହ ବିବାଦ । ୩୪
ଶୂର ଓ ସାତ୍ତ୍ୱତ କୁକ୍କୁର ଏ ତିନି
କୁଳ ହେଲେ କ୍ରୋଧାନ୍ୱିତ
ଅନ୍ଧକ ବଂଶରେ କ୍ରୋଧାଗ୍ନୀ ଜଳୁଛି
ନ ହୋଇଣ ପ୍ରକାଶିତ । ୩୫
ଉଗ୍ରସେନ ପ୍ରତି ବିଶ୍ୱସ୍ତ ଯେମାନେ
କରୁଛନ୍ତି ଷଡଯନ୍ତ୍ର
ଭିତରେ ଭିତରେ ପ୍ରଜା ଆନ୍ଦୋଳନ
ଭାଙ୍ଗିବାକୁ ରାଜତନ୍ତ୍ର । ୩୬
ବିପ୍ର; ଗୁଣି; ଜ୍ଞାନୀ, ବିଦ୍ୱାନ, ପଣ୍ଡିତେ
ଦେଉଅଛ ରାଜା କ୍ଲେଶ
ଦେବକୀ ଦେବୀଙ୍କ ନିର୍ଯ୍ୟାତନା ଦେଖି
ବଢିଛି ନାରୀଙ୍କ ରୋଷ । ୩୭
ଗୃହ ବିବାଦର ସୂତ୍ରପାତ ସଙ୍ଗେ
ଆଭ୍ୟନ୍ତରୀଣ ବିଦ୍ରୋହ
ସଙ୍ଗଠିତ ଭାବେ ବଢିଛି ରାଜ୍ୟରେ
ଜାଣିଛ କର ନର ରାୟ । ୩୮
ବିଜୁଳି କନ୍ୟାର ଶୂନ୍ୟ ବାଣୀ ଶୁଣି
ନ ହୁଅ ପାପରେ ଲିପ୍ତ
ଅନାଥା ସେ ଶିଶୁ ବଧ କଲେ ରାଜା
କୁଳ ହେବ କଳଙ୍କିତ । ୩୯

ପ୍ରଦ୍ୟୋତର କଥା ଶୁଣି କଂସାସୁର
ହେଲା ଅତି କୋପମାନ
କହିଲା ମୋହର ସେନାପତି ହୋଇ
କହୁ ଅନ୍ୟାୟ ବଚନ । ୪୦
ନୀତି ଶାସ୍ତ୍ର ମତେ ନାରୀ, ବିପ୍ର, ଶିଶୁ
ଯଦି ହେବେ ଆତ୍ମଘାତି
ତାହାଙ୍କୁ ବିନାଶ କଲେ ଦୋଷ ନାହିଁ
ଆତ୍ମରକ୍ଷା ମୂଳନୀତି । ୪୧
ଏହା କହି କଂସ ପୂତନା ଡକାଇ
କହିଲା ଭଉଣୀ ଶୁଣ
ତୋହ ଯୋଗୁଁ ମୋର ଜୀବନ ରହିବ
ଶତ୍ରୁ ହୋଇବ ନିଧନ । ୪୨
ମୋହିନୀ ବେଶକୁ ଧରି ଗୋପେ ଯାଇ
ନାଶ କର ନନ୍ଦ ସୁତ
ତୋହଠାରେ ପୂର୍ଣ୍ଣ ବିଶ୍ୱାସ ରହିଛି
ତହିଁକି ତୁହି ସାମର୍ଥ । ୪୩
ପୂତନା କହିଲା ଆହେ ମହାରାଜ
ଅତ୍ୟନ୍ତ ଦୁର୍ବଳ ମୁହିଁ
ରାଜାଙ୍କ ଆଦେଶେ ବହୁ ଶିଶୁ ମାରି
ବିଳାପ କରୁ ଅଛଇ । ୪୪
ଶିଶୁହରା ମାତା କ୍ରନ୍ଦନକୁ ଶୁଣି
ମୋ ହୃଦୟ ବିଗଳିତ
ମଥୁରାରେ ମୋତେ ରାକ୍ଷସୀ ଭାବିଣ
ଘୃଣା କରୁଛନ୍ତି ମାତ । ୪୫
ବହୁ ଶିଶୁ ଧରି ଗୁପ୍ତେ ମାରି ଅଛି
ଦେଖିଛି କରୁଣ ଦୃଶ୍ୟ
ମୋ ନାରୀ ହୃଦୟ ଆଜି ସେ ଜଘନ୍ୟ
କାର୍ଯ୍ୟ କରଣେ ଅବଶ । ୪୬

ପୂତନାର ଅସ- ହାୟ କଥା ଶୁଣି
କୋପ କଲା କଂସାସୁର
କହିଲା ମୋ କଥା ପାଳନ ନ କଲେ
ବଂଶ ବିନାଶିବ ତୋର । ୪୭
ମୁଁ ଯେବେ ମରିବି ତୁ କମା ବଞ୍ଚିବୁ
ଆଗ ନେବି ତୋ ପ୍ରାଣ
ଏହା କହି କଂସ ପୂତନା ନିଧନେ
କରେ ଧଇଲ କୃପାଣ । ୪୮
ପୂତନା ବିଚାରେ ଗଲେ ମୁଁ ମରିବି
ନ ଗଲେ ମାରିବ କଂସ
ମୋହର ମରଣ ହୋଇଯାଉ ପଛେ
ବଞ୍ଚି ରହୁ ମୋର ବଂଶ । ୪୯
ମନକଥା ମନେ ଗୋପନ ରଖିଣ
କଂସ କଥାରେ ସମ୍ମତ
ହୋଇ ସେ କହିଲା ତୁମ୍ଭ ଶତ୍ରୁ ନାଶ
ପାଇଁ କରୁଛି ଶପଥ । ୫୦
ଦିବ୍ୟ ନାରୀ ବେଶ ଧାରଣ କରିଣ
ବିଷ ବୋଳି ବକ୍ଷସ୍ଥଳେ
ଯଶୋବନ୍ତୀ ପୁରେ ଯାଇ ସେ ମିଳିଲା
ଗୋପାଙ୍ଗଣୀଙ୍କର ମେଳେ । ୫୧
କଥାରେ ଯଶୋଦା ମନକୁ ମୋହିଲା
କହି ପୂର୍ବ ପରିଚିତ
ଆଦର ସହିତ ପାଖରେ ବସାଇ
ଆଳାପ କରିଲେ ମାତ । ୫୨
ଯଶୋଦା ଦେବୀଙ୍କ ଆନ୍ତରିକ ସ୍ନେହ
ଶ୍ରଦ୍ଧାକୁ ଦେଖି ବିସ୍ମିତ
କେତେ ଭଦ୍ର କେତେ ନମ୍ର ସେ ଅଟନ୍ତି
ଦେଖି ହୋଇଲା ଲଜ୍ଜିତ । ୫୩

ନନ୍ଦରାଣୀଙ୍କର କମନୀୟ ରୂପ
ଦେଖି ହେଲା ବିମୋହିତ
ଦେଖିଲା କୋଳରେ ନବୀନ ଶିଶୁକୁ
ଜାଙ୍କ ଧରିଛନ୍ତି ମାତ । ୫୪

ସେ ଶିଶୁର ରୂପ ଫିକା ନୀଳ ବର୍ଣ୍ଣ
ଅଙ୍ଗଶୋଭା ଚମତ୍କାର
ଅଣ୍ଟାରେ ସୁନାର ସୂତା ବନ୍ଧାଅଛି
ପାଦରେ ରୂପା ନୂପୁର । ୫୫
ଦେଖିଲା ମାତ୍ରକେ ଚହ୍ନିଲା ପୁତନା
କଂସ କହିଥିଲା ଯାହା
ଜାଣିଲା ନିଶ୍ଚୟ ଏ କଂସ ବଇରୀ
ଜଗତ ଜନର ସାହା । ୫୬
ଏ ଗ୍ରେଷ୍ଠ ପିଲାର ପାଖେ ଆଉ ଗୋଟେ
ବଡ଼ଛୁଆ ଶୋଇଅଛି
ଧବଳ ବରନ ସୁନ୍ଦର ଗଢ଼ଣ
ମନ ମୀନକୁ ମୋହୁଛି । ୫୭
ରୋହିଣୀ ଦେବୀଙ୍କ କୋଳେ ଖେଳୁଅଛି
ଖିଲି ଖିଲି ହସୁଥାଏ
ଜାଣିଲା ପୁତନା ଏରୋହିଣୀ ପୁତ୍ର
ବସୁଦେବର ତନୟେ । ୫୮
ଧଳା ପିଲାଠାରୁ ଦୃଷ୍ଟିକୁ ଫେରାଇ
କାଳିଆ ଶିଶୁକୁ ଚାହିଁ
ଦେଖିଲା ପୁତନା ମାଆ କୋଳେ ଶୋଇ
ରହିଛି ତାକୁ ଅନାଇଁ । ୫୯
ନୀଳ ଇନ୍ଦୀବର ଜିଣି ମୁଖ ଶୋଭା
ପଦ୍ମ ପଲାଶ ନୟନ
ରଙ୍ଗ ଅଧରରେ ହସର ଲହରୀ
ମୁଖରେ ଦୁଷ୍ଟାମି ଚିହ୍ନ । ୬୦

ସେ ପିଲାକୁ ଦେଖି ଭାବିଲା ମନରେ
ବହୁ ଶିଶୁ ଦେଖି ଅଛି
ମାତ୍ର ଏ ଶିଶୁର ସୁନ୍ଦର ଋଣକୁ
ଦେଖି ନ ପାରଇ ମୂର୍ଚ୍ଛି । ୭୧
ସେ ଦେବ ଶିଶୁକୁ କୋଳେ ଧରିବାକୁ
ବଢ଼ାଅନ୍ତେ କର ବଢ଼ାଇ
ଯୋଶଦା ଜନନୀ ଆନନ୍ଦ ମନରେ
ସନ୍ତାନକୁ ଦେଲେ ନେଇ । ୭୨
ଶିଶୁ କୋଳେ ଧରି ଭାବିଲା ପୁତନା
କଂସ ଶତ୍ରୁ କରଗତ
ମାତ୍ର ଏହି ଶିଶୁ ଜଗତର ମିତ୍ର
ପରି ହେଉଅଛି ଜ୍ଞାତ । ୭୩
ଭାବିଲା ଏ ଶିଶୁ ମାରିବା ଅପେକ୍ଷା
ନିଜେ ମରିଯିବା ଭଲ
ନ ମାରି ମଥୁରା- ପୁରେ ଫେରିଗଲେ
କଂସ ବିନାଶିବ କୁଳ । ୭୪
ଯାହା ହେଉ ପଛେ ଏ ଦିବ୍ୟ ଶିଶୁକୁ
ନ ପାରିବ ପ୍ରାଣେ ମାରି
ପୁତନା ହୃଦୟେ ମାତୃଭାବର ସ୍ନେହ
ଜାଗିଲା ଅଙ୍କୁର ପରି । ୭୫
ଶିଶୁକୁ ଛାତିରେ ଭିଡ଼ି ଧରିବାରୁ
ହୋଇଲା ହିଂସ୍ରତା ଶୂନ୍ୟ
ସ୍ନେହ-ସ୍ୱେଦ ଅଙ୍ଗୁ ପ୍ରବାହିତ ହୋଇ
ଭିଜାଇ ଦେଲା ବସନ । ୭୬
ବିଷାକ୍ତ ପଦାର୍ଥ ସ୍ତନୁ ଧୋଇଗଲା
ପବିତ୍ର ତା' ଦେହ ମନ
ସ୍ତନୁ କ୍ଷୀର ଧାର ଝରିଣ ପଡ଼ିଲା
ଶଇଳୁ ନୀର ଯେସନ । ୭୭

ସ୍ତନ୍ୟ ପାନ ଦେଇ ଶିଶୁ ବଧ ପାଇଁ
କୁଟିଳ ଭାବକୁ ବହି
ସ୍ତନର ଉପରେ ବିଷ ବୋଳି ଦେଇ
ମଧୁଲେପ ଥିଲି ଦେଇ । ୬୮
ଉଦ୍ଦେଶ୍ୟ ତା ଥିଲି ସ୍ତନ୍ୟ ପାନ କାଳେ
ଶିଶୁ ମଧୁର ଲୋଭରେ
ମଧୁ ସଙ୍ଗେ ବିଷ ପାନ କରି ଦେଇ
ମରିବ ଅଜାଣତରେ । ୬୯
ମାତ୍ର ସେ ପ୍ରଭୁଙ୍କୁ କୋଳରେ ଧରନ୍ତେ
ବହିଗଲା ସ୍ୱେଦ ଧାର
ଭିଜିଲା ବସନେ ପୋଛନ୍ତେ ବିଷକୁ
ହୋଇଗଲା ପରିଷ୍କାର । ୭୦
ତଦନ୍ତେ ଶିଶୁକୁ ଦୁଗ୍ଧ ପାନ ଦେଲା
ମାତୃ ସ୍ନେହ ହୃଦେ ଭରି
ଅଲଭ୍ୟକୁ ବକ୍ଷେ ଧାରଣ କରିଣ
ତା' ପ୍ରାଣ ଗଲା ବାହାରି । ୭୧
ବୈରୀକୁ ବନ୍ଧୁରେ ସ୍ୱର୍ଗେ ବାସ କଲା
ପରମ ଦୟାଳୁ ହରି
ଏମନ୍ତ ଦୟାଳୁ ପ୍ରଭୁଙ୍କୁ ଯେ ଭଜେ
ତରିଯାଏ ଭବ ବାରି । ୭୨
ଜୀବନ ହୋଇଣ ପଡ଼ନ୍ତି ପୂତନା
ମାତ୍ର ବଞ୍ଚିଛନ୍ତି ହରି
ପୁତ୍ର ତୋଳି ମାତା କୋଳରେ ଧରିଲେ
ଚକିତ ହୋଇଲେ ନାରୀ । ୭୩
ମରିବା ସମୟେ ପୂତନା ଅସୁରୀ
କରନ୍ତେ ଘୋର ଗର୍ଜନ
ଗୋପପୁର ବାସୀ ଭୀତ ଓ ଶଙ୍କିତ
ହୋଇ ଧାଇଁଲେ ବହନ । ୭୪

ଗୋପାଙ୍ଗଣୀ ମାନେ କହିଲେ ମାତାକୁ
ଆପଦୁ ଟଳିଲା ପୁତ୍ର
ରିଷ୍ଟ ଶାନ୍ତ କର ଆଗୋ ନନ୍ଦରାଣୀ
ବିପ୍ରେ ଦାନ ଦେଇ ବସ୍ତ୍ର । ୭୫

ଗୋବତ୍ସା ଗୋଟିଏ ଧରି ଆଣି ମାତା
ତା ଲାଞ୍ଜ ପୁଚ୍ଛେ ଝାଡ଼ିଲେ
ଗୋ ମୂତ୍ରରେ ସ୍ନାନ ଗୋମଳ ଲେପନ
ଗୋଧୂଳିରେ ଫୋଟା ଦେଲେ । ୭୬

ଗୋ ବ୍ରାହ୍ମଣ ତ୍ରାଣ- କର୍ତ୍ତା ଯେଉଁ ପ୍ରଭୁ
ତାହାଙ୍କ ରିଷ୍ଟ ଖଣ୍ଡନ
ପାଇଁ ଦୁର୍ବାଙ୍କୁର ଧରି ଗୋପାଙ୍ଗନା
ଝାଡ଼ିଲେ ନନ୍ଦ ନନ୍ଦନ । ୭୭

ବାର ଅଙ୍ଗ ନ୍ୟାସ କରି ଗୋପନାରୀ
ପଢ଼ିଲେ ବିଷ୍ଣୁଙ୍କ ନାମ
ପୁତ୍ରକୁ ଘେନିଣ ଅନ୍ତପୁରେ ମାତ
ଯାଇ କରିଲେ ବିଶ୍ରାମ । ୭୮

ଦେଖ ହୋ ସୁଜନେ ନିୟତି ବିଧାନ
କର୍ମ ଫଳ ଖଣ୍ଡେ ନାହିଁ
ଯିଏ ଯେଉଁ କର୍ମ କରଇ ଜଗତେ
ତାକୁ ଅବଶ୍ୟ ଭୁଞ୍ଜଇ । ୭୯

ସାଗର ମନ୍ଥନ କାଳେ ଭଗବାନ
କ୍ଷୀର ପିଆଇଲେ ବିଷ
ସେହି କାରଣରୁ କ୍ଷୀର ସଙ୍ଗେ ପାନ
କଲେ ହଳାହଳ ବିଷ । ୮୦

ଅଲେଖ, ଅରୂପ ନିତ୍ୟ ନିରଞ୍ଜନ
ନିରାକାର ପରଂବ୍ରହ୍ମ
ନିର୍ଗୁଣ ହୋଇଣ ସଗୁଣ ରୂପରେ
ଗୋପପୁରେ ଅବତୀର୍ଣ୍ଣ । ୮୧

ବସ୍ତ୍ରାଅଣୀ ପଦେ          ଅଧ୍ୟାୟ ସମ୍ପୂର୍ଣ୍ଣ
ପାନ କର କୃଷ୍ଣ ରସ
ଗୁରୁ ଅଭିରାମ          କୃପାରୁ ଭଣିଲ
କୃଷ୍ଣ ଗୀତ ବୃନ୍ଦାଦାସ ।୮୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ପୁତନା ବଧ ବର୍ଣ୍ଣନେ
ନାମ ତ୍ରୟୋବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।



# ଚତୁର୍ବିଂଶ ଅଧ୍ୟାୟ

## ଲବଣୀ ଯାତ୍ରା

### ରାଗ - ବଟଣ୍ର ଦେଶାକ୍ଷ ( ମଙ୍ଗଳ ଗୁଜ୍ଜରୀ )

କୃଷ୍ଣ ଚରିତ ମାନସ କର ଶ୍ରବଣ
ଝରୁଛି ଅମୀୟ ରସ ଝର ଯେସନ
ପୂତନା ଅସୁରୀ ଗୋଟେ ଯାଆନ୍ତେ ନାଶ
ଗୋପାଳେ ବଢ଼ାଇ ବଗୃରେ ନନ୍ଦଘୋଷ ।୧
ଅଦ୍ଭୁତେ ପୁତନା ଆସି ହେଲା ବିନାଶ
ପୁତନା ବିନାଶେ କଂସ କରିବ ରୋଷ
ବାଳକେ ନିଧନ ଚିନ୍ତି ଗୋଟେ ଆସିଲା
ସେ ଜନ ମାରିବ ଆପେ ନିଧନ ହେଲା ।୨
ଆମର ବା କ ଦୋଷ ନସ୍ତୁଛି ବିଧାନ
ଅନ୍ୟକୁ ବଧିବ ଚିନ୍ତି ଆପଣେ ନିଧନ
କପଟ ଜାଣିବା କେମନ୍ତେ ମଲା ପୁତନା
ବିଧିର ବିଧାନ ଆମ୍ଭଙ୍କୁ ତ ଅଜଣା ।୩

ଥୋକେ ଗୋପଙ୍କ କହିଲେ କର ଶ୍ରବଣ
କଂସାସୁର ପ୍ରତାପ ତୁମ୍ଭେ କି ନ ଜାଣ
ଦେବ - ମାନବ କଣ୍ଟକ ମଥୁରା ରାୟ
ଯାହା ନାମ ଶ୍ରବଣେ କମ୍ପେ ସୁର ରାୟ । ୪
ଆମ୍ଭେ କଂସର ଏବେ ହୋଇଲେ ବଇରୀ
ଆମ୍ଭର ରଖନ୍ତା କେ ଅଛି ଭିନ ପୁରି
ରାଜାର ଦ୍ରୋହୀ ହୋଇକ ବଞ୍ଚିବ ପ୍ରାଣୀ
ରୁଷ୍ଟେ ଗୋପ ନଗ୍ରରେ ଲଗାଇବ ଅଗ୍ନି । ୫
ଗୋପରେ ପୂତନା ଯହୁଁ ହୋଇଲା ନାଶ
ସେ ହେତୁ ଆମ୍ଭଙ୍କୁ କଂସ କରିବ ରୋଷ
ରାଜା ଅନ୍ୟାୟ କରିଲେ କାହାକୁ କହିବା
ଥୋକେ ବୋଲନ୍ତି ଗୋପରୁ ପଳାଇ ଯିବା । ୬
ଚନ୍ଦ୍ରସେଣା ବୋଲେ ଭାଇ କିଛି ନ ଭଲ
ପୂତନା ମଲାରୁ କଂସ ହେଲା ଦୁର୍ବଳ
ଆପଣା ଉଦ୍ଦାଷରୁ ପୂତନା ଗଲା ନାଶ
ଜଣାଯାଏ ଅଳ୍ପ ଦିନେ ମରିବ କଂସ । ୭
ଗୋପାଳେ ସଭା କରି ବସିଥିବା କାଳେ
ନାରଦ ମୁନି ମିଳିଲେ ଆସି ସେଠାରେ
ନାରଦ କହିଲେ ତୁମେ ନ ଭାବ କିଛି
ନବଜାତ ଶିଶୁ ଯାହା ଭାଗ୍ୟେ ବଞ୍ଚିଛି । ୮
ସ୍ତନେ ବିଷ ଭରି ଅସୁର ଆସିଥିଲା
ସ୍ତନ୍ୟପାନେ ଶିଶୁ ବଧ ଭାବଣ ଥିଲା
ସେ କିସ ମାରିବ ଆପେ ହୋଇଲା ବିନାଶ
ଏଥିରେ ନାହିଁ କାହାରି ତିଳେ ହେଁ ଦୋଷ । ୯
ପୃଥ୍ୱୀର କଷ୍ଟ ଖଣ୍ଡନ ହୋଇଲା ଏବେ
ମରଣ ସଙ୍କଟୁ ପୃଥ୍ୱୀ ବଞ୍ଚିଗଲା ଲବେ
ନନ୍ଦର ନନ୍ଦନ ଏ ସ୍ୱୟଂ ଭଗବାନ
କଂସର ନିଧନ ପାଇଁ ଗୋପରେ ଜନ୍ମ । ୧୦

ଯେତେବେଳେ ପୃଥ୍ୱୀରେ ହୁଏ ଧର୍ମହାନି
ଅଧର୍ମେ ଅସୁରେ ହୁଅନ୍ତି ଅଭିମାନି
ତାହାଙ୍କ ଅନୀତି ଲୋକେ ନ ପାରନ୍ତି ସହି
ଦେବ-ବିପ୍ର-ଧେନୁ-ଧରା ଉଦ୍ଧାର ପାଇଁ । ୧୧

କୃପାଳୁ କୃପାନିଧି କୃଷ୍ଣ ଭଗବାନ
ସ୍ୱଦେହରେ କରନ୍ତି ଧରା ବତରଣ
ତାହାଙ୍କର ମର୍ତ୍ତ୍ୟଲୀଳା କାର୍ଯ୍ୟ କାରଣ
ଭଗବତ ଲୀଳା ବୋଲି ମନରେ ଘେନ । ୧୨

" କୃଷ୍ଣ ଅର୍ଥ ସଂସାରରୁ ନିବୃତ୍ତି ବା ମୁକ୍ତି
ଯୁଗେ ଯୁଗେ ଦୁର୍ଜ୍ଜନଙ୍କୁ ଦିଅନ୍ତି ଶାସ୍ତି
ଦୁଷ୍ଟଗଣେ ବିନାଶି ଧର୍ମ ସଂସ୍ଥାପନ
କାରଣେ ଅବତାର କୃଷ୍ଣ ଭଗବାନ । ୧୩

ଏ କଥାକୁ ଦୃଢ଼ କରି ମନରେ ଘେନ
କୃଷ୍ଣ ଭଗବାନ ଠାରେ ଚିତ୍ତ ଅର୍ପଣ
ଆନନ୍ଦରେ କରି ମିଳି ଉତ୍ସବ ପାଳନ
ଲୀଳାମୟଙ୍କର ଲୀଳା ବୋଲି ଏ ଜାଣ । ୧୪

କଂସକୁ ତୁମ୍ଭେମାନେ ତ ନ କର ଭୟ
କରି ଶିଶୁ ଗୁଣଗାନ ହୋଇ ନିର୍ଭୟ
ଶିଶୁର ପ୍ରଶଂସା ଶୁଣି କଂସ ରାଜନ
ଭୟଭୀତ ହୋଇ ହରାଇ ଦେବ ଜ୍ଞାନ । ୧୫

ମୁନି କହିଲେ ଶୁଣ ହେ ଗୋପାଳ ଗଣ
ଲବଣୀ ନାମରେ ଯାତ୍ରା କରି ପାଳନ
ଯାହାର ସମ୍ବାଦ ବାର୍ତ୍ତା କରି ଶ୍ରବଣ
ଈର୍ଷାନଳେ କଂସାସୁର ହେବ ଦହନ । ୧୬

କଂସ ଦହନେ କିମ୍ବା ଆନନ୍ଦ ନ ହେବା
ସଜାଡି ହସ୍ତି ହାଣ୍ଡୋଳା ନଗ୍ରେ ବୁଲିବା
ନାରଦ ମୁନିଙ୍କ କଥା ଗୋପାଳେ. ଶୁଣି
ଯୋଗାଡ଼ କଲେ ବିଧାନେ ଯାତ୍ରା ଲବଣୀ. । ୧୭

ସଜାଇଲେ ଚଉଦୋଳା ସକଳେ ମିଳି
ଶୋଭାଯାତ୍ରା ଆରମ୍ଭିଲେ ନଗ୍ରରେ ବୁଲି
କୁସୁମେ ବେଶ କରି ରାମ କୃଷ୍ଣ ଦୁଇ
ଯାତ୍ରାନୁକୂଳ କଲେ ନୃତ୍ୟ ଗୀତ ଗାଇ । ୧୮

ବାଜିଲା ବିଭିନ୍ନ ବାଦ୍ୟ ଶୁଭିଲା ଶବ୍ଦ
ନାଚିଲେ ଗୋପାଳ ବାଳେ ହୋଇ ଆନନ୍ଦ
ଆଗେ ପଛେ ପଣ୍ଡୁଆର ଧୀରେ ଚାଲଇ
ପୁଷ୍ପ ବୃଷ୍ଟି କଲେ ନାରୀ ଶଙ୍ଖ ବଜାଇ । ୧୯

ନନ୍ଦ - ବସୁନନ୍ଦ - ଉପନନ୍ଦାଦି ଭାଇ
ପଣ୍ଡୁଆରରେ ଯାତ୍ରା କଲେ ତୋଷ ହୋଇ
ଗୃହମାନ ବସେ ନଗ୍ର ବେନିପାର୍ଶ୍ୱରେ
ମଧ୍ୟ ଦେଖେ ରାଜରାସ୍ତା ପ୍ରଶସ୍ତାକାରେ । ୨୦

ସୁବର୍ଣ୍ଣ କୁମ୍ଭେ ପୂର୍ଣ୍ଣ କରି ତୀର୍ଥ ପାଣି
ମୃତ୍ତିକା ବେଦୀ ତିଆରିଛନ୍ତି ତରୁଣୀ
ଦ୍ୱାର ଦେଖେ ପୋତା ହୋଇଛି ରମ୍ଭାତରୁ
ସୁସଜ୍ଜିତ ତୋରଣ ମାନ ଦିଶଇ ସୁରୁଚୁ । ୨୧

ତୁଳସୀ - ସ୍ତବକ - ଅଁଳା ମାଳତୀ ମାଳ
କୃଷ୍ଣ ପ୍ରିୟ ବସ୍ତୁମାନ ଦିଶଇ ମଞ୍ଜୁଳ
ଗୋମଳରେ ଦାଣ୍ଡ ଲିପିଛନ୍ତି ଘରଣୀ
ତାହାରେ ସିଞ୍ଚି ଅଛନ୍ତି ଚନ୍ଦନ ପାଣି । ୨୨

ଗୋଷ୍ଠିକାଧାମ, କ୍ଷୀରସର ନବନୀତ
ଇକ୍ଷୁରସ, ପଇଡ଼, ସଜ୍ଜିଳ ସୁମିଷ୍ଟ
ପ୍ରଭୁଙ୍କ ନୈବେଦ୍ୟ ପାଇଁ ଗୃହେ ସଞ୍ଚିତ
ସାଇତି ରଖିଛି କେ ଦଧି ଦୁଗ୍ଧଘୃତ । ୨୩

ସୁବର୍ଣ୍ଣ ବିମାନରେ ବିଜେ ରାମ କୃଷ୍ଣ
ବିମାନ ବୋହନ୍ତି ନ ଅନ୍ତ ବିଶ୍ୱସ୍ତ ଜନ
ଅପ୍ସରୀ, ବିଦ୍ୟାଧରୀ, ସୁରପୁର ନଟୀ
ମଙ୍ଗଳ ଗୀତ ଗାଇ କଲେ ପୁଷ୍ପବୃଷ୍ଟି । ୨୪

ବଶିଷ୍ଠ, ନାରଦ, ଗୌତମ, ବଶିଷ୍ଠର
ଭରଦ୍ୱାଜ, ଅଙ୍ଗିର, ଭାର୍ଗବ, ବାଲ୍ମୀକ
ଶୁକ, ଭୃଗୁ, ମରୀଚ, ବଶିଷ୍ଠ କପିଳ
ବ୍ୟାସ ଆଦି ମୁନିଏ ହୋଇଛନ୍ତି ମେଳ । ୨୫

ବୃନ୍ଦାବନ ମନ୍ତ୍ରଗାନ ସ୍ୱସ୍ତିକ ବାଣୀ
ଗାଇ କଲ୍ୟାଣ କଲେ ଋଷି ବିପ୍ର ଶ୍ରେଣୀ
ହରିବୋଲ, ହୁଳ ହୁଳି ଶଙ୍ଖ ଶୁଭେ
ମୁଖରିତ ଗୋପଦାଣ୍ଡ ଶ୍ରୀ ହରି ରବେ । ୨୬

ଗୋପନଗ୍ରେ ଗୋପବାସୀ ଅନ୍ତ୍ରନ୍ତ ଚଯତେ
ଗର୍ଜିଲେ ଦୁଧଦଧିଘଣ୍ଟ ନାନା ମତେ
ଲବଣୀ ପିଣ୍ଡୁଳା ଧରିକେ ଫୋପାଡନ୍ତ
ଗୋରସେ କର୍ଦ୍ଦମ ହୋଇଲା ବସୁମତୀ । ୨୭

ତୈଜସ ପଦାର୍ଥରେ ପିଚ୍ଛିଳ ସରଣୀ
ଗୃହ ହୁଏନ ବାଟ ଅତ୍ୟନ୍ତ ଖସଣି
ଗୃହନ୍ତେ ପାଦଖସି ପଡ଼ନ୍ତି ମୁହଁ ମାଡ଼ି
କ୍ଷୀର ଧାରେ ଭାସିଯାଏ କେ ଗଡ଼ି ଗଡ଼ି । ୨୮

ଦନ ସାତ ଘଡ଼ିରୁ ଘର ଅଧ ଯାଏଁ
ବହିଲା କ୍ଷୀର ଧାର ବାଣ୍ଟେ ନଦୀ ପ୍ରାୟେ
କେବଣ ଗୋପୀ ପଡ଼ି ଗୋଡ଼ ଖସି ଧାନ୍ତେ
କେଶ ବାସ ଅସମ୍ଭାଳେ ଉଠେ ତରସ୍ତେ । ୨୯

ବାଳକେ ଗଡନ୍ତି ଦାଣ୍ଡେ ଲବଣୀ ପଙ୍କେ
ନାଚି କୁଦି ଆନନ୍ଦରେ ଏକୁ ଆରକେ
ସମ୍ଭ୍ରମେ ଲବଣୀ ଯାହା ଯାରି ଗୋପାଳେ
ବିଦାୟ ଦେଇ ପ୍ରଭୁଙ୍କୁ ଗୃହେ ଫେରିଲେ । ୩୦

ପୂରେ ବାହୁଡ଼ିଲେ ପ୍ରଭୁ ଜପିବ ଶେଷ
କୋଳ କରିନେଲେ ମାତା ହୋଇଣ ହର୍ଷ
ଏକବିଂଶ ପଦେ ବୋଲଇ ବୃନ୍ଦାବନ
ଶୁଣ ସୁଜନେ କୃଷ୍ଣଚରିତ ମାନସ । ୩୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଲବଣୀ ଯାତ୍ରା ବର୍ଣ୍ଣନେ
ନାମ ଚତୁର୍ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀ କୃଷ୍ଣାର୍ପଣ ମସ୍ତୁ ।



# ପଞ୍ଚବିଂଶ ଅଧ୍ୟାୟ

## ଶକଟାସୁର ବଧ

### ରାଗ - ଝମକ

କୃଷ୍ଣ ଚରିତ ମାନସ ଶୁଣ ସୁଜ୍ଞ ଜନ
ଝରୁଛି ଅମିୟ ରସ ସରିତ ଯେସନ ।୧
ଲବଣୀ ଯାତ୍ରାରେ କଂସ ରଜା ଗୁପ୍ତଚର
ମହୋତ୍ସବ ଦେଖୁଥିଲେ ରହି ଗୋପପୁର ।୨
ବାର୍ତ୍ତା ଜଣାଇଲେ ଯାଇ ରଜାଙ୍କ ଛାମୁରେ
ଶୁଣ ଅହେ ମହୀପତି ଗୋପ ସମାଗୁରେ ।୩
ନନ୍ଦ ଘରେ ବେନି ସୁତ ହୋଇଛନ୍ତି ଜାତ
କହିବେନେ ନ ସରଇ ସେମାନଙ୍କ ବୃତ୍ତାନ୍ତ ।୪
ଦେଖିଲୁ ନନ୍ଦର ଘରେ ସଦ୍ୟ ଶିଶୁ ଜାତ
ପୂତନାକୁ ପ୍ରାଣେ ବଧ କଲା ସେହି ସୁତ ।୫
ପୂତନା ବଧ ଶେଷରେ ଉତ୍ସବ ପାଳିଲେ
ଲବଣୀ ନାମରେ ଯାତ୍ରା ନଗ୍ରେ ଭିଆଇଲେ ।୬
ଲକ୍ଷେ ଘର ଦୁଧ ଦହି ଢାଳିଲେ ଦାଣ୍ଡରେ
ଲବଣୀ ପିଣ୍ଡୁଳା ମାନ ଭସିଲା ସୋତରେ ।୭
ଏ ଲବଣୀ ଯାତ୍ରା ଅଟେ ଦୁର୍ଲ୍ଲଭ ସଂସାରେ
ରାମକୃଷ୍ଣ ବୁଲାଇଲେ ବସାଇ ଦୋଳାରେ ।୮

ପୂତନା ଅସୁର ଗୋପେ ହେବାରୁ ବିନାଶ
ବଢ଼ିଅଛି ଗୋପାଳଙ୍କ ଅଶେଷ ସାହାସ । ୯
କଂସ ରଜା ପ୍ରତି ତାଙ୍କ ମନେ ନାହିଁ ଭୟ
ପୁତଙ୍କ ବଳେ ଗୋପାଳେ ହୋଇଲେ ନିର୍ଭୟ ।୧୦
ଦୂତ ଠାରୁ ବାର୍ତ୍ତା ପାଇ କଂସ ମହାବଳୀ
କ୍ରୋଧରେ କମ୍ପେ ଯେସନେ ବାତେ ପତ୍ରାବଳୀ ।୧୧

ମରଣ ଶଙ୍କା ମନରେ ହୋଇଲା ଜାଗ୍ରତ
ଅଷ୍ଟ ମଲ୍ଲେ ଚାହିଁ ଦୁଷ୍ଟ ହୋଇଲା ଦୁରନ୍ତ । ୧୨
ଶୁଣ ଆହେ ସଖାଗଣ କହେ ନସ୍ତାଗିର
ନନ୍ଦନନ୍ଦନ ନିଦାନ ବଇରି ମୋହର । ୧୩

ଗୋପେ ସୈନ୍ୟ ଚାଳବାକୁ ଆଜ୍ଞା ଦେଲା ଦୁଷ୍ଟ
ପ୍ରଲମ୍ବା ମନ୍ତ୍ରୀ କହିଲା ଏହା ଅନୁଚିତ । ୧୪
ତାହାର ପ୍ରକଟ ହେବ କଥା ସଂସାରେ
ନନ୍ଦସୁତ ମାରିବାକୁ ବିଚାର ମନରେ । ୧୫
ପୂତନାକୁ ପେଷି ଥିଲା ରଜା କଂସାସୁର
ଶିଶୁ ହତ୍ୟାକାରୀ କଂସ ହୋଇବ ପ୍ରଚାର । ୧୬
ମାତ୍ର ଯେଉଁ ନାରୀ ପ୍ରତି ଲୋକ ମନେ ଘୃଣା
ତାହାର ନିଧନେ ରଜା ହୋଇ ଉଠି କଣା । ୧୭
ପ୍ରତିଶୋଧ ନେବା ପାଇଁ କଲେ ଆକ୍ରମଣ
ଆପଣଙ୍କ କ୍ଷତି ହେବ ବିଶେଷ ରାଜନ । ୧୮
ପୂତନା ହତ ହେବାରୁ ଲୋକେ ଆନନ୍ଦିତ
ଆସନ୍ନ ପ୍ରସବା ନାରୀ ହୋଇଲେ ଆଶ୍ୱସ୍ତ । ୧୯
ପୂତନା ମରଣେ ମଧୁପୁର ନାରୀଗଣ
କରୁଛନ୍ତି ନନ୍ଦସୁତ ପ୍ରଶଂସା କୀର୍ତ୍ତନ । ୨୦
ମୁକ୍ତିଦାତା ବୋଲି ତାଙ୍କୁ କରନ୍ତି ପ୍ରଣାମ
ତାଙ୍କର ଅନିଷ୍ଟ ସହି ନ ପାରିବେ ଜାଣ । ୨୧
ପାଞ୍ଚାଳ ହସ୍ତିନା ରାଜ୍ୟ ସାହାଯ୍ୟ ଲୋଡ଼ିବେ
ରାଜ୍ୟ ଭିତରେ ନାନା ବାଦ ଉଠାଇବେ । ୨୨

ପାଞ୍ଚାଳର ଶକ୍ତିଶାଳୀ ନୃପତି ଦ୍ରୁପଦ
ମଥୁରା ଆକ୍ରମଣ ପାଇଁ ହୋଇବେ ବାଧ । ୨୩
ମଥୁରା ଉପରେ ତାଙ୍କ ଦୃଷ୍ଟି ରହିଅଛି
ଆକ୍ରମଣ କରିବାକୁ ସୁବିଧା ଖୋଜୁଛି । ୨୪
ପ୍ରଭାବଶାଳୀ ଯାଦବେ ମଥୁରା ତେଜିଣ
ପାଞ୍ଚାଳ ରାଜ୍ୟରେ ପଶି ଅଛନ୍ତି ଶରଣ । ୨୫

ସେମାନଙ୍କୁ ସଙ୍ଗେ ନେଇ ପାଞ୍ଚାଳ ବାନ୍ଧବ
ଅନତିତେ ଦେଖ ରାଜ୍ୟ ଯୁଦ୍ଧ ଲାଗିଯିବ । ୨୬
ପୁତନା ନିଧନେ ଗୋପ କଲେ ଆକ୍ରମଣ
ଗ୍ରାମମାନେ ବିଦ୍ରୋହୀ ହୋଇବେ ନରଗଣ । ୨୭
ବସୁଦେବ, ଭଗ୍ନୀପତି, ପାଣ୍ଡୁ ନରେଶ
କୁନ୍ତୀଦେବୀ ପିତା କୁନ୍ତିଭୋଜ ଯେ ରାଜନ । ୨୮
ଦ୍ରୁପଦଙ୍କ ସଙ୍ଗେ ମିଶି ଦ୍ୱନ୍ଦ ଭିଆଇବେ
ଶାନ୍ତନୁ ପୁତ୍ର ଗାଙ୍ଗେୟ ସମରେ ପଶିବେ । ୨୯
ଭାରତରେ ବଳଶାଳୀ ଏହି କ୍ଷତ୍ରୀଗଣ
ଯଦ୍ୟପି କରିବେ ସଙ୍ଗଠିତ ଆକ୍ରମଣ । ୩୦
ତୁମ୍ଭର ଅବସ୍ଥା ଗୋଟି ହେବ ଅସମ୍ଭାଳ
ଏଥକୁ ବିଚାର କର ମଥୁରା ଭୂପାଳ । ୩୧
ମୋ ବିଚାରେ ବଳଠାରୁ ବୁଦ୍ଧି ଅଟେ ଶ୍ରେଷ୍ଠ
କୌଶଳ କରି ଶତ୍ରୁକୁ କରିବା ନିପାତ । ୩୨
ପୁତନା ଗୋଷ୍ଠକୁ ଯିବା ଦ୍ୱାରା ଗୋପଗଣ
ସଙ୍ଗଠିତ ହୋଇ ଶିଶୁ କରନ୍ତି ରକ୍ଷଣ । ୩୩
ଯୁଦ୍ଧ କରି ଶିଶୁ ପୁଣ ନ ପାରିବା ମାରି
ଏକଥା କହୁଛି ରାଜା ମନରେ ବିଚାରି । ୩୪
ପ୍ରଳମ୍ବା କଥାକୁ ଶୁଣି ମୌନ କଂସାସୁର
ବିଚାରିଲା ମନ ମଧ୍ୟେ ଏ ଯଥାର୍ଥ ଗିର । ୩୫
ଅସୁରମାନଙ୍କ ମଧ୍ୟେ ତୃଣାସୁର ନାମେ ଦୈତ୍ୟ
ମାୟାବୀ ଅସୁର ସେହି ବୁଦ୍ଧି ଅପ୍ରମିତ । ୩୬

ପିଲଙ୍କେଳ କରିବାରେ ଅଟଇ ଓସ୍ତାତ
ରାମ କୃଷ୍ଣ ଧରିବାକୁ ଯେଣିକି ଭରତ । ୩୭

ବ୍ୟାଧ ରୂପ ଗୋଟି ଧରି ଗୋପେ ଚଳିଗଲା
କୃଷ୍ଣ କ୍ରୋଡ଼ କାଳେ ଦୁଷ୍ଟ ଆପଣେ ମରିଲା । ୩୮

ପଦାଘାତେ ତୃଣାସୁର ତୃଣ ପ୍ରାୟେ ଉଡ଼ି
କଂସ ସିଂହଦ୍ୱାରେ ଯାଇ ପଡ଼ିଲା କଚୁଡ଼ି । ୩୯

ତୃଣାବର୍ତ୍ତ ଶବ ପଡ଼ି କଂସ ସିଂହଦ୍ୱାରେ
ଭାଙ୍ଗି ପଡ଼ିଲା ଜଗତି ପ୍ରାସାଦ ଭିତରେ । ୪୦

ଏବଚନ ଦୃଶ୍ୟ ଦେଖି ସର୍ବେ ଭୟଭୀତ
ଜାଣିଲେ ଏଥର କଂସ ହୋଇବ ନହତ । ୪୧

ଷଠିଘର ଦିନ ଦୁଷ୍ଟ ହୋଇଲା ନିଧନ
କେହି ଜାଣି ନ ପାରିଲେ ଗୁପତ ମାରଣ । ୪୨

ତୃଣାସୁର ବଧ ଅନ୍ତେ ଶକଟା ପେଷିଲା
ଓଠି ଆର ଦିନ ଦୁଷ୍ଟ ପ୍ରାଣେ ନାଶ ଗଲା । ୪୩

ବୈରୀଭାବ କରି ଦୁଷ୍ଟେ ମୋକ୍ଷ ହୋଇଗଲେ
ଏମନ୍ତ ଦୟାଳୁ ପ୍ରଭୁ ଚରଣ କମଳେ । ୪୪

ଶତ ଶତ ପ୍ରଣିପାତ କରେ ବୃନ୍ଦାବନ
ପଞ୍ଚବିଂଶ ପଦେ ଅଧ୍ୟାୟ ହୋଇଲା ଶେଷ । ୪୫

ଇତି ଶ୍ରୀ କୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଶକଟାସୁର ବଧ ବର୍ଣ୍ଣନେ ନାମ
ପଞ୍ଚବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀ କୃଷ୍ଣାର୍ପଣ ମସ୍ତୁ ।



# ଷଡ଼ବିଂଶ ଅଧ୍ୟାୟ

## ନାମ କରଣ ଉତ୍ସବ

### ରାଗ - ମାଳବ ଗଉଡ଼ା

କୃଷ୍ଣ ଚରିତ ମାନସ ଶୁଣ ସୁଜ୍ଞଜନ
ରସ ମଧୁ କାବ୍ୟ କୃଷ୍ଣ ଲୀଳା ପର ପୂର୍ଣ୍ଣ ହେ ।୧
ଦିନୁ ଦିନ ବର୍ଦ୍ଧମାନ ହେଲେ ଚକ୍ରପାଣି
ଏବିଂଶ ଦିନେ କଲେ ଦୋଳରେ ଶୁଆଣିଯେ । ୨
ଦୋଳରେ ଶୋଇ ଅଛନ୍ତି ରାମକୃଷ୍ଣ ଦୁଇ
ଏକାଳେ ମିଳିଲେ ଗାର୍ଗ୍ୟ ମହାମୁନି ଯେ । ୩
ସନ୍ତୁଷ୍ଟେ ନନ୍ଦ ରାଜନ ପାଦ ପଖାଳିଲେ
ଦିବ୍ୟାସନେ ବସାଇଣ ବନ୍ଦାପନା କଲେ ଯେ । ୪
କହିଲେ ହେ ମହାମୁନି ଧନ୍ୟ ହେଲି ମୁହିଁ
ଶୁଭକାର୍ଯ୍ୟେ ଆପଣଙ୍କ ଦରଶନ ପାଇଯେ । ୫
ମୋ ଘରେ ଜନମ ହେଲେ ଦୁଇ ନନ୍ଦନ
କରନ୍ତୁ ମୁନି ପୁତ୍ରଙ୍କ ନାମ କରଣ ଯେ । ୬
[illegible] ସ୍ୱଭାବ ଧରି ବେନି ପୁତ୍ର ଜାତ
[illegible] ମତେ ସଂସ୍କାର ଯୋଗ୍ୟ ଏ ନିଯୁତ । ୭
ଯାଦବ ବଂଶର ତମେ କୁଳ ପୁରୋହିତ
କୁଳ ପରଂପରା କ୍ରମେ କରନ୍ତୁ ବିହିତ ଯେ । ୮
ନନ୍ଦର ବଚନ ଶୁଣି ଗାର୍ଗ୍ୟ ମହା ମୁନି
ତା'ବେନି ପୁତ୍ରଙ୍କ ନାମ କରିଲେ ପ୍ରଦାନ ଯେ । ୯
ରୋହିଣୀ ସୁତ ସୁନ୍ଦର ଶୁକ୍ଳ କଳେବର
ଗୁଣେ ରଞ୍ଜନ କରନ୍ତି ସୁରାସୁର ନର ଯେ । ୧୦
ଆଜାନୁ ଲମ୍ବିତ ବାହୁ ବଳ ଅପ୍ରମିତ
ଏଣୁ ବଳରାମ ନାମେ ହୋଇଲେ ନାମିତ ଯେ । ୧୧

ଜାତ କରାଇଲେ ଶିଶୁ କରି ଆକର୍ଷଣ
ତେଣୁ ସେ କୁମର ନାମ ହେଲା ଶଙ୍କର୍ଷଣ ଯେ ।୧୨
ଯଶୋଦା ଜନନୀ ଗର୍ଭୁ ଜାତ ଯେଉଁ ସୁତ
ସକଳ ଗୁଣେ ମଣ୍ଡିତ ଶକ୍ତି ଅପ୍ରମିତ ଯେ । ୧୩
କୃଷ୍ଣ ନାମ ଗୋଟି ତା'ର କରିଲୁ ପ୍ରଦାନ
ପୃଥିବୀ ଶାନ୍ତ କରିବେ ଦୁଷ୍ଟ ନିବାରଣ ଯେ । ୧୪
ବେନି ପାଦେ ଶୋଭା ପାଏ ଅଷ୍ଟାଦଶ ଚିହ୍ନ
ପ୍ରତ୍ୟକ୍ଷେ ବିଷ୍ଣୁ ଜାତ ତୋ କୋଳେ ରାଜନ ଯେ ।୧୫
ଏ ରୂପେ ନାମ କରଣ କରି ଗାର୍ଗ୍ୟମୁନି
ଦକ୍ଷିଣ କର୍ଣ୍ଣେ କହିଲେ ତିନିବାର କୃଷ୍ଣ ଯେ । ୧୬
ନନ୍ଦ, ଯଶୋଦା, ଗୋପାଳ, ଗୋପୀ ଯେତେ ଥିଲେ
ରାମକୃଷ୍ଣ ନାମ ଶୁଣି ଆନନ୍ଦ ହୋଇଲେ ଯେ ।୧୭
ଋଗବେଦ, ଷଡଶାସ୍ତ୍ର, ଅଠର ପୁରାଣ
ଦ୍ୱାଦଶ ସ୍ମୃତି ମିଶାଇ ନବ ବ୍ୟାକରଣ ଯେ ।୧୮
ସର୍ବ ଶାସ୍ତ୍ର ମଧ୍ୟେ ସାର ରାମକୃଷ୍ଣ ନାମ
ଯେ ନାମ ଶ୍ରବଣେ ସର୍ବେ ହେଲେ ମୂହ୍ୟମାନ ଯେ ।୧୯
ସଚରାଚର ଜଗତେ ଯେତେ ଜୀବଛନ୍ତି
ରାମକୃଷ୍ଣ ନାମୋଚ୍ଚାରନ ସକଳେ ବୋଲନ୍ତି ଯେ । ୨୦
ପାପାଧିପାପ ଯେବଣ ନାମେ ହୁଏ ଧ୍ୱଂସ
ସକଳ ହୃଦୟେ ବାସ ଯେଉଁ ନାମ ହଂସ ଯେ ।୨୧
ଯେ ନାମ ଶ୍ରବଣ, ରୂପ ଦର୍ଶନ, ସ୍ପର୍ଶରେ
ମୋହିତ ହୋଇଲେ ସର୍ବେ ବଦଗ୍‌ଧ ଶଙ୍କରେ ଯେ ।୨୨
ସର୍ବଶାସ୍ତ୍ର ମୂଳତତ୍ତ୍ୱ କୃଷ୍ଣ ଭଗବାନ
ପରମ ପୁରୁଷ ସେହି ନିତ୍ୟ ନିରଞ୍ଜନ ଯେ । ୨୩
ଅନେକ ନାମ ତାଙ୍କର ସଂସାରେ ରହିଛି
ଯେଉଁ ନାମକୁ ମନରୁ କେ ନ ପାରେ ମୂର୍ଛି ଯେ ।୨୪
କୃଷ୍ଣ ବୋଲି ଯେଉଁ ନାମ ଗୋଟିକ ତାଙ୍କର
ଦେଉଛନ୍ତି ଯେଥିରୁ ଝରେ ସୁଧାରସ ଧାର ଯେ ।୨୫

ଏମର୍ତ୍ତ୍ୟ ସଂସାରୁ ଯିଏ ଦିଅନ୍ତି ମୁକତି
ସେ କୃଷ୍ଣ ନାମ ଗୋଟି ଭଜ ଦିନରାତି ଯେ । ୨୬

ମାୟା ମନୁଷ୍ୟ ରୂପରେ ସେ ଅନାଦି ବ୍ରହ୍ମ
ପରମ ଆନନ୍ଦମୟ ଶ୍ରୀକୃଷ୍ଣଙ୍କ ନାମ ଯେ । ୨୭

ଦିବାନିଶି କୃଷ୍ଣ ନାମ ରଟୁ ମୋ ରସନା
କୃଷ୍ଣ ନାମେ ଭରିଅଛି ମଧୁର ବାସନା ଯେ । ୨୮

ହେ କଞ୍ଜ ନୟନ କୃଷ୍ଣ ସହାସ୍ୟ ବଦନ
ପାଦପଦ୍ମରେ ଆଶ୍ରୟ ଦିଅ ନାରାୟଣ ଯେ । ୨୯

ଶାସ୍ତ୍ର ପୁରାଣେ ବର୍ଣ୍ଣିତ କୃଷ୍ଣ ଭଗବାନ
ସକଳ ଯଶ ଐଶ୍ବର୍ଯ୍ୟ, ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ଯେ ।୩୦

ଅଷ୍ଟ ଐଶ୍ୱର୍ଯ୍ୟ ଅଧିକାରୀ କୃଷ୍ଣ ଭଗବାନ
ଖଟନ୍ତି ଐଶ୍ବର୍ଯ୍ୟ ଗଣେ ପ୍ରଭୁଙ୍କ ଚରଣ ଯେ । ୩୧

ସେ ଅଟନ୍ତି ସର୍ବାତ୍ମନ ସତ୍ୟ ସନାତନ
ସଚ୍ଚିଦାନନ୍ଦ ବିଗ୍ରହ ରହସ୍ୟମୟ କୃଷ୍ଣ ଯେ । ୩୨

ଆନନ୍ଦମୟ ବିଗ୍ରହ ଆନନ୍ଦ ମୋହନ
କାବ୍ୟର ନାୟକ କୃଷ୍ଣ ପୁରୁଷୋତ୍ତମ ଯେ । ୩୩

ପ୍ରେମମୟ ପୁରୁଷ ସେ ସର୍ବ ରସ ପୂର୍ଣ୍ଣ
କୃଷ୍ଣ ଚରିତ ମାନସେ ନାୟକ ପ୍ରଧାନ ଯେ । ୩୪

ରସିକ ଶେଖର କୃଷ୍ଣ ବୃନ୍ଦାବନ ଚନ୍ଦ୍ର
ଜଗତ-ଜନ-ବନ୍ଦିତ ପ୍ରଭୁ କୃଷ୍ଣଚନ୍ଦ୍ର ଯେ । ୩୫

ଛତିଶ ପଦେ ଅଧ୍ୟାୟ ହୋଇଲ୍ ସମ୍ପୂର୍ଣ୍ଣ
ବୁଲ୍‌ଦାସ ବୋଲେ ତ୍ରଭୁ କର କାରଣ ଯେ ।୩୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ପୁତ୍ର ମାନଙ୍କ ନାମକରଣେ
ନାମ ଷଡ଼ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

# ସପ୍ତବିଂଶ ଅଧ୍ୟାୟ
## ଗାନ୍ଧାରୀଙ୍କ ଶତପୁତ୍ର ଜନ୍ମ
### ରାଗ - କେଦାର

ଧୀର ଚିତ୍ତେ ଶୁଣ ହେ ଶିଷ୍ଟ ଜନ
କୃଷ୍ଣ ଚରିତ ମାନସ
କୁନ୍ତୀର ତନୟ ଜାତହେବା ଜାଣି
ଗାନ୍ଧାରୀ ମନେ ହରଷ
ବ୍ୟାସ ଚରଣେ
ପ୍ରାର୍ଥନା କଲେ କୁମର କାରଣେ ।୧
ବୋଲୁଛନ୍ତି ବ୍ୟାସ ପୁଣ୍ୟ ଜାତ ଯଜ୍ଞ
କର ଆହେ ନୃପବର
ବ୍ୟାସଙ୍କ ଆଦେଶେ ମନର ହରଷେ
ଯୋଗାଡ଼ିଲେ ନୃପବର
ଯଜ୍ଞ ବିଧାନ
ଯାଜକ ବ୍ୟାସ ଦେବ ବରଣ ।୨
କୁଳଗୁରୁ ଧୌମ୍ୟ ପୁରୋଧା ବରଣ
ଦୁର୍ବାସା ମହର୍ଷି ବ୍ରହ୍ମା
ଋଗବେଦ ବିପ୍ରେ ବସିଲେ ଯାଗରେ
ଆବୋରି ଆପଣା ସୀମା
ତ୍ରିଦଶ ଗଣ
ଅଗ୍ନିଦେବ ଭୁଲେ ହେଲେ ବରଣ ।୩
ମନ୍ତ୍ରେ ବ୍ରାହ୍ମଣ ବର୍ହିଷଗ ଦେଇ
ନୈବେଦ୍ୟ କଲେ ଅର୍ପଣ
ଅଜପା ମନ୍ତ୍ରରେ ମାର୍କଣ୍ଡ ମହର୍ଷି
ହବି ଦେଲେ ପାଞ୍ଚ ଦିନ
ସ୍ୱର୍ଣ୍ଣ ଭାଣ୍ଡରେ
ଚରୁ ଅନ୍ନ ପାକ କଲେ ବିଧିରେ ।୪

ଚରୁ ଅନ୍ନ ଘଣ୍ଡ ଖୋଲିଣ ଦେଖନ୍ତି
ମୂର୍ତ୍ତି ଅଛୁ ଶତ ଗୋଟି
ସେ ଚରୁ ଅନ୍ନକୁ ଗାନ୍ଧାରୀଙ୍କ ହସ୍ତେ
ଦେଲେ ନେଇ ବସ୍ତ୍ର ଗୋଷ୍ଟି
ଦେବୀ ଭକ୍ଷିଲେ
ଶତ ଗୋଟି ପୁତ୍ର ଜାତ ହୋଇଲେ । ୫
ବହୁତ ଆନନ୍ଦ ହେଲେ ଧୃତରାଷ୍ଟ୍ର
କୋଳରେ ଧରି ତନୟ
କହିଲେ ରାଜନ ଧନ୍ୟ ଧନ୍ୟ ପ୍ରିୟେ
ମୋ କୁଳ ହେଲା ଉଦୟ
ପ୍ରଥମ ପୁତ୍ର
କୋଳେ ଧରି ପିତା ହରଷ ଚିତ୍ତ । ୬
ବିଦୁରେ ଡକାଇ ବୋଇଲେ ରାଜନ
କହିବୁ ଚିହ୍ନି ଲକ୍ଷଣ
ବିଦୁର କହିଲେ ଏ ପ୍ରାଣୀ ବିଷ୍ଟ
ମର୍ତ୍ତ୍ୟ ପୁରେ ଅବତୀର୍ଣ୍ଣ
ଲକ୍ଷଣବନ୍ତ
ଶଙ୍ଖନିଧି, ପଦ୍ମନିଧି ଶୋଭିତ । ୭
ଦକ୍ଷିଣ କରରେ ଯବ ମଧ୍ୟ ରେଖା
ଧାରଣ କରିଛୁ ସୁତ
ଚୌଷଠି ଲକ୍ଷଣେ ପୁତ୍ର ଗୁଣବନ୍ତ
ରୂପ ଶୋଭା ରତି କାନ୍ତ
ଶାର୍ଦ୍ଦୁଳ କଟି
ମେଦନୀ ଧାରଣେ ଦୁଃସହ ଶକ୍ତି । ୮
ଲକ୍ଷେ ନରପତି ଚରଣେ ଖଟିବେ
ତୋହ ପୁତ୍ର ଚକ୍ରବର୍ତ୍ତୀ
ଏହି ପୁତ୍ର ଯୋଗୁଁ ପ୍ରଜା ତୁ ପାଇବୁ
କ୍ଷିତିରେ ଅର୍ଜିବ ଖ୍ୟାତି

ପାଦ ଗୃଳନ୍ତେ
ଅବେଣ୍ଠ କନକମଳ ଫୁଟେ । ୯

କୋଟି ପାଦେ ଲକ୍ଷ୍ମୀ କନ୍ତେ ବରାଜତ
ପ୍ରତ୍ୟକ୍ଷେ ମାନ କୋବନ୍ଦ
ଗୁରୁଇଷ୍ଟ ଗଣେ ମାନ୍ୟ ନ କରବ
ପ୍ରକୃତ ଏହାର ମନ୍ଦ
ଭାଇ ବନ୍ଦ
ବନାଶିବ କୁଳ କରଣ ଯୁଦ୍ଧ । ୧୦

ବଞ୍ଚ, ଗୁଣବନ୍ତ ହେଲହେଁ ତୋ ସୁତ
ବୁଦ୍ଧି ବବେକ ଧ୍ୱସ
ହୃଦେ ନାହିଁ ଦୟା ସୁ କଠିନ ହୁଆ
କରାଇବ କୁଳ ନାଶ ଦୁଃଖ ଭୋଗିକୁହାଇ । ୧୧

ପ୍ରଥମ ପୁତ୍ରକୁ ମାର୍ ଦଣ୍ଡ ଧାଇ
ବଂଶ ରକ୍ଷା ହେବ ତୋର
ଅନେଶତ ସୁତ ନର୍ବଂଶେ ବଞ୍ଚିବେ
କୀର୍ତ୍ତି ରଖିବେ ସଂସାର
ବଦୁର କଥା
ଶୁଣି ନରୁତ୍ତର ନ ଦେଇ ବାର୍ତ୍ତା । ୧୨

ଦ୍ୱିତୀୟ ପୁତ୍ରକୁ ପିତା ଲୋଳେ ଦେଇ
ବୋଲନ୍ତ ଭ୍ରାତା ବଦୁର
ମହା ଦୁଃଖ ଦେ ଏ ପୁତ୍ର ରାଜନ
ମନ୍ଦ ପ୍ରକୃତ ଏହାର
ସମରେ ମନ
ଭାଇବ ଭ୍ରାତୃହନ୍ତ ନନ୍ଦନ । ୧୩

ଅଲକ୍ଷଣ ତୋହା ଶତ ପୁତ
ସ୍ୱଭାବରେ ମହା ଦୁଷ୍ଟା

ଏବେ ପୁତ୍ର ପାଇ ଆନନ୍ଦ ହେଉଛୁ
ପଛକୁ ପାଇବ କଷ୍ଟ
ଆହେ ରାଜନ
ଏଥକୁ ବିଚାର କରନ୍ତୁ ମନ । ୧୪
ଧୃତରାଷ୍ଟ୍ର ବୋଲେ ମୋହ ପୁତ୍ରଙ୍କର
ବ୍ୟକ୍ତ କଲୁ ଅବଗୁଣ
ପୁତ୍ରେକ ତେଜିବା ମୋ ପକ୍ଷେ ଦୁଃସାଧ
ଏହା ମୋ କର୍ମ ଲିଖନ
କର୍ମେ ଯା' ପ୍ରାପ୍ତ
ନ ତେଜି ଆନନ୍ଦ ହେବା ଉଚିତ । ୧୫
ଏହା କହି ଅନ୍ଧ ଅନ୍ତର ମଧ୍ୟରେ
ଧ୍ୟାନ କଲେ ଋଷିବ୍ୟାସ
ଯୋଗବଳେ ଜ୍ଞାତ ପରାଶର ସୁତ
ମିଳଲେ ପୁତ୍ରର ପାଶ
ଆସନ୍ତୁ ଉଠି
ପଡଲେ ପିତାଙ୍କ ଚରଣେ ଲୋଟି । ୧୬
ପାଦ୍ୟ ଅର୍ଘ୍ୟ ଦେଇ ପିତାଙ୍କୁ ବସାଇ
ଦେଲେ ପୁତ୍ର ନେଇ କୋଳେ
ପ୍ରଥମ ପୁତ୍ରକୁ କୋଳେ ଧରି ବ୍ୟାସ
ଶରୀର ଆଉଁଷି ଦେଲେ
ମୁଖେ ଚୁମ୍ବନ
ଦେଇ ବୋଇଲେ ସେ ତପୋଧନ । ୧୭
କହିଲେ ତୋ ଦେହ ବଜ୍ର ଅଙ୍ଗ ହେଉ
ଅୟୁତେ ସିଂହର ବଳ
ଜଗଜ୍ଜିତା ହୁଅ ମହୀରେ ନନ୍ଦନ
ଜିଣି ତୋର ଶତ୍ରୁବଳ
କଲ୍ୟାଣ କରି
ବକ୍ଷରେ ଚାପିଲେ କୁମରେ ଧରି । ୧୮

ନନ୍ଦନ କରଣ ବଜ୍ର ଚରଣକୁ
ବକ୍ଷେ ପ୍ରହାରିଲ ନେଇ
ଅସାଷ୍ଟମ ହୋଇ ମଞ୍ଚରେ ପଡ଼ିଲେ
ନାସାରୁ ରକ୍ତ ଝରଇ
ବ୍ୟାସ ବୋଇଲେ
ଯେ ପାଦେ ଆଘାତ କରିଲୁ ବଳେ । ୧୯
ସମର କ୍ଷେତ୍ରରେ ସେ ଚରଣ ଭଗ୍ନ
ହୋଇବ ସତ୍ୟ ବଚନ
ଅସ୍ପୃଷ୍ଟେ ସିଂହର ଶକତ୍ତ ବନ୍ଧନ
ସିଂହକେ ହେବୁ ନିଧନ
ପ୍ରକୃତ ମନ୍ଦ
ଅନମିତ୍ତେ କମ୍ପା ଭୂଆଉ ଦ୍ୱନ୍ଦ ? ୨୦
ପ୍ରଥମେ ଦୁର୍ବୁଦ୍ଧି ପୁଣି ଯୁଦ୍ଧେ ମନ
ଯେଣୁ ଦେଲୁରେ ନନ୍ଦନ
ଦୁର୍ଯ୍ୟୋଧନ ନାମ ହୋଇଲା ତୋହର
ଦୁର୍ଯ୍ୟନ ଗଣରେ ଗଣ୍ୟ
କୁମର ତେଜି
ଚଳିଗଲେ ବ୍ୟାସ ଶ୍ରୀକୃଷ୍ଣ ଭଜି । ୨୧
ବ୍ୟାସ ଅଭିଶାପ ଦେବାକାଣି ଅନ୍ଧ
ଦୁର୍ବାସାଙ୍କୁ କଲେ ଧ୍ୟାନ
ସ୍ମରଣ ମାତ୍ରକେ ମିଳିଲେ ମହର୍ଷି
ପ୍ରଣାମ କଲେ ରାଜନ
ଦେଖି ଅସ୍ପୃଷ୍ଟ ସୁତ
ଋଷି କୋଳେ ନେଇ ନରନାଥ । ୨୨
ବକ୍ଷସ୍ଥଳେ ଯୁବ ଲଗାଇଲେ ଦୁର୍ବାସା
ହେଲେ ଆନନ୍ଦେ ଅଧୀର
ବରଦେଲ ଋଷି ଶତ ସିଂହ ବଳ
ଶରୀରେ ହେଉ ତୋହର

ହଲାଇ କର
କାଲନ୍ତେ ବାଜିଲା ମୁଷ୍ଟି ପ୍ରହାର । ୨୩
ଆପାଷ୍ଟମେ ମୁନି ଭୂମିରେ ପଡ଼ିଣ
ହରାଇଲେ ବାହ୍ୟଜ୍ଞାନ
ଅଭିଶାପ ଦେଲେ ସମର ପ୍ରାଙ୍ଗଣେ
ଦକ୍ଷଭୁଜ ହେବ ଭଗ୍ନ
ଦୁଃସହ ମୁଷ୍ଟି
ହେବାରୁ ଦୁଃଶାସନ ନାମ ଗୋଟି । ୨୪
ଋଷି ଅଭିଶାପ କଥା ଶୁଣି ନୃପ
ହେଲେ ଅତି ବିଷାଦିତ
ସଞ୍ଜୟ କହିଲେ ଆହେ ନରପତି
କଥା ହେଲା ବିପରୀତ
ଆମ୍ଭର ମତ
ଋଷିକୋଳେ ଆଉ ନ ଦିଅ ସୁତ । ୨୫
ଯଜ୍ଞରୁ ଜନ୍ମାଇ ପୁଣି ବର ଦେଇ
କଲେ ଅତି ବଳବାନ
ପୁଣି ଅଭିଶାପ ଦେଇ ଶକ୍ତି ଧ୍ୱଂସ
କଲେ କ୍ରୋଧ ତପୋଧନ
ଋଷିଙ୍କ କୋଳେ
ନଦିଅ କୁମର ଆମ୍ଭର ବୋଲେ । ୨୬
ଋଷିଙ୍କ କୋଳରେ ଦେବାରୁ କୁମର
ଲାଭଠାରୁ କ୍ଷତି ବେଶୀ
ଲାଭେ ପ୍ରୟୋଜନ ନାହିଁ ନରବର
ମୂଳଧନ ଥାଉ ବସି
ମନ୍ତ୍ରୀ ବଚନ
ଶୁଣିଧୃତ ରାଷ୍ଟ୍ର ମଉନ । ୨୭
ଶତପୁତ୍ରଯାକ ଦୁର୍ବଳ ହେବାରୁ
ଧର୍ମବନ୍ତ ପୁତ୍ର ପାଇଁ

ଦୁର୍ବାସା ପଯ୍ୟରେ ପ୍ରାର୍ଥନା କରନ୍ତେ
ମହାମୁନି ପ୍ରୀତ ହୋଇ
ତୁଳସୀ ପତ୍ର
ଦେବାରୁ ଜନ୍ମିଲେ କନ୍ୟା ଓ ପୁତ୍ର । ୨୮
ସେ କୁମର ନାମ ରଖିଲେ ଦୁର୍ଦ୍ଧର
ଦୁଃଶୀଳା କନ୍ୟାର ନାମ
ଦେବ ଅଂଶେ ଜାତ ହେଲେ ଦୁଇ ଜଣ
ଧର୍ମେ କର୍ମେ ଥାଏ ମନ
ଏକଣ ଏକ
ବଳବାନ ସୁତ ଏକୁ ଆରେକ । ୨୯
ସକଳେ ଦୁର୍ଜନ ଦୁଷ୍ଟ କାର୍ଯ୍ୟେମନ
ନ ମାନନ୍ତି ଗୁରୁଇଷ୍ଟ
ଷଡ଼ଣ ପଦରେ ଅଧ୍ୟାୟ ସମ୍ପୂର୍ଣ୍ଣ
ବୃନ୍ଦାବନ ଭକ୍ତେ ଗୀତ
ସୁଜନେ ଶୁଣ
କୃଷ୍ଣ ପ୍ରେମ ରସେ ମାନସ ପୂର୍ଣ୍ଣ । ୩୦

ଇତି ଶ୍ରୀକୃଷ୍ଣଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଗାନ୍ଧାରୀ ଶତପୁତ୍ର ଜନ୍ମ ବିବରଣେ
ନାମ ସପ୍ତବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ
ଶ୍ରୀ କୃଷ୍ଣାର୍ପଣମସ୍ତୁ ।



# ଅଷ୍ଟବିଂଶ ଅଧ୍ୟାୟ

## ଭୀମସେନ ଜନ୍ମ

### ରାଗ - ଶ୍ରେଖି

କୃଷ୍ଣ ଚରିତ ମାନସ ପାନ କର ସୁଧାରସ
ମିଳିଲେ ଶତ ଶୃଙ୍ଗରେ ବ୍ରହ୍ମାଙ୍କ ଶିଷ୍ୟ
ବୋଇଲେ ନାରଦ ମୁନ୍ୟ ଶୁଣ ପାଣ୍ଡୁ ନରଧନ୍ୟ
ଜାତ ହେଲେ ଗାନ୍ଧାରୀର ଶତକେ ସୁତ
କ୍ରମରେ ମହାବଳବନ୍ତ
ଅଯୁତେ ସିଂହର ବଳ ତା' ଜ୍ୟେଷ୍ଠ ସୁତ । ୧

ଗାନ୍ଧାରୀ ଶତ ତନୁଜ ବଳେ ଯେବେ ଯିବେ ରାଜ୍ୟ
ତୁଆର କୁମ୍ଭର ନାରୀ ଜନ୍ମାନ୍ତୁ ପୁତ୍ର
ଗାନ୍ଧାରୀ ଶତ ସୁତ ଆକଟେ ହେବ ସାମର୍ଥ
ମହାବଳବନ୍ତ ସୁତ କରନ୍ତୁ ଜାତ
ଭେଦ ବତାଇ, ବ୍ରହ୍ମଋଷି
ଚଳିଲେ ଶୂନ୍ୟ ପଥେ କୃଷ୍ଣ ନାମ ଘୋଷି । ୨

ପୁତ୍ର ଜାତ ପାଇଁ କୁନ୍ତୀ ପାଇ ସ୍ୱାମୀ ଅନୁମତି
ସ୍ମରଣ କରିଲେ ହୃଦେ ପବନ ଦେବ
ସ୍ୱରୂପ କରି ଧାରଣ ମିଳିଲେ ଆସି ପବନ
କୁନ୍ତୀଙ୍କ ସହିତ କଲେ ପିରତିଭାବ
ମନ୍ତ୍ରମାନ ବଳେ ମିଳନ
ଆପଣା ଆତ୍ମାରୁ ଆତ୍ମା କଲେ ଉତ୍ପନ୍ନ । ୩

ବଳବନ୍ତ ପୁତ୍ର ଜାତ ଦେଖି ମାତା ଆନନ୍ଦିତ
କୋଳରେ ଧରିଲେ ପୁତ୍ର ସ୍ନେହେ ଜନନୀ
ବହି ନପାରିଣ ଭର ଫିଙ୍ଗିଦେଲେ ଗିରିପର
ପଦାଘାତେ ଗିରି ଶୃଙ୍ଗ ଚୂର୍ଣ୍ଣ ତକ୍ଷଣି

ଶତଶୃଙ୍ଗ ଗିରି ବୋଲଇ
ତୋହର ପଦାଘାତ ମୁହିଁ ନ ପାରେ ସହି । ୪
ମନ ମଧ୍ୟେ ବହି କୋପ ଦେଲେ ପୁତେ ଅଭିଶାପ
ବଳ ତୋର ନାଶ ଯାଉ ଆମ୍ଭ ବଚନେ
ଶତଶୃଙ୍ଗ କଥା ଶୁଣି କୋପ କରିଲେ ଜନନୀ
ଶୃଙ୍ଗେ ଶାପ ଦେବାକୁ ବିଚାରିଲେ ମନେ
ଭୟେ ଶତଶୃଙ୍ଗ ବୋଲଇ
ଶାନ୍ତ ହତ୍ତେ ଯେନ ମାତ କହୁଛି ମୁହିଁ । ୫
ପ୍ରଥମ ଯୁଦ୍ଧେ ଅବଶ୍ୟ ହାରିଯିବ ତୁମ୍ଭ ଶିଷ୍ୟ
ତଦନ୍ତେ ବଢ଼ିବ ଶତଶୃଙ୍ଗର ଶକ୍ତି
ଦକ୍ଷିଣ ଅଙ୍ଗରେ ମୁହିଁ ବିଜୟ କରିବି ପାଇଁ
ଧରିବ ତୁମ୍ଭର ସୁତ ବୃକୋଦର ମୂର୍ତ୍ତି
ବ୍ରହ୍ମା, ବିଷ୍ଣୁ, ଶିବ - ସମନ
ହାରିଯିବେ ପୁତ୍ର ସଙ୍ଗେ କରିଲେ ରଣ । ୬
ମହା ବଳବନ୍ତ ସୁତ ଭୀମସେନ ନାମେ ଖ୍ୟାତ
କ୍ଷତ୍ରିୟ ପ୍ରକୃତି ତାର ହୃଦ କଠିନ
ବାଳକାଳୁ ମୁଷ୍ଟି ଘୋର କରିବ ଗଦା ସମର
ଭାରତର ମହାମଲ୍ଲ ବାୟୁ ନନ୍ଦନ
ନିରଞ୍ଜନେ ତୋଷ କରିଲୁ
ନିରଞ୍ଜନୀ ନାମେ ଭୀମ ଜନମି ହେଲୁ । ୭
ମହିମା ତୋର ଶ୍ରେଷ୍ଠ ସୁରାସୁର ନରେ ଶ୍ରେଷ୍ଠ
ବିଶ୍ୱହିତ ପାଇଁ ମର୍ତ୍ତ୍ୟେ ହୋଇଛ ଜାତ
ଶତଶୃଙ୍ଗ ବାକ୍ୟ ଶୁଣି ଶାନ୍ତ ହୋଇଲେ ଜନନୀ
କୋଳ କଲେ ପାଣ୍ଡୁ ନୃପ ଆପଣା ସୁତ
ଶ୍ରଦ୍ଧାରେ ପାଳିଲେ ତନୟ
ଧୃତରାଷ୍ଟ୍ର ପୁତ୍ର ଗଣେ କରିବ କ୍ଷୟ । ୮
ଏଥୁଅନ୍ତେ ସୁଜ୍ଞଜନ ମାନସ କର ଶ୍ରବଣ
ଭୀମସେନ ଠାକୁରଙ୍କ ବାଲ୍ୟଜୀବନ

ଏକ ବର୍ଷ ବୟସରେ   ଖ୍ରାମ କର୍ମ ଖ୍ରମାକରେ
ପାକଶାଳେ ପଶି ପାକ କରେ ଭୋଜନ
ଗୋପନରେ ଏହା କରଇ
ଭୋଜନ କାଳେ ପାକ ନଅଣ୍ଟ ହୁଅଇ । ୯

ବିସ୍ମିତ ହୋଇ ଭୂପାଳ   ଜଗିଲେ ରନ୍ଧନ ଶାଳ
ଗୋପନେ ପଶିବା କାଳେ ପବନ ସୁତ
ଦେଖି ହସ୍ତିନା ଭୂପାଳ   ଆକର୍ଷି ଧଇଲେ ଚୂଳ
ଖଣ୍ଡାଧରି ହାଣିବାକୁ ହେଲେ ଉଦ୍ୟତ
ସୁହାଃପତି କଲେ ବାରଣ
କେଉଁ ଦୋଷେ ପ୍ରାଣଦଣ୍ଡ ଦିଅ ରାଜନ । ୧୦

ଦେଖିଏ ବାଳକ ରୂପ   ମନେ ଦୟା ଆସେ ନୃପ
ଅବୋଧ ବାଳକ ଏ ନିଷ୍ପାପ, ନିର୍ଦ୍ଦୋଷ
ନାହିଁ ଧର୍ମାଧର୍ମ ଜ୍ଞାନ   ଭଲମନ୍ଦ ମଣେ ସମ
ପାପପୂଣ୍ୟ ଜଣା ନାହିଁ ଏ ବାଳ ଶିଷ୍ୟ
ଭୟଙ୍କର ଭୀମ ମୂରତି
କମ୍ପାଇ ଏହାକୁ ରାଜା ଦେଉଛ ଶାସ୍ତି । ୧୧

ନୃପତି କହିଲେ ଶୁଣ   କି କହିବା ଅବଗୁଣ
ପାକ ଶାଳେ ପଶି ପାକ କରଇ ଗ୍ରାସ
ପିତୃ ଦେବତା ଅତିଥି   ସର୍ବେ ଉଚ୍ଛିଷ୍ଟ ଭୁଞ୍ଜନ୍ତି
ଆମ୍ଭଙ୍କୁ ଅଜଣା ଥିଲା ଏହା ଅଭ୍ୟାସ
ବାଳିକାଳୁ ମନ୍ଦ ପ୍ରକୃତି
ଶିରଚ୍ଛେଦ ଏକମାତ୍ର ଅଟଇ ଶାସ୍ତି । ୧୨

ବିପ୍ର କହିଲେ ରାଜନ   ଏ ଦୋଷ ଅତି ସାମାନ୍ୟ
ଅଳ୍ପ ଦୋଷେ ଦେଉଅଛ ଏତେକ ଶାସ୍ତି
ଏ ଅଟେ ବାଳ କୁମର   ଯଦ୍ୟପି କଲା ଆହାର
ପିତୃ ମୂରୁଛେ ଶିଶୁ ଦୋଷ ନ ଧରନ୍ତି
ପରନ୍ତୁ ସେମାନଙ୍କ ଶ୍ରଦ୍ଧା
ବାଳକ ଉଚ୍ଛିଷ୍ଟ ଦ୍ରବ୍ୟ ଲୋଡନ୍ତି ସଦା । ୧୩

ପ୍ରଥମେ ଭୁଞ୍ଜାଇ ସୁତ ଭୁଞ୍ଜିଥାନ୍ତି ତାତ ମାତ
ଘରେ ଘରେ ଏଘଟଣା ଘଟୁଛି ନୃପ
ତନ୍ବିକ ପାପ କହନ୍ତୁଭୂପ ?
ଶିଶୁର ଉଚ୍ଛିଷ୍ଟ ପ୍ରସାଦ
ପାଇବାରେ ପିତାମାତା ମନେଆନନ୍ଦ । ୧୪

ଏକଥାକୁ ଜାଣି ନୃପ କମା କରୁଅଛ କୋପ
ଅଜ୍ଞାନ ବାଳକ ଦୋଷ ମନେ ନଘେନ
ବିପ୍ରବର କଥାଶୁଣି ପୁଚ୍ଛା କଲେ ନୃପମଣି
ଗୁରୁଭକ୍ଷ୍ଣ ଜନେ ନିତି ସମର୍ପେ ଅନ୍ନ
ଏ ଦୋଷ ନୁହେଁ କି ମୋହର
ଖ୍ରଡ଼ଗଖଣ୍ଡାଏ ଛେଦିବି ଶିର ଏହାର । ୧୫

ବୋଲୁଛନ୍ତି ବିପ୍ରବର ଶୁଣ କହୁଁ ନୃପବର
ଆତ୍ମଜ୍ଞାଜ୍ଞାନ କଥା ଏହି ଗୁରୁ ବଚନ
ଜୀବର ଜିହ୍ୱାରେ ତୃପ୍ତି ଦେବ ଗଣେ ଲଭିଥାନ୍ତି
ଆତ୍ମରସ ପାନେ ତୋଷ ଶ୍ରୀ ନାରାୟଣ
ଏହାକୁ ବୋଲି ଆତ୍ମଜ୍ଞାନ
ଏହି ସୂତ୍ରେ ନଇ ବିଦ୍ୟ ଦିଅ ରାଜନ । ୧୬

ଜନ୍ମିଲେ ନୃପବର ଶୁଣ ଆହେ ନୃପବର
ଦୋହର ଅଗ୍ନିରେ ଦିଅଇ ନିତି
ଏକ ବର୍ଷ ପନ୍ତେ ଉଚ୍ଛିଷ୍ଟ ଦେଲ ମୋ ହସ୍ତେ
ଏଥିପାଇଁ ଅଗିଦେବ ଅଶାନ୍ତ
ଏଥକୁ ବିବ୍ରର ମୋହର
ବୈଶ୍ୱାନରେ ବଳଦେବ କୁମର । ୧୭

ବଦଯନ୍ତି ଅଗ୍ନିଦେବ ଶୁଣ ଆହେ ନୃପଦେବ
ଜାଣିକି ତୁମ୍ଭେ ଅଗ୍ନି ବଥିବା ସ୍ଥାନ ?
ଜୀବ ଗର୍ଭେ ବ୍ରହ୍ମ ଅଗ୍ନି ପ୍ରଜ୍ଜ୍ୱଳିତ କ୍ଷୁଧା ଜାଣି
ନିବାପିତ ହୋଇଥାଏ ପାଇ ଭୋଜନ

ସ୍ୱଭାବେ ଅଗ୍ନି ସର୍ବଭକ୍ଷ
ଭୂକ୍ତାନ୍ନ ଦହନ କରେ ଜାଣ ପ୍ରତ୍ୟେକ୍ଷ । ୧୮
ଜନୁଚ୍ଛିଷ୍ଟ ବା ଉଚ୍ଛିଷ୍ଟ ସର୍ବଭକ୍ଷି ଅଗ୍ନି ତୁଷ୍ଟ
ଜଠରେ ନଳେ ସର୍ବଦା ଥାଏ ଜାଗ୍ରତ
ଦହନ ପାବକ ସେହୁ ଭକ୍ଷ୍ୟଦ୍ରବ୍ୟ ଦଏ ଖାଇ
ଜଳ-ବାୟୁ-ଶୂନ୍ୟ- ସବୁଠାରେ ବସତ
ପ୍ରତ୍ୟକ୍ଷେ ଆମ୍ଭେ ସ୍ୱାହାଃନାଥ
ତୋଷ ହୋଇ ପୂର୍ବ ପ୍ରତ୍ତ ପୂରେ ଆଗତ । ୧୯
ଅଗ୍ନିଦେବ କଥା ଶୁଣି ଶାନ୍ତ ହେଲେ ନୃପମଣି
ଭୀମସେନ କେଶ ଛାଡ଼ି ଦେଲେ ବହନ
ଭକ୍ତି ଭରେ ଯୋଡ଼ି କର ପ୍ରଣମିଲେ ଶତବାର
ବିନୟ ବଚନେ କଲେ ପାଦ ବନ୍ଦନ
ଗାଇଲେ ବହ୍ନି ଦେବସ୍ତୁତି
ନମସ୍ତେ ନମସ୍ତେ ସ୍ୱାହାଃ ସ୍ୱାଧାଙ୍କ ପତି । ୨୦
ତୋଷ ହୋଇ ବୈଶ୍ୱାନର ପୂର୍ବେ ଯାଚ ଦେଲେ ବର
ଚତୁର-ଶତୁର-ନଳ ବିଧି ରନ୍ଧନ
ଅକଟା-ଅବଟା-କଞ୍ଚା ଯୋଗାଡ଼ି ବଭିନ୍ନ ସଞ୍ଚା
କରିମ୍ପର୍ଶ କଲେ ହେବ ଦ୍ରବ୍ୟ ବ୍ୟଞ୍ଜନ
ବିବିଧ ରନ୍ଧନ ପ୍ରଣାଳୀ
ଶିକ୍ଷାଦେଲେ ଅଗ୍ନି ଦେବ ଭୀମବଳୀ । ୨୧
ମାଁରେ କହିଲେ ଅଗ୍ନି ଶ୍ରବଣ କର ପାବନ
ଗୋପନରେ ପାକ ଯେଣୁ କଲୁ ଭୋଜନ
ଭୋଜନେ, ଯୁଦ୍ଧେ, ମୈଥୁନେ ଅତୃପ୍ତ ହେବୁ ତୁ ମନେ
ଭାରତର ମହାମଲ୍ଲ ବାୟୁ ନନ୍ଦନ
ବର ଦେଇଣ ବୈଶ୍ୱାନର
ଅନ୍ତର୍ଦ୍ଧାନ ହୋଇଗଲେ ଅମର ପୁର । ୨୨
ବାୟୁ ସଙ୍ଗେ ଅଗ୍ନି ଯୋଗ ହେବାରୁ ବେନି ସଯୋଗ
ପ୍ରଜ୍ୱଳିତ ରୂପ ଭୀମ କଲେ ଧାରଣ

ଧନୁ ଧନୁ ଭୀମସେନ କଳେବର ବର୍ଦ୍ଧମାନ
ଚେନ କରେ ଚେନ ଗଦା କରେ ଧାରଣ
ଭୀମ ଭୟଙ୍କର ମୂରତି
ଦେଖି କୁନ୍ତୀମାତା ମନେ ପାଇଲେ ଭୀତି । ୨୩

ଚବିଶ ପଦେ ସମ୍ପୂର୍ଣ୍ଣ ହୋଇଲା ଅଧ୍ୟାୟ ଜାଣ
ବୃନ୍ଦାବନ ବୋଲେ ଗୀତେ ସୁଜନେ ଶୁଣ
ଭୀମସେନ ପବନସୁତ ପାଇ ବସୁମତୀ ପ୍ରୀତ
ଭାରତ ଯୁଦ୍ଧେ କରିବ ଦୁଷ୍ଟ ଦଳନ
କ୍ଷତ୍ରିୟ ସ୍ୱଭାବ ଏହାର
ନକ୍ଷତ୍ରି କରିବ କ୍ଷିତି କରି ସମର । ୨୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଭୀମସେନ ଜନ୍ମ ବିବରଣ ବର୍ଣ୍ଣନେ
ନାମ ଅଷ୍ଟବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।



# ଊନତ୍ରିଂଶ ଅଧ୍ୟାୟ

## ଅର୍ଜ୍ଜୁନ, ନକୁଳ ଓ ସହଦେବ ଜନ୍ମ

ରାଗ - ବଙ୍ଗଳାଶ୍ରୀ

ଏଥୁ ଅନନ୍ତେ ଶୁଣ    ଆହେ ସୁଜ୍ଞ ଜନେ
କୃଷ୍ଣ ଚରିତ ମାନସ
ପଦ ପଦ କରେ    ରସ ପୂରି ଅଛି
ପାନ କଲ୍ଲ ଲୋକ ତୋଷ ।୧
ଭୀମସେନ ଦୁଷ୍ଟ    ପ୍ରକୃତି ଦେଖିଣ
ବସୁରିଲେ କୁନ୍ତୀମାତା
ମହାବଳବନ୍ତ    ମୂର୍ଖ ଅପଣ୍ଡିତ
ନ ମାନଇ କାହା କଥା ।୨
ବୁଦ୍ଧିହୀନ ହେତୁ    ଏ ତନୟ ଦ୍ୱାରେ
ହେବ ନାହିଁ କାର୍ଯ୍ୟ ସିଦ୍ଧି
ଧନୁର୍ଦ୍ଧାରୀ ପୁତ୍ର    ଜାତ ନ ହୋଇଲେ
ଶତ୍ରୁ ନ ହୋଇବ ସାଧି ।୩
ଏହା ଚିନ୍ତା କରି    ମନ୍ତ୍ର ମାଳ ଧରି
ଧ୍ୟାନ କଲେ ଇନ୍ଦ୍ରଦେବ
ସ୍ୱରୂପ ଧରିଣ    ମିଳିଲେ ତତ୍କ୍ଷଣେ
କୁନ୍ତୀଙ୍କ ପାଶେ ବାସବ ।୪
କୁନ୍ତୀ ସଙ୍ଗେ ଇନ୍ଦ୍ର    ମିଳିତ ହେବାନ୍ତୁ
ପୁତ୍ରେକ ହୋଇଲା ଜନ୍ମ
ଅର୍ଜ୍ଜୁନ ବନରେ    ଜନ୍ମିବାରୁ ପୁତ୍ର
ନାମ ରଖିଲେ ଅର୍ଜ୍ଜୁନ ।୫
ଜନମ ନକ୍ଷତ୍ର    ଉତ୍ତର ଫାଲ୍‌ଗୁନୀ
ନାମ ହୋଇଲା ଫାଲ୍‌ଗୁନୀ
ଇନ୍ଦ୍ରଙ୍କ ସ୍ୱରୂପ    ଧରି ଅବତୀର୍ଣ୍ଣ
ଶୋଭା ବହିଲା ଅବନୀ ।୬

ଦିବ୍ୟ ଅପଘନ ଗୁଣେ ପରିପୂର୍ଣ୍ଣ
ଧନୁର୍ଦ୍ଧର ମହାବୀର
ଦେଖି ଆନନ୍ଦିତ ହେଲେ ପାଣ୍ଡୁ ନାଥ
କୋଳେ ଧଇଲେ କୁମର । ୭

ଧର୍ମ-ବାୟୁ-ଇନ୍ଦ୍ର ତିନ ଦେବତାଙ୍କ
ଆତ୍ମାରୁ ତିନୋଟି ସୁତ
ଯୁଧିଷ୍ଠିର ଭୀମ, ଅର୍ଜ୍ଜୁନ ନାମରେ
କୁନ୍ତୀ ଉଦରୁ ସମ୍ଭୂତ । ୮

ଧର୍ମେ ବଳୟାର ଧର୍ମ ଯୁଧିଷ୍ଠିର
ବଳେ ବଳୟାର ଭୀମ
ଶର ସନ୍ଧାନରେ ପାର୍ଥ ଧନୁର୍ଦ୍ଧର
ସମକକ୍ଷ ଶିକ୍ଷିତମ । ୯

ଆନନ୍ଦରେ ମାତା ପୁତ୍ରଙ୍କୁ ପାଳିଲେ
ଭୁଞ୍ଜାଇ ଅନ୍ନ ବ୍ୟଞ୍ଜନ
ଦିନୁ ଦିନ ପୁଣି ବର୍ଦ୍ଧମାନ ହେଲେ
ଶୁକ୍ଳପକ୍ଷ ଚନ୍ଦ୍ର ସମ । ୧୦

ତିନ ପୁତ୍ର ଜାତ ଅନ୍ତେ କୁନ୍ତୀ ଦେବୀ
ମାଦ୍ରୀକରେ ଦେଲେ ମାଳ
ମନ୍ତ୍ର ମାଳ ପାଇ ପୁତ୍ର ଜାତ ପାଇଁ
ଗାନ୍ଧାରୀ ବସିଲେ ଭଳ । ୧୧

ସ୍ୱାମୀ ଅନୁମତି କ୍ରମେ ମାଳ ଧରି
ଜାହ୍ନବୀ ତୀର ବନରେ
ଅଶ୍ୱିନୀ କୁମାରେ ସ୍ମରଣ କରନ୍ତେ
ମିଳିଲେ ଆସି ସତ୍ୱରେ । ୧୨

ଉଭୟଙ୍କ ମଧ୍ୟେ ମିଳନ ହେବାରୁ
ସହଦେ ପୁତ୍ରେକ ଜାତ
ଅନିନ୍ଦ୍ୟ ସୁନ୍ଦର ଭବ୍ୟ କଳେବର
ଦୁହେଁ ଭାରି ଆନନ୍ଦିତ । ୧୩

ପୁତ୍ର କୋଳେ ଧରି ଅଶ୍ୱିନୀ କୁମାର
ଆଙ୍କିଲେ ମୁଖେ ଚୁମ୍ବନ
ନକୁଳ ବନରେ ଜନ୍ମ ହୋଇବାରୁ
ନକୁଳ ନାମ ପ୍ରଦାନ । ୧୪

ମାତା କୋଳେ ପୁତ୍ର ଦେଇ ଚାଲିଗଲେ
ଶୂନ୍ୟେ ଅଶ୍ୱିନୀ କୁମାର
ଦିବ୍ୟ ପୁତ୍ର ପାଇ ପାଣ୍ଡୁ ଆନନ୍ଦିତ
କୋଳେ ଧଇଲେ କୁମର । ୧୫

ଏଥୁ ଅନ୍ତେ ଶୁଣ ଆହେ ସୁଜ୍ଞ ଜନେ
କିଛି ଦିନ ହେଲା ଗତ
ନକୁଳ ଜନମ ଅନ୍ତେ ମାଦ୍ରିଦେବୀ
ତଜିଲେ ଆପଣା ତନୁ । ୧୬

ଗାନ୍ଧାରୀଙ୍କ ଏକ ଶତ ଏକ ସୁତ
କୋଇନ୍ତାଙ୍କ ତିନ ସୁତ
ସର୍ବେ ବଳବନ୍ତ ପୁଣି ତେଜୋବନ୍ତ
ଶତ୍ରୁ ଦମନେ ସାମର୍ଥ । ୧୭

ତାଙ୍କ ଏକ ସୁତ କୁନ୍ତୀ ତିନି ପୁତ୍ର
ନୁହଁନ୍ତି ପାଣ୍ଡୁଙ୍କ ପୁତ୍ର
ଯଜ୍ଞ ଚରୁ ଜାତ ଗାନ୍ଧାରୀ ତନୟେ
କୋଇନ୍ତୀର ଦେବସୁତ । ୧୮

ରାଜ୍ୟେ ଅଧିକାର ନାହିଁ ଏହାଙ୍କର
ପୈତୃକ ଦାବୀ ରହିତ
କୁରୁବଂଶୀ ବୋଲି ଦାବୀ କରିବାରେ
ଅଧିକାରରୁ ବଞ୍ଚିତ । ୧୯

ମହାବଳବନ୍ତ ପୁଣି ତେଜୋବନ୍ତ
ଅଟନ୍ତି ପାଣ୍ଡୁ ରାଜନ
ତାଙ୍କ ଔରସରୁ ପୁତ୍ର ଜନ୍ମାଇଲେ
ରାଜ୍ୟେ ହେବ ନଉରଣ୍ଡି । ୨୦

ସପତ୍ନୀ ସବେ ଈର୍ଷାନ୍ୱିତ ହୋଇ
ହରାଇ-ଆପଣା ଜ୍ଞାନ
ବ୍ରହ୍ମ ଅଭିଶାପ କଥା ଭୁଲିଯାଇ
ଇଚ୍ଛିଲେ ସ୍ୱାମୀ ରମଣ । ୨୧

କାମିନୀ ସ୍ୱଭାବେ କାମାସକ୍ତ ହୋଇ
କାମନା ପୂରଣ ପାଇଁ
କରେ ମନ୍ତ୍ର ମାଳ ଧରି ସୁମଙ୍ଗଳେ
ମାଦ୍ରୀ ପାଣ୍ଡୁ ନରସାଇଁ । ୨୨

ମାଦ୍ରୀ ପାଶେ ମିଳି କହିଲେ ନୃ ନାଥ
ପଡ଼ିଲି ବିପତ୍ତି ଘୋର
ମୂନ ମନ୍ତ୍ର ଶକ୍ତି ମେଣ୍ଟିବା ଦୁସାଧ
ଜୀବନ ତେଜିବା ସାର । ୨୩

ଯାଉ ପଛେ ପ୍ରାଣ କରିବି ରମଣ
ଜନମ ହେଉ ସନ୍ତାନ
ଏହା ଚିନ୍ତା କରି ମାଦ୍ରୀଙ୍କ ସହିତ
କାମ କ୍ରୀଡ଼ାରେ ନିମଗ୍ନ । ୨୪

ଶୂନ୍ୟରୁ ପଡ଼ିଲା ଆସି ବ୍ରହ୍ମଦଣ୍ଡ
ଭେଦ ପାଣ୍ଡୁ ନୃପ ପିଠି
ବାହାର ହୋଇଲା ବକ୍ଷ ଭେଦ କରି
ମାଦ୍ରୀଦେବୀ ହୃଦ ଫୁଟି । ୨୫

ଶେଷ ହୋଇଥିଲା ଶୃଙ୍ଗାର ସମସ୍ତ
ଜନ୍ମିଲା ସଇନ୍ଦୁ ସୁତ
ନବଜାତ ଶିଶୁ ବଦନକୁ ଚୁମ୍ବି
ମୃତ ହେଲେ ତାତ ମାତ । ୨୬

ନବଜାତ ଶିଶୁ ଜନନୀ କୋଳରେ
ଶୋଇ କରଇ କ୍ରନ୍ଦନ
ଏମନ୍ତ ସମୟେ ପ୍ରଭାତ ହୋଇଲା
ଉଦୟ ହେଲେ ତପନ । ୨୭

ଆକାଶରେ ଥାଇ ଦେଖିଲେ ଈଶ୍ୱର
ଶିଶୁ କରୁଛି କ୍ରନ୍ଦନ
ଆଜ୍ଞାଦେଲେ ପିତା ଅଶ୍ୱିନୀ କୁମାରେ
ପୁତ୍ରକୁ ଯେନ ବହନ । ୨୮
ପିତା ଆଜ୍ଞା ପାଇ ଅଶ୍ୱିନୀ କୁମାର
ଧଇଲେ ଶିଶୁକୁ ଯାଇ
ମୃତ ପିଣ୍ଡ ଦେଖି ବଞ୍ଚାଇଲେ ଶିଶୁ
ଆତ୍ମାରୁ ଆତ୍ମାକୁ ଦେଇ । ୨୯
ଗଙ୍ଗା ଅଭିଶାପେ ଶାନ୍ତନୁ ବଂଶରେ
କୌରବ ଔରସେ ଜଣେ
ହେଲେ କେହି ବଞ୍ଚି ରହି ନ ପାରିଲେ
ବିଚାର୍ଯ୍ୟ ଭାରତ ଭଣେ । ୩୦
ପାଣ୍ଡୁଙ୍କ ଔରସୁ ମାଦ୍ରୀଙ୍କ ଗର୍ଭରୁ
ଜନମି ଥିବା ସନ୍ତାନ
ମାନବ ଶରୀରେ ଦେବତାର ଆତ୍ମା
ବିଚାର ବାଧ୍ୟ ଘଟଣା । ୩୧
ବିଶ୍ୱ ଦେବା ଡାକ କହିଲେ କୁମର
କୋଇନ୍ତା ଆସିବା ଯାଏଁ
ପାଳ ଏ କୁମର ପୂର୍ଣ୍ଣ ହେବ ତୋର
ବିଶ୍ୱ ଦେବା ମହାରଥେ । ୩୨
ପାଣ୍ଡୁ, ମାଦ୍ରୀ ମୃତ ସମ୍ବାଦକୁ ପାଇ
କୁନ୍ତୀ ଦେବୀ ମର୍ମାହତ
କ୍ରନ୍ଦନ ଶୋକରେ କାନନ କମ୍ପିତ
ପଶୁପକ୍ଷୀ ବିଷାଦିତ । ୩୩
ଶତଶୃଙ୍ଗ ଗିରି ଶିଖର ଦେଶରୁ
ବିଷାଦ ସଲିଳ ଝରେ
କୁଳୁକୁଳୁ ଧ୍ୱନି କଲାକର ରୂପ
ଗଲ କୁନ୍ତୀ ଅଶ୍ରୁମାନେ । ୩୪

ଭୀଷ୍ମ, ଭୂରିଶ୍ରବା, ସଞ୍ଜୟ, ବିଦୁର
ଆଦି ସର୍ବେ ସମାଗତ
ବ୍ରହ୍ମ ଶରଘାତେ ମରି ପଡ଼ିଥିବା
ଦେଖି ହେଲେ ବିଷାଦିତ । ୩୫
ଆତ୍ମୀୟ ସ୍ୱଜନ କ୍ରନ୍ଦନ ସମୟେ
ବିଶ୍ୱ ଦେବା ଦିବ୍ୟ ସ୍ୱଂସ
ମାଦ୍ରୀ ଗର୍ଭ ଜାତ ସୁତଙ୍କୁ ଘେନିଣ
ମିଳିଲେ କୁନ୍ତୀଙ୍କ ପାଶ । ୩୬
କୁନ୍ତୀ ମାତା କୋଳେ କୁମରଙ୍କୁ ଦେଇ
କହୁଛନ୍ତି ବିଶ୍ୱଦେବ
ପାଣ୍ଡୁର ଏ ପୁତ୍ର ଜାତ ହୋଇଅଛି
ନାମ ଅଟେ ସହଦେବ । ୩୭
ଜନ୍ମର ବୃତ୍ତାନ୍ତ କହିଲେ ବୁଝାଇ
ହର୍ଷ ବିଷାଦକୁ ଚିନ୍ତ
ଅନନ୍ୟ ସୁନ୍ଦର ପୁତ୍ର ପାଇ କୋଳେ
ଧଇଲେ ଜନନୀ କୁନ୍ତୀ । ୩୮
ପାଣ୍ଡୁ ମାଦ୍ରୀ ଶବ ସଂସ୍କାର କରିଣ
ପ୍ରେତ ଲୋକ କଲେ ଶାନ୍ତ
ଶତ ଶୃଙ୍ଗ ଗିରି ଶିଖର ଦେଶରେ
ବାସ କଲେ ପାଣ୍ଡୁ ପତ୍ନୀ । ୩୯
ଊନ ତ୍ରିଂଶ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
କୃଷ୍ଣ ଚରିତ ମାନସ
ପଦ ଛନ୍ଦବନ୍ଧ ଗୀତରେ ଭଣିଲା
ମୂଢ଼ ମତି ବୁଲୁ ଦାସ । ୪୦

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ଗୋପଲୀଳା ଖଣ୍ଡେ ଅର୍ଜୁନ, ନକୁଳ, ସହଦେବ ଜନ୍ମ ବୃତ୍ତାନ୍ତ ବର୍ଣ୍ଣନେ ନାମ ଏକତ୍ରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣ ।

ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି -**

ବାଇ ମନରେ ! ବାଇ ମନରେ !
ଗୁରୁ କହିଥିବା କଥା ହେଜ ମନରେ ॥ ଘୋଷା ॥
ଅଜପା ଭଜନ ମନ ମଧ୍ୟରେ
ପ୍ରାଣବାୟୁ ରୁନ୍ଧ ଅନହତରେ
ନେତ୍ର ସ୍ଥିର କର ତ୍ରିକୂଟ ଘରେ
ଦେଖ ନୃତ୍ୟ କରେ କାହ୍ନୁ ନେତ୍ର ଅଗ୍ରରେ । ୧
ନୃତ୍ୟ କରୁଛନ୍ତି ନନ୍ଦନନ୍ଦନ
ତାଳ ପଡୁଅଛି ତ୍ରିପୁଟା ଛନ୍ଦ
ଅର୍ଦ୍ଧ-ଊର୍ଦ୍ଧ୍ୱ-ମଧ୍ୟ ତିନ କାଳରେ
ମୃଦଙ୍ଗ ବାଜୁଛି ନୃତ୍ୟ ମୃଦୁ ଅଙ୍ଗରେ । ୨
ଚନ୍ଦ୍ର-ସୂର୍ଯ୍ୟ-କୃଷ୍ଣ ତ୍ରିବିଧ ଗତି
ହଂସ ସୋଽହଂ ଶବ୍ଦ ବିକ୍ରମ ଗତି
ବାଜୁଛି ବାଜଣା ବାର ପ୍ରକାରେ
ଜନ୍ତ୍ର ମାଜଣା ହେଉଛି ମନ ମଧ୍ୟରେ । ୩
ଦ୍ୱାଦଶ ଶବଦ ଦ୍ୱାଦଶ ବାଇ
ଦ୍ୱାଦଶ ଆଙ୍ଗୁଳ ଯାଉଛି ବହି
ଶୂନ୍ୟ କଲେ ବାଇ ଶୂନ୍ୟ ସୂତ୍ରରେ
ବାସ ହେବ ତୋର ମନ ଶୂନ୍ୟ ମଧ୍ୟରେ । ୪
ନଟବର ସଙ୍ଗେ ହୋଇଲେ ଭେଟ
ସରିଯିବ ତୋର ସଂସାର ନାଟ
ବୃନ୍ଦାବନ ବୋଲେ ଗୁରୁ କୃପାରେ
ଭେଳା ବନ୍ଧା ହେବ ମନ ଶୂନ୍ୟ ସାଗରେ । ୫



# ବିଂଶ ଅଧ୍ୟାୟ
## ରାମକୃଷ୍ଣଙ୍କ ବାଲ୍ୟଲୀଳା
(ରାଗ - ବଚନିକା)

ଶୁଣ ସୁଜନେ ଶ୍ରୀକୃଷ୍ଣ ଚରିତ ମାନସ
ପ୍ରେମ ସୁଧାନିଧି ପ୍ରାପ୍ୟ ପରିପୂର୍ଣ୍ଣ ରସ । ୧
ଶ୍ରାବଣ ପୂର୍ଣ୍ଣିମା ରାତେ ବଳରାମ ଜନ୍ମ
ଭାଦ୍ରବ କୃଷ୍ଣାଷ୍ଟମୀରେ ଶ୍ରୀକୃଷ୍ଣ ଜନମ । ୨
ବରଷେ ଅଠର ଦିନ କୃଷ୍ଣ ହେଲେ ସାନ
ତେଣୁ ଜ୍ୟେଷ୍ଠ ସୋଦର ଅଟନ୍ତି ବଳରାମ । ୩
ନିର୍ଭୟରେ ବେନି ଭ୍ରାତା ରହିଲେ ଗୋପରେ
ଗୋପଗୋପୀ ଖଟିଥାନ୍ତି ଚରଣ ସେବାରେ । ୪
ବିଷ୍ଣୁଙ୍କ ମାୟାରେ ସବେ ହୋଇଲେ ମୋହିତ
ଆତ୍ମାରୁ ଅଧିକ ପ୍ରିୟ ମଣନ୍ତି ଅଚ୍ୟୁତ । ୫
ଜନ୍ମର ଦ୍ୱିତୀୟ ଦିନ ପୁତନା ବଧିଲେ
ଷଷ୍ଠି ରାତେ ତୃଣାବର୍ତ୍ତ ନିଧନ କରିଲେ । ୬
ଦ୍ୱାଦଶ ଦିବସେ ଶକଟାସୁର ମାରିଲେ
ଶୁଣି କଂସାସୁର ମନେ ପ୍ରମାଦ ଗଣିଲେ । ୭
ଏକ ବିଂଶ ଦିନେ ପ୍ରଭୁ ସୁନାମ ବହିଲେ
ଚାଳିଶ ଦିବସେ ଗୃହାନ୍ତର ସେ ହୋଇଲେ । ୮
ସମ୍ପୂର୍ଣ୍ଣ ଦେଢ଼ ମାସରେ ଫୋଡ଼ାଇଲେ କର୍ଣ୍ଣ
ଶୁଭଦିନେ ଜନ୍ମ କେଶ କରିଲେ ଛେଦନ । ୯
ପାଟିରେ ଉଠିଲା ଦାନ୍ତ ଜାଣିଲେ ଜନନୀ
ପୁତ୍ରଙ୍କୁ ଦେଖିଣ ତୋଷ ଯଶୋଦା-ରୋହିଣୀ ।୧୦
ରଙ୍ଗେ ରଙ୍ଗା ଅବତାର ଯଶୋଦା ଦୁଲାଳ
ବାଳ ଗୋପାଳ ରୂପରେ କରୁଛନ୍ତି ଖେଳ ।୧୧
ଖେଳନ୍ତି ବେନି କୁମର ଗୃହ ଦାଣ୍ଡେ ଯାଇଁ
ଟାଣନ୍ତି ଗୋବତ୍ସ ପୁଚ୍ଛ କ୍ରୀଡାରେ କହ୍ନାଇ ।୧୨

ଗାଭୀଙ୍କର ଶିଙ୍ଗଧରି ଖେଳନ୍ତି ଆନନ୍ଦେ
ଗୋଡ଼ାନ୍ତି ବୃଷଭକୁ ଦେଖି ପରମାନନ୍ଦେ । ୧୩
ଧୂଳିରେ ଧୂସର ହୋଇ ମାଟିରେ ଲୋଟନ୍ତି
ଗୁହାକେ ପଶି ବାଛୁରି ଫିଟାଇ ଦଅନ୍ତି । ୧୪
କୁକୁର ପାଟିରେ ନେଇ ହାତକୁ ଭରନ୍ତି
ତେଲିଲା ଖଣ୍ଡାକୁ ଆଣି ଗୃଳନା କରନ୍ତି । ୧୫
ଦୁଷ୍ଟ ବାଳକ ସମାନ କାର୍ଯ୍ୟ କରୁଥାନ୍ତି
ନିମିଷେକ ମାତ୍ର ସ୍ଥିର ହୋଇ ନ ବସନ୍ତି । ୧୬
କାହାର ଘରେ ପଶିଣ ଲବଣୀ ଖାଆନ୍ତି
ଦଧିଭାଣ୍ଡ ଭାଙ୍ଗିଦେଇ ଗୋଳ ଆରମ୍ଭନ୍ତି । ୧୭
ବାଳୁତ ପୁଅଙ୍କ କାର୍ଯ୍ୟ ଦେଖି ଗୁରୁଜନ
ଅପୂର୍ବ ପ୍ରାୟ ମଣନ୍ତି ଲୀଳାର ବିଧାନ । ୧୮
ମାୟାରେ ମୋହିତ ସର୍ବେ ନ ପାରନ୍ତି ଚିହ୍ନି
ଆକଟ କରନ୍ତି ମାତା ଅଭିଯୋଗ ଶୁଣି । ୧୯
ରାମକୃଷ୍ଣ ବାନ୍ଧବନ୍ତୁ ଅଷ୍ଟ ଗୋପ ବାଳ
ଧନ୍ୟ ଜନ୍ମେ ପ୍ରାଣ ସଖା କୃଷ୍ଣ ପ୍ରେମେ ଭୋଳ । ୨୦
ଦାମ, ସୁଦାମ, ନଟ, ବଟ, ମଧୁମଙ୍ଗଳ
ବସୁଦେବ, କଙ୍କିଣି, ସୁବଳ ଅଷ୍ଟବାଳ । ୨୧
ସ୍ୱଭାବେ କେ ଡ଼ାକେ ଭାଇ କେ ଡ଼ାକଇ ନନା
କଏ ଡାକେ କଳାକାହ୍ନୁ କଏ ଡାକେ କାହ୍ନା ।୨୨
କେ ବୋଲେ ମାଧବ, ମଧୁସୂଦନ, ମୁରାରି
କେ ଡାକଇ ନାରାୟଣ, ଅବା ଦଇତାରି । ୨୩
କେ ଡାକେ ପୁରୁଷୋତ୍ତମ, କେଶବ, ଅଚ୍ୟୁତ
କେ ବୋଲଇ ଶ୍ରୀପ୍ରୀତପତି, ଶ୍ରୀଧର, ଶ୍ରୀକାନ୍ତ । ୨୪
ଏ ରୂପେ ଡାକନ୍ତି ବାଳେ ନାନା ନାମ ଧରି
ନ ଧରନ୍ତି କୃଷ୍ଣ ନାମ ମୁଖରେ ଉଚ୍ଚାରି । ୨୫
ପୀତାମ୍ବର, ନୀଳମଣି, ଡାକନ୍ତି ଭକତେ
ଜପନ୍ତି ଶ୍ରୀକୃଷ୍ଣ ନାମ ହୃଦ ଅନ୍ତଗତେ । ୨୬

ହୃଦୟନାଥଙ୍କୁ ହୃଦେ କରନ୍ତି ଧାରଣ
ବ୍ୟକ୍ତ ନ କରନ୍ତି ମୁଖେ ଶ୍ରୀରାମ, ଶ୍ରୀକୃଷ୍ଣ । ୨୭
ଅନ୍ତରଙ୍ଗ ଭକ୍ତ ଯେଣୁ ଅନ୍ତରେ ରଖନ୍ତି
ଅଜପା ସୂତ୍ରରେ ପ୍ରୀତି ଭାବ କରୁଥାନ୍ତି । ୨୮
ଧୂଳିଖେଳ ଖେଳୁ ଖେଳୁ ଦିନେ ଦାମୋଦର
ବାହୁରିଲେ ଦାଣ୍ଡୁ ଧୂଳି ପବିତ୍ର ଭଣ୍ଡାର । ୨୯
ଭକ୍ତପାଦ ସ୍ପର୍ଶ ପାଇ ହୋଇଛି ଉଜ୍ଜ୍ୱଳ
ଏ ଧୂଳି କ୍ଷେପିଲେ ଗର୍ଭେ ହୋଇବ ମୁକତ । ୩୦
ଭକ୍ତ ପାଦ ଧୂଳି ଅଟେ କୈବଲ୍ୟ ସମାନ
କଣ୍ଠତେ ସେବନ କଲେ ହୋଇବ ମୁଁ ଧନ୍ୟ । ୩୧
ମୋହଠାରୁ ବଡ଼ ଅଟେ ମୋହର ଭକତ
ଭକ୍ତ ମୋର ତାତ, ମାତ ବନ୍ଧୁ ସଖା ମିତ୍ର । ୩୨
ଭକ୍ତ ଭାବେ ଭାବଗ୍ରାହୀ ନାମ ଗୋଟି ବହେ
ଭକ୍ତ ସଙ୍ଗେ ଖେଳ ବୁଲି ଭକ୍ତିରସ ପାଏ । ୩୩
ଏମନ୍ତ ଭାବନା କରି ଭକ୍ତ ଭାବଗ୍ରାହୀ
ମୁଖକୁ ବିସ୍ତାରି ଧୂଳି ଖାଇଲେ ଟୋହାଇ । ୩୪
ବଳରାମ ସହିତରେ ଗୋପାଳ ବାଳକେ
ଦେଖିଲେ ଦାଣ୍ଡର ଧୂଳି ଗିଳିଦେଲେ ଥୋକେ । ୩୫
ବାରମ୍ବାର ମନା କଲେ ଭାଇ ବଳରାମ
ନ ଶୁଣି ଭକ୍ଷିଲେ ଧୂଳି ବାଳକ ଶ୍ରୀକୃଷ୍ଣ । ୩୬
ବେଗେ ତା କହିଲେ ରାମ ଧାଇଁ ମାତା ଆଗେ
ଶୁଣିଣ ଜନନୀ କ୍ରୋଧେ ଧାଇଁ ଗଲେ ବେଗେ । ୩୭
ତେଳୁକ ଡାଳର ଛାଟ ଧରିଛନ୍ତି ରାଣୀ
ପୁଚ୍ଛିଲେ କିମ୍ପାଇ ଧୂଳି ଖାଉ ନୀଳମଣି । ୩୮
ସର, ଅମୃତ, ଲବଣୀ ଦେଲେ ତୋ ତୁଣ୍ଡରେ
ଥୁ କରି ଫିଙ୍ଗି ଦେଉ ନ ରଖି ମୁଖରେ । ୩୯
କେଉଁଣ ସ୍ୱାଦ ପାଇକୁ ଖାଉଛୁ ମୃତ୍ତିକା
ମୋ ରାଣ କହୁଛି ଧୂଳି ବେଗେ କାଢ଼ି ଦେବା । ୪୦

ଧୂଳି ଖାଇଲେ ପେଟରେ କୃମି ହେବେ ଜାତ
ମୋ ଗୁଣ ପକାଏ ମାଟି ଖିଆ ଗ୍ରୁଡ଼ ସୁତ । ୪୧
ଜନନୀ କହିଲେ ବାବୁ ମିଛ କହୁ ମୋତେ
ଏବେ ମାଟି ଖାଇଥିଲୁ ଦେଖିଲେ ସମସ୍ତେ । ୪୨
ଦେଖିବା ତୋ ପାଟି ବାବୁ ଆଁ ଆଁ କରି ଦେଖା
ମାତା ବାକ୍ୟେ ବିସ୍ତାରିଲେ ମୁଖ ଭକ୍ତ ରଙ୍କା । ୪୪
ଉଦ୍ଧ୍ୱର୍କୁ ଅନାଇ ଯହୁଁ ବିସ୍ତାରିଲେ ପାଟି
ଦେଖିଲେ ଯଶୋଦା ମାତା ନୟନ ତରଟି । ୪୫
ପାତାଳୁ ବୈକୁଣ୍ଠ ଯାଏ ନରେକ୍ଷିଲେ ତୁଣ୍ଡ
ଗର୍ଭ ଭିତରେ ପୂରିଛି ଅନନ୍ତ ବ୍ରହ୍ମାଣ୍ଡ । ୪୬
ଦେଖି ସ୍ତମ୍ଭୀଭୁତ ହେଲେ ମାତା ଯଶୋବନ୍ତୀ
ନେତ୍ରକୁ ସ୍ଥିର ରଖିଣ ନଠେଇ ଗ୍ରହାନ୍ତି । ୪୭
ଭାବିଲେ ପୁତ୍ରକୁ ମୋର ଲଗିଅଛି ଭୂତ
ପାଦଧୂଳି ନେଇ ବୋଳ ଦେଲେ ପୁତ୍ର ମାଥ । ୪୮
ନିଜ ପାଦଧୂଳି ମାତା ନିଜ କରେ ନେଇ
ଲଗାନ୍ତେ ପୁତ୍ର ମଥାରେ ହସିଲେ କହ୍ନାଇ । ୪୯
ମନେ ମନେ ବିଚାରିଲେ ଧନ୍ୟ ହେଲି ଆଜ
ମାତା ମୋ ଅଜାଡ଼ି ଦେଲା ଶିରେ ପଦରଜ । ୫୦
ଭକ୍ତ ପାଦ ଧୂଳି ଯେବେ ନ ଥାନ୍ତା ମୁଁ ଗିଳି
ପଡନ୍ତା କି ଶିରେ ମୋର ମାତା ପାଦ ଧୂଳି । ୫୧
ଅନନ୍ତ ମାୟାଧର ସେ ପ୍ରଭୁ ନାରାୟଣ
ଭ୍ରମ କରାଇଲେ ତହୁଁ ଜନନୀଙ୍କ ମନ । ୫୨
ବେନି ନନ୍ଦନଙ୍କୁ ମାତା ସଙ୍ଗତରେ ନେଇ
ନବର ମଧ୍ୟେ ପଶିଲେ ଧୂଳି ଝାଡ଼ି ଦେଇ । ୫୩
ଅସମ୍ଭବ କୃଷ୍ଣ ମାୟା ହେବେ ଅଗୋଚର
ସମସ୍ତଙ୍କୁ ମୋହୁଛନ୍ତି ଯଶୋଦା କୁମର । ୫୪
ରଙ୍ଗେ ରଙ୍ଗା ଅବତାର ଗୋପାଳ ମୂରତି
ନାନାବିଧ କଉତୁକ କରନ୍ତି ଶ୍ରୀପତି । ୫୫

ଖେଳୁଥାନ୍ତି ଗୋପ ବାଣ୍ଟେ ସଖା ସଙ୍ଗତରେ
ଦୁଷ୍କାମି କର ସ୍ୱାଙ୍ଗନ୍ତି ବାଣ୍ଟେ ଧୂଳିଘର । ୫୬
ଧଳାକଳା ଦୁଇଭାଇ ଦିବ୍ୟ କଳେବର
ଦେଖି ଗୋପପୁର ନାରୀ ପ୍ରେମରେ ବିଭୋର । ୫୭
ସାତବର୍ଷେ ରାମକୃଷ୍ଣ କାନନ ମଧ୍ୟରେ
ଗୋରୁ ଗାଈ ଚରାଅନ୍ତି ସଖାଙ୍କ ମେଳରେ । ୫୮
କାନନରେ ବହୁ ଦୈତ୍ୟ କରିଲେ ବିନାଶ
ବିଲୁବନ ପୁଷ୍ପଙ୍କର ମହିମା ପ୍ରକାଶ । ୫୯
ଶତ୍ରୁର ପ୍ରଶଂସା ଶୁଣି ଭୟେ କଲା କଂସ
ରାମକୃଷ୍ଣ ମାରିବାକୁ ପେଷିଲା ରାକ୍ଷସ । ୬୦
ଅଘା, ବତ୍ସା ଦୁଇ ଦୈତ୍ୟ ଅଟଳ ଦୁର୍ଦ୍ଦାନ୍ତ
ରାମକୃଷ୍ଣ ହାତେ ବେନି ହୋଇଲେ ନିହତ । ୬୧
ଷଣ୍ଢା ବକାସୁର ବେନି ଅସୁର ନିଧନ
ଶୁଣି କଂସାସୁର ଭୟେ ହୋଇଲା ଉଚ୍ଛନ୍ନ । ୬୨
ହଳହଳ ଅଷ୍ଟମଲ୍ଲ ହେବାରୁ ବିନାଶ
କମେ କମେ ପୃଥ୍ୱୀ ଭାର ହୋଇଲା ହ୍ରାସ । ୬୩
ଚଉଷଠି ପଦ ଗୀତେ ଅଧ୍ୟାୟ ସମ୍ପୂର୍ଣ୍ଣ
ବୃନ୍ଦାବନ ବୋଲେ ପ୍ରଭୁ କର ପରିତ୍ରାଣ । ୬୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ବାଲ୍ୟଲୀଳା ବର୍ଣ୍ଣନେ
ନାମ ବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।





**ବୋଲି —**

ବାଇ ମନ ! ବାଇ ହେଲୁ କି !
ବାଇ ଅଭିରାମ କଥା ଭୁଲି ଗଲୁ କି ? ଘୋଷା
ଚନ୍ଦ୍ରାୟଣ, ସୂର୍ଯ୍ୟାୟଣ
ମଧ୍ୟାହ୍ନରେ କୃଷ୍ଣାୟଣ
ପ୍ରାଣ ପବନର ଗତି ଜଣା ନାହିଁ କି ? ୧
ତ୍ରିକୂଟରେ ଚନ୍ଦ୍ରାୟଣେ
ନାସା ଅଗ୍ରେ ସୂର୍ଯ୍ୟାୟଣେ
କୃଷ୍ଣାୟଣେ ମଧ୍ୟ ସ୍ଥାନେ ରଖ ଦୃଷ୍ଟି କି । ୨
ଅର୍ଦ୍ଧ, ଊର୍ଦ୍ଧ୍ୱ ମଧ୍ୟ ସ୍ଥାନେ
ଦର୍ଶନ ପାଇ ତ୍ରିସ୍ଥାନେ
ତ୍ରିଭଙ୍ଗୀ ସୂତ୍ରେ ଜ୍ୟୋତି ଯନ୍ତ୍ରକୁ ଯୋଖିକି । ୩
ନଭଜ ନ ଖୋଜ ଦେଖ
ଝଣୁଅଛି ଜକଜକ
ଜ୍ୟୋତିବ୍ରହ୍ମ କାନସିର ଫୁଲ ସରିକି । ୪
ତୋ ଦେହରେ ଭୁହ୍ମ ଦେଖ
ଦୂର ହୋଇଯିବ ଦୁଃଖ
ଅଦେଖା ଦାଅଁର ଦେଖା ଦେହେ ପାଇକି । ୫
ସମାର ସାର ଏ ତତ୍ତ୍ୱ
ସହଜ ସୁଗମ ସୂକ୍ଷ୍ମ
ଅନ୍ତସ୍ଥ ବିଜ୍ଞାନ ଜୀବ-ବ୍ରହ୍ମ ଗତି କି । ୬
ତ୍ରିଭଙ୍ଗୀ ସୂକ୍ଷ୍ମରେ ଅନା
ଖେଳୁଛନ୍ତି କଳା କାହ୍ନା
ବୁଲିଦାସ ବୋଲେ ଗୁରୁପାଦ ଧ୍ୟାଇକି । ୭



# ଏକବିଂଶ ଅଧ୍ୟାୟ

## ଦେବକୀ ଓ ବସୁଦେବଙ୍କ ତୀର୍ଥ ଭ୍ରମଣ

### ରାଗ - ବସନ୍ତ ଭୈରବ

ଶ୍ରୀକୃଷ୍ଣ ଚରିତ ମାନସ ଶୁଣ ସୁଜ୍ଞଜନ
ମଥୁରା ପୁର ସମ୍ବାଦ ଶ୍ରୀହରି ଆଖ୍ୟାନ
ଗାର୍ଗାଚାର୍ଯ୍ୟ, ବସୁଦେବ, ଦେବକୀ, ଅକ୍ରୂର
ଚାରିଜଣ ଏକାନ୍ତରେ କରିଲେ ବିଚାର
ଗାର୍ଗାଚାର୍ଯ୍ୟ ବ୍ୟକ୍ତ କଲେ ମାମଙ୍କୁ ବିଧିର
କୃଷ୍ଣ ଦର୍ଶନେ ଯାଉଛନ୍ତି ମୁନି ଗୋପପୁର । ୧
ସେଠାରୁ ସମ୍ବାଦ ଆଣି ତୁମ୍ଭଙ୍କୁ ଦେଉଛି
ନନ୍ଦ ମଧ୍ୟ ନିୟମିତ ବାର୍ତ୍ତା ପଠାଉଛି
ବେଳେ ବେଳେ ଯାଉଛନ୍ତି ଗୋକୁଳେ ଅକ୍ରୂର
ସେ ମଧ୍ୟ ଆଣୁଅଛନ୍ତି ପୁତ୍ରଙ୍କ ଖବର
ତଥାପି ତୁମ୍ଭର ମନ ନ ହେଉଛି ଶାନ୍ତ
ପୁତ୍ରଙ୍କର କଥା ଚିନ୍ତି ହେଉଅଛ ବ୍ୟସ୍ତ । ୨
ଧନେ ନା ଧନେ ଏ କଥା ହୋଇବ ପ୍ରକଟ
କଂସ ଜାଣିବ ଶ୍ରୀକୃଷ୍ଣ ଦେବକୀଙ୍କ ସୁତ
ତଦ୍ୱାରା ଆମ୍ଭ ଅବସ୍ଥା କି ହେବ ବିଚାର
ଏଣୁ ମୋ ବିଚାରେ ଏଥୁ ହୋଇଯାଅ ଦୂର
ତୀର୍ଥ କରି ଚାଲିଯାଅ ପତିପତ୍ନୀ ଦୁଇ
ଗୁପତ ରହିବ କଥା ପ୍ରକଟ ନ ହୋଇ । ୩
ଆକୁଳିତ ଚିତ୍ତେ ବସୁଦେବ ପୃଚ୍ଛା କଲେ
ପୁତ୍ର ବାର୍ତ୍ତା ନ ପାଇବୁ ତୀର୍ଥବାସୀ ହେଲେ
ତେଣୁ ତୀର୍ଥ ବାସ କରି ନ ପାଇବୁ ଶାନ୍ତି
ପୁତ୍ରକଥା ଚିନ୍ତି ମନ ହେଉଥିବ ଭ୍ରାନ୍ତି
ଅକ୍ରୂର କହିଲେ ତୁମ୍ଭେ ନ ହୁଅ ବ୍ୟଥିତ
ନାରଦଦେ ରହିଛନ୍ତି ତୁମ୍ଭ ବେନି ସୁତ । ୪

ତୀର୍ଥ ବାସେ ଥାଇ ସେହ୍ନେ ପାଇବ ସମ୍ବାଦ
ଉପାୟ କରିବୁ ଆମ୍ଭେ ନ ହୁଅ ବିଷାଦ
ନାରଦେ ବଞ୍ଚିବାକୁ ଦେବକୀ ନନ୍ଦନ
ଯଥାର୍ଥ କହି ଅଛନ୍ତି ଗାର୍ଗ୍ୟ ମହାମୁନ୍ୟ
କଥାମାନ ବସୁଦେବ ଦେବକୀଙ୍କୁ ଘେନ
ତୀର୍ଥଯାତ୍ରା କରିଗଲେ ପତିପତ୍ନୀ ବେନ । ୫
ସୌରାଷ୍ଟ୍ର ସାଗର ତୀରେ ସୂର୍ଯ୍ୟ ଅଧିଷ୍ଠାନ
ପ୍ରଭାସ ତୀର୍ଥେ କରିଲେ ସ୍ନାନ ତରପଣ
ପ୍ରଭାସ ତୀର୍ଥରୁ ବାରାଣାସୀକୁ ଆସିଲେ
ଗଙ୍ଗାଜଳେ ସ୍ନାନ କରି ଶଙ୍କର ପୂଜିଲେ
ପଥ ମଧ୍ୟେ ବହୁ ଦେବ ଦେବୀ ପୂଜା କଲେ
ପୁଣ୍ୟତୋୟା ନଦୀଜଳେ ସ୍ନାନାଦି କରିଲେ । ୬
ଅଳକାନନ୍ଦା କୂଳରେ ଯାଇଁଣ ମିଳିଲେ
ତୁଷାରବୃତ ଶୃଙ୍ଗକୁ ଦେଖି ପ୍ରୀତ ହେଲେ
ଗନ୍ଧମାର୍ଦ୍ଦନ ଗିରିକୁ କରିଲେ ଦର୍ଶନ
ପ୍ରାକୃତିକ ଶୋଭାରେ ସେ ସ୍ଥାନ ପରିପୂର୍ଣ୍ଣ
ସେ ଗିରି ଶିଖରେ ବାସ କଲେ ତିନ ଦିନ
ବନସ୍ପତି ଗନ୍ଧେ ବପୁ ହେଲା ରୋଗ ଶୂନ୍ୟ । ୭
ସେଠାରୁ ଚଳି ବଦ୍ରିକା ଆଶ୍ରମେ ମିଳିଲେ
ଋଷିମାନଙ୍କ ଚରଣେ ପ୍ରଣାମ କରିଲେ
ପରମେଶ୍ୱରଙ୍କୁ ଲାଭ କରିବା ଆଶାରେ
ଯୋଗେ ବସିଛନ୍ତି ଋଷି ଗୁହାର ଭିତରେ
ସତ୍ୟଯୁଗେ ପରଂବ୍ରହ୍ମ ବିଷ୍ଣୁ ଅବତାର
ହୋଇ ତହିଁ ନାଶ କଲେ ଦୈତ୍ୟ ମୁରାସୁର । ୮
ପ୍ରଗାଢ଼ ଭକ୍ତି ଏକାନ୍ତ ସାଧନା ବଳରେ
ବ୍ରହ୍ମପ୍ରାପ୍ତି ହୁଏ ପ୍ରାଣୀ ବସିଲେ ଏଠାରେ
ଏହି ଶିକ୍ଷା ଦେବା ପାଇଁ ସ୍ୱୟଂ ଭଗବାନ
ଜନ୍ମିଲେ ଶେଷ ନୃସିଂହ ଲକ୍ଷ୍ମୀ ନାରାୟଣ

ବଦ୍ରିକାଶ୍ରମେ ରହିଲେ ପତିପତ୍ନୀ ବେନ
ଧନ୍ୟ ହେଲେ ସାଧୁ ମୁଖୁ ହରି କଥା ଶୁଣି । ୯
ଜାଣିଲେ ସେଠାରେ ଥିଲା ଆଦ୍ୟ ବାସସ୍ଥାନ
କୃଷ୍ଣ ବଲ୍ଲଭ ଭଗବତୀ ବେନଙ୍କ ନାମ
ତାହାଙ୍କ ଅଂଶରେ ବିଶେଷ ନୃସିଂହ ସମ୍ଭୂତ
ବଦ୍ରିକା ରାଜ୍ୟର ଥିଲେ ରାଜାରାଣୀ ସେତ
ପୂର୍ବଜ୍ଞାନ ଜାଗିବାରୁ କଥା ହେଲା ଜ୍ଞାତ
ଋଷି ବିପ୍ରେ ମାନ୍ୟ କଲେ ବିଷ୍ଣୁ ଭାଗମାତ । ୧୦
ବଦ୍ରିକା ଶ୍ରମେ ସେମାନେ କିଛି ଦିନ ରହି
ଅଯୋଧ୍ୟାଠାରେ ମିଳିଲେ ପତିପତ୍ନୀ ଦୁଇ
ସରଯୂ ନଦୀ ଜଳରେ ତୀର୍ଥ ସ୍ନାନ କଲେ
ପିତୃ ପୁରୁଷଙ୍କୁ ଜଳ ଅର୍ଘ୍ୟ ଦାନ ଦେଲେ
ଜାଣିଲେ ଅଯୋଧ୍ୟା ଥିଲା ପୂର୍ବ ବାସସ୍ଥାନ
ଦଶରଥ ଓ କୌଶଲ୍ୟା ଥିଲା ତାଙ୍କ ନାମ । ୧୧
ରାବଣ ନିଧନ କରି କୌଶଲ୍ୟା ନନ୍ଦନ
ପୃଥିବୀରେ ରାମରାଜ୍ୟ କରିଲେ ସ୍ଥାପନ
ଅଯୋଧ୍ୟାରେ କିଛି ଦିନ କରି ଅବସ୍ଥାନ
ସେଠାରୁ ଆସି ମିଳିଲେ ପ୍ରୟାଗ ତୀର୍ଥେଣ
ମାଧବଙ୍କୁ ପିଣ୍ଡଦାନ କରିଲେ ପ୍ରଦାନ
କଳ୍ପବଟ ତଳେ ବାସକଲେ ବେନ ଜନ । ୧୨
ତ୍ରୀବେଣୀ ତୀର୍ଥେ ବିଶ୍ରାମ କରୁଥିବା କାଳେ
ପିତ୍ରୁଙ୍କ ଦେହାନ୍ତ ବାର୍ତ୍ତା ପାଇ ଶୋକ କଲେ
ଭଉଣୀ ଭଣଜା କଥା ଚିନ୍ତା ବାସୁଦେବ
ମନମଧ୍ୟେ ଜାତ ହେଲା ବିଷାଦର ଭାବ
ପ୍ରୟାଗ ତୀର୍ଥରୁ ଶତ୍ରୁଙ୍କେ ଡକାଇଲେ
କୋଇନ୍ଦା ଭଗ୍ନୀଙ୍କୁ ପାଇ ସାକ୍ଷାତ କରିଲେ । ୧୩
ଶୁଣିଲେ ମାଦ୍ରୀ ସନ୍ୱତ ରକ୍ତ ନୀଳା କାଳେ
ପତିପତ୍ନୀ ନାଗ ଗଲେ ବ୍ରହ୍ମଗାପ ବଳେ

କୁନ୍ତୀଙ୍କର ତିନିପୁତ୍ର ମାଦ୍ରୀଦୁଇ ସୁତ
ପାଳନ୍ତି କରନ୍ତି କୁନ୍ତୀ ପାଣ୍ଡୁ ପାଞ୍ଚ ସୁତ
ବିଧବା ବେଶେ ଦେଖି କୁନ୍ତୀଙ୍କୁ ଦେବକୀ
ନୟନରୁ ଦୁଃଖରେ ଝରିଲା ଅଶ୍ରୁଜଳ । ୧୪

ଉଭୟଙ୍କ ଦୁଃଖ କଥା ଶୁଣି ପରସ୍ପର
ଧରାଧରି ହୋଇ ବେନି ବେଦନେ ଅଧୀର
ମୁନିଋଷି ମାନେ କଲେ ସାନ୍ତ୍ୱନା ପ୍ରଦାନ
'ବୋଇଲେ କୁନ୍ତୀ ହେ ' ଚିନ୍ତା ନାହିଁ କିଛି ଧନ୍ୟ
ଧର୍ମରକ୍ଷା ପାଇଁ ମର୍ତ୍ତ୍ୟେ ହୋଇଅଛି ଜନ୍ମ
ତୁମ୍ଭର ଉଦରୁ ଜାତ ଧର୍ମ, ଭଗବାନ । ୧୫

ସାନ୍ତ୍ୱନା ପାଇ ଆଶ୍ୱସ୍ତ ହେଲେ ବେନି ଜଣ
କୁନ୍ତୀ ସୌଭାଗ୍ୟ ଦର୍ଶନେ ଦେବକୀ ନିମଗ୍ନ
ଯେତେବେଳେ ପାଞ୍ଚ ପୁତ୍ର ଜନନୀକୁ ଘେରି
ଗୋଳ କରୁଥାନ୍ତି ପଣତ କାନିକୁ ଓଟାରି
କିଏ କୋଳେ ବସିଯାଏ କେ ବସେ କାନ୍ଧରେ
କିଏ ମାତା ହାତ ଧରି ଟାଣଇ ସ୍ନେହରେ । ୧୬

କିଏ ପାଖେ ତେରି ହୋଇ ମାଗେ ସ୍ତନ୍ୟପାନ
ପୁତ୍ରଙ୍କ ଅହଙ୍କେ ମାତା ଆନନ୍ଦିତ ମନ
ଏଦୃଶ୍ୟ ଦେଖି ଦେବକୀ ମନେ ବିଷାଦିତ
ଆଠ ପୁତ୍ର ଜାତ କରି ସ୍ନେହରୁ ବଞ୍ଚିତ
ମରିଛନ୍ତି ଛଅ ପୁତ୍ର ଅନ୍ୟ ଦୁଇ ଜଣ
କଂସ ଭୟେ କରିଛନ୍ତି ଜୀବନ ଗୋପନ । ୧୭

ପାଳନ କରୁଛି ପୁତ୍ରେ ଯଶୋଦା ଜନନୀ
ଧୈର୍ଯ୍ୟ କଷ୍ଟ ସହି ମୂର୍ତ୍ତି ହେଲି ଅଭାଗିନୀ
ଆପଣା ଦୁର୍ଭାଗ୍ୟ ଚିନ୍ତି ଦେବକୀ ଦୁଃଖିତ
ଛଳଛଳ ଆଖିପତା ଅଶ୍ରୁ ନିପତିତ
କୁନ୍ତୀ ତନୟେ ବଡ ସୁନ୍ଦର ସ୍ନେହଶୀଳ
ଜନନୀ ହାତେ ପାଳିତ ସୁସ୍ଥ ଓ ସବଳ । ୧୮

ମାତ୍ର ତାଙ୍କ ବେନି ପୁତ୍ର ଅନ୍ୟରେ ପାଳିତ
କୁନ୍ତୀପୁତ୍ରପରି ହୋଇବେକ ମାତୃଭକ୍ତ
ବଡ଼ପୁଅ ଯୁଧିଷ୍ଠିର ଅଟେ ଆଠ ବର୍ଷ
ଅତ୍ୟନ୍ତ ଗମ୍ଭୀର ମୁଖ ସଦା ହସ ହସ
ତାହା ଆଖିରେ ନିର୍ମଳ ସାଧୁତାର ଚିହ୍ନ
ଦ୍ୱିତୀୟ ତନୟ ଭୀମ ବର୍ଷେ ଅଟେ ସାନ । ୧୯
ସେ ବଳିଷ୍ଠ ପାର୍ଶ୍ୱଜାୟୁ ସଦା ପ୍ରଫୁଲ୍ଲିତ
ମୋହ ପୁତ୍ର ବଳରାମ ପ୍ରାୟ ସ୍ୱାସ୍ଥ୍ୟବନ୍ତ

ତୃତୀୟ ପୁତ୍ର ଅର୍ଜୁନ କୃଷ୍ଣ ଠାରୁ ସାନ
ସେ ସର୍ବଦା, କର୍ମଠ, ଚଞ୍ଚଳ, ବୁଦ୍ଧିମାନ
ଶିକାମାଳ ରଙ୍ଗ ଦେହ କମନୀୟ କାନ୍ତି
ସୁନ୍ଦର ବଦନେ ଶୋଭେ ଆଖିଦୁଇ ଜ୍ୟୋତି । ୨୦
ଅର୍ଜୁନଙ୍କୁ ଦେଖି କୃଷ୍ଣ ଭାବ ଜାଗରିତ
ବାତ୍ସଲ୍ୟ ସ୍ନେହେ ପାର୍ଥଙ୍କୁ କୋଳକଲେ ମାତ

ମାଦ୍ରୀଦୁଇ ସୁତ ଶ୍ରେଷ୍ଠ ହେଲେ ଗୁଣବାନ
କୋଳରେ ବସାଇ ମାତା ଦିଅନ୍ତି ଚୁମ୍ବନ
କୁନ୍ତୀ, ମାଦ୍ରୀ ପାଞ୍ଚ ପୁତ୍ର ଏକ ଆତ୍ମା ପ୍ରାୟ
ଭିନ୍ନାଭିନ୍ନ ନାହିଁ କେହୁ ପାଣ୍ଡୁ ପାଞ୍ଚ ପୁଅ । ୨୧
ଏକ ମନ, ଏକ ପ୍ରାଣ ଏକ ଆତ୍ମା ହୋଇ
ଜନନୀ କୋଳେ ଖେଳନ୍ତି ପ୍ରିୟ ଭାଇ ବନ୍ଧୁ
କେତେ ବନ ଗିରି ଶୃଙ୍ଗେ କରି ଅବସ୍ଥାନ
ବ୍ୟାସଙ୍କ ପରାମର୍ଶରେ ଚଳିଲେ ବହନ
ବ୍ୟାସ ଦେବଙ୍କ ଦର୍ଶନ ପାଇଁ ଚାଲିଗଲେ
କୁନ୍ତୀମନ ଆନ୍ଦୋଳିତ ଆଶଙ୍କା ପଶିଲେ । ୨୨
ହସ୍ତିନାରେ କିପରି ପାଇବେ ବ୍ୟବହାର
ଗାନ୍ଧାରୀ କିପରି ଦେଖିବେ ତାଙ୍କ କୁମର
ଗାନ୍ଧାରୀର ଶତପୁତ୍ର ହୋଇଛନ୍ତି ଜାତ
ସେମା ପାଣ୍ଡୁପୁତ୍ରଙ୍କ ପ୍ରତି ମନେ ଈର୍ଷାନ୍ୱିତ

ବ୍ୟାସଙ୍କ ହାତେ ପୁତ୍ରଙ୍କୁ କରିଛୁ ଅର୍ପଣ
ସେ ଯାହା କରିବେ ତାହା ଆମ୍ଭର ଗ୍ରହଣ । ୨୩

ଗୃହ ଦିନ ଯାତ୍ରା କରି ପଞ୍ଚମ ଦିନରେ
ସକଳେ ମିଳିଲେ ଯାଇ କୁରୁକ୍ଷେତ୍ର ଠାରେ
ପୁଣ୍ୟତୋୟା ସରସ୍ୱତୀ ନଦୀ ତୀର ଦେଶେ
ପଞ୍ଚ ହ୍ରଦ ବିଦ୍ୟମାନ ଗଭୀର ବିଶେଷେ
ତାହାର କୂଳରେ କୁରୁକ୍ଷେତ୍ର ଅବସ୍ଥିତ
ମାଳମାଳ କୁଟୀରରେ ପ୍ରାନ୍ତର ଶୋଭିତ । ୨୪

କୁଟୀର ମଧ୍ୟେ ହୋମାଗ୍ନି ଶିଖା ପ୍ରଜ୍ୱଳିତ
କୁଣ୍ଡଳୀ ଆକାରେ ଧୂମଶିଖା ଉତ୍ଥିତ
ହୋମାଗ୍ନିରୁ ଘୃତାହୁତ ଗନ୍ଧ ପ୍ରସାରିତ
ତାହା ସଙ୍ଗେ ଧୂପଦୀପ କର୍ପୂର ମିଶ୍ରିତ
ଗନ୍ଧପୁଷ୍ଟ ପରିବେଶ ଅଟେ ସୁଗନ୍ଧିତ
ମୁନି ମୁଖୁ " ବେଦମନ୍ତ୍ର" ଧ୍ୱନି ନିନାଦିତ । ୨୫

ଏ ବିଚିତ୍ର ପରିବେଶେ ସର୍ବେ ବିମୋହିତ
ଆଧ୍ୟାତ୍ମିକ ଭାବାବେଗେ ହୃଦ ଆହ୍ଲାଦିତ
କାହିଁ ଅବା ଋଷିମାନେ ହ୍ରଦକୂଳେ ବସି
ମଧ୍ୟାହ୍ନ ସୂର୍ଯ୍ୟଙ୍କ ସ୍ତୁତି କରୁଛନ୍ତି ମିଶି
କେଉଁ ହ୍ରଦେ ନାରୀମାନେ ସମବେତ ହୋଇ
ସନ୍ତାନମାନଙ୍କୁ ଜଳେ ଦିଅନ୍ତି ଗାଧୋଇ । ୨୬

କେଉଁଠାରେ କଳସିରେ ଜଳ ଭରୁଛନ୍ତି
ଦଳଦଳ ହୋଇ କୁଟୀରକୁ ଯାଉଛନ୍ତି
ମଧ୍ୟସ୍ଥଳେ ଶୁଣାଯାଏ ବେଦମନ୍ତ୍ର ଧ୍ୱନି
ଯହିଁ ମନ୍ତ୍ର ଶିକ୍ଷା ଦେଉଛନ୍ତି ବ୍ୟାସ ମୁନି
ଆଶ୍ରମକୁ ଆଗନ୍ତୁକ ଆସିବାର ଦେଖି
ସଭାସ୍ଥଳେ ନେଇ ଗଲେ ସସ୍ନେହରେ ଡାକି । ୨୭

ଯେତେବେଳେ ବ୍ୟାସଦେବ ଶିଷ୍ୟଙ୍କ ସହିତ
କୃଷ୍ଣ ଅସ୍ତିତ୍ୱ ବିଷୟେ ଥିଲେ ବିଚାରତ

କୁନ୍ତୀ, ବସୁଦେବ, ଦେବକୀ ଦେଖିବା ମାତ୍ରେ
ସ୍ୱାଗତ କଲେ ସର୍ବେ ଆନନ୍ଦିତ ଚିତ୍ତେ
ପୁତ୍ରମାନଙ୍କ ସହିତ ରାଜମାତା କୁନ୍ତୀ
ବସୁଦେବ ଓ ଦେବକୀ କଲେ ପ୍ରଣତି । ୨୮
ପାଣ୍ଡୁଙ୍କର ପାଞ୍ଚ ପୁତ୍ର ବ୍ୟାସଙ୍କର ନାତି
ସାଷ୍ଟାଙ୍ଗେ ପଡ଼ିଣ ପାଦେ କଲେ ପ୍ରଣତି
ନାତିଙ୍କ ସୌଜନ୍ୟ ସ୍ୱାଭାବିକ ଭଦ୍ରତାରେ
ପ୍ରୀତ ହୋଇ ବ୍ୟାସଦେବ ଉଠାଇ ଧଇଲେ
ତାଙ୍କୁ ଉଠି ପାଞ୍ଚ ଭାଇ ଯୋଡ଼ହସ୍ତ ହୋଇ
ଠିଆ ହେଲେ ନୀରବରେ ସମସ୍ୟା ନ ଦେଇ । ୨୯
ସବୁଠାରୁ ସାନ ପୁତ୍ର ସହଦେବେ ନେଇ
କୋଳେ ବସାଇ ମଥାକୁ ଦେଲେ ଆଉଁସାଇ
ଭୀମକୁ ପାଖକୁ ଡାକି କହିଦେଲେ ଗେଲ
ବୟସକୁ ଦେଖି ଭୀମ ଶରୀର ବିଶାଳ
ଶ୍ରଦ୍ଧାରେ କହିଲେ ମୁନି ତୁହି ମହାମଲ୍ଲ
ଭାଇଙ୍କ ସଙ୍ଗରେ କେବେ ନ କରିବୁ ଗୋଳ । ୩୦
ବସୁଦେବ ନାରୀ ମେଳେ ତାହାଣେ ବସିଲେ
ଆସିଥିବା ଋଷିମାନେ ସମ୍ମୁଖେ ବସିଲେ
ଶିଷ୍ୟଗଣେ ଦେଖି ବ୍ୟାସ ବୋଇଲେ ବଚନ
ଏତିକିରେ ବନ୍ଦ କର ଜ୍ଞାନ ଆଲୋଚନ
ଅତିଥି ସତ୍କାର ପାଇଁ କର ଆୟୋଜନ
ଶୁଣି ଯୋଗାଡ଼େ ଲାଗିଲେ ଚେଲା ଶିଷ୍ୟଗଣ । ୩୧
ଶିଷ୍ୟଙ୍କ ବିଦାୟ ଅନ୍ତେ କୁନ୍ତୀଙ୍କୁ ସାନ୍ତ୍ୱନା
ଦେଇ କହିଲେ ମହର୍ଷି ନ ହୁଅ ବିମନା
ତୁମ୍ଭେ ପେଷିଥିବା ଦୂତ ଠାରୁ ଶୁଣିଅଛି
ମନଦୁଃଖ କର ମାଗୋ ଲାଭ ନାହିଁ କିଛି
ପାଞ୍ଚପୁତ୍ରଙ୍କୁ ପାଳିବା ତୁମ୍ଭର ଏ ଧର୍ମ
ଏହାଠାରୁ ବଳି ବଡ଼ ନାହିଁ ଅନ୍ୟ କର୍ମ । ୩୨

ଭାରତ ଜନନୀ ତୁମ୍ଭ ହୃଦୟ ବିଶାଳ
ମିଳିବ ସମ୍ମାନ ଏହି ପାଞ୍ଚ ପୁତ୍ର ପାଇ
ଚମତ୍କୃତ ପାଞ୍ଚ ପୁତ୍ର ଦେଖି ମୁନି ତୋଷ
ଜାଣିଲେ ପୃଥ୍ୱୀରୁ ଦୁଃଖ କରିବେ ବିନାଶ
ଶ୍ରୀକୃଷ୍ଣଙ୍କ ପଞ୍ଚପ୍ରାଣ ପାଣ୍ଡୁ ପାଞ୍ଚ ପୁତ୍ର
ଶ୍ରୀକୃଷ୍ଣକାର୍ଯ୍ୟ ସମ୍ପାଦନେ ମର୍ତ୍ତ୍ୟପୁରେ ଜାତ । ୩୩
ବସୁଦେବେ ଅନାଇଁ କହିଲେ ବ୍ୟାସ ଦେବ
ହସ୍ତିନା ଖବର ଗୋଟି ଶୁଣ ବସୁଦେବ
ଗାନ୍ଧାରୀ ଲେଖିଅଛନ୍ତି ମୋ ପାଖକୁ ପତ୍ର
ମୋହର ଆଶ୍ରମେ ରହିବେ କୁନ୍ତୀଙ୍କର ପୁତ୍ର
ପାଣ୍ଡୁଙ୍କର ପୁତ୍ରମାନେ ହସ୍ତିନା ନଗରେ
ନ ରହନ୍ତୁ ଯାଇ ତହିଁ ରାଜ ପ୍ରସାଦରେ
ଏହା ଗାନ୍ଧାରୀଙ୍କ ଇଚ୍ଛା ପତ୍ରୁ ଅନୁମାନ
ଲେଖି ଅଛନ୍ତି ପତ୍ରରେ ଅଜବ କାରଣ
'ରାଜ ନଗରରେ ଉଭୟେ କଲେ ଅବସ୍ଥାନ
ଉଭୟଙ୍କ ମଧ୍ୟେ ବିବାଦ ହେବ ସୃଜନ !'
କୁନ୍ତୀଙ୍କ ଆଶଙ୍କା ହେଲା ସତ୍ୟ ପ୍ରମାଣିତ
ଗାନ୍ଧାରୀ ପତ୍ର ଶ୍ରବଣେ ହେଲେ ମର୍ମାହତ । ୩୪
ଆଶ୍ୱାସନା ଦେଇ ଋଷି କହିଲେ ବଚନ
ପୁତ୍ରଙ୍କର ଅମଙ୍ଗଳ ମନରେ ନଘେନ
ମାତା ସତ୍ୟବତୀ ତଥା ମାନମୀୟ ଭୀଷ୍ମ
ମାସେ ପଠାଇଛନ୍ତି କାର୍ଯ୍ୟ ରହିଛି ଲେଖଣ
ପାଣ୍ଡୁପୁତ୍ର ସଙ୍ଗେ ନେଇ ଯାଉଅଛି ମୁହିଁ
ସମ୍ମାନ ସହ ସେଠାରେ ରଖାଇବା ପାଇଁ । ୩୫
ମାନମୀୟ ଭୀଷ୍ମଦେବ ସ୍ୱୟଂ ଧର୍ମ ପ୍ରାଣ
ସିଏ ସମସ୍ତଙ୍କୁ ସଦା ଦେଖନ୍ତି ସମାନ
ପାଣ୍ଡୁଙ୍କର ପୁତ୍ରମାନେ ମୋହର ପ୍ରପୌତ୍ର
ମୁହିଁ ମଧ୍ୟ ସେମାନଙ୍କ ବୁଝିବି ଦାୟିତ୍ୱ

ଆହେ ବାସୁଦେବ ତୁମ୍ଭେ ଆମ୍ଭ ସଙ୍ଗେ ଆସ
ଦେଖିଯିବ ସ୍ୱଜନସ୍ନେ ଉଣତାଙ୍କ ସୁଖ । ୩୬
ଏହା ବନ୍ତ ବ୍ୟାସଦେବ କୁନ୍ତୀ ବିଦା କଲେ
ପୁତ୍ରଙ୍କ ସଙ୍ଗେ ଜନନୀ କୁଟୀରେ ଚଳିଲେ
ବସୁଦେବ ଓ ଦେବକୀ ଏକାକୀ ରହିଲେ
ସେମାନଙ୍କ ସଙ୍ଗେ ବ୍ୟାସ ଆଲୋଚନା କଲେ
ଅଷ୍ଟତ୍ରିଶ ପଦରେ ଅଧ୍ୟାୟ ସମ୍ପୂର୍ଣ୍ଣ
ଗୀତରେ ଭଣିଲ ବୁଲିଦାସ ହୀନଜନ । ୩୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡ ଦେବକୀ ବସୁଦେବଙ୍କ ତୀର୍ଥ ଭ୍ରମଣେ
ନାମ ଏକତ୍ରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣ
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।



**ବୋଲି –**

ରେ ମନ ! ହରିଚରିତ ସ୍ମରଣ କର
ସଦ୍‌ଗୁରୁ ଅଭିରାମ ପୟର
ପାର କରି ଦେବେ ଭବ ସାଗର
ସ୍ୱର ବିନୋଦିଆ ବାଇ ଠାକୁର । ୧
ଅନନ୍ତ ଗୁମ୍ଫାରେ ବଜେ ଠାକୁର
ଅନ୍ତରଙ୍ଗ ଭକ୍ତ ମେଳ ମେଠାର
ଶାନ୍ତ ଆନନ୍ଦ ଆଶ୍ରମେ ବିହାର
ଶ୍ୟାମ ଅବତାର ଶ୍ୟାମ ସୁନ୍ଦର । ୨
ଅମୀୟ ଆନନ୍ଦ ହାସ୍ୟ ଅଧର
ଶୁକ୍ଳାମ୍ବର ବେଶ କଲେ କେୟୂର
ଅଭିନବ ସୁନ୍ଦର ମୁରଲୀଧର
କଣ୍ଠେ ତୁଳସୀ ପାଏ ମାଳତି ହାର । ୩
ହରି-ରାମ-କୃଷ୍ଣ-ଶ୍ୟାମାବତାର
ଶିବଲି ମନ୍ତ୍ରିତ ତୁଳସୀ ମଞ୍ଜରି

ସୁବର୍ଣ୍ଣ କଠାଉ ପଦ୍ମ ପୟର
ଚଳନେ ପୃଥିବୀ ବଶେ ସୁନ୍ଦର । ୪
ସତ୍ୟ ନାରାୟଣ ସ୍ୱାମୀ ପୟର
ବୃନ୍ଦାବନ ଭଜଇ ନିରନ୍ତର
ଶରଣରକ୍ଷଣ ଦୁଃଖୀ ସୋଦର
କୃଷ୍ଣକାନ୍ତ ଦେନ ମୋ ନମସ୍କାର । ୫



# ଦ୍ୱାବିଂଶ ଅଧ୍ୟାୟ

## ପାଣ୍ଡୁ ପୁତ୍ରଙ୍କର ହସ୍ତିନା ଆଗମନ

( ରାଗ - ଆଶାବରୀ )

କୃଷ୍ଣ ଚରିତ ମାନସ ଶୁଣ ସୁଜନ
ଝରୁଅଛି ସୁଧାରସ କର ମୁଖେ ପାନେ । ୧
ଦେବକୀ ଓ ବସୁଦେବ ଏକାକି ରହିଲେ
ଅକ୍ରୂର ଅପେକ୍ଷା ରଥ କହି ଉଡାଇଲେ । ୨
ବ୍ୟାସଙ୍କ ଡାକରା ପାଇ ଆସିଲେ ଅକ୍ରୂର
ମୁନିଙ୍କର ପାଦେ ପଦ୍ମ କଲେ ନମସ୍କାର । ୩
ଦେବକୀ ଓ ବସୁଦେବ ଚରଣେ ପଡ଼ିଲେ
ସ୍ନେହେ ଅକ୍ରୂର ତାଙ୍କୁ କୋଳ କରି ନେଲେ । ୪
କହିଲେ ଶୁଣ ତୁମର କୁମର ଖବର
କଂସଭୟେ ଛନ୍ନ ଗୋକୁଳେ ଦୁଇଟି କୁମର । ୫
ଧୈର୍ଯ୍ୟର ସହ ସକଳ ବିପଦ ଏଡାଇ
ଚନ୍ଦ୍ରକଳା ପ୍ରାୟ ବଢୁଛନ୍ତି ଦୁଇଭାଇ । ୬
ସୁଜନଙ୍କର ଗୋପଲୀଳା ଆନନ୍ଦ ଦାୟକ
ଦେଖି ଗୋପପୁର ବାସୀ ହୁଅନ୍ତି ଅବାକ । ୭
ଗାର୍ଗ୍ୟ ପରାମର୍ଶେ ନନ୍ଦ ବିଦ୍ୟା ଶିକ୍ଷା ପାଇଁ
ସାନ୍ଦୀପନି ବିପ୍ରଗୃହେ ଆଣିଲେ ଡକାଇ । ୮

ନନ୍ଦଗୃହେ ସାନ୍ଦୀପନି ଅବସ୍ଥାନ କଲେ
ରାମକୃଷ୍ଣ ଦୁଇପୁତ୍ରେ ପାଠ ପଢ଼ାଇଲେ । ୯
ପୁଷ୍ପ, ଚନ୍ଦନ, ଅକ୍ଷତ, ଧୂପ, ଦୀପ ଦେଇ
ଗଣପତି, ସରସ୍ୱତୀ ପୂଜା କଲେ ତହିଁ । ୧୦
ବନାତ୍ମକ ମନ୍ତ୍ର ଜପି ଭାଙ୍ଗି ନାରିକେଳ
ପୂର୍ବ ମୁଖେ ବସି ପାଠ ପଢ଼ିଲେ କୁମର । ୧୧
ଖାଡ଼ି ଧରି ସିଦ୍ଧିରସ୍ତୁ ପ୍ରଥମେ ଲେଖିଲେ
ମାଟିରେ ମୁଣ୍ଡୁଳା କାଟି ଖଡ଼ି ମଡ଼ାଇଲେ । ୧୨
ଶିକ୍ଷାଦେଲେ ବର୍ଣ୍ଣାବଳୀ ଅକ୍ଷର ଚୌତିଶ
ପଢ଼ାଇଲେ ବର୍ଣ୍ଣବୋଧ ଶୁଦ୍ଧ ଉଚ୍ଚାରଣ । ୧୩
ଶିଖାଇଲେ ପଣକିଆ ଚୂଟଶାଳୀ ପାଠ
ମିଶାଣ, ଫେଡ଼ାଣ, ଗୁଣାଣ, ହରଣ ସୂତ୍ର । ୧୪
ଚତୁର୍ବେଦ, ଷଡ଼ଶାସ୍ତ୍ର, ଅଠର ପୁରାଣ
ଧନୁର୍ବେଦ, ଆୟୁର୍ବେଦ, ଗୁଟିକା ଅଞ୍ଜନ । ୧୫
ଶ୍ରୁତି, ସ୍ମୃତି, କାବ୍ୟ, ନାଟ୍ୟ, ଜ୍ୟୋତିଷ, ଷଡଙ୍ଗ
ଅଲଙ୍କାର, ବ୍ୟାକରଣ, ବେଦ ଓ ବେଦାଙ୍ଗ ।୧୬
ନ୍ୟାୟ, ତର୍କ, ଗୂହ୍ୟ ବିଦ୍ୟା, ମିମାଂସା ବିସ୍ତର
ପଢ଼ାଇଲେ ସାନ୍ଦିପନି ଶାସ୍ତ୍ର ନିତ୍ୟାସ୍ତର । ୧୭
ଉପାୟ, ଦଣ୍ଡ, ଦର୍ଶନ, ଷଡ଼୍‌ବିଧ ନୀତି
ଶ୍ରବଣ ମାତ୍ରକେ ବିଦ୍ୟା ମନରେ ରଖନ୍ତି । ୧୮
ଦେଖି ବିସ୍ମିତଲେ ଗୁରୁ ଯୋଗ୍ୟ ଶିଷ୍ୟପୁତ୍ର
ଯାଙ୍କୁ ପଢ଼ାଇଲେ ପାଠ ଧନ୍ୟ ଦେବ ଶତ୍ରୁ ।୧୯
ଏହା ଚଉଷଠି ସର୍ବ ବିଦ୍ୟା ଶିଷ୍ୟେ ଶିକ୍ଷା ଦେଲେ
ଦୁଇମାସ ଷୋଳଦିନେ ବିଦ୍ୟା ଶେଷ କଲେ । ୨୦
ଆଶ୍ଚର୍ଯ୍ୟ ହୋଇଲେ ଗୁରୁ ଶିଷ୍ୟ କଥା ଚିନ୍ତ
ଜାଣିଲେ ସେ ମୁକ୍ତିଦାତା ଅଛି ଜନ୍ମ ହିନ୍ତ । ୨୧
ଗୋପାଳ ବାଳକ ଭାଣେ ସେ ପ୍ରମୁଖ-କ୍ରେତା
ଗୋପାଳେ ନାନୁ ଅଛନ୍ତି ରାମକୃଷ୍ଣ [illegible] । ୨୨

ଅତ୍ୟନ୍ତ ସାହାସୀ ପୁଣି ବୀର ଅଗ୍ରଗଣ୍ୟ
ଶସ୍ତ୍ରଶାସ୍ତ୍ର ବିଦ୍ୟାରେ ନିର୍ଜିତ ବେନି ଜଣ । ୨୩
କି ବର୍ଣ୍ଣିବି କୃଷ୍ଣ ଗୁଣ ସେ'ତ ଗୁଣବାନ
ରୂପେ ପଟାନ୍ତର ନାହିଁ ଅତି ରୂପବାନ । ୨୪
ମଥାରେ ସୁନେଲ ପାଟ ଠେକା ଶୋଭାପାଏ
ମୟୂର ଚନ୍ଦ୍ରିକା ଏକ ତହିଁ ଖୋସାଥାଏ । ୨୫
ହସ୍ତରେ ସେ ଧରିଛନ୍ତି ଏକ ବେନ୍ଦୁ ଯଷ୍ଟି
ନ କରନ୍ତି କଂସେ ଭୟ ସୋଦର ଦୁଇଟି । ୨୬
ବଳରାମ ଦେଖିବାକୁ ଡେଙ୍ଗା ଓ ବଳୁଆ
ଗୋରା ତକତକ ଦେହ ଲମ୍ବାଲମ୍ବା ବାହା । ୨୭
ଦୁଧ, ଦହି, ଖାଇ ପିଇ ବପୁ ହୃଷ୍ଟପୁଷ୍ଟ
ଶ୍ରଦ୍ଧାରେ ପାଳିଛି ନନ୍ଦ ତୁମ୍ଭ ବେନି ସୁତ । ୨୮
ଦୁଇଭାଇଙ୍କ ମଧ୍ୟରେ ଅଶେଷ ପିରତି
ଦୁହେଁ ଦୁହିଁଙ୍କ ଅଧିକ ଭଲ ପାଉଛନ୍ତି । ୨୯
ବଳରାମ ଅତିଭଦ୍ର ଶ୍ରୀକୃଷ୍ଣ ଚତୁର
ଆଚରଣ ବେନିଙ୍କର ଗୋଟିଏ ପ୍ରକାର । ୩୦
ସନ୍ଥଙ୍କଠାରେ କୃଷ୍ଣ ପ୍ରିୟ ଶ୍ରଦ୍ଧାବାନ
ସନ୍ଥଙ୍କୁ ଶ୍ରଦ୍ଧା ଓ ଭକ୍ତି କରନ୍ତି ସମ୍ମାନ । ୩୨
ଅକ୍ରୂର ମୁଖରୁ ରାମକୃଷ୍ଣ କଥା ଶୁଣି
ମନେ ଆନନ୍ଦିତ ହେଲେ ଜନକ ଜନନୀ ।
ବ୍ୟାସ ଦେବ କହିଲେ ତ ପାଇଲ ସମ୍ବାଦ
ପୁତ୍ରଙ୍କର ଚିନ୍ତା କରି ନ ହୁଅ ବିଷାଦ । ୩୩
ଅଟନ୍ତି ଜଗତ କର୍ତ୍ତା ତୁମ୍ଭ ବେନି ସୁତ
ମର୍ତ୍ତ୍ୟେ ଜାତ ହୋଇଛନ୍ତି ନାଶିବାକୁ ଦୁଷ୍ଟ । ୩୪
ଆଉ ଅଳ୍ପ ଦିନେ କଂସ ହୋଇବ ବିନାଶ
ଶିଶୁ ମୂର୍ଖ ହତ୍ୟା କରି ଅର୍ଜିଅଛି ଦୋଷ । ୩୫
କୃଷ୍ଣଙ୍କ ପଞ୍ଚ ପ୍ରାଣ ତୁମ ନଣନ୍ଦ ସୁତ
[illegible] ମିଶି ପୃଥିବୀ କରିବେ ଶାନ୍ତ । ୩୬

ଅଧର୍ମ ବିନାଶି ଧର୍ମ କରିବେ ସ୍ଥାପନ
ନଯୁକ୍ତିର ଖେଳ ଏହି ଶାସ୍ତ୍ରର ପ୍ରମାଣ । ୩୭
ବ୍ୟାସ ମୁନିଙ୍କ କଣ୍ଠରୁ କୃଷ୍ଣ କଥା ଶୁଣି
ଶାନ୍ତ ହୋଇଲେ ଦେବକୀ ବସୁଦେବ ବେନି । ୩୮
କୁରୁକ୍ଷେତ୍ରରୁ ଅକ୍ରୁର ମଥୁରା ଫେରିଲେ
ଦେବକୀ ଓ ବସୁଦେବ ହସ୍ତିନାକୁ ଗଲେ । ୩୯
ବ୍ୟାସଙ୍କ ସହିତ ସର୍ବେ ଗଲେ ମେଳ ହୋଇ
ଋଷିମାନେ ଗୋବିନ୍ଦଚନ୍ଦ୍ର ହରି ଗୁଣ ଗାଇ । ୪୦
ହସ୍ତିନା ନଗରେ ସର୍ବେ ଯାଇଣ ମିଳିଲେ
ମାତା ସତ୍ୟବତୀ, ଭୀଷ୍ମ ଚରଣ ବନ୍ଦିଲେ । ୪୧
କହିଲେ ସଞ୍ଜୟ ମନ୍ତ୍ରୀ ଶୁଣ ନରପତି
ମିଳିଲେ ଜନକ ବ୍ୟାସ କୁଟୁମ୍ବ ଯେତିକି । ୪୨
କୋଇନ୍ତା, ଦେବକୀ, ବସୁଦେବଙ୍କ ସହିତ
ଆସିଛନ୍ତି ପାଣ୍ଡୁଙ୍କର ପାଞ୍ଚଗୋଟି ପୁତ୍ର । ୪୩
ପିତା ଆଗମନ ଜାଣି ଚରଣ ବନ୍ଦିଲେ
କୁନ୍ତୀ,କୁନ୍ତୀପୁତ୍ର ଗଣେ କଲ୍ୟାଣ ଇଚ୍ଛିଲେ । ୪୪
ଦେବକୀ, ବସୁଦେବଙ୍କୁ କଲେ ବହୁମାନ୍ୟ
ବନ୍ଧୁ, କୁଟୁମ୍ବାଗମନେ ଆନନ୍ଦିତ ମନ । ୪୫
ଦେବକୀ ଓ ବସୁଦେବ ଭୀଷ୍ମଙ୍କ ଚରଣେ
ପ୍ରଣିପାତ ହୋଇ ଧୀରେ ବସିଲେ ଆସନେ । ୪୬
କଂସର ଅନ୍ୟାୟ କଥା ଶୁଣି ଭୀଷ୍ମଦେବ
କଂସର ପ୍ରତି ଜାଗିଲା ଘୃଣା କ୍ରୋଧଭାବ । ୪୭
ଶାନ୍ତ ହୋଇ ବ୍ୟକ୍ତ କଲେ ଶାନ୍ତନୁ ନନ୍ଦନ
ତୁମ୍ଭେ ବିଷ୍ଣୁ ପିତାମାତା ନ ହୁଅ ବିଷର୍ଣ୍ଣ । ୪୮
କଷ୍ଟ କଲେ କୃଷ୍ଣ ମିଳେ ଶାସ୍ତ୍ରର ବଚନ
ସେ କାର୍ଯ୍ୟ କାରଣ ତୁମ୍ଭେ ଜଗତରେ ଧନ୍ୟ ।୪୯
କୁନ୍ତୀଙ୍କ ସହିତ ପୁତ୍ର ଭୀଷ୍ମଙ୍କ ଚରଣେ
ପ୍ରଣିପାତ ହୋଇ ଠିଆ ହୋଇଲେ ମଣ୍ଡନେ ।୫୦

ପାଣ୍ଡୁଙ୍କ ପାଞ୍ଚ ତନୟେ ଭୀଷ୍ମ କୋଳକରି
କଲ୍ୟାଣ ବାଞ୍ଛିଲେ ମଙ୍ଗଳ ବାକ୍ୟ ଉଚ୍ଚରି । ୫୧
କୋଳେ ବସାଇ ମୁଖରେ ଆଙ୍କିଲେ ଚୁମ୍ବନ
ଜାଣିଲେ ଶ୍ରୀହରି ଭକ୍ତ ପୁଣ୍ୟବନ୍ତ ଜନ । ୫୨
କୁରୁ ସାମ୍ରାଜ୍ୟ ରକ୍ଷକ ମାନମାପୂ ଭୀଷ୍ମ
ଜ୍ଞାତ ହେଲେ ପୁତ୍ର ଯୋଗୁଁ ରକ୍ଷା ହେବ ଧର୍ମ । ୫୩
ରାଜା ଧୃତରାଷ୍ଟ୍ର ସ୍ନେହେ ପୁତ୍ରେ କଲେ କୋଳ
ନୟନୁ ଗଡ଼ି ପଡ଼ିଲା ପ୍ରେମ ଅଶ୍ରୁ ଜଳ । ୫୪
ପାଣ୍ଡୁଙ୍କ ପ୍ରତି ତାଙ୍କର ରହିଥିଲା ସ୍ନେହ
ସେ ଭାବ ଜାଗ୍ରତ ହେଲା ଧରି ଭାଇ ପୁଅ । ୫୫
ଗାନ୍ଧାରୀ ପାଦରେ ପୁତ୍ରେ ହୋଇଲେ ପ୍ରଣତ
କୋଳ କରିନେଲେ ଦେବୀ କୁନ୍ତୀ ପାଞ୍ଚପୁତ୍ର । ୫୬
କୁନ୍ତୀ ପୁତ୍ରେ ସତ୍ୟବତୀ ଚରଣେ ପଡ଼ିଲେ
ପଣନାତି ଦେଖି ଦେବୀ ବହୁ ଶ୍ରଦ୍ଧା କଲେ । ୫୭
ସତ୍ୟବତୀଙ୍କର ଖୁସି କହିତ ନୁହଇଁ
ଜାଣିଲେ ଶାନ୍ତନୁ ବଂଶ ଗଲା ରକ୍ଷା ପାଇ । ୫୮
ଅମ୍ବିକା, ଅମ୍ବାଳିକାଙ୍କ ଚରଣ ପୂଜିଲେ
ନାତି କୋଳ କରି ଜେଜେମା ଆନନ୍ଦ ହେଲେ । ୫୯
ନଗରେ ରହିଲେ ସୁଖେ ପାଣ୍ଡୁଙ୍କ ନନ୍ଦନ
ଦେଖି ବସୁଦେବ ହେଲେ ଉଲ୍ଲସିତ ମନ । ୬୦
ଦେବକୀ ଓ ବସୁଦେବ ବ୍ୟାସ ସଙ୍ଗତରେ
ହସ୍ତିନାରୁ ଫେରି ନାନା ତୀର୍ଥବାସ କଲେ । ୬୧
କିଛି ଦିନାନ୍ତେ ସେମାନେ ମଥୁରା ଫେରିଲେ
ଶୁଣି ମଧୁପୁରବାସୀ ଆନନ୍ଦିତ ହେଲେ । ୬୨
ଗାନ୍ଧାରୀର ଶତପୁତ୍ର ସଙ୍ଗେ କୁନ୍ତୀ ପୁତ୍ର
ପ୍ରାସାଦରେ ବାସ କଲେ ହୋଇଣ ଏକତ୍ର । ୬୩
ବିଦ୍ୟାଗୁରୁ କୃପ, ବ୍ରହ୍ମା ବିଦ୍ୟା ଶିକ୍ଷା ଦେଲେ
ଯମୁନା ତୀରେ ଆଖଡ଼ା ନିର୍ମ କରାଇଲେ । ୬୪

ଅସ୍ତ୍ର ଶିକ୍ଷା ଦେଲେ ଶାନ୍ତ ହୋଇ ହୃଷ୍ଟ ମନ
ଏକଶ ପଢ଼ିଲେ ପାଠ ଶହେ ଛଅ ଜଣ । ୬୫
ଜୟ ଜୟ ଜଗନ୍ନାଥ ଜଗତ ବନ୍ଦନ
ଜଗତର ଖେଳା ଲୀଳା ତୁମର ଭିଆଣ । ୬୬
ଚରଣ ତଳେ ଶରଣ ପଶେ ବୃନ୍ଦାବାସ
ଛଅଷଠି ପଦେ ଅଧ୍ୟାୟ ହୋଇଲା ଶେଷ । ୬୭

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ଗୋପଲୀଳା ଖଣ୍ଡେ ପାଣ୍ଡୁ ପୁତ୍ରଙ୍କର ହସ୍ତିନା ଆଗମନେ ନାମ ଦ୍ୱାବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ । ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି-**



ମନ ବାଇରେ ! ମାନବ ଜନମ ସାରରେ
ଏ ଦେହ ଗୁଡ଼ିଲେ ଆଉକି ପାଇବୁ
ସଂସାରର ଖେଳ ଘରରେ । ଘୋଷା
ଗୁରୁ କରି ହୁଅ ଅଜର ଅମର
ଧ୍ୟାନ ରଖ ଗୁରୁ ପୟରେ
ଗୁରୁ ପଦାଶ୍ରିତ ହେଲେ ବାଇଧର
ଦେଖିବୁ ଆପନ ମନ୍ଦରେ । ୧
ଘାଇ ହଙ୍ଗେ ବାଇ ଖେଳ କରୁଛନ୍ତି
ହଂସ ସୋଽହଂ ବ୍ରହ୍ମ ଘରରେ
ଚନ୍ଦ୍ର ସୂର୍ଯ୍ୟ କୃଷ୍ଣ ଗଡ ବାରି ଧ୍ୟାନ
କଲେ ଦେଖା ଯାଇ ଦେହରେ । ୨
ଅକର୍ମ ସନ୍ତୋଷ ହୁଅନ୍ତି ଯୋଗୀବେଶ
ଆଶ୍ରୟ ହୁଅନ୍ତି ପାଖରେ
ବ୍ରହ୍ମପାଦ ପ୍ରାପ୍ତି ହେଲେ ବାଇଧର
ନ ଜନ୍ମଇ ଜୀବ ସଂସାରେ । ୩
ବୋଲେ ବୃନ୍ଦାବନ କର ବାଇ ଆଶ
ଅନ୍ଧବାସ ବାଇ ନାମରେ
ଉଦ୍ଧାରମ ଭାଜ ହରେ-ରାମ-କୃଷ୍ଣ ଅନ୍ତରେ ଅଜପା ସୁରରେ ।୪

# ତ୍ରୟୋତ୍ରିଂଶ ଅଧ୍ୟାୟ
## ଯମଳାର୍ଜ୍ଜୁନ ଭଞ୍ଜନ

( ରାଗ - ଶଙ୍କରାଭରଣ )

ଶୁଣ ସୁଜନେ ଶ୍ରୀକୃଷ୍ଣ ଚରିତ ମାନସ
କୃଷ୍ଣଙ୍କୁ ଆସି ହୋଇଲ ସପତ ବରଷ
କରନ୍ତି ଲୀଳା ରଚନ
କୃଷ୍ଣ ସଙ୍ଗେ ଖେଳିବାକୁ ବାଳୀଙ୍କର ମନ । ୧
ଗୋପର ଗୁଆଳୀ ଗଣେ ନିର୍ଜନ ସମୟେ
ଯମୁନାକୁ ସ୍ନାନ କରି ଚଳନ୍ତି ନିର୍ଭୟେ
ନଦୀ ତଟେ ନନ୍ଦ ସୁତ
ଏକାନ୍ତେ ଗୁଆଳୀ ଗଣେ କରନ୍ତି ସାକ୍ଷାତ । ୨
ରାଧିକା ସାଙ୍ଗେ ଉଭୟେ କରନ୍ତି ସ୍ନାହାନ
ପରସ୍ପର ଦେଖାଦେଖି ଆଖିର ମିଳନ
ଯେବେ ଭିଜା ବସନରେ
ଜଳରୁ ଉଠନ୍ତି ବାଳୀ ସ୍ନାହାନ ଶେଷରେ । ୩
ଛିନ୍ନ ବସନାବୃତ୍ତ ତନୁ କରି ଦର୍ଶନ
ବିମୁଗ୍‌ଧ ହୁଅନ୍ତି ମନେ ରସିକ ଶ୍ରୀକୃଷ୍ଣ
ଗୋପୀମାନଙ୍କୁ ଅନାଇ
ପୁଲକିତ ହେଉଥାନ୍ତି ଅଙ୍ଗ ଶୋଭା ଚାହିଁ । ୪
ଲାଜକୁଳି ଲତା ପରି କେ ଯାଏ ମଉଳି
ଆଖିରେ ଆଖି ମିଳାଇ କେଉଠେ ଲୁଚୁଳି
କେ ଚାହିଁ କୃଷ୍ଣଙ୍କୁ ନିରେଖି
କିଏ ବା ହୁଅଇ ମନ ମଧ୍ୟରେ ଅସୁଖୀ । ୫
ରାମଙ୍କର କଥା କିନ୍ତୁ କୃଷ୍ଣ ଠାରୁ ଭିନ୍ନ
ସ୍ତ୍ରୀଅଙ୍କଠାରେ ତାଙ୍କର ନ ବଳଇ ମନ
କଥାବାର୍ତ୍ତା ନ କରନ୍ତି
ଖେଳିବା ଦୂରର କଥା ଛୁଇଁ ନ ମାଡନ୍ତି । ୬

ଝିଅମାନେ ତାଙ୍କୁ ମଧ୍ୟ କରୁଥାନ୍ତି ଭୟ
ଦେଖିବା ମାତ୍ରେ ପଳାନ୍ତି ଦୂରେ ବାଳୀଚୟ
କୃଷ୍ଣ କଥା ବିପରୀତ
ଝିଅଙ୍କ ସଙ୍ଗେ ମିଶିବା ତାହାଙ୍କ ଚରିତ୍ର । ୭
ସେମାନଙ୍କୁ ତାଡ଼ାଇଣ ଆନନ୍ଦ ଲଭନ୍ତି
ସଖାଗଣ ଧରି ଧୂଳି ଘରେ ଭାଙ୍ଗି ଦିଅନ୍ତି
ଜଳ ଆଣୁଥିବା କାଳେ
ଟେକା ପକାଇ ମାଠିଆ ଭାଙ୍ଗନ୍ତି ନଟଖେଳେ । ୮
ମାଠିଆ ଭାଙ୍ଗନ୍ତେ ବସ୍ତ୍ର ଯାଏ ଓଦା ହୋଇ
ଦେହର ଲାବଣ୍ୟ ଦେଖି ହସନ୍ତି କହ୍ନାଇ
କିଏ ହସି ଚଳିଯାଏ
କେଉଁ ଗୋପୀ ଲଜ୍ଜା ପାଇ ଘରେ ଜଳିଯାଏ । ୯
କେ ଅବା ଗୁହାରି କରେ ମାତା ପାଶେ ଯାଇ
ଶାଶୁ ନଣନ୍ଦ କହାରି ଆକଟ କରଇ
କାହାରି ଘରେ ପଶିଣ
ଲବଣୀ ଖାଆନ୍ତି ବଳେ ଭାଣ୍ଡକୁ ଭାଙ୍ଗିଣ । ୧୦
ଅନ୍ଧାର ରାତରେ କାହିଁ ଭୂତ ରୂପ ହୋଇ
ଡରନ୍ତି ଶାଶୁ ନଣନ୍ଦେ ଅଦୃଶ୍ୟରେ ରହି
ନାନା ଉପଦ୍ରବ ମାନ
କରନ୍ତି ଗୋପରେ ନିତ୍ୟ ବାଳକ ଶ୍ରୀକୃଷ୍ଣ । ୧୧
ନିତ୍ୟ ଅଭିଯୋଗମାନ ଶୁଣନ୍ତି ଜନନୀ
ଆକଟ କରନ୍ତି ମାତା କରେ ସ୍ଫୁଟ ଯେନ
କାଳେ ହୋଇଯିବ ଶାନ୍ତ
ମାତ୍ର ଦୁଷ୍ଟାମି କାର୍ଯ୍ୟରେ ରହିଥାଏ ଚିତ୍ତ । ୧୨
ଗୋପୀଙ୍କର ଅଭିଯୋଗ ନ ଶୁଣନ୍ତି କୃଷ୍ଣ
ନିତି ନିତି ନୂଆ କଥା କରନ୍ତି ଉଆଣ
ମଜା ଦେଖିବା ନିମିତ୍ତ
ନାନାଦି ଉପାୟ ଚିନ୍ତା କରୁଥାନ୍ତି ନିତ୍ୟ । ୧୩

ନାନାଦି ଉପାୟେ ଚିନ୍ତା କରୁଥାନ୍ତି ନିତ୍ୟ ।
ଏକ ନୂଆ ପରିହାସ ଏକଦା ଚିନ୍ତିଣ
ଯମୁନା କୂଳେ ମିଳିଲେ ଏକାନ୍ତେ ଶ୍ରୀକୃଷ୍ଣ
ଦେଖିଲେ ଗୋପୀକାଗଣ
ଜଳେ ସ୍ନାନ କରୁଛନ୍ତି ହୋଇ ବିବସନ । ୧୪
ଧୀରେ ଧୀରେ ଯାଇ କୃଷ୍ଣ ବୃକ୍ଷରେ ଉଠିଲେ
ପତ୍ର ଉହାଡରେ ବସି ବସ୍ତ୍ର ହରିନେଲେ
ସ୍ନାନାନ୍ତେ ଜଳୁ ବାହାରି
ଦେଖିଲେ ବସନ ନାହିଁ କୂଳରେ କାହାରି । ୧୫
ଲଜ୍ଜାରେ ପାଟି କରିଲେ ସକଳ ଗୁଆଳୀ
ଦେଖିଲେ କଦମ୍ବ ଡାଳେ ବସେ ବନମାଳୀ
ସର୍ବେ ଲଜ୍ଜିତ ହୋଇଲେ
ଆପଣା ହାତେ ଶରୀର ଘୋଡ଼ାଇ ରଖିଲେ । ୧୬
ଚିତ୍କାର କରି ସକଳେ ମାଗିଲେ ବସନ
ବସନ ନ ଦେଇ ବଂଶୀ କରିଲେ ବାଦନ
ଶୁଣି ବାଳୀ ବିମୋହିତ
ବେନି କର ଊର୍ଦ୍ଧ୍ୱେ ଟେକି ଭିକ୍ଷାକଲେ ବସ୍ତ୍ର । ୧୭
ଶ୍ରୀକୃଷ୍ଣ କହିଲେ ତୁମ୍ଭେ କରିଅଛ ଦୋଷ
ଉଲଗ୍ନେ ପଶିଲ ଜଳେ କେବଳ ସାହାସ
ତୁମ ମୁଖେ ନାହିଁ ଲଜ୍ଜା
କୁଳ ମାନ ଗଉରବ ସବୁକଲ ତେଜ୍ୟା । ୧୮
କ୍ଷମା ମାଗିଲେ ତରୁଣୀ ଛୁଇଁ ବେନି ନେତ୍ର
ଜଣ ଜଣ ବାଣ୍ଟି ଦେଲେ ଯେ ଯାହାର ବସ୍ତ୍ର
ବସ୍ତ୍ର କରି ପରିଧାନ
ଜଳକୁମ୍ଭ କାଖେ ଧରି ଫେରିଲେ ବହନ । ୧୯
କଥାବାର୍ତ୍ତା ହୋଇ ଚଳି ଯାନ୍ତି ଗୋପୀଗଣ
କେ ବୋଲନ୍ତି ଗିରି କୃଷ୍ଣ ଯଶୋଦା ନନ୍ଦନ
ଭିକ୍ଷାଚାର ସାତ ବର୍ଷ

ରକ୍ଷାତାର ଯାତ ବର୍ଷ
ସତର ହୋଇଥିଲେ ହୁଅନ୍ତା ସର୍ବନାଶ । ୨୦
ଏକ ଗୋପୀ କଥା ରଖି ନ ପାରି ପେଟରେ
ଯଶୋଦାଙ୍କୁ ଜଣାଇଲା ରୁଷ୍ଟ ମାନସରେ
ଗୋପୀ ଅଭିଯୋଗ ଶୁଣି
ଅତ୍ୟନ୍ତ ଲଜ୍ଜିତା ହେଲେ ଯଶୋଦା ଜନନୀ । ୨୧
କ୍ରୋଧାନ୍ୱିତା ହେଲେ ମାତା ନାଶି ସୁଲଭରେ
ପିଟିଲେ ପୁଅକୁ ରାଗେ ତେନ୍ତୁଳି ଘୁଞ୍ଚରେ
କ୍ରନ୍ଦନ କରିଲେ କୃଷ୍ଣ
କାମରେ ଲାଗିଲେ ମାତା ନରୁହିଁ ବଦନ । ୨୨
ଉଚ୍ଚେ ସ୍ୱରେ ଟେକି ଯେତେ କଲେହେଁ କ୍ରନ୍ଦନ
ନ ହେଲା ମାତାଙ୍କର ମନ ପରିବର୍ତ୍ତନ
ମୁଖ ଦିଶେ ରକ୍ତବର୍ଣ୍ଣ
ଏପରି ରାଗିବା କେବେ ଦେଖିନ ନୟନ । ୨୩
ଯଶୋଦାଙ୍କୁ ନନ୍ଦରାଜା ପୁଛନ୍ତେ କାରଣ
ବୁଝାଇ ଦେଲେ ଯଶୋଦା କଥା ଅଘଟଣ
ଗୋପୀଙ୍କର ବସ୍ତ୍ର ହରଣ
କଥାଶୁଣି ଠୋ ଠୋ ହସିଲେ ନନ୍ଦରାଜନ । ୨୪
ମାତ୍ର ଯଶୋଦାଙ୍କ ରାଗ ନ ହୋଇଲା ଶାନ୍ତ
ନାରୀ ପ୍ରତି ଅମର୍ଯ୍ୟାଦା ସହନ୍ତେ କେମିନ୍ତ
ରାଗେ ଫଁ ଫଁ ନନ୍ଦରାଣୀ
ଦଧି ମନ୍ଥନ କାର୍ଯ୍ୟରେ ମନ ଦେଲେ ପୁଣି । ୨୫
ମାତାଙ୍କର ରାଗଶାନ୍ତ ନ ହୋଇବା ଜାଣି
ପାଖକୁ ଯାଇ ଟାଣିଲେ ପଣତର କାନି
ଭାବିଥିଲେ ଶିଶୁକୃଷ୍ଣ
କୋଳକରି ନେଇ ମୁଖେ ଆଙ୍କିବେ ଚୁମ୍ବନ । ୨୬
ବୁଲିପଡ଼ି ମାତା ପୁତେ ଅନାଇଲେ ସ୍ଥିତ
ମାତ୍ର ତାଙ୍କ ଆଖି ଥିଲା ରାଗେ ପ୍ରଜ୍ୱଳିତ

କାନ୍ଦ ଛଡ଼ାଇ ଚଳିଲେ
ଉଖୁଳି ଦୁଧ ହାଣ୍ଡିକୁ ଆଉଟି ବସିଲେ । ୨୭
ସେଠାରୁ ପଳାଇ ଯାଇ ଘରରେ ଶ୍ରୀକୃଷ୍ଣ
ଶିକାରେ ଲବଣୀ ଭାଣ୍ଡ କରଣ ଦର୍ଶନ
ଟେକା ମାରି ଭାଙ୍ଗି ଦେଲେ
ପଡ଼ିଲା ଲହୁଣୀ ଝରି ମାଟିର ଉପରେ । ୨୮
ଥାଳଆରେ ଧରି ତାହା କରିଲେ ଭୋଜନ
କିଛି ନେଇ ମାଙ୍କଡ଼କୁ କରିଲେ ଅର୍ପଣ
ଜନନୀ ଦେଖି ଏ ଦୃଶ୍ୟ
ରସିରେ ବାନ୍ଧିଲେ ପୁତ୍ର ପକାଇଣ ଫାଶ । ୨୯
ଠିଙ୍କିର ଦେହରେ ଦୃଢ଼େ ରସିକୁ ବାନ୍ଧଣ
କାମ କରିବାକୁ ମାତା କଲେ ପଳାୟନ
ବନ୍ଧା ହେବାରୁ ରାଗିଲେ
ବନ୍ଧନ ଫେଡ଼ିବାପାଇଁ ବହୁ ଚେଷ୍ଟା କଲେ । ୩୦
ଯେତେ ଟଣାଟଣି କଲେ ନ ଫିଟିଲା ଫାଶ
ଅଧିକ ଟାଣନ୍ତେ ଠିଙ୍କି ଘୁଞ୍ଚିଲା ଅବଶ୍ୟ
ଠିଙ୍କିଟାକୁ ଟାଣି ନେଇ
ଅର୍ଜୁନ ବୃକ୍ଷ ପାଖରେ ମିଳିଲେକ ଯାଇ । ୩୧
ଗୋଟିଏ ମୂଳରୁ ଦୁଇଶାଖା ବାହାରିଛି
ମଧ୍ୟ ଦେଶେ ରହିଅଛି ଟିକିଏ ତଫାତ
ଠିଙ୍କିଟାକୁ ଟାଣିନେଲେ
ବେନି ଶାଖା ଫାଙ୍କ ଦେଇ ଆର ପାଖ ଚଳେ । ୩୨
ଏ ପାଖେ ରହିଲା ଠିଙ୍କି ଆର ପାଖେ କୃଷ୍ଣ
ଛୁଡ଼ିଯିବ ଭାବ ରସି ଟାଣିଲେ ଦୃଢ଼େଣ
ବୃକ୍ଷ ଉପୁଡ଼ି ପଡ଼ିଲା
ଉପରେ ନ ପଡ଼ ଯାହା ବାପଘରେ ଗଲା । ୩୩
ବୃକ୍ଷ ପଡ଼ିବାରୁ ରସି ଛିଡ଼ି ହୋଇଗଲା
ଝିଙ୍କିବା ଉପାୟ ଆଉ ମୋଟେ ନ ରହିଲା

ଛୁଡ଼ିଗଲା ଗୋଡ଼ ହାତ
ପଡ଼ିଣ ରହିଲେ ତହିଁ ହୋଇ କ୍ଳାନ୍ତ ଶ୍ରାନ୍ତ । ୩୪
ଦୁଇଗୋଟି ଝିଅ ସେହି ବାଟେ ଯାଉଥିଲେ
ବୃକ୍ଷ ପଡ଼ିଥିବା ସ୍ଥାନେ ଯାଇଁଣ ମିଳିଲେ
ଜଣେ ବଡ଼ ଆଉ ସାନ
ଜଳ ଆଣିବାକୁ ଯାଉଥିଲେ ଦୁଇଜଣ । ୩୫
ବଡ଼ ଝିଅଟିର ରୂପ ଅତ୍ୟନ୍ତ ସୁନ୍ଦର
ଜଣାଯାଏ ବର୍ଷ ହେବ ଷୋଳ ବା ସତର
କୁଞ୍ଚିତ କେଶ ସୁନ୍ଦର
ତହିଁରେ ବାନ୍ଧିଛି ମଲ୍ଲୀ କୁସୁମର ହାର । ୩୬
ଆସୁଚି ଚମ୍ପୂରେ ତାର ଦୁଷ୍ଟାମି ଭରିଛି
ତା' ପାଦର ଗତି କି'ବା ନାଚି ଯାଉଅଛି
ଶୁଭେ ନୂପୁର ନିଃସ୍ୱନ
ରୁଣୁଝୁଣୁ ଶବ୍ଦ କରେ ରଙ୍ଗ ତାଳମାନ । ୩୭
ସେମାନଙ୍କୁ ଦେଖି କୃଷ୍ଣ ଲଜ୍ଜିତ ହୋଇଲେ
ଉତ୍ତର ନ ଦେଇ କିଛି ମଉନେ ରହିଲେ
ଯାଇ ଫିଟାନ୍ତେ ବନ୍ଧନ
ବାରଣ କରି କହିଲେ ଯଶୋଦା ନନ୍ଦନ । ୩୮
ମାତା ବାନ୍ଧିଅଛି ମୋତେ ସେହି ଫିଟାଇବ
ଅନ୍ୟ କେହି ଫିଟାଇଲେ ଜନନୀ ରାଗିବ
"କହିଲେ ମାତା ନିଷ୍ଠୁର
ଗେହ୍ଲିଆ ପିଲାକୁ ଦଣ୍ଡ ଦେଉଛି କଠୋର" । ୩୯
କୃଷ୍ଣ କହିଲେ ମୋ ମା ବଡ଼ ଦୟାବନ୍ତୀ
ବେଳେ ବେଳେ ଦେଇଥାଏ ଏହିପରି ଶାସ୍ତି
ରାଗିବା ନାରୀର ସ୍ୱଭାବ
ରାଗ, ଅନୁରାଗ ବେନି ମାତୃତ୍ୱର ଭାବ । ୪୦
ଲଳିତା କହିଲେ ତୁମ୍ଭେ ଅଟ ବଡ଼ ଦୁଷ୍ଟ
ତୁମ ଦୁଃଖ ଦେଖି ଆମ ମନ ଛଟପଟ

"ତୋଟି ଶୁଖି ଯାଉଅଛି
ପାଣି ଆଣିଦିଅ ବେଗେ କହିଲେ ଶ୍ରୀହରି" । ୪୧
କୃଷ୍ଣଙ୍କର କଥା ଶୁଣି ଲଜ୍ଜା ତେଜିଲେ
ରାଧା ଏକାଗ୍ରହ କୃଷ୍ଣ ସେବାରେ ଲାଗିଲେ
ଅଙ୍ଗ ଛିଣ୍ଡି ଯାଇଅଛି
ଝରଝର ହୋଇ ରକ୍ତ ଧାର ବହୁଅଛି । ୪୨
ବ୍ୟସ୍ତବ୍ୟସ୍ତ ହୋଇ ରାଧା ପଣତ କାନରେ
ପୋଛିଦେଲେ କ୍ଷତ ସ୍ଥାନ ସରଳ ଭାବରେ
ରାଧାସ୍ପର୍ଶ ପାଇ କୃଷ୍ଣ
ମେଣ୍ଟି ଗଲା ଅବସାଦ ପୁଲକିତ ମନ । ୪୩
ଗୋଲାପୀ ରଙ୍ଗର ମୁହଁ ଦିଶଇ ସୁନ୍ଦର
ନବୀନ ବୟସୀ କମନୀୟ କଳେବର
ବନ୍ଧନେ ବେନି ଆବଦ୍ଧ
ଆହ୍ଲାଦିନୀ ଶକ୍ତି ରାଧା ପ୍ରେମେ ଗଦଗଦ । ୪୪
ଶ୍ରଦ୍ଧାରେ ପୁଚ୍ଛିଲେ କୃଷ୍ଣ କି ନାମ ତୁମର ?
ଉତ୍ତରିଲେ ନବବାଳୀ "ରାଧା" ନାମ ମୋର
ବୃଷଭାନୁ ଜେମା ମୁହିଁ
ବୃନ୍ଦାବନେ ଘରି ଆମ ବାସ କରୁ ତହିଁ । ୪୫
ଗୋପପୁରେ ମାମୁଁଘର ଆସିଅଛି ମୁହିଁ
ଯମୁନାକୁ ଯାଉଥିଲୁ ଏହି ପଥ ଦେଇ
ବୃକ୍ଷ ଉପୁଡ଼ିବା କଥା
ଦେଖି ଆସିଲୁ ଏଠାକୁ ମନେ ବହି ଚିନ୍ତା । ୪୬
ଦେଖିଲୁ ଏଠାରେ ଆସି ତୁମ ଦୁରବସ୍ଥା
ଲଜ୍ଜିତ ହୋଇଲେ କୃଷ୍ଣ ଶୁଣି ତାଙ୍କ କଥା
ମନଭାବକୁ ଗୋପନ
ରଖି ପୁଲକିତ ହେଲେ ଆପଣାର ମନ । ୪୭
ରାଧା ନାମ ଶୁଣି କର୍ଣ୍ଣେ ହୃଦ ଦ୍ରବୀଭୂତ
ଅନୁମାନ କଲେ ନାମ ପୂର୍ବ ପରିଚିତ

ଅଚ୍ଛୁ ନିବିଡ ସମ୍ପର୍କ
ପ୍ରଥମ ଦର୍ଶନେ ପ୍ରୀତି ହୋଇଲା ଉଦ୍ରେକ
ଶ୍ରୀକୃଷ୍ଣ କହିଲେ ମୁହିଁ ନନ୍ଦର ନନ୍ଦନ
ଯଶୋଦା ଜନନୀ ମୋର ମୋହର ନାମ କୃଷ୍ଣ
ଶୁଣି ରାଧା ପ୍ରେମେ ମଗ୍ନ
ରାଧାକୃଷ୍ଣଙ୍କର ହେଲା ହାର୍ଦ୍ଦିକ ମିଳନ । ୪୯
ସଖା ଶ୍ରୀକୃଷ୍ଣଙ୍କୁ ଖୋଜି ଖୋଜି ସଖାଗଣ
ମିଳିଗଲେ ଅକସ୍ମାତ୍ ଆସି ସେହି ସ୍ଥାନ
ଦେଖିଲେ ବନ୍ଧନେ କୃଷ୍ଣ
ଉପୁଡ଼ି ପଡ଼ିଛି ବିଶାଳ ବୃକ୍ଷ ଅର୍ଜ୍ଜୁନ । ୫୦

ଆଶଙ୍କା କରିଣ ମନେ ସୁଦାମା ସୁବଳ
ସଖାଙ୍କ ଉଦ୍ଧାର ପାଇଁ ହୋଇଲେ ବିକଳ
ଡାକ ଛାଡ଼ିଲେ ବହନ
ଗୁହାଁ ଗୁହାଁ ହୋଇଗଲା ସ୍ଥାନ ଲୋକାରଣ୍ୟ । ୫୧
ନନ୍ଦ ଯଶୋଦା ଆସିଣ ସେଠାରେ ମିଳିଲେ
ବନ୍ଧନ ଫିଟାଇ ମାତା ପୁତ୍ରେ କୋଳ କଲେ
ଜାବୁଡ଼ି ଧଇଲେ କୃଷ୍ଣ
ଦୂର ହୋଇଗଲା ମନୁ ରାଗ କ୍ରୋଧମାନ । ୫୨
ଉପୁଡ଼ି ପଡ଼ିଣ ଥିବା ବୃକ୍ଷ ଦୁଇଗୋଟି
ଦେଖି ନନ୍ଦ ରାଜା ହେଲେ ନୟନ ତରାଟି
ମଣିଲେ ବିଚିତ୍ର କଥା
ଆସନ୍ନ ବିପଦୁ ଯାହା ବର୍ତ୍ତିଗଲା ପୁତ୍ର । ୫୩
ଗୋପପୁର ବାସୀ ଦେଖି ହୋଇଲେ ଅବାକ
କପରି ଉପାଡ଼ି ଦେଲା ଏ ବିଶାଳ ବୃକ୍ଷ
ନ ପଡ଼ିଲା ଯା ଉପରେ
ରଖିଲେ ମା ଭଗବତୀ ଅବୋଧ ଶିଶୁରେ । ୫୪

ପୁତ୍ରକୁ ଘେନି ଜନନୀ ପୁରେ ଚଳିଗଲେ
ଉପସ୍ଥିତ ଲୋକମାନେ ତାଜୁବ ହୋଇଲେ

ରାଧା ନନ୍ଦ ଘରେ ଆସି
ଚାଲିଗଲେ ନିଜ ଘରେ ଦଣ୍ଡେ ମାତ୍ର ବସି । ୫୫
ଅପୂର୍ବ ଲୀଳା କରନ୍ତି ଗୋପରେ ଶ୍ରୀକୃଷ୍ଣ
ବୃନ୍ଦାବନ ବସି କରେ ଗୁଣର କୀର୍ତ୍ତନ
ଛପନ ପଦେ ଅଧ୍ୟାୟ
ସମ୍ପୂର୍ଣ୍ଣ ହୋଇଲା ଶୁଣ ଚିତ୍ତ କରି ଥୟ । ୫୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଯାମଳାର୍ଜ୍ଜୁନ ଭଞ୍ଜନେ
ନାମ ତ୍ରୟୋବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ
ଶ୍ରୀକୃଷ୍ଣାର୍ପଣମସ୍ତୁ ।



# ଚତୁଃବିଂଶ ଅଧ୍ୟାୟ

## ଟିମାଣି ଖେଳ

( ରାଗ - ବଙ୍ଗଳାଶ୍ରୀ )

ଏଥୁ ଅନ୍ତେ ଶୁଣ    ଆହେ ସୁଜ୍ଞଜନେ
କୃଷ୍ଣ ଚରିତ ମାନସ
ପିତୃହରା ପୁଅ    ସହିତ ଜନନୀ
ହସ୍ତିନାରେ କଲେ ବାସ ।୧
କୃପାଚାର୍ଯ୍ୟ ଗୁରୁ    ବରଣ ହୋଇଣ
ଆଖଡ଼ା କରନ୍ତି ନିତ
ପାଠପଢ଼ା ସଙ୍ଗେ    ଅସ୍ତ୍ର ଶସ୍ତ୍ର ଶିକ୍ଷା
ରାଜପୁତ୍ରେ ଦେଉଥାନ୍ତି ।୨
ଦିନେ ରାଜପୁତ୍ରେ    କୌତୁକ ହୋଇଣ
ଖେଳିଲେ ବାଗୁଡ଼ି ଖେଳ
ଯୁଧିଷ୍ଠିର, ଦୁର୍ଯ୍ୟୋ-    ଧନ ମୂଳଗଣ୍ଡି
ଘେନି ନିଜ ଦଳ ବଳ ।୩
ପୂର୍ବରେ ରହିଲେ    ଧର୍ମ ଯୁଧିଷ୍ଠିର
ସଙ୍ଗେ ଘେନି ଚାରି ଭାଇ
ପଶ୍ଚିମେ କୌରବେ    ଆଡ୍ଡା ଜମାଇଲେ
ଦୁର୍ଯ୍ୟୋଧନ ଶତଭାଇ ।୪
ପ୍ରଥମରେ ଦୁଃଶା-    ସନ ଆରମ୍ଭିଣ
ଗୋଡ଼ାଇ ମାରିଲା ଧର୍ମ
ତାହା ଦେଖି ଭୀମ    ଗୋଡ଼ାଇ ମାରିଲା
ରାଗେ ହୋଇ ତମ ତମ ।୫
ଭୀମଠାରୁ ମାଡ    ଖାଇଣ କୌରବେ
ଜ୍ଞାନ ହରାଇ ପଡ଼ିଲେ
ବିଦୁର, ସଞ୍ଜୟ    ଖେଳ ସ୍ଥାନେ ମିଳି
ପୁତ୍ରେ ଚେତା କରାଇଲେ ।୬

ପୁଅ, ପୁତୁରଙ୍କ ମଧ୍ୟେ କଳଗୋଳ
ହେବାଜାଣି ଧୃତରାଷ୍ଟ୍ର
ଭବିଷ୍ୟତେ ଯେଷ୍ଣେ ଏପରି ଘଟଣା
ନ ହୁଏ ପୁନରାବୃତ୍ତ ।୭

ବହୁତ ବ୍ୟବସ୍ଥା ସ୍ୱରୂପ ନୃପତି
ପୁଚ୍ଛିଲେ ମନ୍ତ୍ରୀଙ୍କୁ ଗୃହିଁ
ଭୀମସେନ ପାଇଁ ମୋ ପୁତ୍ରେ ବିପତ୍ତି
ପଡ଼ିବ ଜାଣିଲି ମୁହିଁ ।୮

ବୋଇଲେ ସଞ୍ଜୟ ଆହେ ନରରାୟ
ଏହା ଯେବେ ତୁମ୍ଭ ମତ
ଟେକଳ ଥାଉଁ ଥାଉଁ ଉପାୟ କରଣ
ଅନ୍ତର କରିଅ ପୁତ୍ର ।୯

ମନ୍ତ୍ରୀ ପରାମର୍ଶ ପାଇ ଧୃତରାଷ୍ଟ୍ର
ପୁଚ୍ଛିଲେ ଡ଼ାକ ବିଦୁର
ଭୀମ ଯୋଗୁଁ କୁରୁ ପାଣ୍ଡବ ମଧ୍ୟରେ
ହୋଇଲା ଭାବ ଅନ୍ତର ।୧୦

ବିଦୁର କହିଲେ ଅଜ୍ଞାନ ବାଳକେ
ହୋଇଥାନ୍ତି ପ୍ରିୟା ପ୍ରିୟ
ଖେଳ କଉତୁକ କନ୍ଦଳକୁ ଧରି
ନ ହୁଅ ଭାଇ ଅଥୟ ।୧୧

ବାଳକ କଳିରେ ପିତା ହୋଇ ତୁମ୍ଭେ
କିମ୍ପା କରୁଅଛ କୋପ
ତୁମ୍ଭ ବ୍ୟତିରେକେ ବାପ ଛେଉଣ୍ଡଙ୍କ
କିଏ ଅଛି ମାଆ ବାପ ? ୧୨

ଧୃତରାଷ୍ଟ୍ର ବୋଲେ ଭୀମ ବଞ୍ଚିଥିଲେ
ମୋ ପୁତ୍ରଙ୍କୁ ଭଲ ନାହିଁ
ବିଦୁର କହିଲେ ଏହା ଯେବେ ସତ୍ୟ
ଅନ୍ତର କର ତନୟି ।୧୩

ବିଦୁର କଥାକୁ ଗୁରୁଜ୍ଞାନ କରି
ଧୃତରାଷ୍ଟ୍ର ମନ୍ଦମତି
ବଗୃହଲେ ପାଣ୍ଡୁ ଅନ୍ତର କରାଇ
ପରୋକ୍ଷରେ ଦେବେ ଶାସ୍ତି । ୧୪
ଏହି ସମୟରେ ଶଲ୍ୟ ଜଣାଇଲେ
ନିତି ପ୍ରତି ଭୀମସେନ
ଗଦା ବୁଲାଇବା ଅଭ୍ୟାସ କରୁଛି
ସ୍ୱରୂପ ଧରି ଭୀଷଣ । ୧୫
ତା ଗଦାଘାତରେ ଗିରି ଚୂର୍ଣ୍ଣ ହୁଏ
ବସୁମତୀ ପ୍ରକମ୍ପିତ
ଆକାଶକୁ ଚାହିଁ ଶପଥ କରଇ
କୌରବେ କରିବ ହତ । ୧୬
ତଆର ତୁମ୍ଭର ସନ୍ତାନ ମାନଙ୍କୁ
ରହିଥିବେ ସାବଧାନ
ଭୀମ ସଙ୍ଗେ ବାଦ ପ୍ରତିବାଦ କଲେ
ଅକାଳେ ତେଜିବେ ପ୍ରାଣ । ୧୭
ଏ ବେଳରେ ତାକୁ ଜାତ କଲା କୁନ୍ତୀ
ବାଳକାଳୁ ବଳବନ୍ତ
ବେନି ଗଦା ଧରି ପ୍ରଶରେ ବୁଲାଏ
ଦେଖି ସବେ ଭୟଭୀତ । ୧୮
ଶଲ୍ୟଠାରୁ ଅଳି ନିନ୍ଦା କଥା ଶୁଣି
ମନରେ କଲେ ବିଚାର
ଧୃଷ୍ଟି ନା ନବରେ ମୁନେ ରହିଥିଲେ
ପଡ଼ିବ ବିପତ୍ତି ଘୋର । ୧୯
ଏମନ୍ତ ସମୟେ ପାଣ୍ଡୁର ତନୟେ
ଧୃତରାଷ୍ଟ୍ର ସନ୍ନିଧିରେ
ତାଙ୍କ ପାଇଣ ଉପସ୍ଥିତ ହୋଇ
ପ୍ରଣମିଲେ ଚରଣରେ । ୨୦

" ବାବୁ ବାରୁଣାରେ ବାସ କର ଯାଇ
ଏଠାରେ ଲାଗୁଛି କଳି
ଏମନ୍ତ କଥା ଶୁଣି ଦୁଃଶା, ଦୁର୍ଯୋଧନ
ରାଗେ ଯାଉଛନ୍ତି ଜଳି । ୨୧

ଘର ଭାଇରେ ଯେମନ୍ତ ନ ହୁଏ
ବାରମ୍ବାର କଳଗୋଳ
ସେହି କଥା ଚିନ୍ତି ଆଦେଶ ଦେଉଛି
ବାରୁଣାବନ୍ତ କୁ ଚଲ । ୨୨

ରାଜା ଆଜ୍ଞା ଶିରେ ଧରି ଯୁଧିଷ୍ଠିର
ଗୃହକୁ ଆସିଲେ ଫେରି
ମାତାଙ୍କ ସହିତ ବିମର୍ଶ କଲେ
ଆପଣା ଧୈର୍ଯ୍ୟ ଆଦରି । ୨୩

ପିତୃହୀନ ପୁତ୍ର ମାନଙ୍କର ପ୍ରତି
କଠୋର ବିଧିର ଦେଖି
ଆକୁଳିତ ହୃଦେ କୋଇନ୍ତା ଜନନୀ
ପୁଛିଲେ ବିଦୁରେ ଡାକି । ୨୪

ସାନ୍ତ୍ୱନା ଦେଇଣ କହିଲେ ବିଦୁର
ଶୋଚନା ନକର ମାତ
ଦୁର୍ଜ୍ଜନଙ୍କ ଠାରୁ ଦୂରରେ ରହିବା
ସଜ୍ଜନ ପକ୍ଷେ ଉଚିତ । ୨୫

ଧୃତରାଷ୍ଟ୍ର ଅନ୍ଧ ହୋଇଛନ୍ତି ବୃଦ୍ଧ
ପ୍ରକୃତି ତାହାର ମନ୍ଦ
ଆଜହୁଁ ବିଶ୍ୱାସ ନ ଯିବ ଅନ୍ଧକୁ
ଚାହିଁ ମନେ ପ୍ରମାଦ । ୨୬

ଦୁଃଶା, ଦୁର୍ଯୋଧନ ସକଳେ ଦୁର୍ଜ୍ଜନ
ନକର ତାଙ୍କୁ ବିଶ୍ୱାସ
ବିଶ୍ୱାସ ଘାତକ ଅଟନ୍ତି ସେମାନେ
ଚାହୁଁଥାନ୍ତି ସର୍ବନାଶ । ୨୭

ଭୋଜନେ ଶୟନେ ନ ଯିବ ବିଶ୍ୱାସ
କପଟୀ ଅଟନ୍ତି ସେହି
ଛିଦ୍ର ପାଇ ତୁମ୍ଭ ଜୀବନ ନେବେ
ମନ୍ଦ ସ୍ୱଭାବ ଅଟଇ । ୨୮

ବିଳମ୍ବ ନକର ବାରୁଣା ବତକୁ
ଚଳି ଯାଅ ପୁତ୍ରେ ଧର
ରାଜାଜ୍ଞା ପାଳନ କରିବା ଉଚିତ
କର୍ତ୍ତବ୍ୟ ଅଟେ ତୁମ୍ଭରି । ୨୯

ପାଣ୍ଡୁ ପାଞ୍ଚ ପୁତ୍ରେ ପରାମର୍ଶ ଦେଇ
ଚଳିଗଲେ ଖଲ୍ୟତାତ
ମାତା ଓ ଭ୍ରାତାଙ୍କୁ ବୁଝାଇ କହିଲେ
ଯୁଧିଷ୍ଠିର ଧୀର ଚିତ୍ତ । ୩୦

ଆମ୍ଭେତ ସର୍ବଦା ଭକ୍ତି କରୁଥାନ୍ତୁ
ଧୃତରାଷ୍ଟ୍ର ପିତା ପାଦେ
ସେ କମ୍ପା ଆମ୍ଭର ଅମଙ୍ଗଳ ଚିନ୍ତା
କରୁଛନ୍ତି ନିଜ ହୃଦେ ? ୩୧

ପରକୁ ଯେ ପ୍ରାଣୀ ବୈରିତା ଚିନ୍ତଇ
ସେହି ଅଟେ ମନ୍ଦ ପ୍ରାଣୀ
ପର ମନ୍ଦ ଚିନ୍ତି ଆପେ ନାଶ ଯିବେ
କଥା ରହିବ ଧରଣୀ । ୩୨

ଧର୍ମ ଆଶ୍ରା କରି ବଞ୍ଚିଥିବା ଆମ୍ଭେ
ଆମ୍ଭମାନେ ନାହିଁ କୁଟ
ଧର୍ମ ଥିଲା ପ୍ରାଣୀ ସଙ୍କଟୁ ତରଇ
କାଳେ ନାଶ ଯାଏ ଦୁଷ୍ଟ । ୩୩

ପରମାର୍ଥ କହି ଧର୍ମଙ୍କ ନନ୍ଦନ
ମାତା ଭ୍ରାତା କଲେ ଶାନ୍ତ
କୌରବଙ୍କ ପ୍ରତି ରାଗ-ଈର୍ଷା-ହିଂସା
ତ୍ୟାଗକଲେ ପାଣ୍ଡୁ ସୁତ । ୩୪

ଧର୍ମ ପରାୟଣ          ମତେ କୁନ୍ତୀ ମାତା
ବିଳମ୍ବ ନକରି ଚଳେ
ଭାଗ୍ୟ ଅନୁସରି          ପୁତ୍ର ଗଣେ ଧରି
ବାରୁଣା ବତେ ଚଳିଲେ । ୩୫

ବାଳକ କାଳରୁ          କୁରୁ ପାଣ୍ଡବରେ
ବିଭେଦ ନଥା ବଢ଼ିଲା
ଉଭୟ କୁଳର          ପିତା ଧୃତ ରାଷ୍ଟ୍ର
ସମାଧାନ ନକରିଲା । ୩୬

ସାମାନ୍ୟ ଦୋଷରୁ          ସ୍ଥାନାନ୍ତର ହେତୁ
ବୈରି ଭାବ ବୃଦ୍ଧି ପାଇ
ପାଣ୍ଡୁ ପାଞ୍ଚପୁତ୍ରେ          ଜ୍ୟେଷ୍ଠ ପିତା ସ୍ନେହୁଁ
ରହିଲେ ବଞ୍ଚିତ ହୋଇ । ୩୭

ଭାଇ ଭାଇ ମଧ୍ୟେ          ବିଭେଦ କରାନ୍ତେ
ସଦ୍‌ଭାବ ହେଲା ବିନାଶ
ବାଲ୍ୟକାଳୁ ବେନି          ପକ୍ଷରେ ବିବାଦ
ବାଳରୁ ଦୃଷ୍ଟ ପ୍ରକାଶ । ୩୮

ବାରୁଣାବତରେ          ବାସ କରି ପୁତ୍ରେ
ଆସନ୍ତି ହସ୍ତିନା ନିତି
ଧୃତ ରାଷ୍ଟ୍ର ପାଦେ          ପ୍ରଣାମ କରି ସେ
ଆଜ୍ଞା ପାଳେ ବସନ୍ତି । ୩୯

ଦ୍ରୋଣ କୃପାଚାର୍ଯ୍ୟ          ପଢ଼ା ଅନ୍ତ ପାଠ
ଭୀଷ୍ମ ଦ୍ୟନ୍ତି ଅସ୍ତ୍ର ଶିକ୍ଷା
ବୁଲଦାସ ହୃଦେ          ଧର୍ମ ନାମ ଘୋଷି
ଆଜ୍ଞା ପାଳେ ପ୍ରତୀକ୍ଷା । ୪୦

ଏକ ଶ୍ଳୋକରେ          ଅଧ୍ୟାୟ ସମ୍ପୂର୍ଣ୍ଣ
ସୁଜନେ ନଧର ଦୋଷ
ପଦ ପଦକରେ          ରସ ପୂରି ଅଛି
କୃଷ୍ଣ ଚରିତ ମାନସ । ୪୧

ଇତି ଶ୍ରୀ କୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ବିମାଣି ଖେଳ ବର୍ଣ୍ଣନେ ନାମ
ଚତୁଃବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



# ପଞ୍ଚବିଂଶ ଅଧ୍ୟାୟ
# କର୍ଣ୍ଣଙ୍କର ଧର୍ନୁବିଦ୍ୟା ଶିକ୍ଷା

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀ କୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
ପଦ ପଦକରେ ମଧୁ ଝରୁ ଅଛି
ପାନ କର ଦେଇ ମନ । ୧

ଅଧିରଥଙ୍କର ନନ୍ଦନ ରାଧେୟ
ବିଦ୍ୟା ଅଧ୍ୟୟନ ପାଇଁ
ଗୁରୁକୁଳାଶ୍ରମେ ଗମନ କରିଲେ
ସ୍ଥାନ ନ ମିଳିଲା କାହିଁ । ୨

ସୂତ ପୁତ୍ର ବୋଲି ଆଶ୍ରମେ ରଖାଇ
ନ କରିଲେ ବିଦ୍ୟାଦାନ
ଶିକ୍ଷା ପାଇବାରୁ ବଞ୍ଚିତ ହୋଇଣ
ବିଷାଦିତ ହେଲେ କର୍ଣ୍ଣ । ୩

ଏଥୁ ଜ୍ଞାତ ହେଲେ ଗୁରୁକୁଳା ଶ୍ରମ
ହୋଇଅଛି କଳୁଷିତ
ଗୁରୁମାନେ ଆଜ ପରଂପରା କ୍ରମେ
ଭୁଲିଛନ୍ତି କର୍ତ୍ତବ୍ୟ ରତ । ୪

ଏ ଆର୍ଯ୍ୟାବର୍ତ୍ତରେ ଆଶ୍ରମ ଶିକ୍ଷାରେ
ହୋଇଅଛୁ ଅବକ୍ଷୟ
ବନ ବିଦ୍ୟାଳୟ ପରିବର୍ତ୍ତେ ଗଢି
ଉଠେ ନଗ୍ରେ ଶିକ୍ଷାଳୟ । ୫

ଶିକ୍ଷଦାତା ମାନେ ଆଶ୍ରମେ ନ ରହି
ରହିଲେ ଗ୍ରାଜନବରେ
ରାଜ କୁମାରଙ୍କୁ ଶିକ୍ଷାଦାନ କଲେ
ରାଜଭୋଗ ଲାଳସାରେ । ୬

ବିଦ୍ୟାର୍ଜ୍ଜନ ପାଇଁ ଗୁରୁକୁଳାଶ୍ରମେ
ନଗଲେ ଆଉ ବିଦ୍ୟାର୍ଥୀ
ବରଂ ଗୁରୁମାନେ ନଗରକୁ ଆସି
ହୋଇଲେ ବୃତ୍ତିର ପ୍ରାର୍ଥୀ । ୭
ଶିକ୍ଷାଦାନ ନାମେ ରାଜ ନବରରେ
ବୈଭବ, ବିଳାସ ମଧ୍ୟେ
ବସି ବାସ କରି ଶିକ୍ଷା ଦାନ କଲେ
ରାଜ ପୁତ୍ରେ ଅପ୍ରମାଦେ । ୮
ତେଜ, ତପସ୍ୟାର ଅଧିଷ୍ଠାତା ବିପ୍ରେ
ଭୋଗ ବିଳାସରେ ମାତି
କାଞ୍ଚନ ପ୍ରାପ୍ତି ରାଜାଙ୍କ ଅଧୀନେ
ପାଇଲେ କର୍ମ ନିଯୁକ୍ତି । ୯
ତେଣୁ ରାଜ ପୁତ୍ରେ ଜାଣି ନ ପାରିଲେ
ଆଶ୍ରମ ଶିକ୍ଷା ମହାତ୍ମ୍ୟ
ଅରଣ୍ୟେ ସମିଧ ସଂଗ୍ରହ ଯନ୍ତ୍ରଣା
ବ୍ରହ୍ମଚର୍ଯ୍ୟ ଆଚରଣ । ୧୦
ଶିକ୍ଷା ଦେଉଥିବା ବେଳେ ସାଧନା, ତପସ୍ୟା
ବ୍ରତାଦି ତ୍ୟାଗ କରିଣ
ରାଜାଶ୍ରୟ ସେବା କର୍ମ ହୋଇଗଲା
ବିପରୀତ ହେଲା ଗୁଣ । ୧୧

ଗୁଣାତ୍ମକ ଶିକ୍ଷା ମାନ ହ୍ରାସ ପାଇ
ଶିକ୍ଷାର୍ଥୀ ମାନଙ୍କ ସ୍ୱଚ୍ଛ
ତାରୁ ସେମାନଙ୍କ ରୁଚି ବୟସ୍କରେ
କଲେ ବେଶୀ ଦୃଷ୍ଟିପାତ । ୧୨

ଏପରି ପ୍ରବୃତ୍ତି ଶିକ୍ଷାକୁ କରିଲା
ଖେଳନାରେ ପରିଣତ
ତେଣୁ ଶିଷ୍ୟ ପ୍ରତି ପ୍ରୀତ ଗୁରୁଙ୍କର
ହ୍ରାସ ପାଇଲା କହୁଁଛି । ୧୩

କୃପାଚାର୍ଯ୍ୟ ସାନ୍ଦୀ- ପନି, ବ୍ୟାସଦେବ
ଆଦି ଯେତେ ଗୁରୁଜନ
ସମାଜର ଉଚ୍ଚ ଜାତିଙ୍କୁ କେବଳ
ଦେଉଥିଲେ ଶିକ୍ଷାଦାନ । ୧୪

ଗୁରୁକୁଳାଚାର୍ଯ୍ୟ ଦ୍ରୋଣ କୃପାଚାର୍ଯ୍ୟ
ବାସ କଲେ ହସ୍ତିନାରେ
ଗୁରୁ ସାନ୍ଦୀପନି ଆଶ୍ରମ କରିଲେ
ଯାଇ ଅବନ୍ତୀ ନଗରେ । ୧୫

ଭ୍ରାମ୍ୟମାଣ ଶିକ୍ଷା କେନ୍ଦ୍ରମାନ ଖୋଲି
ଦେଉଥିଲେ ଶିକ୍ଷାଦାନ
ମାନ୍ୟ କରୁଥିଲେ ରାଜଗୁରୁ ରୂପେ
ଆର୍ଯ୍ୟାବର୍ତ୍ତ ନୃପ ଗଣ । ୧୬

ପୁଣ୍ୟ କୁରୁକ୍ଷେତ୍ରେ ଆଶ୍ରମ କରିଣ
ବାସ କଲେ ବେଦବ୍ୟାସ
କେବଳ ବ୍ରାହ୍ମଣେ ବେଦ ଶିକ୍ଷା ପାଇଁ
ହୋଇଥିଲେ ତାଙ୍କ ଶିଷ୍ୟ । ୧୭

ଗୁରୁକୁଳାଶ୍ରମ ଶିକ୍ଷାସ୍ତରେ ହେଲା
ଏ ଯୋଗୁଁ ପରିବର୍ତ୍ତନ
ତାହାର ଦେଶର ଜନ ସାଧାରଣ
ନ ପାଇଲେ ଶିକ୍ଷା ଦାନ । ୧୮

ତେଣୁ ସେହି ଶିକ୍ଷା ଗଣଶିକ୍ଷା ରୂପେ
ହରାଇ ଦେଲା ମାନ୍ୟତା ।
ଘୃଣ୍ୟ ଜାତି ଭେଦ ଗ୍ରାସ କରିଗଲା
ସୂର୍ଣ୍ଣ ସମାଜ ବ୍ୟବସ୍ଥା । ୧୯
ପ୍ରଚଳିତ କର୍ମ ସମ୍ବୃଜନ ପ୍ରଥା
ଧୀରେ ଧୀରେ ଧ୍ୱଂସ ହେଲା
ଜାତି, ବର୍ଣ୍ଣ ବ୍ୟବ- ସ୍ଥା କୁ ଦୃଢ଼ୀଭୂତ
କରି ସାମନ୍ତ ଗ୍ରାସିଲା । ୨୦
ଚଣ୍ଡାଳର କର୍ମ କରି ବିପ୍ରବର
ବ୍ରାହ୍ମଣ ହୋଇ ରହିଲା
ବ୍ରହ୍ମଜ୍ଞାନୀ ହୋଇ ମଧ୍ୟ ଅବ୍ରାହ୍ମଣ
ଅସ୍ପୃଶ୍ୟ ହୋଇଣ ଗଲା । ୨୧
ସୂତ ପୁତ୍ର କର୍ଣ୍ଣ ସେହି କାରଣରୁ
ଗୁରୁକୁଳ ଆଶ୍ରମରେ
ଶିକ୍ଷା ପାଇବାରୁ ବଞ୍ଚିତ ହୋଇଣ
ଅସ୍ପୃଶ୍ୟ ହୋଇଣ ରହିଲେ । ୨୨
ମାତ୍ର ବିଦ୍ୟାର୍ଜ୍ଜନ କରିବାକୁ ମନେ
ଦୃଢ଼ ସଂକଳ୍ପ କରିଣ
ପର୍ଶୁରାମଙ୍କର ପ୍ରତିଷ୍ଠା ଶ୍ରବଣେ
ସେଠାକୁ କଲେ ଗମନ । ୨୩
ମନ ମଧ୍ୟେ କର୍ଣ୍ଣ ଧରି ନେଇଥିଲେ
କ୍ଷତ୍ରିହନ୍ତା ପର୍ଶୁରାମ
ତାଙ୍କ ପରି ଜଣେ ବ୍ୟଥିତ ଶିଷ୍ୟକୁ
କରିବେ ଶିକ୍ଷା ପ୍ରଦାନ । ୨୪
ଏମନ୍ତ ବିଶ୍ୱାସ ଗୁରୁ ପର୍ଶୁରାମ
ଆଶ୍ରମେ ମିଳିଲେ ଯାଇ
ବ୍ରହ୍ମଋଷି ରୂପେ ପରିଚୟ ଦେଇ
ରହିଲେ ଆଦେଶ ପାଇ । ୨୫

କର୍ଣ୍ଣଙ୍କର ରୂପ ଗୁଣସ୍ୱଭାବରେ
ତୁଷ୍ଟ ହୋଇ ପର୍ଶୁରାମ
ଅସ୍ତ୍ରଶସ୍ତ୍ର ବିଦ୍ୟା ଶିକ୍ଷାଦାନ ଦେଇ
ଗଢ଼ିଲେ କରି ମହାନ । ୨୬
ବିବିଧ ପ୍ରକାର ଅସ୍ତ୍ରଶସ୍ତ୍ର ବିଦ୍ୟା
ସାଧିଅନ୍ତେ ବୀର କର୍ଣ୍ଣ
ଯୋଗ୍ୟ ଶିଷ୍ୟ ଭାବି ଶବ୍ଦଭେଦୀ ବିଦ୍ୟା
ଶିକ୍ଷାଦେଲେ ପର୍ଶୁରାମ । ୨୭
କାରଣ ସେ ଜାଣି ଥିଲେ କର୍ଣ୍ଣବୀର
କ୍ଷତ୍ରିୟ ସାଧନେ କ୍ଷମ
ଯୋଗ୍ୟ ଶିଷ୍ୟ ଭାବି ବ୍ରହ୍ମଅସ୍ତ୍ର ବିଦ୍ୟା
ଶିକ୍ଷା ଦେଲେ ଗୁରୁବ୍ରହ୍ମ । ୨୮
ଗୁରୁଙ୍କର ପ୍ରିୟ ଶିଷ୍ୟ ଭାବେ କର୍ଣ୍ଣ
ପ୍ରମତ୍ତ ଗୁରୁ କଲ୍ୟାଣେ
ଗୁରୁଙ୍କ ସେବାରେ ସଦା ନିୟୋଜିତ
କାୟ-ବାକ୍ୟ-ମନ-ପ୍ରାଣେ । ୨୯
ଦିନେ ପର୍ଶୁରାମ କର୍ଣ୍ଣଙ୍କ ଜଂଘରେ
ମଥା ରଖି ନିଦ୍ରା ଗଲେ
ଏକାଳେ ନିଷ୍ଠୁର କୀଟ କାହୁଁ ଆସି
ଜଂଘକୁ କାଟିଲା ବଳେ । ୩୦
ପ୍ରବଳ ଭାବରେ ରକ୍ତସ୍ରାବ ସଙ୍ଗେ
ହେଲେ ହେଁ ବହୁ ଯନ୍ତ୍ରଣା
ମାତ୍ର ଗୁରୁଙ୍କର ନିଦ୍ରାରେ ବ୍ୟାଘାତ
ହେବ ଜାଣି ମହାମନା । ୩୧
ଅସୀମ ଧୈର୍ଯ୍ୟର ସହିତ ଯନ୍ତ୍ରଣା
ସହ୍ୟ କଲେ ଧୀରସ୍ଥିର
କୀଟଦଂଶ ରକ୍ତ- ସ୍ରାବ ଅଙ୍ଗ ସ୍ପର୍ଶେ
ନିଦ୍ରାଭଙ୍ଗ ଗୁରୁଙ୍କର । ୩୨

ଏ ବିଚିତ୍ର ଦୃଶ୍ୟ - ଦେଖି ପର୍ଶୁରାମ
କହିଲେ ଧନ୍ୟ ତୋ ଧୈର୍ଯ୍ୟ
କ୍ଷତ୍ରିୟ ବ୍ୟତୀତ ବ୍ରାହ୍ମଣ ପାଖରେ
ଏତେ ପରିମାଣ ଧୈର୍ଯ୍ୟ । ୩୩
ଦେଖା ଯିବା କେବେ ସମ୍ଭବ ନୁହଁଇ
ସନ୍ଦେହ ତୋହର କାର୍ଯ୍ୟ
କ୍ଷତ୍ରିୟ ସନ୍ତାନ ନିଶ୍ଚୟ ତୁ ଅଟୁ
ପରିପୂର୍ଣ୍ଣ ଶୌର୍ଯ୍ୟ ବୀର୍ଯ୍ୟ । ୩୪
ମୋ ସଙ୍ଗେ ବିଶ୍ୱାସ- ଘାତକତା କଲୁ
ଉଦ୍ଦେଶ୍ୟ ତୋହର ମନ୍ଦ
ମୁଁ ଠାରେ ମିଥ୍ୟା ପରିଚୟ ଦେଇ
କଲୁ କିମ୍ପା ବିଦ୍ୟା ସାଧ ? । ୩୫
ତୋହ କୁଳ ଗୋତ୍ର ଯଦ ତୁ ନ ଜାଣୁ
କ୍ଷତ୍ରିୟ ନୁହେଁ ବୋଲିଣ
କପଟ ଶପଥ କଲୁ ମୋ ଆଗରେ
କର ସନ୍ଦେହ ମୋଚନ । ୩୬
ନିର୍ଦ୍ଦୟରେ ସୂକ୍ତ କରି କହୁଛନ୍ତି
ଗୁରୁଙ୍କ ସମ୍ମୁଖେ କର୍ଣ୍ଣ
ଯା' ଜନ୍ମ ବୃତ୍ତାନ୍ତ ଜଣା ଯାଇ ନାହିଁ
ନୁହଁଇ କି ସେ ବ୍ରାହ୍ମଣ ? ୩୭
ଉତ୍ତରିଲେ ଗୁରୁ ସବୁ ହୋଇ ପାରେ
ମାତ୍ର ନ ହେବ ବ୍ରାହ୍ମଣ
ବ୍ରାହ୍ମଣ ନିକଟେ ଯନ୍ତ୍ରଣା ସହିବା
ଧଇର୍ଯ୍ୟ ନ ଥାଏ ଜାଣ । ୩୮
ସମଗ୍ର ଜୀବନ ସିଏ ଜାତିଗତ
ଶତ୍ରୁତାକୁ ଆଜ କରି
ଏକବିଂଶ ବାର ନିକ୍ଷତ୍ରି କରିଛି
ଦର୍ପେ ଆର୍ଯ୍ୟାବର୍ତ୍ତ ଭୂର । ୩୯

ଆଜ ଜାତିଗତ ପ୍ରଥାକୁ କପଟ
ବିସ୍ମରି କରିବ ଭିନ୍ନ
କହ ଭୃ କି ଲଭେ ବ୍ରହ୍ମାସ୍ତ୍ର ମୋ ଠାରୁ
କରିଲୁ ଅପହରଣ ? । ୪୦
ଉତ୍ତରିଲେ କର୍ଣ୍ଣ ଶତ୍ରୁ ପରାଜୟ
ପାଇଁ ନେଇଅଛି ଅସ୍ତ୍ର
କ୍ରୋଧେ ଅଭିଶାପ ଦେଇ ସେ କହିଲେ
ଶୁଣ ଆରେ ଅବିଶ୍ୱସ୍ତ । ୪୧
ତୋ ଶତ୍ରୁ ନିଧନ କରିବା ନିମନ୍ତେ
ସାଧି କଲୁ ଯେଉଁ ଅସ୍ତ୍ର
ସଂଗ୍ରାମ ସମୟେ ଅଦୃଶ୍ୟ ହୋଇବ
ଶିକ୍ଷା କରିଥିବା ଅସ୍ତ୍ର । ୪୨
ପ୍ରୟୋଗ ପ୍ରଣାଳୀ ବିସ୍ମରଣ ହେବ
ଦେନ ଗୁରୁ ଅଭିଶାପ
ନିର୍ଭୟରେ କର୍ଣ୍ଣ କହିଲେ ହେ ଗୁରୁ
ଶାନ୍ତ କର ଏବେ କୋପ । ୪୩
ଭୟର ଚରମ ସୀମାରେ ମନୁଷ୍ୟ
ଯେପରି ହୁଏ ନିର୍ଭୟ
ତାହାହିଁ ଘଟିଲା କର୍ଣ୍ଣଙ୍କ କ୍ଷେତ୍ରରେ
ପୁଚ୍ଛିଲେ ଧୀରେ ବିଧେୟ । ୪୪
ଆପଣ ଯଦ୍ୟପି ଏକ ବିଂଶ ବାର
ନିକ୍ଷତ୍ରି କରିଲେ ମହୀ
ଆଜ କେଉଁ ପରି ଲକ୍ଷେ ନୃପବର
ପୃଥ୍ୱୀରେ ଅଛନ୍ତି ରହି ? । ୪୫
ଗର୍ଭବତୀ କ୍ଷତ୍ରି ନାରୀ ଗର୍ଭ ଚିରି
ମାରିଥିଲ ଗର୍ଭ ସୁତ
ପୁଣି କେଉଁ ପରି ଉତ୍ପତ୍ତି ହୋଇଲେ
ଲକ୍ଷ ଲକ୍ଷ ନୃପ ସୁତ । ୪୬

ରାମାୟଣ ମତେ କେବଳ ଅଯୋଧ୍ୟା
ନରପତି ଦଶରଥ
ଅପୁତ୍ରିକ ଥିବା ହେତୁ ସୂର୍ଯ୍ୟବଂଶ
ରାଜାଙ୍କୁ ନ କଲ ହତ । ୪୭

ନାରୀ ଗହଣରେ ନାରୀ ବେଶ ଧରି
ଲୁଚି ରହି ଦଶରଥ
ବଞ୍ଚାଇଲେ ପ୍ରାଣ ତାଙ୍କ ଔରଷରୁ
ଜନ୍ମିଲେ ବୈକୁଣ୍ଠନାଥ । ୪୮

କ୍ଷତ୍ରିୟ ବଂଶର ସୁରକ୍ଷା ନିମନ୍ତେ
କ୍ଷତ୍ରିୟ ବଂଶେ ସମ୍ଭୂତ
ହୋଇ ଆପଣଙ୍କ କଳା ହରି ନେଲେ
ଘେନଲ ସନ୍ୟାସ ବ୍ରତ । ୪୯

କର୍ଣ୍ଣ କଥା ଶୁଣି ବୋଲୁଛନ୍ତି ରାମ
ପ୍ରକୃତି କରିଲ ଜାତ
କ୍ଷତ୍ରିୟ ମାନଙ୍କୁ ହତ ହେଲେ ମଧ୍ୟ
କ୍ଷତ୍ରିୟ ନାରୀ ଜୀବିତ । ୫୦

ଯେଉଁ ଗର୍ଭବତୀ କ୍ଷତ୍ରିୟ ଯୁବତୀ
କରିଲେ ଆତ୍ମ ଗୋପନ
ଗର୍ଭର ସନ୍ତାନ ପ୍ରସବ କରିଣ
ଗୋପନେ କଲେ ପାଳନ । ୫୧

କ୍ରମେ କ୍ରମେ କ୍ଷତ୍ରି ବଂଶ ବୃଦ୍ଧି ପାଇ
ହୋଇଛନ୍ତି ଲକ୍ଷ ଲକ୍ଷ
ସ୍ୱେଚ୍ଛାଚାରୀ ହୋଇ ଶାସନ କରନ୍ତି
ଦିଅନ୍ତି ପ୍ରଜାଙ୍କୁ ଦୁଃଖ । ୫୨

ସେହି କ୍ଷତ୍ରିୟଙ୍କ ନିଧନ ନିମନ୍ତେ
ରଖିଥିଲି ବ୍ରହ୍ମ ଅସ୍ତ୍ର
ଯୋଗ୍ୟ ବିପ୍ର ସୁତେ ପ୍ରଦାନ କରିଣ
କରିବାକୁ କ୍ଷତ୍ରି ହତ । ୫୩

ମାତ୍ର ମିଥ୍ୟା କହି ତୋ ଶତ୍ରୁ ନିଧନେ
କ୍ଷମା ତା କଲୁ ଗ୍ରହଣ
ଅସତ୍ ଉପାୟେ ପ୍ରାପ୍ତ ବସ୍ତୁ କାଳେ
ହୁଏ ନାହିଁ ପ୍ରୟୋଜନ । ୫୪
ଉପାୟ ଓ ଲକ୍ଷ ଉଭୟ ପବିତ୍ର
ମାର୍ଗେ ହୋଇବା ଉଚିତ
ଉଦ୍ଦେଶ୍ୟ ମହତ ମାର୍ଗ କଳୁଷିତ
ହେଲେ ଫଳ ବିପରୀତ । ୫୫
ଗୋଟିଏ ପଦାର୍ଥ ତିନୋଟି ଉପାୟେ
ହୋଇଥାଏ ହସ୍ତଗତ
ଦତ୍ତ ବସ୍ତୁ, କ୍ରୟ- ବସ୍ତୁ, ଚୌର୍ଯ୍ୟ ବସ୍ତୁ
ନାମରେ ଏହା କଥିତ । ୫୬
ଦାନ ଦ୍ୱାରା ଯାହା ଗୃହୀତ ହୁଅଇ
ଦତ୍ତ ବସ୍ତୁ ଅଟେ ତାହା
କଣା ଯାଇଥିବା ବସ୍ତୁ କ୍ରୟ ବସ୍ତୁ
ଚୌର୍ଯ୍ୟ ବସ୍ତୁ ଚୋର ଯାହା । ୫୭
ଚୋର ଦ୍ୱାରା ଲବ୍ଧ ବସ୍ତୁ ଯେଉଁ ପର
ବ୍ୟବହୃତ ହୁଏ ନାହିଁ
ପ୍ରାପ୍ତି ମାର୍ଗେ ତାହା ଅପବିତ୍ର ହେତୁ
ବୈଧତା ନ ଥାଏ ତହିଁ । ୫୮
ସେହି ପରି ଅପ- ବିତ୍ର ମାର୍ଗେ ପ୍ରାପ୍ତ
ବିଦ୍ୟା ମଧ୍ୟ ଅପବିତ୍ର
ଉଦ୍ଦେଶ୍ୟ ପୂରଣ ନ କରିବ ତାହା
ଶୁଣ ଆହେ ଶିଷ୍ୟ ପୁତ୍ର । ୫୯
ଯୁକ୍ତି କରି କର୍ଣ୍ଣ କହୁଛନ୍ତି ସେହି
ଆପଣଙ୍କ କଥା ସତ୍ୟ
ପ୍ରକୃତ ଠୁ ବଡ ନାହିଁ କେ ଜଗତେ
ପ୍ରକୃତିରୁ ସୃଷ୍ଟି ଜାତ । ୬୦

ତେବେ ପ୍ରକୃତିକୁ ବ୍ରହ୍ମାସ୍ତ୍ର ବିନାଶ
କରିତ ପାରିବ ନାହିଁ
ନିୟତିକୁ କିଏ ଜିଣିବ ଜଗତେ
ମାନବ ଶରୀର ବହି ? । ୭୧

ପ୍ରକୃତି ତାହାର ନିଜସ୍ୱ ସୃଷ୍ଟିକୁ
ନିଶ୍ଚିତ ରକ୍ଷା କରିବ
ଏ ମହାନ ସତ୍ୟେ ବ୍ୟତିକ୍ରମ ନାହିଁ
ନାହିଁ ତାର ବିପରୀତ । ୭୨

ମୁଁ ଜାଣେ ମନୁଷ୍ୟ ଅନ୍ୟ ହାରି ନୁହେଁ
ନିଜର ବଇରୀ ହାରି
ନିଜେ ସେ ମରଣ ମୁଖରେ ପଡ଼ୁଛି
ମୀନେ ଯେସନ୍ତେ ଜାଲେ ଧରି । ୭୩

ଏଣୁ ମୋ ଶତ୍ରୁକୁ ନିଧନ ସହିତ
ମୋହ ଆତ୍ମ ରକ୍ଷା ପାଇଁ
ସେବା ଧର୍ମ ବଳେ ଆପଣଙ୍କ ଠାରୁ
ବ୍ରହ୍ମାସ୍ତ୍ର ଲଭିଲି ମୁହିଁ । ୭୪

ମୁନିଙ୍କ ଦକ୍ଷିଣପୂ ମୁକ୍ତିର ଉଦ୍ବୋଧ
କରି କହୁଛନ୍ତି କର୍ଣ୍ଣ
ମୁନି ବୃହସ୍ପତି ପୁଅ କଚ ଯେବେ
ବ୍ୟତିକ୍ରମ କି କାରଣ ? । ୭୫

ଗୁରୁ ଶୁକ୍ରାଚାର୍ଯ୍ୟ- ଠାରୁ ଅପହର
ଉପାୟେ ଆଣିତ ବିଦ୍ୟା
ଦେବ ହିତ କାର୍ଯ୍ୟେ ଲଗିଲା କିପରି
ତହିଁ କି ନ ଥିଲା ବାଧା ? । ୭୬

ଏଣୁ ମୋ ବିଚାରେ ଅନ୍ତଃ କରଣରୁ
ବଳି ବଡ଼ ଗୁରୁ ନାହିଁ
ବିବେକର ଠାରୁ ବଡ଼ ଜ୍ଞାନଦାତା
ଆଉ କେ ପାରିବ ହୋଇ ? । ୭୭

ସନ୍ତୋଷରୁ ବଳି ବଡ ଧନ ନାହିଁ
ଏହା ମୋର ଗୁରୁଜ୍ଞାନ
ସନ୍ତୋଷକୁ ଆଶ୍ରା କରି ବଞ୍ଚିଅଛି
ଆସୁ ଯେତେ ବାଧା ବିଘ୍ନ । ୬୮

କର୍ଣ୍ଣ ଯୁକ୍ତି ଶୁଣି ଗୁରୁ ପର୍ଶୁରାମ
କହୁଛନ୍ତି ଶୁଣ କର୍ଣ୍ଣ
ଜ୍ଞାନ ଲିପସା ପଛେ ପ୍ରତିହିଂସା ଭାବ
ରଖିବା ହୀନ ସାଧନ । ୬୯

ପ୍ରତିଶୋଧ ପାଇଁ ଅର୍ଜିତ ଯେ ବିଦ୍ୟା
ଲାଭ ଦାୟକ ନୁହଁଇ
ଦୁଇ ପାର୍ଶ୍ୱ ଧାର ତୀକ୍ଷ୍ଣ ତରବାରି
ଚାଳନେ ବିପଦ ଥାଇ । ୭୦

ଅସାବଧାନରେ ଚାଳନା କରିଲେ
ଯିବେନେ ଶସ୍ତ୍ରଧାରୀ ପ୍ରାଣ
ଏଣୁ ଶସ୍ତ୍ର ଧାରୀ ଶସ୍ତ୍ର ଚାଳନାରେ
ରଖଇ ସଞ୍ଜମ ଜ୍ଞାନ । ୭୧

ଜ୍ଞାନ ଦାନ ଅବା ଜ୍ଞାନ ଗ୍ରହଣରେ
ବ୍ରାହ୍ମଣ ବା ବ୍ରହ୍ମଚାରୀ
ଦୁହିଁଙ୍କ କର୍ତ୍ତବ୍ୟ ସ୍ଖଳିତ ହୁଅଇ
ହୋଇଲେ ସେ ବାମାଚାରୀ । ୭୨

ବିପ୍ର ପକ୍ଷେ ଶସ୍ତ୍ର- ଜ୍ଞାନଠୁ ଅଧିକ
ଲୋଡା ଥାଏ ଶାସ୍ତ୍ରଜ୍ଞାନ
ଶାସ୍ତ୍ରଜ୍ଞାନ ଠାରୁ ଶସ୍ତ୍ର ଜ୍ଞାନ ବେଶୀ
କ୍ଷତ୍ରିୟର ପ୍ରୟୋଜନ । ୭୩

ତପୋଠୁ ଅଧିକ ରାଜସିକ, ତାମ-
ସିକ ଶକ୍ତି ଲୋଡା ତାର
କ୍ଷମା ଠାରୁ ଦଣ୍ଡ ପ୍ରତିହିଂସା ମୁଖୀ
ଆଚରଣ କ୍ଷତ୍ରିୟର । ୭୪

ଧନ ଭଣ୍ଡାରର ଉତ୍ତରାଧିକାରୀ
ହୋଇ ପାରେ ଏକଜଣ
ପ୍ରତିଶୋଧର ଉ- ତ୍ତରାଧିକାରୀତ୍ୱ
ପାଇବା ବଡ଼ କଠିନ ।୭୫

ପ୍ରତିଶୋଧ ନେବା କାର୍ଯ୍ୟେ ମୁଁ ଅତ୍ୟନ୍ତ
ପ୍ରତିଶୋଧ ପରାୟଣ
ପରଂପରାଗତ ପ୍ରତିଶୋଧ ପ୍ରତି
ଜାଗରିତ ଅନୁକ୍ଷଣ ।୭୬

ଶିଷ୍ୟ ମାନଙ୍କର ବ୍ରାହ୍ମଣତ୍ୱ ପ୍ରତି
ନୁହେଁ ମୁଁ ଯେତେ ଜାଗ୍ରତ
ତାଙ୍କ ପ୍ରତି ହିଂସା- ଭାବନା ବହନ
କରିବାରେ ବ୍ରାହ୍ମଣତ୍ୱ ।୭୭

ଅନିବାର୍ଯ୍ୟ ସର୍ତ୍ତ ରୂପେ ରଖି ଅଛି
ଏହା ମୋ ଜୀବନ ବ୍ରତ
କାରଣ କ୍ଷତ୍ରିୟ ବିନାଶ ସାଧନେ
ଏକା ବ୍ରାହ୍ମଣ ସାମର୍ଥ ।୭୮

କ୍ଷତ୍ରିୟ ମାନଙ୍କ ବିନାଶ ଦାୟିତ୍ୱ
ବ୍ରାହ୍ମଣ ବ୍ୟତୀତ ଅନ୍ୟ
କେହିତ ବହନ କରିବାକୁ ମର୍ତ୍ତ୍ୟ-
ମଣ୍ଡଳ ନୁହଁନ୍ତି କ୍ଷମ ।୭୯

ଯେଉଁ ବ୍ରହ୍ମ ଅସ୍ତ୍ର ନିମନ୍ତେ ମୋହର
ଜୀବନ ଉତ୍ସର୍ଗୀକୃତ
ତାହାର ସୁରକ୍ଷା ଦାୟିତ୍ୱ କେବଳ
ବ୍ରାହ୍ମଣ ହସ୍ତେ ଅର୍ପିତ ।୮୦

ବ୍ରାହ୍ମଣ ବ୍ୟତୀତ ବହ୍ମଗୃହୀ ମାନେ
ସମ୍ଭାଳି ପାରିବେ ନାହିଁ
କ୍ଷତ୍ରିୟ ନିଧନ ନିମନ୍ତେ ଏ ଅସ୍ତ୍ର
ସାଇତି ରଖିଛି ମୁହିଁ ।୮୧

ଯେତେ ଧନ ଯାଏଁ          କ୍ଷତ୍ରିୟ ନିଧନ
ହୋଇ ନାହାଁନ୍ତି ପୃଥ୍ୱୀରେ
ପାପମୁକ୍ତ ହେବ-          ନାହିଁ ବସୁନ୍ଧରା
ଦୃଢ଼ ମନରେ ବିଚାରେ ।୮୨
ଦେଖ ଜାତିଗତ          ବିବାଦ ସର୍ବଦା
ଲାଗିଅଛି ସମାଜରେ
ମୁଁ କ୍ଷତ୍ରି ବିରୋଧୀ          ତୁ ଜାତି ବିରୋଧୀ
ବହ୍ନି ପ୍ରଜ୍ୱଳିତ କରେ ।୮୩
ସଂସାର ମଧ୍ୟରେ          କୌଣସି କରମ
ନୁହଁଇ ସହଜ ସାଧ୍ୟ
କିନ୍ତୁ ମନୁଷ୍ୟର          ପୁରୁଷାର୍ଥ କରେ
ସକଳ କାର୍ଯ୍ୟକୁ ସିଦ୍ଧ ।୮୪
ବ୍ରହ୍ମର୍ଷିଙ୍କର          କର୍ତ୍ତବ୍ୟମାତ୍ର ଅଟେ
ଆବୃତ୍ତି ଅଭ୍ୟାସମାନ
ଆସନ, ନିୟମ,          ପ୍ରାଣାୟାମ ସଙ୍ଗେ
ବିନୟ, ଅନୁଶାସନ ।୮୫
ମାତ୍ର ତୋ କାର୍ଯ୍ୟରୁ          ସୂଚିତ ହୁଅଇ
ସେ ସବୁର ବ୍ୟତିକ୍ରମ
କ୍ଷତ୍ରିୟ ପ୍ରବୃତ୍ତି          ଅସୀମ ଧଇର୍ଯ୍ୟ
ତୋର ସହଜାତ କର୍ମ ।୮୬
ଏଥୁ ଜଣାଯାଏ          ନିଶ୍ଚୟ ତୁ ଅଟୁ
କ୍ଷତ୍ରିୟ ଅଂଶରେ ଜାତ
ଜନକ ନ ହେଲେ          ଜନନୀ ନିଶ୍ଚୟ
କ୍ଷତ୍ରିୟ କୁଳ ସମ୍ଭୂତ ।୮୭
ତାହାର ଓଜରେ          ତୋହର ଶୌର୍ଯ୍ୟ
ସ୍ୱତଃଭାବେ ପରିସ୍ଫୁଟ
ନିଶ୍ଚୟ ତୋହର          ଶିରା ପ୍ରଶିରାରେ
ପ୍ରବାହିତ କ୍ଷତ୍ରି ରକ୍ତ ।୮୮

ଯେ ହେତୁ ଗୋପନ ରହିଛି ତୋହର
ଜନ୍ମ ଇତିହାସ କଥା
ତୋ ରୂପ ବର୍ଣ୍ଣରୁ ବାରି ହୋଇଯାଏ
କ୍ଷତ୍ରିୟ ତୋ ପିତା ମାତା ।୮୯

ବୁଝାଇ କହିଲେ ଗୁରୁ ପଶୁରାମ
ଶୁଣ ବିଦ୍ୟାର ଲକ୍ଷଣ
ଶବ୍ଦଭେଦୀ ବାଣ ସାଧି ଦଶରଥ
ଜୀବନ ହେଲା ବିପନ୍ନ ।୯୦

ରାତ୍ର କାଳେ ବନେ ମୃଗୟା ସମୟେ
ଜଳ କୁମ୍ଭ ପୂର୍ଣ୍ଣ ସ୍ୱନ
ଶ୍ରବଣ କରିଣ ହସ୍ତୀ ଜ୍ଞାନ କରି
ମାରି ଶବ୍ଦଭେଦୀ ବାଣ ।୯୧

ଅନ୍ଧ ମୁନିଙ୍କର ପୁତ୍ର ଜଳ ନେବା
କାଳେ କରିଲେ ନିଧନ
ବ୍ରହ୍ମଶାପ ପାଇ ରାଜା ଦଶରଥ
ଜୀବନ ହେଲା ବିପନ୍ନ ।୯୨

ଚାରିପୁତ୍ର ଜାତ- କରି ମୃତ୍ୟୁ କାଳେ
ନ ଦେଖିଲେ ପୁତ୍ର ମୁଖ
ରାମ ରାମ ଡାକି ଜୀବନ ଛାଡ଼ିଲେ
କରୁଣମୟ ଏ ଦୁଃଖ ।୯୩

ତୁମ୍ଭେ ସେହି ପରି ଶବ୍ଦଭେଦୀ ବିଦ୍ୟା
ସାଧନେ ହୋଇ ନିପୁଣ
ଧ୍ୱନି ପରିଚୟ ଜ୍ଞାନ ଅଭାବରୁ
ବଧିଲ ବିପ୍ର ଗୋଧନ ।୯୪

ବନେ ଚରୁଥିବା କାଳେ ବିପ୍ର ଗାଈ
ଶବ୍ଦଭେଦୀ ବାଣ ମାରି
ବଧ କରିବାରୁ ବ୍ରହ୍ମଶାପ ଦେଲେ
ବିପ୍ରବର କୋପ କରି ।୯୫

" କହୁଛନ୍ତି ଯୁଦ୍ଧ ପ୍ରାଙ୍ଗଣେ ତୋ ରଥ
ହୋଇଯିବ ଉପାଗତ
ରଥଚକ ତଳୁ ଉଠାଇବା କାଳେ
ଶତ୍ରୁ ହାତେ ହେବୁ ହତ । ୯୬
ନିଃସହାୟ ହୋଇ ଜୀବନ ତେଜିବୁ
ହୋଇ କ୍ଷତ୍ରି ବଳବନ୍ତ
ବିପ୍ର ଅଭିଶାପ କର୍ଣ୍ଣପଥେ ଶୁଣି
ଚହୋଇଗଲୁ ସ୍ତମ୍ଭୀଭୂତ । ୯୭
ତୋହର କର୍ଣ୍ଣରେ ଅମୃତ କୁଣ୍ଡଳ
ଦେଖି ରାଜପୁତ୍ର ଚିହ୍ନି
ସମ୍ମୁଖ ସମରେ ହତ ହୋଇବାକୁ
ଶାପ୍ୟ ଦେଲେ ବିପ୍ରମଣି । ୯୮
ଏ କଥା ସ୍ମରଇ କହୁଛନ୍ତି ଗୁରୁ
ବାଣ ପ୍ରୟୋଗ ପଦ୍ଧତି
ସାବଧାନତାରେ ପ୍ରୟୋଗ ନ କଲେ
ହୁଅଇ ବିପୁଳ କ୍ଷତି । ୯୯
ଶକ୍ତି ବିନା ପ୍ରାପ୍ତ ରାଜ୍ୟର ସୁରକ୍ଷା
ଯେହ୍ନେ ସମ୍ଭବ ନୁହଁଛି
ଗୁରୁ ଅନୁଗ୍ରହ ବିନା ଗୁରୁ ଦତ୍ତ
ବିଦ୍ୟା କାର୍ଯ୍ୟେ ଲଗେ ନାହିଁ । ୧୦୦
ତୁମ୍ଭେ ଯେତେ ବିଦ୍ୟା ମୋ ଠାରୁ ଶିଖିଛ
ତୁମ୍ଭଙ୍କୁ ଜଣିବା ପାଇଁ
ଏ ମହୀ ମଣ୍ଡଳେ ବୀର ଜନ୍ମି ନାହିଁ
ଅଦ୍ୱିତୀୟ ବୀର ତୁମ୍ଭ । ୧୦୧
ମାତ୍ର ଯୁଦ୍ଧ କ୍ଷେତ୍ରେ ସାଧି ଥିବା ବିଦ୍ୟା
ହେବ ନାହିଁ କାଳେ ଦୃଶ୍ୟ
ପ୍ରୟୋଗ ପ୍ରଣାଳୀ ବିସ୍ମରଣ ହୋଇ
ଆପଣେ ହେବୁ ବିନାଶ । ୧୦୨

ଋଷିପୁତ୍ରକୁ ଅସ୍ତ୍ର ବିଦ୍ୟା ଶିକ୍ଷା ଦେବା
ବିରୋଧୀ ଥିବାରୁ ମୁହିଁ
ଋଷି ଭାବ ତୋତେ ଶିକ୍ଷା ଦେଇଥିବା
ବିଦ୍ୟା ଆଣୁଛି ଫେରାଇ । ୧୦୩

ଏହା କହି ଗୁରୁ କୋପିତ ମନରେ
ଆଶ୍ରମୁ ଫେରାଇ ଦେଲେ
ଗୁରୁ ଅଭିଶାପ ପାଇ କର୍ଣ୍ଣବୀର
ବିଷର୍ଣ୍ଣ ମନେ ଫେରିଲେ । ୧୦୪

ମାତ୍ର ନିଜ ଶକ୍ତି ଉପରେ ବିଶ୍ୱାସ
ରଖି କାର୍ଯ୍ୟ ଆରମ୍ଭିଲେ
ଆପଣା ମନକୁ ଗୁରୁଜ୍ଞାନ କରି
ଧନୁର୍ବିଦ୍ୟା ସାଧି କଲେ । ୧୦୫

ଜୟ ଜୟ ଗୁରୁ ପ୍ରେମ କଳ୍ପ ତରୁ
ଶିଷ୍ୟ ଦୋଷ କ୍ଷମା କର
ଗୁରୁ ରୂପେ ଜ୍ଞାନ ନ କଲେ ପ୍ରଦାନ
ଅଜ୍ଞାନ କି ହେବ ଦୂର ? । ୧୦୬

ତୁମ୍ଭେ ଜ୍ଞାନ ଜ୍ୟୋତି ମୁଁ ଲିଭିଲା ବତୀ
କର ତାକୁ ପ୍ରଜ୍ୱଳିତ
ଗୁରୁଜ୍ଞାନ ବଳେ ଅମା ଅନ୍ଧକାର
ହୋଇଯାଉ ଦୂରୀଭୂତ । ୧୦୭

ଏହି ନିବେଦନ ଶ୍ରୀ ଚରଣେ ମୋର
ଘେନା କର ଗୁରୁ ବ୍ରହ୍ମ
ଜ୍ଞାନ ଶସ୍ତ୍ର ଧରି ଅଜ୍ଞାନ ଶତ୍ରୁକୁ
କରନ୍ତୁ ବେଗେ ଖଣ୍ଡନ । ୧୦୮

ଏକଶତ ନଅ ପଦରେ ଅଧ୍ୟାୟ
ଏଠାରେ ହୋଇଲା ଶେଷ
ହରେ-ରାମ-କୃଷ୍ଣ- ଶ୍ୟାମ-ଅଭିରାମ
ପାଠିଦେ ପଢେ ବାଳଦାସ । ୧୦୯

ଇତି ଶ୍ରୀକୃଷ୍ଣ ଚରିତମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ କର୍ଣ୍ଣଙ୍କର ଧନୁର୍ବିଦ୍ୟା ଅର୍ଜନେ
ନାମ ପଞ୍ଚତ୍ରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



# ଷଟ୍‌ତ୍ରିଂଶ ଅଧ୍ୟାୟ
## ଦ୍ରୋଣଙ୍କର କ୍ଷତ୍ରିୟ ବିଦ୍ୟା ସାଧନ
( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
ପଦ ପଦକରେ ଲାଳିତ୍ୟ ରହିଛି
ଗୀର ଭରେ ପରିପୂର୍ଣ୍ଣ ।୧

ପ୍ରୟାଗ ତୀର୍ଥରେ ପତ୍ନୀ ସହିତରେ
ବାସ କରୁଥିଲେ ଦ୍ରୋଣ
ଧର୍ମପତ୍ନୀ କୃପୀ ସନ୍ତାନ ପ୍ରସବ
ସମୟେ ତେଜିଲେ ପ୍ରାଣ ।୨

ମୃତା ପତ୍ନୀ ପେଟ ନଖେ ଚିରି ଦ୍ରୋଣ
ଜାତ କରାଇଲେ ପୁତ୍ର
ଅସମୟେ ଜାତ ହୋଇବାରୁ ଶିଶୁ
ଧ୍ୱନକରେ ଅଶ୍ୱବତ୍ ।୩

ନବଜାତ ଶିଶୁ କୋଳେ ଧରି ପିତା
ଅଶ୍ୱତ୍ଥାମା ନାମ ଦେଲେ
ଜାଣିଲେ ଏ ପୁତ୍ର କ୍ଷତ୍ରି ବିଦ୍ୟା ସାଧି
କୀର୍ତ୍ତିମାନ ହେବ ବଳେ ।୪

ମାତ୍ର ତାଙ୍କ ପକ୍ଷେ ନବଜାତ ଶିଶୁ
ପାଳନ କରିବା କଷ୍ଟ
ବିଚାରିଲେ ବନ୍ଧୁ ପାଞ୍ଚାଳ ନୃପଙ୍କ
ହସ୍ତେ ଦେବାକୁ ଦାୟିତ୍ୱ । ୫

ସ୍ୱଭାବେ କ୍ଷତ୍ରିୟ ଗୁଣ ଧରି ଶିଶୁ
ଅବତୀର୍ଣ୍ଣ ମହାଭାଗ
ରାଜ ପ୍ରାସାଦରେ ରାଜ ପରିବେଶେ
ରହିଲେ ହୋଇବ ଯୋଗ୍ୟ । ୬

ଏମନ୍ତ ବିଚାରି ପାଳନ ଦାୟିତ୍ୱ
ଦ୍ରୁପଦଙ୍କୁ ଦେବାପାଇଁ
ପାଞ୍ଚାଳ ରାଜ୍ୟରେ ପ୍ରବେଶ ହୋଇଲେ
ପୁତ୍ର ଘେନି ବିପ୍ରସାଇଁ । ୭

ସିଂହଦ୍ୱାରେ ଥାଇ ବନ୍ଧୁ ସମ୍ବୋଧନ
କରି ଡାକିବାରୁ ଦ୍ରୋଣ
ଦ୍ୱାରଦେଶୁ ବନ୍ଧୁ ଫେରାଇଣ ଦେଲେ
କହି କଠିନ ବଚନ । ୮

"ତାଚ୍ଛଲ୍ୟ କରିଣ କହିଲେ ରାଜନ
ଶୁଣ ଭିକ୍ଷୁକ ବ୍ରାହ୍ମଣ
ଧନୀ ଓ ନିର୍ଧନୀ ଦୁଇ ଜଣରୁ ମଧ୍ୟେ
ଥାଏ କି ବନ୍ଧୁତା ପଣ ? ୯

ଧନୀ ସଙ୍ଗେ ଧନୀ ମିତ୍ରଭାବ କରେ
ସମାନ ଐଶ୍ୱର୍ଯ୍ୟ ଜାଣି
ଭିକ୍ଷୁକ ସଙ୍ଗରେ ନୃପତିଙ୍କ ବନ୍ଧୁ
ଭାବ ଥିବା ନାହିଁ ଶୁଣି ।" । ୧୦

ଏ ପ୍ରକାର କଟୁ କଥା କହି ରାଜା
ଦ୍ରୋଣଙ୍କୁ ଫେରାଇ ଦେଲେ
ଅପମାନ ପାଇ ଶିଶୁ ପୁତ୍ର ଧରି
ବ୍ରାହ୍ମଣ ଫେରି ଆସିଲେ । ୧୧

ହସ୍ତିନା ରାଜ୍ୟରେ କୃପାଚାର୍ଯ୍ୟ ଘରେ
ପୁତ୍ରକୁ ନେଇ ଗ୍ରୁଡ଼ିଲେ
ଆଦର କରିଣ ମାମୁଁ ମାଇଁ ଦୁଇ
ଭଣଜା ପାଳନ କଲେ । ୧୨
ଶାଳକ ଗୃହରେ ପୁତ୍ରକୁ ରଖାଇ
ଆଶ୍ୱସ୍ତ ହୋଇଲେ ଦ୍ରୋଣ
ଅପମାନ ପ୍ରତି - ଶୋଧ ନେବା ପାଇଁ
ବଇରିଲେ ନିଜ ମନ । ୧୩
ମିତ୍ର ଦ୍ରୋହ ଦୋଷ ଶାସ୍ତିର ବିଧାନ
କରିବାକୁ କଲେ ସତ୍ୟ
ବେଦ ବିଦ୍ୟା ଗ୍ରୁଡ଼ି ଧନୁର୍ବିଦ୍ୟା ଶିକ୍ଷା
ପାଇଁ ବଳାଇଲେ ଚିତ୍ତ । ୧୪
କାରଣ କ୍ଷତ୍ରିୟ ବିଦ୍ୟା ବିନା କ୍ଷତ୍ରି
ସାଧନ ସମ୍ଭବ ନୁହେଁ
କ୍ଷମା କରି ଦେଲେ ସମାଜର କ୍ଷତି
କ୍ଷତ୍ରିୟେ ଦଣ୍ଡ ଯୋଗାଏ । ୧୫
କ୍ଷତ୍ରିୟକୁ ଦଣ୍ଡ ଦେବାର ଶକତି
ବ୍ରାହ୍ମଣ ପକ୍ଷେ ସମ୍ଭବ
ସମସ୍ତଙ୍କୁ କ୍ଷମା ଦେଇ ପାରେ ବିପ୍ର
କ୍ଷତ୍ରିୟଙ୍କୁ ଅସମ୍ଭବ । ୧୬
କ୍ଷତ୍ରିୟ ସାଧନ କରିବା ନିମନ୍ତେ
ସମଦର୍ଶୀ ବିପ୍ର ସୁତ
ତପୋନିଷ୍ଠ ଥାଇ ବୀର ଶ୍ରେଷ୍ଠ ହୋଇ
ଧାରଣ କରିଲେ ଅସ୍ତ୍ର । ୧୭
ଏକ ବଂଶ ବୀର ନିକ୍ଷତ୍ରିୟ କଲେ
ଭୃଗୁବଂଶରୁ ଋଷିଗଣ
କ୍ଷତ୍ରିୟ ନିଧନ ବାନା ଉଡ଼ାଇଲେ
କ୍ଷତ୍ରିୟ ରକ୍ତେ ତର୍ପଣ । ୧୮

ଏ କଥାକୁ ମନେ ପକାଇଣ ଦ୍ରୋଣ
ହୋଇଗଲେ ରୋମାଞ୍ଚିତ
ପରଶୁରାମ ଠାରୁ ଅସ୍ତ୍ର ବିଦ୍ୟା ଶିକ୍ଷା
ପାଇଁ ଚଳିଲେ ତ୍ୱରିତ । ୧୯
ଗୁରୁ ପରଶୁରାମ ଆଶ୍ରମେ ପହଞ୍ଚି
ବେଦ ମନ୍ତ୍ର ଗାନ କଲେ
ବେଦ ଧ୍ୱନି ଶୁଣି ବିପ୍ରବର ଜାଣି
ଇଚ୍ଛାବର ଯା'ଚ ଦେଲେ । ୨୦
"ଯାହା ତୁମ୍ଭ ଇଚ୍ଛା ମାଗି ନେଅ ବର
ସତ୍ୟ କରିବି ପ୍ରଦାନ
ତିନିବାର ସତ୍ୟ କଲ ବିପ୍ର ସୁତ
ମନୋରଥ ହେଉ ପୂର୍ଣ୍ଣ । ୨୧
ଗମ୍ଭୀରେ ବୋଇଲେ ଭରଦ୍ୱାଜ ସୁତ
ଧନରତ୍ନ ଲୋଡା ନାହିଁ
ବିପ୍ର ସୁତ ହୋଇ ଧନୁର୍ବେଦ ଶିକ୍ଷା
କରିବାକୁ ଆସିଛଇଁ । ୨୨
କ୍ଷତ୍ରି ସାଧିବାକୁ ପ୍ରତିଜ୍ଞା କରିଛି
ଧନୁର୍ବିଦ୍ୟା କର ଦାନ
ଅନ୍ୟ ପଦାର୍ଥରେ ପ୍ରୟୋଜନ ନାହିଁ
ପ୍ରତିଶୋଧ ଇଚ୍ଛେ ମନ । ୨୩
ଆଗୁ ପରଶୁରାମ ସତ୍ୟ କରିଥିଲେ
କ୍ଷତ୍ରିୟେ ନ ଦେବେ ବିଦ୍ୟା
ବିପ୍ର ସୁତ ପାଇ ଆନନ୍ଦିତ ହୋଇ
ଦାନ କଲେ ଧନୁର୍ବିଦ୍ୟା । ୨୪
"ଗୁରୁ ପରଶୁରାମ କହିଲେ ଆମ୍ଭର
ବାକ୍ୟେ ହେଉ ବିଦ୍ୟା ପ୍ରାପ୍ତି
ନ ସାଧିଣ ବିଦ୍ୟା ସିଦ୍ଧି ହୋଇଯାଉ
ଜଗତରେ ରହୁ କୀର୍ତ୍ତି" । ୨୫

ଧନୁ ଅସ୍ତ୍ର ଦାନ  ଦେଲେ ପରଶୁରାମ
କ୍ଷତ୍ରିୟ ସାଧନ ଅର୍ଥେ
ଦ୍ରୋଣ ନେଲେ ତାହା  ବ୍ରାହ୍ମଣ ନୃପତି
ଦ୍ରୁପଦ ପ୍ରତିଶୋଧାର୍ଥେ ।୨୬

ବ୍ରାହ୍ମଣ ସାଧିତ  ଧନୁ ଅସ୍ତ୍ର ବିଦ୍ୟା
ବ୍ରାହ୍ମଣ ଠାରୁ ବ୍ରାହ୍ମଣ
ବ୍ରାହ୍ମଣ ରାଜାକୁ  ସାଧ କରିବାକୁ
କରିଲେ ଦାନ ଗ୍ରହଣ ।୨୭

ଗୁରୁ ପରଶୁରାମ  ଠାରୁ ଅସ୍ତ୍ର ବିଦ୍ୟା
ସାଧ କରି ବିପ୍ର ଦ୍ରୋଣ
ଗୁରୁଙ୍କ ଚରଣେ  ଶତ ପ୍ରଣିପାତ
କରି ଫେରିଲେ ବଦନ ।୨୮

କରେ ଧନୁଶର  ଧରିଥିଲେ ଦ୍ରୋଣ
ଅତ୍ୟନ୍ତ ଅପରାଜେୟ
ପରଶୁରାମ ଧନୁ  ଅସ୍ତ୍ର ଦ୍ରୋଣ ଠାରେ
ଦେଖି ସର୍ବେ କଲେ ଭୟ ।୨୯

ସଂଗ୍ରାମ କରିବେ  ଦ୍ରୁପଦଙ୍କ ଭୁଲେ
ସତ୍ୟ କଲେ ଧନୁ ଧରି
ଶାଳା କୃପାଚାର୍ଯ୍ୟ  ଗୃହେ ବାସ କଲେ
ସୁଯୋଗ ଅପେକ୍ଷା କରି ।୩୦

ଏକବିଂଶ ପଦେ  ଅଧ୍ୟାୟ ସମ୍ପୂର୍ଣ୍ଣ
ସୁଜନେ ଶୁଣ ମାନସ
ଗୀତରେ ଭଣିଲ  ମୂଢ଼ ବୃନ୍ଦାବନ
ନ ଧରିବ [illegible] ଦୋଷ ।୩୧

ଇତି ଶ୍ରୀକୃଷ୍ଣ, ଚରିତ ମାନସ ମହାକାବ୍ୟ କଥନେ
ଗୋଧୂଳିଲୀଳା ଖଣ୍ଡେ ଦ୍ରୋଣଙ୍କର ଧନୁର୍ବିଦ୍ୟା ଶିକ୍ଷା ବିବରଣେ
ନାମ ଷଟବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲ-**

ବାଇ ମନରେ !
ଗୁରୁ ପଦ୍ମରେ ଆଶ୍ରୟ କର
ଗୁରୁବ୍ରହ୍ମା, ଗୁରୁବିଷ୍ଣୁ, ଗୁରୁଦେବ ମହେଶ୍ବର
ଗୁରୁ ସାକ୍ଷାତ୍ ପରଂବ୍ରହ୍ମ ପରାତ୍ପର ନମସ୍କାର । ଘୋଷା
ଗୁରୁବିନା ଜ୍ଞାନ ଉଦୟ ନୁହଁଇ
ଗୁରୁ କୃପା ହିଁ କେବଳ ସାର
ଗୁରୁକୃପା ବଳେ ମୂକ କହେ କଥା
ପଙ୍ଗୁ ଲଂଘଇ ଗିରି କନ୍ଦର । ୧
'ଗୁ' ଗୁଣାତୀତ 'ରୁ' ରୂପ ବିବର୍ଜିତ
ଏମନ୍ତ ଗୁରୁଟି ଅଣାକର
ଗୁରୁଠାରେ ପୂର୍ଣ୍ଣ ବିଶ୍ୱାସ ସ୍ଥାପନ
କଲେ ତରିବୁ ଭବ ସାଗର । ୨
ଗୁରୁ ଅଭିରାମ ଅଭୟ ପଦ୍ମର
ସଦା ସର୍ବଦା ସ୍ମରଣ କର
ପାରି କରିବେ ଭବ ସାଗର
(ସେ) ଭବ ସିନ୍ଧୁରେ ନାବିକ ବର । ୩



# ସପ୍ତବିଂଶ ଅଧ୍ୟାୟ

## ବିଜୟୀ ଶ୍ରୀକୃଷ୍ଣ

( ରାଗ - ଶଙ୍କରାଭରଣ )

ଶୁଣ ସୁଜନେ ଶ୍ରୀକୃଷ୍ଣ ଚରିତ ମାନସ
ନାନା ଲୀଳା କରନ୍ତି ଗୋପରେ ଶ୍ରୀବାସ
ଖୋଜ ନୂଆ ଚରାଭୂଇଁ
ଗିରି ଗୋବର୍ଦ୍ଧନ ଠାରେ ମିଳିଲେ ଙ୍କହ୍ଲାଇ । ୧
ଦେଖିଲେ ସୁନ୍ଦର ଭୂଇଁ ତୃଣେ ପରିପୂର୍ଣ୍ଣ
ପାହାଡ଼ ଝରଣା କରେ କୁଳୁକୁଳୁ ସ୍ୱନ
କୁସୁମେ ଶୋଭେ କାନନ
ପରିବେଶ ସୁଶୀତଳ ବହୁଛି ପବନ । ୨
ସଜନ ବୃକ୍ଷ ରାଜିରେ ପୂର୍ଣ୍ଣ ଗିରିବର
ପ୍ରତେ ହୁଏ ଗୋବର୍ଦ୍ଧନ ଶୋଭାର ଭଣ୍ଡାର
ସୁରମ୍ୟ ଗିରି ଶିଖରେ
ବସି ବଜାଇଲେ ବଂଶୀ ଶ୍ରୀକୃଷ୍ଣ ହରଷେରେ । ୩
ବେଣୁ ସ୍ୱନ ପବନରେ ଭାସି ଭାସି ଯାଇ
ଗହଳ ପତ୍ର ରନ୍ଧ୍ରରେ ଘୂରି ବୁଲୁଥାଇ
ଶୁଭଇ ମର୍ମର ସ୍ୱନ
ବାଂଶରୀ ସଙ୍ଗେ ଉଚ୍ଛଳ ବାଦ୍ୟର ନିଃସ୍ୱନ । ୪
ପାହାଡ଼ି ଝରଣା ତାଳେ ଗୀତ ଗାଉଥାଇ
କଳକଳ ସ୍ୱନେ ବେଣୁ ସ୍ୱରରେ ମିଶାଇ
ମୟୂର ମୟୂରୀ ନୃତ୍ୟ
କେକାରବେ ଗାଉଛନ୍ତି ମଧୁର ସଙ୍ଗୀତ । ୫
ବନପକ୍ଷୀ କରୁଛନ୍ତି କାକଳୀ କୂଜନ
ବଂଶୀ ସ୍ୱନେ ମିଶିଯାଏ ମଧୁର ନିଃସ୍ୱନ
ଭ୍ରମର ଗୁଣୁ ଗୁଞ୍ଜନ
ବନରାଣୀ ବନାଶ୍ରୀଣା କରେ କି ବାହନ । ୬

ଝିଙ୍କାରର ଝିଲ୍ଲିରବ ସଂଯୁକ୍ତ ମଧୁର
କୋକିଳର କୁହୁତାନ ଶତ ନଏ ହର
ପଶୁପକ୍ଷୀ ଗୋରୁପଲ୍ଲି
ଶୁଣନ୍ତି ବେଣୁ ନିଃସ୍ୱନ ହୋଇ ଉତ୍ଫୁଲ୍ଲି । ୭

କୃଷ୍ଣମୟ ପରିବେଶେ କୃଷ୍ଣ ଆହ୍ଲାଦିତ
ହୋଇ ବଂଶୀ ବାଦନରେ ନବେଶିଲେ ଚିତ୍ତ
ବସି ବୃକ୍ଷ ଗ୍ଭଇ ତଳେ
ବଜାନ୍ତି ମୋହନ ବଂଶୀ ଆନନ୍ଦ ହିଲ୍ଲୋଳେ । ୮

ଶ୍ରୀକୃଷ୍ଣଙ୍କ ମନେ ଭୟ ନ ଥାଏ ଟିକିଏ
ବିପଦକୁ ଆଗୁ ଜାଣି ପାରୁଥିଲେ ସିଏ
କରୁଥିଲେ ସମ୍ମୁଖୀନ
ତେଣୁ କୃଷ୍ଣ ଚନ୍ଦ୍ର ଥିଲେ ସଦା ଭୟ ଶୂନ୍ୟ । ୯

କାନନେ ବଂଶୀ ବାଦନ ସମୟେ ଶ୍ରୀକୃଷ୍ଣ
ଏକାଦେଖି ବକାସୁର କଲା ଆକ୍ରମଣ
ବକପକ୍ଷୀ ରୂପଧରି
ଆକ୍ରମଣ କଲା କୃଷ୍ଣ ଥଣ୍ଟକୁ ବିସ୍ତାରି । ୧୦

ଭୟ ପାଇ ପଳାଇଲେ ଗୋରୁ ଗାଈ ଗଣ
ପଶୁପକ୍ଷୀ ମାନେ ବୃକ୍ଷେ ରହିଲେ ମଉନ
ନସ୍ତବ୍ଧ ଗିରି କାନନ
ବକାସୁର ଆଗମନ ଜାଣିଲେ ଶ୍ରୀକୃଷ୍ଣ । ୧୧

ନର୍ଭୟରେ ଠିଆ ହୋଇ କୌଶଳରେ ଧରି
ବେନି ଫାଳ କରି ବକ ପକାଇଲେ ଚିରି
ବକାସୁର ଦୈତ୍ୟ ହତ
ବାର୍ତ୍ତାପାଇ କଂସାସୁର ମନେ ବିଷାଦିତ । ୧୨

ଆଉ ଦିନେ ଅଜଗର ରୂପରେ ରାକ୍ଷସ
ବନେ ଏକ ଗାଈ ଧରି କରିଦେଲା ଗ୍ରାସ
ଗ୍ରାସ କରିବାକୁ ହରି
ଧାଇଁଲା କୃଷ୍ଣ ଆଡକୁ ମୁଖକୁ ବିସ୍ତାରି । ୧୩

ଭୟଙ୍କର ସର୍ପ ଦେଖି ସର୍ବେ ଭୟ କଲେ
ପଳାଇ ଯାଇଁଣ ଦୂରେ ଜୀବନ ରଖିଲେ
ମାତ୍ର ଶ୍ରୀକୃଷ୍ଣ ନ ଯାଇ
ପଥର ଖଣ୍ଡେ ପାଟିରେ ଦେଲେକ ପୁରାଇ । ୧୪

ପ୍ରାଣ ଭୟେ ଅଜଗର ପଳାଇଲା ଝଟରେ
ଦେଖିଲେ ମରି ପଡ଼ିଛି ଅଳପ ଦୂରେ
ପ୍ରଖର ବୁଦ୍ଧି ସମ୍ପନ୍ନ
କୌଶଳେ କରନ୍ତି ଦୁଷ୍ଟ ଗଣଙ୍କୁ ନିଧନ । ୧୫

କୃଷ୍ଣ ପରି ବଳରାମ ନ ଥିଲେ ସାହସୀ
ମାତ୍ର ତାଙ୍କ ଦେହେ ବଳ କୃଷ୍ଣଠାରୁ ବେଶୀ
ମୁଷ୍ଟି ପ୍ରହାରି ପ୍ରସ୍ତର
ଫଟାଇବା ବଳବୀର୍ଯ୍ୟ ଥିଲା ତାହାଙ୍କର । ୧୬

ଏକଦା ଏକ ଅସୁର ହ୍ରେଷା ରୂପଧରି
ଆକ୍ରମଣ କଲା ରାମ ଖୁରକୁ ପ୍ରହାରି
ବଜ୍ର ମୁଷ୍ଟି ପ୍ରହାରଣେ
ବିନାଶିଲେ ଦୁଷ୍ଟ ହ୍ରେଷା ଦେବ ଶଙ୍କର୍ଷଣ । ୧୭

ଅତି ବଳବାନ ହେତୁ ନାମ ବଳରାମ
ଦୁଷ୍ଟ ଦୈତ୍ୟ ବିନାଶନେ ଜାତ କାଳ ସମ
ସେ ଅନନ୍ତ ଭଗବାନ
ଅସୁର ଦଳନ ପାଇଁ ମର୍ତ୍ତ୍ୟେ ଅବତୀର୍ଣ୍ଣ । ୧୮

ଦିନେ ରାମ କୃଷ୍ଣ ଦୁଇ ଗୋପାଳ ମେଳରେ
ଦୁଇ ଦଳ ହୋଇ ମାତିଗଲେ ଖେଳିବାରେ
ରାମ ଏକ ଦଳପତି
ଅନ୍ୟ ଦଳେ ଦଳପତି ହୋଇଲେ ଶ୍ରୀପତି । ୧୯

ସେ ଖେଳରେ ରହିଥିଲା ଏମନ୍ତ ନିୟମ
ଯେ ଦଳ ଜିତିବ ଖେଳେ କରି ପରାକ୍ରମ
ପରାଜିତ ଦଳ ମୁଖ୍ୟ
କାନ୍ଧେ ବସାଇଣ ବିଜିତ ଦଳ ପ୍ରମୁଖ । ୨୦

ବୁଲାଇବେ ସାତ ବାର କରି ଜୟଗାନ
ତାଳମାରି ନାଚୁଥିବେ କରି ଗୁଣଗାନ
କରି ଏମନ୍ତ ନିୟମ
ବେନି ପକ୍ଷ ଖେଳ ପ୍ରତି ବଳାଇଲେ ମନ । ୨୧

ଖେଳର ସୁଯୋଗ ନେଇ କଂସାସୁର ଚର
ବାଳକ ରୂପେ ରହିଲା ଶ୍ରୀକୃଷ୍ଣ ପକ୍ଷର
ଖେଳରେ ଜିଣିଲେ ରାମ
କାନ୍ଧେ ବହି ନେବା ତାଙ୍କୁ ଥିବାରୁ ନିୟମ । ୨୨

ଏହାର ସୁଯୋଗ ନେଇ କଂସାସୁର ଚର
ବଳସ୍ୱୀ ରାମଙ୍କୁ କାନ୍ଧେ ବସାଇ ତତ୍ପର
ପବନ ବେଗେ ଧାଇଁଣ
ଗହ୍ୱନ କାନନ ମଧ୍ୟେ କଲା ପଳାୟନ । ୨୩

ପଛେ ଗୋଡାଇଣ ବାଳେ ନ ପାରିଲେ ଧରି
କ୍ଳାନ୍ତ ହୋଇ ଅଧା ବାଟୁ ଆସିଲେକ ଫେରି
ଶ୍ରୀକୃଷ୍ଣ ହୋଇଲେ ଜ୍ଞାତ
କପଟେ ରାମଙ୍କୁ ଘେନି ପଳାଇଲା ଦୈତ୍ୟ । ୨୪

ପବନ ବେଗରେ ଧାଇଁ ପଳାଉଛି ଦୁଷ୍ଟ
କଂସ ଚର ବୋଲି ଚିହ୍ନି ବସୁଦେବ ସୁତ
ପ୍ରହାରନ୍ତେ ବଜ୍ର ମୁଷ୍ଟି
କଚୁଡ଼ି ପଡ଼ିଲା ଦୁଷ୍ଟ ମଥା ଗଲା ଫାଟି । ୨୫

ଏସବୁ ଘଟଣାମାନ ଗୋପବାସୀ ମନେ
ଭୟ ଓ ବିସ୍ମୟ ସୃଷ୍ଟି କଲା ଅନୁକ୍ଷଣେ
ଜାଣିଲେ ଏ ଅବତାର
ଆକ୍ରମଣକାରୀ ଦୈତ୍ୟ କଂସ ପରିକର । ୨୬

ଦେଖି ଦୁହିଙ୍କ ଦୁଃସାହସିକ କାର୍ଯ୍ୟମାନ
ସେମାନଙ୍କୁ ଶ୍ରଦ୍ଧା କଲେ ପୁରବାସୀ ଜନ
ଏ ସବୁ କାର୍ଯ୍ୟ ସାଧନ
ଭୟ ନ ଥାଏ ଟିକିଏ ତାହାଙ୍କର ମନେ । ୨୭

ଏପରି ଆଶଙ୍କା ବନେ ହୋଇଗଲା ସତ୍ୟ
କାଳୀୟ ନାଗକୁ ଶାସ୍ତି ଦେବାର ନିମିତ୍ତ
ବୃନ୍ଦାବନେ ଅବସ୍ଥିତ
କାଳିନ୍ଦୀ ନାମେ ହ୍ରଦର ସଲିଳ ବିଷାକ୍ତ । ୨୮
ଆବଦ୍ଧ ଜଳରେ ପୂର୍ଣ୍ଣ ସେହି ପୁଷ୍କରିଣୀ
ନୀଳବର୍ଣ୍ଣ ଦିଶୁଥାଏ ସେ ଦୂଷିତ ପାଣି
କାଳନାଗ କରେ ବାସ
ସର୍ପ ଭୟେ ନ ଯାଆନ୍ତି କେହି ହ୍ରଦ ପାଶ । ୨୯
ଅପରିଷ୍କାର ଜଳରେ ବିଷ ପରିପୂର୍ଣ୍ଣ
ଜଳ ପାନ କଲେ ପ୍ରାଣୀ ହରାନ୍ତି ଜୀବନ
ନେତ୍ରେ ଦେଖିଲେ କହ୍ନାଇ
ଜଳପାନ କରି ମଲେ ଦୁଇ ଗୋଟି ଗାଈ । ୩୦
ଏ କରୁଣ ଦୃଶ୍ୟ ଦେଖି ଶ୍ରୀକୃଷ୍ଣ ଅଧୀର
ବିଚାରିଲେ ଗୋପାଳନ କର୍ତ୍ତବ୍ୟ ମୋହର
କିମ୍ପା ଗାଈ ହେଲେ ହତ
କାରଣ ଖୋଜି ବସିଲେ ବସୁଦେବ ସୁତ । ୩୧
କାଳିନ୍ଦୀ ହ୍ରଦ କୂଳରେ ଏକ ନୀପ ବୃକ୍ଷ
ଛତ୍ର ପ୍ରାୟ ଶାଖାମାନ ବ୍ୟାପିଛି ପ୍ରତ୍ୟକ୍ଷ
ବୃକ୍ଷ ଡାଳେ ଉଠି କୃଷ୍ଣ
ଦେଖନ୍ତେ ହ୍ରଦ ଜଳରେ ସର୍ପ ପରିପୂର୍ଣ୍ଣ । ୩୨
ସର୍ପରାଜ କାଳୀନାଗ କରୁଛି ଭ୍ରମଣ
ଫଁଫୁଁକାର କରି ବିଷ କରେ ବରଷଣ
ଜଳେ ପରିପୂର୍ଣ୍ଣ ବିଷ
ମନେ ବିଚାରିଲେ କୃଷ୍ଣ ଦେଖି ଏହି ଦୃଶ୍ୟ । ୩୩
ଗୋ ବ୍ରାହ୍ମଣ ହିତେ ଆମ୍ଭର ହୋଇଛି ଜନ୍ମ
ଜନ ହିତକର କାର୍ଯ୍ୟ ଜୀବନର ଧର୍ମ
ହ୍ରଦର ବିଷାକ୍ତ ଜଳ
ଦୋଷ ମୁକ୍ତ ହେଲେ ହେବ ପ୍ରାଣୀଙ୍କ ମଙ୍ଗଳ । ୩୪

ତୃଷିତ ଆତୁର ପ୍ରାଣୀ ପିଇବେ ସେ ନୀର
ଜଳକ୍ରୀଡ଼ା ହେବ ମଧ୍ୟ ସେଠାରେ ଆମ୍ଭର
ଏହା କହୁରି ଶ୍ରୀକୃଷ୍ଣ
ଡାଳ ଏକ ଧରି କଲେ ଜଳ ଆନ୍ଦୋଳନ । ୩୫
ଜଳ ଆନ୍ଦୋଳିତ ହେବା ଦେଖି କାଳୀନାଗ
ଉପରକୁ ମଥା ଟେକ ଦେଖେ ବହୁ ରାଗ
ବୃକ୍ଷରୁ ଡେଇଁ ଶ୍ରୀକୃଷ୍ଣ
କାଳୀନାଗ ଫଣା ପରେ ଉଠିଲେ ବହନ । ୩୬
ଯେତେ ଚେଷ୍ଟା କଲା ନାଗ ନ ପାରିଲା ଧରି
ଝିଁ ପଟା ତାଳେ ନାଚଲେ ଫଣାରେ ଶ୍ରୀହରି
କ୍ରୋଧରେ ଅହିରାଜନ
ଅଗ୍ନି ଶିଖା ପ୍ରାପ୍ତ ବିଷ କରିଲା ବର୍ଷଣ । ୩୭
ଭୟଙ୍କର ଦୃଶ୍ୟ ଦେଖି ଗୋପାଳ ବାଳକେ
ସମ୍ବାଦ ଦେବାକୁ ଗୃହେ ଧାଇଁଗଲେ ଥୋକେ
ମିଳିଲେ ଆସି ତକ୍ଷଣ
ନନ୍ଦ, ଯଶୋଦା, ଶ୍ରୀରାଧା, ଗୋପ ଗୋପୀଗଣ । ୩୮
କାଳୀୟ ନାଗ ଫଣାରେ କୁମରକୁ ଦେଖି
ଭୟ ପାଇ ପିତାମାତା ବୁଜି ଦେଲେ ଆଖି
ଦେଖି ଶ୍ରୀରାଧା ବିବ୍ରତ
ପଡ଼ିଗଲେ ଭୂମି ପରେ ହୋଇଣ ଅଚେତ । ୩୯
କିଛି କାଳ ପରେ ସର୍ପ ଶକ୍ତି ଶୂନ୍ୟ ହୋଇ
ଶରଣ ପଶିଲା ପାଦେ କୁଟୁମ୍ବଙ୍କୁ ନେଇ
ଆଶ୍ରୟ ଦେଲେ କହ୍ନାଇ
ଆଶ୍ବସ୍ତ ହୋଇଲା ସର୍ପ ଆଶ୍ବାସନା ପାଇ । ୪୦
ସର୍ପକୁ କହିଲେ ପ୍ରଭୁ ଅରଜିଲୁ ପାପ
ହ୍ରଦ ଜଳ ନଷ୍ଟ କରି ଦେଖାଉ ପ୍ରକୋପ
ବେଗେ ହୋଇ ଯାଅ ଦୂର
ପାନୀୟ ଜଳ ହୋଇବ କାଳିନ୍ଦୀର ନୀର । ୪୧

ରମ୍ୟକ ଦ୍ୱୀପରେ ଯାଇବେଗେ କର ବାସ
ନ ଗଲେ ସବଂଶେ କାଳୀ ହୋଇବୁ ବନାଶ
କର ପଛ ମୋଡ଼ି କହେ
ମୋର ଦୁଃଖ କଥା ଶୁଣ ଆହେ ଦେବ ରାୟେ । ୪୨
ରମ୍ୟକ ଦ୍ୱୀପେ ଗରୁଡ଼ କରୁଅଛି ବାସ
ସେ ଦ୍ୱୀପକୁ ଗଲେପ୍ରଭୁ ହେବୁ ତା'ର ଗ୍ରାସ
ତହିଁ ରହିବ କପଶ
ପ୍ରଭୁ ହୋଇ ମୃତ୍ୟୁ ମୁଖେ ନପେଶ ଶ୍ରୀହରି । ୪୩
ପୂର୍ବେ ଗରୁଡ଼କୁ ଡରି ଏଠି ଲୁଚିଅଛୁ
ସେ ଠାବକୁ ଗଲେ ଆଉ ପାରିବ କି ବଞ୍ଚି
ଘାଭ ଜନ ପରିତ୍ରାଣ
ଶରଣ ପଶିଲି ପାଦେ କରହେ କାରଣ । ୪୪
ସର୍ପକଥା ଶୁଣି ପ୍ରଭୁ ଗରୁଡ଼େ ଡାକିଲେ
ବିନତା ସୁତ ଆସିଣ ପ୍ରଣାମ କରିଲେ
ଆଜ୍ଞା ଦେଲେ ନାରାୟଣ
ଭୁଞ୍ଜ ପାଶେ ସ୍ଥାନ ଦିଅ ନେଇ ସର୍ପଗଣ । ୪୫
ଆଦେଶ ପାଇ ଗରୁଡ଼ ପିଠିରେ ବସାଇ
ଘେନଗଲେ ସର୍ପଗଣେ ପ୍ରିୟବ୍ରତ ବନ୍ଧୁ
ହେଲେ ହେଁ ସର୍ପଙ୍କ ଶତ୍ରୁ
ପ୍ରଭୁ ଆଜ୍ଞା ପାଳି ନେଲା ପୃଷ୍ଠ ବନ୍ଧୁ କରି । ୪୬
ହିଂସା ଭାବ ଛାଡ଼ି ମନୁ କଲା ଖଗେନ୍ଦ୍ର
ସର୍ବଭୟ ନାଶ ଯାରେ ପ୍ରଭୁ ଅନୁଗ୍ରହ
କୃଷ୍ଣ ମହିମା ଅପାର
ଯେ ନାମ ସ୍ମରଣେ ଦୁଃଖ ହୋଇଯାଏ ଦୂର । ୪୭
ଏ ବିଚିତ୍ର ଦୃଶ୍ୟ ଦେଖି କଂସର ଚରରେ
ଜଣାଇଲେ ବେଗ ଯାଇଁ ରାଜାଙ୍କ ଛାମୁରେ
କୃଷ୍ଣ ନର ନାରାୟଣ
କାଳୀୟ ନାଗୁଣି ପାଦେ ପଶିଲା ଶରଣ । ୪୮

କାଳିନ୍ଦୀ ହ୍ରଦର ଜଳ ହେଲା ବିଷମୁକ୍ତ
ସ୍ନାନ ପାନ କରି ଜଳ ଲୋକେ ଆନନ୍ଦିତ
ଗୋପାଳ ବାଳକ ସେନଣ
ଜଳକ୍ରୀଡ଼ା କରୁଛନ୍ତି ସୁଖେ. ରାମକୃଷ୍ଣ । ୪୯
କୃଷ୍ଣର ପ୍ରଶଂସା ଶୁଣି କଂସ କୋପାନ୍ୱିତ
ବଧିବାରେ କପଟ କୃଷ୍ଣ କରିବ ନିହତ
ପରିଶ ପଦରେ ଶେଷ
ଭାବରେ ଭଣିଲା ଗୀତେ ସ୍ତୁତିର ବୃନ୍ଦାବନ । ୫୦
ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ବିଜୟୀ ଶ୍ରୀକୃଷ୍ଣ ଆଖ୍ୟାନେ
ନାମ ସପ୍ତତ୍ରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀ କୃଷ୍ଣାର୍ପଣ ମସ୍ତୁ ।

## ଅଷ୍ଟତ୍ରିଂଶ ଅଧ୍ୟାୟ
## ଏକଲବ୍ୟର ଗୁରୁଭକ୍ତି

( ରାଗ - କେଦାର )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
ପଦପଦ କରେ ରସ ପୂରିଅଛି
ଆକଣ୍ଠ କର ହୋ ପାନ
କୁରୁ ପାଣ୍ଡବେ
ଖେଳ କରୁଥିଲେ ମିଳି ସରବେ । ୧
କନ୍ଦୁକ ପଡ଼ିଲା କୂପର ଭିତରେ
ନ ପାଇଲେ ନୃପ ସୁତେ
ଦୂରେ ଥାଇ ଦ୍ରୋଣ ଦେଖି ଏହି ଦୃଶ୍ୟ
ମିଳିଲେ ଆସି ତ୍ୱରିତେ
କେନେହେ ଦେଖିଲେ
କନ୍ଦୁକ ନ ପାଇ ଦୁଃଖିତ ବାଳେ । ୨

ନୃପ ନନ୍ଦନଙ୍କୁ ପୃଚ୍ଛା କଲେ ଦ୍ରୋଣ
ମୁହିଁ କ୍ଷୁଧିତ ବ୍ରାହ୍ମଣ
କୂପରୁ କନ୍ଦୁକ ବାହାର କରିଲେ
ଦେବ କି ମୋତେ ଭୋଜନ ?
ଶୁଣି ସମ୍ମତ
ହୋଇଲେ ଅନ୍ଧ ଧୃତରାଷ୍ଟ୍ର ସୁତ । ୩

ସ୍ୱୀକୃତ ପ୍ରଦାନ କରନ୍ତେ କୁମରେ
ଦୃଷ୍ଟି ଶକ୍ତି ବଢ଼ାଇବାକୁ
ଶର ପ୍ରହାରଣ କୂପରୁ କନ୍ଦୁକ
ବାହାର କରି ଆଣିଲେ
ରାଜ କୁମାର
ଜାଣିଲେ ବରପ୍ରବର ଧନୁର୍ଦ୍ଧର । ୪

ପିତାମହ ଭୀଷ୍ମ ପାଶେ ଜଣାଇଲେ
ଯାଇଁଣ ରାଜ ନନ୍ଦନ
ମାନମାସ୍ତ ଭୀଷ୍ମ ଦ୍ରୋଣ ଗୁରୁ ଚିହ୍ନି
କଲେ ବହୁତ ସମ୍ମାନ
ଗୁରୁ ବରଣ
ହୋଇ ପୁତ୍ରେ କଲେ ଶିକ୍ଷା ପ୍ରଦାନ । ୫

ଶୁଭ ଦିନ ଦେଖି ଆଖଡ଼ା ଶାଳରେ
ପୂଜାକଲେ ଗଜାନନ
ରାଜ ପୁତ୍ରେ ଶିକ୍ଷା ଦେଲେ ଗୁରୁ ଦ୍ରୋଣ
ଆଖଡ଼ା ଶାଳେ ରହିଣ
ସଞ୍ଜ ସକାଳେ
ଧନୁ ଅସ୍ତ୍ର ଶିକ୍ଷା ଦିଅନ୍ତି ବାଳେ । ୬

ଗଙ୍ଗା ନଦୀ କୂଳେ ହସ୍ତିନା ରାଜ୍ୟର
ଯୁଦ୍ଧଶାଳା ବଦ୍ୟମାନ
ବିସ୍ତୀର୍ଣ୍ଣ ପ୍ରାନ୍ତରେ ବ୍ୟାପି ରହିଥିଲା
ସମର ଶିକ୍ଷାନୁଷ୍ଠାନ

ସୁ ଷ୍ଠା ସୁ ମା ନ
ଶିକ୍ଷା ଦିଆ ଯାଉଥିଲା ସେ ସ୍ଥାନ । ୭

ସାମରିକ ଶିକ୍ଷା ସଙ୍ଗେ ଅସ୍ତ୍ରଶସ୍ତ୍ର
ହେଉଥିଲା ନି ର୍ମା ଣ
ଅଶ୍ବ ହସ୍ତୀ ଗଣେ ଯୁଦ୍ଧ ବିଦ୍ୟା ଶିକ୍ଷା
ପାଉଥିଲେ ପ୍ରତି ଦିନ
ସୈନ୍ୟ ସାମନ୍ତ
ଶିକ୍ଷା କରୁଥିଲେ ରକ୍ଷଣ ତସ । ୮

ରଥୀ ପାଇଁ ରଥ ଗଢ଼ା ହେଉଥିଲା
ବୈଷୟିକ ଜ୍ଞାନ ବଳେ
ମାଟିରେ ଗଡ଼ିବ ଶୂନ୍ୟରେ ଉଡ଼ିବ
ଭାସିବ ପୁଣି ସେ ଜଳେ
ସ ହ ଜେ ଧ୍ୱଂସ
ନ ପାଇବ ରଥ ଗୋଟି ଅବଶ୍ୟ । ୯

ପୁଷ୍ପ ଶାଳ ମଧ୍ୟେ ବିରାଟ ପ୍ରାସାଦ
ତହିଁ ବାସ କଲେ ଦ୍ରୋଣ
ସମ୍ମୁଖେ ବିଶାଳ ତରୁତଳେ ବସି
ଦିଅନ୍ତି ଆଦେଶ ମାନ
କାର୍ଯ୍ୟ ତ ନ କ୍ଷ
କରୁଥାନ୍ତି ସେଠାରୁ ଠିକନକ୍ଷ । ୧୦

ସମ୍ଭ୍ରାନ୍ତ ବିପ୍ରର ନିଦର୍ଶନ ରୂପେ
ଶିରେ ରଖିଥିଲେ ଜଟା
କପାଳେ ତିଳକ କଣ୍ଠରେ ରୁଦ୍ରାକ୍ଷ
ବକ୍ଷରେ ଚନ୍ଦନ ଛିଟା
ପାଟ ବ ସ ନ
ପରିଧାନେ ଅଙ୍ଗ ଦିଶେ ଶୋଭନ । ୧୧
ଗୁରୁ ପର୍ଶୁରାମ ପ୍ରଦତ୍ତ ସନ ମାନ
ପ୍ରଦର୍ଶନେ ବ୍ୟାଘ୍ରଚର୍ମ

ଆଚ୍ଛାଦିତ ଏକ ଉଚ୍ଚାସନ ପରେ
ବସୁଥିଲେ ଗୁରୁ ଦ୍ରୋଣ
ପଦ ମର୍ଯ୍ୟାଦା
ରକ୍ଷା କରିବାରେ ବହୁତ ଶ୍ରଦ୍ଧା । ୧୨

ସୁବର୍ଣ୍ଣେ ଖଚିତ ଧନୁ ଧନୁଶର
ଧରିଥାନ୍ତି ନିଜ ହସ୍ତେ
ବସିବା ସମୟେ ଆଣ୍ଠୁର ଉପରେ
ରଖୁଥିଲେ ଅନୁବର୍ତ୍ତେ
ଗୁରୁ ଆଜ୍ଞାରେ
ଗୁରୁଦତ୍ତ ପର୍ଶୁ ଥାଏ ପାଖରେ । ୧୩

ମୁଖ ଦେଖେ ଶ୍ମଶ୍ରୁ ଶିର ଦେଖେ ଜଟା
ଦିଶେ ଘନ କୃଷ୍ଣ ବର୍ଣ୍ଣ
ସୁତୀକ୍ଷ୍ଣ ନାସିକା ଦୃଢ ଓଷ୍ଠ ପୁଷ୍ଟ
ଚକ୍ଷୁଦ୍ୱୟ ଦୀପ୍ତିମାନ
ଦିବ୍ୟ ଶରୀରେ
ପ୍ରଜ୍ୱଳିତ ଅଗ୍ନି ରୂପକୁ ଧରେ । ୧୪

ଏ ଆର୍ଯ୍ୟାବର୍ତ୍ତରେ ଗୁରୁ ଦ୍ରୋଣାଚାର୍ଯ୍ୟ
ଥିଲେ ପ୍ରସିଦ୍ଧ ବିଦ୍ୱାନ
ବିପ୍ର ବଂଶେ ଜନ୍ମି ଭୋଗ କରୁଥିଲେ
ରାଜର୍ଷି ଐଶ୍ୱର୍ଯ୍ୟମାନ
ଦାରିଦ୍ର୍ୟ ପ୍ରତି
ଘୃଣାଭାବ ରଖିଥିଲେ ଧୃତି । ୧୫

ପିତାଙ୍କ ଦାରିଦ୍ର୍ୟ ପନ୍ଥା ଅନୁସରି
ମାତ୍ର ତିନି ଦିନ ପାଇଁ
ଖାଦ୍ୟ ଦ୍ରବ୍ୟ ମାନ ସଞ୍ଚୟ କରିଣ
ରଖୁଥିଲେ ଗୃହେ ନେଇ
ତହୁଁ ଅଧିକ
ସଞ୍ଚୟରେ ବାଧା ଦିଏ ବିବେକ । ୧୬

ଅତି ଶୃଙ୍ଖଳିତ ଜୀବନ ଯାପନ
କରୁଥିଲେ ବସୁବର
ଉନ୍ନତ ଚିନ୍ତନ ସରଳ ଜୀବନ-
ଯାପନ ଧର୍ମ ତାଙ୍କର
ଗୃହସ୍ଥ ହୋଇ
ଅତ୍ୟନ୍ତ ସଂଯମୀ ଥିଲେ ଗୋସାଇଁ । ୧୭

ଉଚ୍ଚ ଅଭିଳାଷୀ ଆତ୍ମ ଅଭିମାନୀ
ତଥା ଆଦର୍ଶାନୁଗାମୀ
ଅନ୍ୟକୁ ଆଦେଶ ଦେବା ଓ ଆୟୁକ୍ତ
କରିବା କାର୍ଯ୍ୟରେ ସ୍ୱାମୀ
ନିଜ ସଂକଳ୍ପ
ନିକଟେ ନ ଥାଏ ଅନ୍ୟ ବିକଳ୍ପ । ୧୮

ଶସ୍ତ୍ର ଓ ଶାସ୍ତ୍ରର ମାର୍ଗ ଅନ୍ୱେଷଣ
କରନ୍ତି ନିଜସ୍ୱ ତେଜ
ଧ୍ୱାନ୍ତସ୍ୟ ଶୃଙ୍ଖଳା ମିଥ୍ୟା ଆଚରଣ
ପରିହରି ଦେଇ ଭଜି
ରାଜ ଐଶ୍ୱର୍ଯ୍ୟ
ଭୋଗ ଚିନ୍ତା କରୁଥିଲେ ସେ କାର୍ଯ୍ୟ । ୧୯

ରାଜପୁରୀ ମଧ୍ୟେ ରାଜ ପରିବେଶେ
ରାଜ କୁମାର ଗହଣେ
ରାଜଗୁରୁ ଥାଇ ରାଜ ଅଇଶ୍ୱର୍ଯ୍ୟ
ପରିପୂର୍ଣ୍ଣ ଅନୁକ୍ଷଣେ
ଭୋଗ ବିଳାସ
ଠାରୁ ଦୂରେ ରହିଥିଲେ ଅବଶ୍ୟ । ୨୦

ରାଜକୁମାରଙ୍କୁ ଯୁଦ୍ଧ ବିଦ୍ୟା ଶିକ୍ଷା
କରୁଥିଲେ ହେଁ ପ୍ରଦାନ
ଧନୁର୍ବିଦ୍ୟା ଶିକ୍ଷା ଦେବା ଦିଗେ ଦ୍ରୋଣ
ଥିଲେ ସୁଦକ୍ଷ, ମହାନ ।

ସେ ଧନୁର୍ଦ୍ଧର
ଧନୁ ଟଙ୍କାରିଲେ ଡରନ୍ତି ବୀର । ୨୧
ପର୍ଶୁ, ଗଦା, ଖଡ୍‌ଗ, ତ୍ରିଶୂଳାଦି ଅସ୍ତ୍ର
ଶିକ୍ଷା ଦେଉଥିଲେ ମଧ୍ୟ
ଧନୁର୍ବିଦ୍ୟାରେ ସେ ପାରଙ୍ଗମ ଥିଲେ
ଶତ୍ରୁ କରିବାରେ ସାଧ୍ୟ
ପ ର ଶୁ ରା ମ
ବିଦ୍ୟା ସାଧି କରି କ୍ଷତ୍ରି ମହାନ୍ । ୨୨
ଯୁଦ୍ଧ ବିଶାରଦ ଭୀଷ୍ମଦେବଙ୍କର
ଥିଲେ ପରାମର୍ଶ ଦାତା
ଶତ୍ରୁ ଦମନରେ ଭୀଷ୍ମଙ୍କ ସମାନ
ଦେଖାଉଥିଲେ ଦକ୍ଷତା
ସୈନ୍ୟ ବିଭାଗ
ମୁଖ୍ୟଭାବେ ଥିଲେ ସେ ମହାଭାଗ । ୨୩
ସେ କୁରୁ ସେନାର ପୁନଃ ଗଠନରେ
କଲେ ବିଭାଗୀକରଣ
ଖଡ୍‌ଗଧାରୀ, ଗଦା- ଧାରୀ, ଧନୁର୍ଦ୍ଧାରୀ
ଅନ୍ୟାସ୍ତ୍ରଧାରୀ ସଇନ
ପୁଣି ନାବିକ
ଜଳ-ସ୍ଥଳ-ଶୂନ୍ୟ ଏ ତିନି ଠିକ । ୨୪
ରଥ-ଗଜ-ଅଶ୍ୱା- ରୋହୀ-ପଦାତିକ
ଚାରି ଭାଗରେ ବିଭକ୍ତ
ସୈନ୍ୟ ସେନାପତି, ରଥୀ, ମହାରଥୀ
ପଦ ପଦବୀ ମଣ୍ଡିତ
ସଭିଙ୍କ ମୁଖ୍ୟ
ବୁଝା ସୁଝା କରୁଥିଲେ ପ୍ରତ୍ୟକ୍ଷ । ୨୫
ଏକ ଶତ ଏକ ଧୃତରାଷ୍ଟ୍ର ସୁତ
ପାଣ୍ଡୁଙ୍କର ପାଞ୍ଚ ପୁତ୍ର

ଆପଣା ତନୟ    ଅଶ୍ୱତ୍ଥାମା ମିଶି
ଶିଷ୍ୟ ଏକ ଶତ ସାତ
ପ ଢା ନ୍ତି ପାଠ
ଆଶ୍ରା କରନ୍ତି ବସାଇ ଗୃହ । ୨୬

ଧର୍ମ, ରାଜନୀତି,    ପୁରାଣ, ଶାସ୍ତ୍ରାଦି
ଗଦା, ମଲ୍ଲ, ଖଡ୍ଗ ଆଦି
ଯାହାର ଯେ ଶ୍ରଦ୍ଧା    ଶିକ୍ଷା କରେ ବିଦ୍ୟା
ଅନୁସରି ବଳ ବୁ ଦ୍ଧି
ଏକ ଶ ବ ର
ଦିନେ ପଡ଼ିଲା ଆସିଣ ପସ୍ୱର । ୨୭

ମଥାରେ ମୟୂର    ଝୁଲି ଶୋଭି ଅଛି
କଣ୍ଠ ଦେଶେ ଗୁଞ୍ଜ ମାଳ
ଧାମଣା କାଠର    ଧନୁ ଧରି ଅଛି
କଟି ଦେଶେ ବାଘ ଛାଲ
ନ ୟ ନ ନାଲ
ପୂରିଛି ଶରୀରେ ଅସୀମ ବଳ । ୨୮

ଦେଖି ଆଚମ୍ବିତ    ନୃପତି କୁମରେ
ଭାବିଲେ ନର- ଶାର୍ଦ୍ଦୂଳ
କେନ୍ଦୁ କାଠ ପରି    କଳା ମଚମଚ
ବେଶ ଉଜଳ ଡାଉଳ
ବୋଲେ ବଚନ
ବିଦ୍ୟାଦାନ କର ହେ ଗୁରୁ ଦ୍ରୋଣ । ୨୯

କରିତ ବିନମ୍ର    ଶବରକୁ ଦେଖି
କହିଲେ ଯୁଧିଷ୍ଠି ଦେବ
ଏ ଶବର ସୁତେ    ବିଦ୍ୟାଦାନ କର
ଦସ୍ୟୁବନ୍ଧୁ ଗୁରୁଦେବ
ବନତ ସେନ
ବନ ଗିରିବାସୀ ମୂର୍ଖ ଅଜ୍ଞାନ । ୩୦

ମାତ୍ର ଦୁର୍ଯ୍ୟୋଧନ ପ୍ରତିବାଦ କରି
କହିଲେ ଏହା ଅନ୍ୟାୟ
ରାଜ ପୁତ୍ର ସଙ୍ଗେ କପଟ ପଢ଼ିବେ
ମ୍ଳେଚ୍ଛ ଅନାର୍ଯ୍ୟ ତନୟ ?
ଶୁଣି ଏ ଗିର
ବାହୁଡାଇ ଦେଲେ ତାହୁଁ ଶବର । ୩୧
ହସ୍ତିନା ନଗରେ ବିପ୍ରାଗ୍ରର୍ଯ୍ୟ ଦ୍ରୋଣ
ଆଖଡା ଘରେ ରହିଣ
ହୁଜ ଅନ୍ନପ୍ରେଶୀ- ହୋଇ ରାଜ ପୁତେ
କରୁଥିଲେ ବିଦ୍ୟାଦାନ
ଏହି କା ର ଣ
ଆଶ୍ରମ ଶିକ୍ଷାର ପ ରି ପ ନ୍ତି ନ । ୩୨
ସେହି ସମୟରୁ ଗୁରୁକୁଳାଶ୍ରମ
ଶିକ୍ଷା ହୋଇଲା ନଗ୍ନ
ନଗରାଭିମୁଖୀ ହେଲା ଶିକ୍ଷାମାନ
ବିଦ୍ୟାର୍ଥୀ ନ ଗଲେ ବନ
ଘରେ ରହିଣ
ବିଦ୍ୟାର୍ଥୀ ଏ କଲେ ଶିକ୍ଷା ଅର୍ଜନ । ୩୩
ଏଣୁ ଗୁରୁକୁଳ ଶିକ୍ଷା ପରିବର୍ତ୍ତେ
ଘରୋଇ ଶିକ୍ଷା ପ୍ରସାର
ଗୁରୁ ଆଶ୍ରମକୁ ନ ଯାଇ ଶିକ୍ଷାର୍ଥୀ
ଗୁରୁଏ ଆସିଲେ ଘର
ଶିଷ୍ୟ ଗୃହରେ
ରହି ଶିକ୍ଷା ଦେଲେ ଅର୍ଥ ଲୋଭରେ ।୩୪
ଗୁରୁ ସାନ୍ଦୀପନ ଅଭିନବ ମାର୍ଗେ
ଦେଉଥିଲେ ଶିକ୍ଷା ଦାନ
ଗୋଟିଏ ସ୍ଥାନରେ ଅଟକି ନ ରହି
ସ୍ଥାନୁସ୍ଥାନ ପର୍ଯ୍ୟଟନ

କରି ବିଦ୍ୟାର୍ଥୀ
ଗଣେ ଶିକ୍ଷା ଦେଉଥିଲେ ସୁମନ୍ତ । ୩୫

ରାଜ୍ୟ ରାଜ୍ୟ ବୁଲି ଶିକ୍ଷା ଦେଉଥିଲେ
ରାଜ ଅନୁଯୋଗୀ ହୋଇ
ବହୁ ରାଜା, ରାଜ- ପୁତ୍ରଙ୍କ ସହିତ
ସୁସମ୍ପର୍କ ଥିଲି ରହି
ବହୁ ଚର୍ଚ୍ଚିତ
ବ୍ୟକ୍ତିତ୍ୱ ଭାବରେ ଥିଲେ କଥିତ । ୩୬

ଭ୍ରାମ୍ୟମାଣ ଶିକ୍ଷା ପ୍ରଦାନ ଦିଗରେ
ସାନ୍ଦୀପନିଙ୍କର ଖ୍ୟାତି
ବିଶେଷ ଭାବରେ ପ୍ରାଧାନ୍ୟ ଅର୍ଜନ
କରିଥିଲି ବିଶ୍ୱ ମଞ୍ଚ
କ୍ଷତ୍ରି, ବ୍ରାହ୍ମଣ
କରୁଥିଲେ ନଗରେ ବିଦ୍ୟା ଅର୍ଜନ । ୩୭

ଅବନ୍ତୀ ନଗରରେ ସ୍ଥାୟୀ ଆଶ୍ରମରେ
କଠାନ୍ତି ବର୍ଷା ସମସ୍ତ
ଗୁରୁକୁଳାଶ୍ରମ ମଧ୍ୟରେ ଅବନ୍ତୀ-
ନଗର ମହାବିଦ୍ୟାଳୟ
ଥିଲି ସୁଖ୍ୟାତି
ପଢୁଥିଲେ ପାଠ ରହି ବିଦ୍ୟାର୍ଥୀ । ୩୮

ଗୋପପୁରେ ଥିବା- କାଳେ ରାମକୃଷ୍ଣ
ବ୍ୟାସଙ୍କ ପରାମର୍ଶରେ
ଶିଷ୍ୟ ସାନ୍ଦୀପନି ଶିକ୍ଷା ଦେଉଥିଲେ
ନନ୍ଦରାଜାଙ୍କ ଗୃହରେ
ନନ୍ଦ ନନ୍ଦନେ
ପଢୁଥିଲେ ପାଠ ରହି ଗୋପଜନେ । ୩୯

ସ୍ପଷ୍ଟ ଗୃହେ ରହି ଶିକ୍ଷା ଦେବା ଦ୍ୱାରା
ଗୁରୁ ହେଲେ କ୍ରୀଡନକ

ଗୁରୁ ଅନ୍ବେଷଣେ ନ ଯାଇ ବିଦ୍ୟାର୍ଥୀ
ଶିଷ୍ୟ ଖୋଜିଲେ ଶିକ୍ଷକ
ଧନ ଅର୍ଜ୍ଜନେ
ମନ ନିବେଶିଲେ ଶିକ୍ଷକମାନେ । ୪୦
ଶିକ୍ଷାଦାନ ପ୍ରତି ଧ୍ୟାନ ଦେବା ଠାରୁ
ବୃତ୍ତି ପ୍ରତି ଦେଲେ ଧ୍ୟାନ
ତେଣୁ ଶିଷ୍ୟ ପୁତ୍ର- ମାନଙ୍କ ଉପରେ
ନ ରହିଲା ନିୟନ୍ତ୍ରଣ
ଶିକ୍ଷା ପଦ୍ଧତି
ଗୁଣାତ୍ମକ ମାନର ଅବନତି । ୪୧
ଗୁରୁଦ୍ୱାରା ଶିଷ୍ୟେ ପୂଜିତ ନ ହୋଇ
ଗୁରୁ ହେଲେ ଶିଷ୍ୟାଧୀନ
ଶିକ୍ଷାକ୍ଷେତ୍ରେ ଯେଉଁ ଦାୟିତ୍ୱ ବୋଧତା
କ୍ରମେ ହୋଇଗଲା ମ୍ଳାନ
ଏ ବିପର୍ଯ୍ୟୟ
ଦେଖି ଚିନ୍ତାଶୀଳ ଲୋକେ ବିବ୍ରତ । ୪୨
ପାଠ ଠାରୁ ଖେଳେ ମନ ବଳାଇଲେ
ଅଧିକାଂଶ ଛାତ୍ରଗଣ
ଶିକ୍ଷାଳୟେ ଶାନ୍ତି ବିପନ୍ନ ହୋଇଲା
ପାଠରେ ନ ଦେଲେ ମନ
ନାନା ବିଭ୍ରାଟ
ପ୍ରବେଶିବାରୁ ଶୃଙ୍ଖଳା ବିନଷ୍ଟ । ୪୩
ଗୁରୁଶିଷ୍ୟ ମଧ୍ୟେ ନ ରହିଲା ଆଉ
ସୁହୃତ୍ପ୍ରୀତି, ଗୁରୁଭକ୍ତି
ସହପାଠୀ ମଧ୍ୟେ ସମ୍ପର୍କ, ସଂପ୍ରୀତି
ଶିକ୍ଷାଳୟେ ଗଲା ଲୁଚି
ଉଚ୍ଛୃଙ୍ଖଳତ
ହନୁହନ ହେଲେ ଛାତ୍ର ଜଗତ । ୪୪

ମନ ଦେଇ ପାଠ    ପଢିଲା ସେ ଗ୍ରନ୍ଥ
ସେ ହେଲା ଗୁରୁଙ୍କ ପ୍ରିୟ
ଶତକରେ ଜଣେ    ଉତ୍ତମ ବିଦ୍ୟାର୍ଥୀ
ପାଇବା ଅତି ଦୁରୂହ
ଅ ଧ୍ୟ ବ ସା ୟ
ପ୍ରତି ଅବହେଳା ବିଦ୍ୟାର୍ଥୀଚୟ ।୪୫

ରାଜଭୋଗୀ ହୋଇ    ରହିବାରୁ ଗୁରୁ
ହରାଇଲେ ସ୍ୱାଧୀନତା
ଶିଷ୍ୟାଧୀନ ହୋଇ    ଶିକ୍ଷାଦାନ ଦେଲେ
ମାନି ଶିକ୍ଷାର୍ଥୀଙ୍କ କଥା
ଏହି କା ର ଣ
ଯୋଗୁ ଫେରାଇଲେ ଶବରେ ଦ୍ରୋଣ ।୪୬

ଅପମାନ ପାଇ    କୁଟୀରକୁ ଫେରି
ମୃତ୍ତିକା ମୂର୍ତ୍ତି ଗଢିଣ
ଗୁରୁଜ୍ଞାନ କରି    ଭକ୍ତିଭରେ ପୂଜି
ହୃଦୟରେ ସ୍ମରି ଦ୍ରୋଣ
କାନନେ ରହି
ଧନୁର୍ବେଦ ସାଧି କଲକ ସେହି ।୪୭

ବିଦ୍ୟାର୍ଥୀମାନଙ୍କୁ    ଯେଉଁ ଅସ୍ତ୍ର ଶିକ୍ଷା
ଦେଉଥାନ୍ତି ଗୁରୁ ଦ୍ରୋଣ
ସେହିସବୁ ବିଦ୍ୟା    ମନନ ସୂତ୍ରରେ
ଅକ୍ଳେଶେ କଲା ସାଧନ
ଧନ୍ୟ ସେ ଜନ
ମନନ୍ତି ଯାହାର ଗୁରୁ ପ୍ରମାଣ ।୪୮

ବୁଦ୍ଧି ଥିଲେ ସିଦ୍ଧି    ପ୍ରାପ୍ତି ହୋଇଥାଏ
ଅଧ୍ୟବସାୟ ବଳରେ
ଅଦ୍ୱିତୀୟ ବୀର    ହୋଇଲା ଶବର
ଶିକ୍ଷାଠାରୁ ରହି ଦୂରେ

ବ୍ରଜ ନନ୍ଦନ

ବିଦ୍ୟା ପରୀକ୍ଷା ଚିନ୍ତା କରି ଦ୍ରୋଣ । ୪୯

କୁଣ୍ଡଳୀ ପର୍ବତେ   କୃଷ୍ଣାଗୁରୁବୃକ୍ଷ
ନାରଚେ ଶାଖାକୁ ଛେଦି
ଅସ୍ତ୍ରଶସ୍ତ୍ର ଶିକ୍ଷା   ପରୀକ୍ଷା ନିମନ୍ତେ
ନିର୍ମାଣ କରିଲେ ବେଦୀ
ବୃକ୍ଷ ସ୍ତମ୍ଭରେ
ଧାନ ଶୃଙ୍ଗ ଥୋଇ ଖଡ଼ିକା ପରେ । ୫୦

ଶୃଙ୍ଗ ଅଗ୍ରଭାଗେ   ସରଗଡ଼ି ରଖି
ରଖିଲେ ସୋରିଷ ଏକ
ଏ ବିଧିରେ ଲକ୍ଷ   ନିର୍ମାଣ କରିଲେ
ଲକ୍ଷ କରିବାକୁ ଠିକ୍
ସର୍ବ ଆଦ୍ୟରେ
ଦୁର୍ଯ୍ୟୋଧନେ ଆଜ୍ଞାଦେଲେ ସଧୀରେ । ୫୧

ନିରୂପଣ କରି   ନାରଚ, ପୃଚ୍ଛିଲେ
କହ କିସ ଦେଖୁ ତୁହି
ଗୁରୁ ଆଜ୍ଞା ପାଇ   ଶ୍ରୀମାନ ଗୋବିନ୍ଦ
ଧନୁରେ ଶର ପୂରାଇ
ଲକ୍ଷ କରିଣ
ବୋଲେ ଗୁରୁଦେବ କର ଶ୍ରବଣ । ୫୨

ପର୍ବତ ଶିଖରେ   ସ୍ତମ୍ଭର ଉପରେ
ଦିଶଇ ଖଡ଼ିକା ଅଗ୍ର
ଖଡ଼ିକା ଅଗ୍ରରେ   ଦେଖୁଅଛି ମୁହିଁ
ରହିଛି ଧାନର ଶୃଙ୍ଗ
ଏହା ଦେଖଇ
ଅନ୍ୟ କିଛି ମୋତେ ଦିଶଇ ନାହିଁ । ୫୩

ତାହା ହସ୍ତୁ ଧନୁ   ଆଣି ଗୁରୁଦେବ
ଦେଲେ ଆପଣା ନନ୍ଦନ

ଗୁରୁପୁତ୍ର ବୋଲେ     ଗିରି ଶୃଙ୍ଗେ ସ୍ତମ୍ଭ
ଅଗ୍ରେ ଖଡ଼କା ସ୍ଥାପନ
ଖଡ଼କା ଶୀର୍ଷେ
ଧାନ ଶୃଙ୍ଗ ଛଡ଼ା ଅନ୍ୟ ନ ଦିଶେ । ୫୪

ଧୃତରାଷ୍ଟ୍ରଙ୍କର     ଶତେକ ତନୟ
ଲକ୍ଷ ଭେଦ ନ ପାରିଲେ
ଯୁଧିଷ୍ଠିର, ଭୀମ,     ନକୁଳ, ସହଦେବ
ସମସ୍ତେ ପରୀକ୍ଷା ଦେଲେ
ବିଫଳ ମନ
ଶେଷରେ ଡାକିଲେ ପାର୍ଥଙ୍କୁ ଦ୍ରୋଣ । ୫୫

ଧନୁ କରେ ଧରି     ନାରାଚ ଯୋଖିଣ
କହିଲେ ଇନ୍ଦ୍ର କୁମର
ଆଠ ସମ୍ର ଆଠ     ଆଠାଶୀ ପାହୁଣ୍ଡ
ଦୂରେ ପର୍ବତ ଶିଖର
ଶିଖର ଦେଶେ
ବୃକ୍ଷ ସ୍ତମ୍ଭ ବେନି ନୟନେ ଦିଶେ । ୫୬

ସ୍ତମ୍ଭର ଉପରେ     ଖଡ଼କାଏ ଅଛି
ଖଡ଼କା ଶୃଙ୍ଗରେ ଧାନ
ଧାନ ଶୃଙ୍ଗ ପରେ     ସରଗଡ ଅଛି
ତାପରେ ସୋରିଷ ସ୍ଥାନ
କହ ବିଧାନ
କାହାକୁ ବିନ୍ଧିବ ଧନୁରେ ବାଣ ? । ୫୭

ବିନ୍ଧିବ ସୋରିଷ     ଅବା ଧାନ ଶୃଙ୍ଗ
ଆଦେଶ ଦିଅ ବଦନ
ଆଜ୍ଞା ଦେଲେ ଗୁରୁ     ସୋରିଷକୁ ବିନ୍ଧ
ତାହାହିଁ କଲେ ଅର୍ଜୁନ
ସୋରିଷ ଫାଳ
ଧାନ ଶୃଙ୍ଗ ସରଗଡ ଅଟଳ । ୫୮

ଦେଖଣ ଆନନ୍ଦ   ହେଲେ ଗୁରୁ ଦ୍ରୋଣ
କହିଲେ ବିଦ୍ୟାରେ ତୁହି
ବୀର ପର୍ଶୁରାମ   ସମକକ୍ଷ ହେଲୁ
ହେବୁ ତ୍ରିପୁର ବିଜୟୀ
ହେଲି ନିଶ୍ଚିତ
ଯଶ ନିବାରଣେ ହୋଇଛୁ ଜାତ । ୫୯

ପରୀକ୍ଷା ଶେଷରେ   ଶିଷ୍ୟ ସଙ୍ଗେ ଦ୍ରୋଣ
ଆଖଡ଼ା ଶାଳେ ମିଳିଲେ
ଆପଣା ପୁତ୍ରକୁ   ପାଖକୁ ଡକାଇ
କଥା ବୁଝାଇ କହିଲେ
ଶୁଣ ନନ୍ଦନ
ଗୁରୁ ଆଜ୍ଞାକର ପିତା ବଚନ । ୬୦

କୌରବ, ପାଣ୍ଡବ   ଉଭୟଙ୍କ ମଧ୍ୟେ
ହେବ ଭାରତ ସମର
କ୍ଷତ୍ରିୟ ନିଧନ   କରିବ ଅର୍ଜୁନ
କରେ ଧରି ଧନୁଶର
ଏଠି ରହିଲେ
ସମରେ ମରିବୁ ତୁ ଅବହେଳେ । ୬୧

ବଞ୍ଚିବାକୁ ଯେବେ   ଇଚ୍ଛା ଅଛି ତୋର
ମାଗ ତୁ ଅମର ବର
ପିତାଙ୍କ ବଚନେ   ନିର୍ଜନ କାନନେ
ତପ କରିଲା କୁମର
ଏକଦା ଦ୍ରୋଣ
ଆଜ୍ଞା ଦେଲେ ଶିଷ୍ୟେ ଗଣ୍ଡା କାରଣ ।୬୨

ଗୁରୁ ଆଜ୍ଞା ପାଇ   ବନକୁ ଚଳିଲେ
ଦୁଇ ଦଳେ ଦୁଇ ଭାଇ
ଗଣ୍ଡାଭାର ଧରି   ଫେରିଲେ ପାଣ୍ଡବେ
କୌରବଙ୍କ ଦେଖା ନାହିଁ

ବଳମ୍ବ ଜାଣି
ଖୋଜିଗଲେ ଗୁରୁ ଶିଷ୍ୟଙ୍କୁ ଘେନ । ୬୩
ଦେଖିଲେ କାନନେ ଧୃତବସ୍ତ୍ର ସୁତେ
ପଡ଼ିଛନ୍ତି ତେଜି ଜ୍ଞାନ
ଆଜ୍ଞା ଦେଲେ ଦ୍ରୋଣ ଏ ବନେ କେ ବୀର
ଅଛି ପାର୍ଥ ଖୋଜି ଆଣ
ଅନତି ଦୂରେ
ଦେଖିଲେ ଶବର ଆଖଡ଼ା କରେ । ୬୪
ଶବରକୁ ଡ଼ାକି ଭାଇଙ୍କର ମୃତ୍ୟୁ
ସମ୍ବାଦ ପୁଚ୍ଛନ୍ତେ ବୀର
ଶବର କହିଲା ମୋହ ପତ୍ନୀ ପ୍ରତି
କଲେ ଖରାପ ବେଭାର
ଏଣୁ ମୋ ବାଣେ
ପଡ଼ିଛନ୍ତି ଦୁଷ୍ଟେ ଚେତା ବିହୁନେ । ୬୫
ଏକଲବ୍ୟର ଏ ଦୃଢ଼ କଥା ଶୁଣି
କ୍ରୋଧ କରି ପାର୍ଥବୀର
କରେ ଧରି ଧନୁ ଶର ପ୍ରହାରନ୍ତେ
ଲାଗିଲା ଘୋର ସମର
କମ୍ପିଲା ବନ
ବାଣ ଶବ୍ଦ ଶୁଣି ମିଳିଲେ ଦ୍ରୋଣ । ୬୬
ଜାଣିଲେ ବେନିଙ୍କ ମଧ୍ୟେ ଯୁଦ୍ଧ ହେଲେ
ଅର୍ଜ୍ଜୁନ ହେବେ ପରାସ୍ତ
ରହରହ କହି ମଧ୍ୟେ ଠିଆ ରହି
ବୀରେ କରାଇଲେ ଶାନ୍ତ
କହିଲେ ଅସ୍ତ୍ର
ସମ୍ବରଣ କର ନୋହି କୋପିତ । ୬୭
ନିଷାଦ ନନ୍ଦନ ଏକଲବ୍ୟଙ୍କର
ଅସ୍ତ୍ରବିଦ୍ୟା ସିଦ୍ଧି ଦେଖି

ମନ ମଧ୍ୟେ ଦ୍ରୋଣ ପ୍ରମାଦ ଗଣିଲେ
ଅନ୍ତରେ ହେଲେ ହେଁ ସୁଖୀ
ଭାବ ଜାଗ୍ରତ
ହେବାରୁ ହୃଦୟ ଉଦ୍‌ବେଳିତ । ୬୮
ପ୍ରତ୍ୟକ୍ଷ ଭାବରେ ବିଦ୍ୟା ଶିକ୍ଷା ଦେବା
ହେଲେ ଗୁରୁଙ୍କର ଧର୍ମ
ମାତ୍ର ପରୋକ୍ଷରେ ଶିଷ୍ୟ ନିଷ୍ଠାବଳେ
ବିଦ୍ୟା କରିବା ସାଧନ
ପାଇ ପ୍ରମାଣ
ଗୁରୁ ଦ୍ରୋଣଙ୍କର ବିଦଗ୍ଧ ମନ । ୬୯
ବିଚାରିଲେ ମନେ ଶିକ୍ଷା ପ୍ରଦାନରୁ
ବଞ୍ଚିତ ହୋଇ ଶବର
ଦୃଢ଼ ମନ ବଳେ ବିଦ୍ୟା ସିଦ୍ଧି କରି
ହୋଇଲା ବିଖ୍ୟାତ ବୀର
ସଙ୍ଗେ ଅର୍ଜ୍ଜୁନ
ବୀରତ୍ୱରେ ହେବେ ନାହିଁ ସମାନ । ୭୦
ଶବର ମଧ୍ୟରେ ଏଡ଼େ ଦିବ୍ୟ ଶକ୍ତି
ଥିବା ଜାଣି ଗୁରୁ ଦ୍ରୋଣ
ଏକଲବ୍ୟ ପ୍ରତି ମୁଗ୍ଧ ହୋଇଯାଇ
ଅନ୍ତରେ କଲେ କଲ୍ୟାଣ
ତାହା ଧୀଶକ୍ତି
ଚମତ୍କୃତ କଲା ଗୁରୁଙ୍କୁ ଅତି । ୭୧
ହୃଦୟ ମଧ୍ୟରେ ବିଚାରିଲେ ଦ୍ରୋଣ
ଧନୁର୍ଦ୍ଧର ଏକଲବ୍ୟ
ଦୁର୍ଦ୍ଧର୍ଷ ନିଷାଦ- ଗଣେ ଧନୁର୍ବିଦ୍ୟା
ଯଦ୍ୟପି ସେ ଶିକ୍ଷା ଦେବ
ଶବର ସୁତେ
ବିଖ୍ୟାତ ହୋଇବେ ଏ ଆର୍ଯ୍ୟାବର୍ତ୍ତେ । ୭୨

ଆର୍ଯ୍ୟଜାତି ପ୍ରତି ଏ ଘୋର ବିପଦ
ଗଢ଼ିଲେ ନିଷାଦ ଗୋଷ୍ଠୀ
ଗୁରୁକୁଳାଶ୍ରମ ପ୍ରାଧାନ୍ୟ ବିନଷ୍ଟ
ହୋଇ ବଢ଼ିବ ଅଶିଷ୍ଟି
ବିପ୍ର ପ୍ରାଧାନ୍ୟ
ସମାଜରେ ହୋଇଯିବ ଖଣ୍ଡନ । ୭୩

ତା' ସଙ୍ଗେ କ୍ଷତ୍ରିୟ ଶକ୍ତି ଖର୍ବ ହେବ
ସମାଜ ହେବ ଦୁର୍ବଳ
ଏଣୁ ଏ ନିଷାଦ ଶକ୍ତି ହରଣରେ
ବିପ୍ର - କ୍ଷତ୍ରିଙ୍କ ମଙ୍ଗଳ
ଏହା ବିଚାରି
କହିଲେ ନିଷାଦେ କପଟ କରି । ୭୪

" ଜାଣିଲି ତୋହର ଦୃଢ଼ ମନୋବଳେ
ବିଦ୍ୟା ହୋଇଅଛୁ ସିଦ୍ଧି
ମାତ୍ର ଗୁରୁଙ୍କର ଦକ୍ଷିଣା ନ ଦେଲେ
ହୋଇବ ବିଦ୍ୟା ଅସିଦ୍ଧି
ଏମନ୍ତ ବିଧି
ଦକ୍ଷିଣା ଦେଇଣ ଲଭ ପ୍ରସିଦ୍ଧି । ୭୫

ଗୁରୁ ବାକ୍ୟ ଶୁଣି ବୋଲେ ଏକଲବ୍ୟ
କଲି ମୁଁ ତିବାର ସତ୍ୟ
ଯାହା ଆଜ୍ଞା ହେବ ପ୍ରଦାନ କରି ମୁଁ
ହେବି ଗୁରୁ ଋଣ ମୁକ୍ତ
ସତ୍ୟ ବଚନ
ବିଳମ୍ବ ନ କରି ମାଗ ବହନ । ୭୬

ନିଷାଦ ବଚନ ଶୁଣି ବିପ୍ରବର
କହିଲେ ତୋ ଦକ୍ଷ ହସ୍ତ
ବୃଦ୍ଧାଙ୍ଗୁଳି କାଟି କର ସମର୍ପଣ
ଲୋଡ଼ା ନାହିଁ ଅନ୍ୟ ବିତ୍ତ

ଗୁରୁ ଆଦେଶ
ପାଳନ କରିଲେ ଆନନ୍ଦେ ଶିଷ୍ୟ । ୭୭
ନିଜ ଦକ୍ଷ ହସ୍ତ ବୃଦ୍ଧାଙ୍ଗୁଳି କାଟି
ଦେଲା ଗୁରୁଙ୍କର ହସ୍ତ
ତଦ୍ୱାରା ବୀରତ୍ୱ ବନସ୍ତ ହେଲେମେଁ
ବୃଦ୍ଧି ପାଇଲା ମହତ୍ତ୍ୱ
ସର୍ବେ ବିସ୍ମିତ
ତା' ଗୁରୁଭକତି ଦେଖି ଲଜ୍ଜିତ । ୭୮
ଶବରକୁ କୋଳ କରି ଗୁରୁ ଦ୍ରୋଣ
କହିଲେ ବୀରାଗ୍ରଗଣ୍ୟ
ତୋହ ପରି ଶିଷ୍ୟ ଦର୍ଶନ ପାଇ ମୁଁ
ନିଜକୁ ମଣୁଛି ଧନ୍ୟ
ଅକ୍ଷୟ କୀର୍ତ୍ତି
ରଖିଲୁ କରି ତୁ ସର୍ବସ୍ୱ ହୃତି । ୭୯
ଶବର ପୁଚ୍ଛିଲା ଆହେ ଗୁରୁଦେବ
ଭଗ୍ନ କଲ ପରା ମୋତେ
କପଟ କରିଣ ବୀରତ୍ୱ ହରିଲ
ଦୁଃଖ ଆସେ ମୋର ଚିତ୍ତେ
ଭାରତ ଭୁଇଁ
ପାର୍ଥ ପ୍ରତିଦ୍ୱନ୍ଦୀ ରଖିଲ ନାହିଁ । ୮୦
ଗୁରୁ ହୋଇ ତୁମ୍ଭ ପକ୍ଷପାତ ଗୁଣ
ଦେଖି ମୁଁ ଘୃଣା କରଇ
ବିଦ୍ୟାର୍ଜ୍ଜନ ପାଇଁ ଯାଇଥିଲି କୁରୁ-
ପତି ଦେଲେ ଘଉଡ଼ାଇ
ସେ ଅପମାନ
ପ୍ରତିଶୋଧ ନେବା ଚିନ୍ତଣ ମନ । ୮୧
ଯୁଦ୍ଧେ କୁରୁବଳ ବିନାଶ କରି ମୁଁ
ରଖିଥାନ୍ତି ଷର୍ଦ୍ଧି ଠାଣ

ମାନ ମୋହ ଠାରେ କପଟ କରଣ
କଲ ମୋ ଶକ୍ତି ହରଣ
ଏ ଆଚରଣ
ଦେଖଣ ବିଦ୍ରୋହୀ ହେଉଛି ମନ ।୮୨

ଏକଲବ୍ୟର ଏ ଗୁରୁଭକ୍ତି ତଥା
ବ୍ୟକ୍ତିତ୍ୱ କର ଦର୍ଶନ
ଜାଣିଲେ ଋଷିପୁ ଠାରୁ ଗିରିଜନ
ଅଧିକ ମହତ୍ତ୍ୱ ପୂର୍ଣ୍ଣ
ଆର୍ଯ୍ୟଠୁ ଶ୍ରେଷ୍ଠ
ବନ ଗିରିବାସୀ ଗୁଣେ ଗରିଷ୍ଠ ।୮୩

କାନନର ଶାନ୍ତ ପରିବେଶେ ରହି
ପ୍ରକୃତ ସରଳ ଶାନ୍ତ
ମାନବ ଜାତିର ମୂଳ ବଂଶଧର
ଆଦି ମାନବ କଥିତ
ଧନ୍ୟ ଭାରତ
ଆର୍ଯ୍ୟ ସଂସ୍କୃତ ଯହିଁ ଭୂଲୁଣ୍ଠିତ ।୮୪

ପଞ୍ଚାଅଶୀ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ସୁଜନେ ନ ଘେନ ଦୋଷ
ଗୁରୁ ଅଭିରାମ କୃପା ହୋଇବାରୁ
ଗୀତେ ବୋଲେ ବୃନ୍ଦଦାସ
ଅମିୟ ରସ
ପାନ କରି ଜନେ ଲଭ ସନ୍ତୋଷ ।୮୫

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ, ଏକଲବ୍ୟର ଗୁରୁଭକ୍ତି ଓ ଗୁରୁଦ୍ରୋଣ
ଉପାଖ୍ୟାନେ ନାମ ଅଷ୍ଟବିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି -**

ନମୋ ନମୋ ଗୁରୁ          ବାଞ୍ଛା କଳ୍ପତରୁ
ନମସ୍ତେ ବ୍ରହ୍ମା - ବିଷ୍ଣୁ - ମହେଶ୍ୱର
ଗୁରୁ ରୂପେ ଜ୍ଞାନ          ପ୍ରଦାନ କରିଣ
ଦୂର କର ଅଜ୍ଞାନ ଅନ୍ଧକାର
ନମୋ ଗୁରୁ ବ୍ରହ୍ମ
ଧରେ ରାମ - କୃଷ୍ଣ - ଶ୍ୟାମାଭିରାମ ।୧

ଗୁରୁକୃପା ବିନା          ଜ୍ଞାନାର୍ଜ୍ଜନ ମନା
ଜ୍ଞାନଦାତା ଗୁରୁ ପରମବ୍ରହ୍ମ
ସଗୁଣ ନିର୍ଗୁଣ          ସର୍ବେ ଗୁଣେ ପୂର୍ଣ୍ଣ
ସ୍ୱରୂପ ଅରୂପ ସେ ସର୍ବନାମ
ସର୍ବଜୀବାତ୍ମନ
ପରମ ଦୟାଳୁ ଅନାଦି ବ୍ରହ୍ମ ।୨

ଅନ୍ତର୍ଯ୍ୟାମୀଙ୍କୁ ଯେ          ଅନ୍ତରେ ଧରିଛୁ
ଅନନ୍ତ ଶକତି ବହେ ଶରୀର
ସର୍ବ ବିଦ୍ୟା ବୁଦ୍ଧି          ହୋଇଥାଏ ସିଦ୍ଧି
ପଣ୍ଡିତ ପଣେ ଶିବ କୁମାର
ବୃନ୍ଦଦାସ ବୋଲେ
ସର୍ବସିଦ୍ଧି ପ୍ରାପ୍ତ ତା କରି ଚଳେ ।୩



# ଊନଚତ୍ୱାରିଂଶ ଅଧ୍ୟାୟ
## ଗିରି ଗୋବର୍ଦ୍ଧନ ପୂଜା
( ରାଗ - ଶଙ୍କରାଭରଣ )

କୃଷ୍ଣ ଚରିତ ମାନସ ଶୁଣ ସୁଜ୍ଞଜନ
ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ଗୁରୁବାର ଦିନ
ମାସର ଅଠର ଦିନ
ଶ୍ରବଣା ନାମେ ନକ୍ଷତ୍ର ବାଣିଜ୍ୟ କରଣ । ୧

ବିଷ୍କମ୍ଭ ନାମରେ ଯୋଗ ଅଟଇ ସେଦିନ
ନନ୍ଦରାଜା ଇନ୍ଦ୍ର ପୂଜା କଲେ ଆୟୋଜନ
ଯୋଗାଡ଼ ଦ୍ରବ୍ୟ ବିବିଧ
ଗନ୍ଧ-ପୁଷ୍ପ-ଧୂପ-ଦୀପ- ନାନା ନଇବେଦ୍ୟ । ୨

ଏକାଳେ ମିଳିଲେ ତହିଁ ଆସି ବଂଶୀଧର
ପୁଚ୍ଛା କଲେ କେଉଁ ପୂଜା କରୁଛ ପିତର
କାହାପାଇଁ ଏତେ ଦ୍ରବ୍ୟ
[illegible] ମନ୍ତ୍ର ପଢି ପୂଜ କେଉଁ ଦେବ ? । ୩

ପୁତ୍ରର କଥାକୁ ଶୁଣି ବୋଲୁଛନ୍ତି ନନ୍ଦ
ଆମ୍ଭର ଇଷ୍ଟ ଦେବତା ପୂଜା କରୁ ଇନ୍ଦ୍ର
କରନ୍ତି କାମନା ସିଦ୍ଧି
ଇନ୍ଦ୍ର ପୂଜାକରି ଗୋପେ ଧନ୍ୟଧାନ୍ୟ ବୃଦ୍ଧି । ୪

ଇନ୍ଦ୍ରଙ୍କ କୃପାରୁ ଗୋପେ ବରଷଇ ଜଳ
ବୃଷ୍ଟି ଜଳ ପାଇ ପୃଥ୍ୱୀ ଦିଏ ଫୁଲ ଫଳ
ତୃଣଭୂମି ପରିପୂର୍ଣ୍ଣ
ତୃଣ ଭକ୍ଷଣେ ସନ୍ତୁଷ୍ଟ ଅଟନ୍ତି ଗୋଧନ । ୫

ଲକ୍ଷେ ଘର ଦୁଧ ଦହି ଦିନକୁ ଉତ୍ପନ୍ନ
ସର ଲବଣୀ - ଅଧାମ ଖାଉଛନ୍ତି ଜନ
ଗୋପେ ଗୋପ ଗୋପୀ ଗଣ
ସବଳ-ସୁନ୍ଦର-ସୁଶ୍ରୀ-ଶୌର୍ଯ୍ୟ ବୀର୍ଯ୍ୟବାନ । ୬

ଗ୍ରହପୀଡ଼ା, ରୋଗଶୋକ, ଅରିଷ୍ଟ ଉତ୍ପାତ
ଇନ୍ଦ୍ର ରାଜା କୃପାବଳେ ରହନ୍ତି ଦୂରୀଭୂତ
ତୁମ୍ଭେ ଆମ୍ଭର ତନୟ
ଇନ୍ଦ୍ରଙ୍କୁ ପ୍ରଣାମ କର ନଷ୍ଟ ହେବ ଭୟ । ୭
ପିତା କଥା ଶୁଣି ହସି କହିଲେ ଶ୍ରୀଧର
ବୃଷ୍ଟି କରିବାରେ ନାହିଁ ଇନ୍ଦ୍ର ଅଧିକାର
ପ୍ରକୃତ ନିୟମେ ବୃଷ୍ଟି
ହୋଇ ଶସ୍ୟ ଶ୍ୟାମଳାରେ ହସିଉଠେ ସୃଷ୍ଟି । ୮
ବୃଷ୍ଟି ପ୍ରକରଣେ ନାହିଁ କାହା ଅଧିକାର
ସୃଷ୍ଟି ସଂଚରଣ ସୂତ୍ରେ ବରଷଇ ନୀର
ସୂର୍ଯ୍ୟ ତାପେ ପୃଥ୍ୱୀ ଜଳ
ବାଷ୍ପାକାରେ ଉଡ଼ି ସୃଷ୍ଟି କରେ ମେଘମାଳ । ୯
ଶୀତଳୀକରଣ ସୂତ୍ରେ ବରଷଇ ନୀର
ଇନ୍ଦ୍ରର ଏଥିରେ ନାହିଁ କିଛି ଅଧିକାର
ମିଛେ କର ଇନ୍ଦ୍ର ପୂଜା
ମୋହର ଦୃଷ୍ଟିର କିନ୍ତୁ ଭିନ୍ନ ଅଟେ ରାଜା । ୧୦
ଗହନ କାନନେ ଆମ୍ଭେ କରି ଅଛେ ଘର
ଗୋରୁ ଗାଈ ଚରୁଛନ୍ତି ବନେ ନିରନ୍ତର
ବନ ଯୋଗୁଁ ବର୍ଷେ ଘନ
ବୃଷ୍ଟିର ଦେବତା ବନଗିରି ପ୍ରମାଣ । ୧୧
ବନଗିରି ବିନା ନ ହୋଇବ ଘନ ବୃଷ୍ଟି
ବୃକ୍ଷରାଜି କରିଥାନ୍ତି ସିନା ଘନ ସୃଷ୍ଟି
ଗିରି ଶିଖରରୁ ନିର୍ଝର
ଝରିବାରୁ ଇନ୍ଦ୍ରଠାରୁ ବଡ ଗିରିବର । ୧୨
ବନଗିରି ପୂଜା ଅଟେ ଗୋପାଳଙ୍କ ଧର୍ମ
ଶରଦ ସନ୍ଧ୍ୟାରେ ପୂଜିବା ଗିରି ଗୋବର୍ଦ୍ଧନ
ଜଳ ତୃଣ ବୃଦ୍ଧି ହେଲେ
ଗୋଧନ ବୃଦ୍ଧି ହୋଇବେ ଏ ଗୋପ ମଣ୍ଡଳେ । ୧୩

ମୋହର ବତ୍ସର ସଜା ଏ ମନ୍ତ ଅଟଇ
ଇନ୍ଦ୍ର ପୂଜା କରିବାରେ ପ୍ରୟୋଜନ ନାହିଁ
କରିବା ଗିରି ପୂଜନ
ସେ ଆମ୍ଭଙ୍କୁ ଦେଉଅଛି ନୀର-କ୍ଷୀର-ତୃଣ ।୧୪

ଆଦିମ କାଳରୁ ଏହି ପୂଜା ପ୍ରବର୍ତ୍ତିତ
ବନବାସୀମାନେ ବୁଝି ଅଛନ୍ତି ମହତ୍ତ୍ୱ
ଏହି କାରଣରୁ ସେମାନେ
ବନଗିରି ପୂଜା କରିଥାନ୍ତି ଶ୍ରଦ୍ଧାମନେ ।୧୫

ଆଦି ମାନବ ସମାଜେ ପର୍ବତ ପୂଜନ
ଆଦିମ କାଳୁ ପ୍ରଚଳିତ ଅଛି ସଜନ
ମାରାଂ ବୁରୁ ନାମେ ଖ୍ୟାତ
ପର୍ବତ ଦେବତା ଦେବଗଣ ମଧ୍ୟେ ଶ୍ରେଷ୍ଠ ।୧୬

ମୁଣ୍ଡାରି ସମାଜେ ମାରାଂବୁରୁ କୁଳ ଇଷ୍ଟ
ବୃକ୍ଷ, ଜୀବ, ଜନ୍ତୁ, ସ୍ଥାବର, ଜଙ୍ଗମ, କୀଟ
ପତଙ୍ଗାଦି ସୃରିଖାନ
ମାରାଂବୁରୁ ପାଳୁଛନ୍ତି ଜଗତର ପ୍ରାଣୀ ।୧୭

ଆଦିମ ମାନବ ସମାଜରେ ମାରାଂବୁରୁ
ଚତୁର୍ବର୍ଗ ଫଳ ଦାତା ଦେବଗଣେ ଗୁରୁ
ପର୍ବପର୍ବାଣି ପାଳନ
ଫଗୁଣ ଚଇତେ ବାଆ ବୁଙ୍ଗା ପ୍ରଚଳନ ।୧୮

କୁସୁମ ଖଙ୍ଗ୍ରୀ ନବାନ୍ନ ଭକ୍ଷଣ ପର୍ବ
ଦଶାହିଦ ପର୍ବେ ପୂଜନ୍ତି ପର୍ବତଦେବ
ଗିରି ଗୋବର୍ଦ୍ଧନ ପୂଜା
ବନବାସୀ ସମାଜରେ ପ୍ରଚଳିତ ସଜା ।୧୯

ଲୁକୁହାରାମ, ଲୁକୁବୁଢିଆ ପୁଂସନାରୀ
ସୃଷ୍ଟିର ଆଦି ମାନବ ରୂପେ ଅବତରି
ଯେଉଁ ପର୍ବତରେ ବାସ
କଲେ 'ଲୁକୁବୁରୁ' ନାମେ ହୋଇଛି ପ୍ରକାଶ ।୨୦

ଲୁକୁବୁରୁ ଠାରେ ଲୁକୁଗାଣ୍ଡା ଆଦ୍ୟାଶକ୍ତି
ଆଦିମାନବର ଇଷ୍ଟ କରନ୍ତି ବସତି
ଏକଥା ବିଶ୍ୱାସ କରି
ଆଦି ମାନବେ ପୂଜନ୍ତି ଭକ୍ତି ଭରେ ଗିରି । ୨୧
ପ୍ରାକ୍ ବୈଦିକ କାଳରୁ ଏହା ପ୍ରଚଳିତ
ପର୍ବତ ପୂଜା ଆଦିମ ସଂସ୍କୃତି କଥିତ
ପର ଉପକାରୀ ଗିରି
ଗିରି ପୂଜା କର ରାଜା ହିତ ଚିନ୍ତା କରି । ୨୨
ଫଳପୁଷ୍ପ ଭରା ବୃକ୍ଷ ଗଣରେ ଶୋଭିତ
ସୁଶୀତଳ ଜଳଧାରା ମାନ ପ୍ରବାହିତ
ତୃଣଭୂମି ପରିପୂର୍ଣ୍ଣ
ପାଦଦେଶେ କୃଷି କ୍ଷେତ୍ର ଉର୍ବର ସମ୍ପନ୍ନ । ୨୩
ଗିରି ଗୋବର୍ଦ୍ଧନ ସୁରକ୍ଷଣଶୀଳ ଜାତିର
ଅମୂଲ୍ୟ ସମ୍ପତ୍ତି ଦ୍ରବ୍ୟ ଦାନ ପ୍ରକୃତିର
ବର୍ଦ୍ଧିତ ଗୋଧନ ଧାନ୍ୟ
ଦୁଧ ଘୃତ ଗୋପପୁରେ ସଦା ପରିପୂର୍ଣ୍ଣ । ୨୪
ଜନଜାତି ଜୀବନରେ ଗୋବର୍ଦ୍ଧନ ପୂଜା
ଗଣ ଉତ୍ସବେ ପରିଣତ ହୋଇଛି ରାଜା
ଏହା ଆଦିମ ସଂସ୍କୃତି
ରକ୍ଷାକର ଗୋପ ପତି ବଢ଼ିବ ସମ୍ପତ୍ତି । ୨୫
ଗୋପର ଏଇ ଆଭୀର ସମ୍ପ୍ରଦା ପ୍ରାଚୀନ
ବନବାସୀ ଅବଶେଷ ବୋଲି କରି ଜାଣ
ବନ ପ୍ରଦେଶରେ ବାସ
କରି ଥିବାରୁ ଆଦିମ ଜାତିର ସେ ଅଂଶ । ୨୬
ବନରେ ଶବରେ ଫଳମୂଳ କନ୍ଦା ଖାଇ
କରନ୍ତି କାଳଯାପନ ଯେପରି ନୃସାଇଁ
ସେପରି ଆଭୀର ମାନେ
ଗୋପାଳନ କରି ବାସ କରୁଥାନ୍ତି ବନେ । ୨୭

ଜୀବନ ଜୀବିକା କର୍ମ ପ୍ରବାହରେ ନିତ୍ୟ
ଗୋ ପଶୁ ପାଳନ ବୃତ୍ତି ଅତୀବ ମହତ୍ତ୍ୱ
ବିଶେଷ ଭାବେ ଗୃହୀତ
ଗୋପାଳନ ବୃତ୍ତି ଗୋଟି ଆହେ ଗୋପନାଥ ।୨୮
ଗୋଚାରଣ ପାଇଁ ଚର ଭୂମି ଅନ୍ୱେଷଣ
କରିବାକୁ ଏକସ୍ଥାନୁ ଅନ୍ୟତ୍ର ଭ୍ରମଣ
ଯାଯାବରର ଜୀବନ
ଯାପନ କରି କରନ୍ତି ବନେ ଗୋପାଳନ । ୨୯
ଗିରି ପାଦଦେଶ ପୂର୍ଣ୍ଣ ଚାରଣ ଭୂମିରେ
ଚରନ୍ତି ଗୋମହିଷାଦି ଆନନ୍ଦ ମନରେ
ନିର୍ଝରଣୀ ଜଳପାନ
କରି ତରୁ ଛାୟାତଳେ କରନ୍ତି ବିଶ୍ରାମ । ୩୦
ବହୁବୃଷ୍ଟି ଅବା ଅନାବୃଷ୍ଟି ସମୟରେ
ଆଶ୍ରୟ ନିଅନ୍ତି ସୁଖେ ଗିରି କନ୍ଦରରେ
ବିପର୍ଯ୍ୟୟେ ଗିରିବର
ଆଶ୍ରୟ ସ୍ଥଳୀ ଅଟଇ ଜୀବ ଜଗତର । ୩୧
ଗୋମହିଷ, ପଶୁପକ୍ଷୀ, ସରୀସୃପ ଆଦି
ସଭିଙ୍କର କ୍ରୀଡ଼ାଭୂମି ଗିରି, ଗିରିନଦୀ
ପ୍ରାଣୀଙ୍କ ଆଶ୍ରୟ ସ୍ଥଳ
ପର୍ବତ ଗାତରେ ଥିବା ଗୁହା, ଗିରିଖୋଲ । ୩୨
ଭୂଧର, ଭୂଭୃତ, ମହୀଧର, ସ୍ଥାବର ଓ ଗୋତ୍ର
ନାମରେ କଥିତ ହୋଇ ଅଛଇ ପର୍ବତ
ଶୀତଳ ଛାୟା ପ୍ରଦାନ
ତୃଣଭୂମି, ବନଭୂମି, ଜଳଧାର ପୂର୍ଣ୍ଣ । ୩୩
ଶାନ୍ତକାନ୍ତ ପରିବେଶେ ତପୋବନ ସୃଷ୍ଟି
କରି ମୁନି ଋଷିମାନେ କରନ୍ତି ବସତି
ହୋମଯଜ୍ଞ, ବ୍ରହ୍ମଜ୍ଞାନ
ଆରଣ୍ୟକ ପରିବେଶେ କରନ୍ତି ସାଧନ । ୩୪

ତପୋବନର ଅଧ୍ୟକ୍ଷ ପୂଜ୍ୟ କୁଳପତି
କାଳେକାଳେ ସମାଜକୁ ଶିକ୍ଷା ଦେଇଛନ୍ତି
ସେମାନଙ୍କ ବଂଶଧର
କୁଳଜ୍ୟେଷ୍ଠ ମତେ ଗଣା ଗୋତ୍ର ବା ପ୍ରବର ।୩୫
କୁଳଗୋତ୍ର ପ୍ରବର ପରଂପରାନୁକ୍ରମେ
"ଋଷିପୁତ୍ର" ରୂପେ ଜ୍ଞାତ ହେଲେ କାଳକ୍ରମେ
ଏଥୁ ହୁଏ ଅନୁମିତ
ଗୋତ୍ର ଓ ପ୍ରବର ସୃଷ୍ଟି କରିଛୁ ପଣ୍ଡିତ । ୩୬
ଶବର, ଆଭୀର ବେନ୍ତ ଜନ ସଂପ୍ରଦାୟ
ଜୀବନ, ଜୀବିକା ବେଉସା ସମାନ ପ୍ରାୟ
ଦେବଦେବୀ ପୂଜାପାଠ
ଧର୍ମ ଧାରଣା ପରମ୍ପରାଣୀ ଏକ ଗୋଠ । ୩୭
ବନ ଦେବତାଙ୍କୁ ଆତ୍ମୀୟ ଶ୍ରଦ୍ଧା ଭାବରେ
ମନୁଷ୍ୟୋଚିତ ମାର୍ଗେ ପୂଜନ୍ତି ସଶଙ୍କରେ
ମାନବ ଦେହେ ଦେବତ୍ୱ
ଆରୋପଣ କରିବାରେ ଚେତନା ଜାଗ୍ରତ । ୩୮
ମାନବର ସ୍ନେହ ଶ୍ରଦ୍ଧାଭାବ ପରିସ୍ଫୁଟ
ସ୍ୱଭାବେ ପ୍ରକୃତ, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟାବିଷ୍ଟ
ଐଶ୍ୱର୍ଯ୍ୟ ବିଭବ ଶୂନ୍ୟ
ପୂଜା ଉପାସନା କାର୍ଯ୍ୟେ ସତତ ନିମଗ୍ନ । ୩୯
ପ୍ରୀତି-ମୈତ୍ରୀ-ଶାନ୍ତି-ସଂପ୍ରୀତି ସଂପ୍ରସାରଣ
ବୈଦିକ ସଂସ୍କୃତି ପ୍ରଧାନ ଏହି ଧାରା ଜାଣ
ଭକ୍ତି ଭାବର ଉନ୍ମେଷ
କଳୁଷିତ ସମାଜରେ ହୋଇଛୁ ନିଃଶେଷ । ୪୦
ସେ ପ୍ରାଚୀନ ଭାବନାର ପୁନଃ ଜାଗରଣ
କରିବାକୁ ପରାମର୍ଶ ଦେଲେ ରାମକୃଷ୍ଣ
ଶୁଣି ସର୍ବେ ଏକମତ
ବାଳକ ମୁଖରୁ ଜ୍ଞାନ ଚକ୍ଷୁ ବିକଶିତ । ୪୧

ପୁଅର ଯୁକ୍ତିରେ ପିତା ହୋଇଲେ ପରାସ୍ତ
ପରାମର୍ଶ କଲେ ଡାକି କୁଳ ପୁରୋହିତ
ଗାର୍ଗାଚାର୍ଯ୍ୟ ସାନ୍ଦୀପନି
ଏକମତ ହୋଇଲେ ପୁଅଙ୍କ ଯୁକ୍ତି ଶୁଣି । ୪୨
ଗୋବର୍ଦ୍ଧନ ଅଭିମୁଖେ ଶୋଭାଯାତ୍ରା କରି
ଯିବାକୁ ପ୍ରସ୍ତୁତ ହେଲେ ଗୋପ ନରନାରୀ
ଗୋଧନେ ଗାଧୋଇ ଦେଇ
ମଥାରେ ସିନ୍ଦୂର ଗଳେ ମାଳକୁ ଲମ୍ବାଇ । ୪୩
ରଙ୍ଗ ବସ୍ତ୍ରେ ଆଚ୍ଛାଦନ କଲେ ଗାଭୀଗଣ
ମଥାରେ ସିନ୍ଦୂର ଟୋପା ଦେଲେକ ବହନ
ଶିଙ୍ଗରେ ତୈଳ ମର୍ଦ୍ଦନ
କାନ୍ଧରେ ଘାଗୁଡ଼ିମାନ କରିଲେ ବନ୍ଧନ । ୪୪
ଗୋବତ୍ସା ମାନଙ୍କ କଣ୍ଠେ ବାନ୍ଧିଲେ ଘୁଙ୍ଗୁର
ରୁଣୁଝୁଣୁ ଶବ୍ଦରେ ଦାଣ୍ଡ ଭରପୂର
ଷଣ୍ଢ ଶିଙ୍ଗେ ରୂପା ପଟ
ଆଚ୍ଛାଦିତ କରାଇଲେ ବସନରେ ଗାତ୍ର । ୪୫
ନାରୀମାନେ ଅଙ୍ଗବସ୍ତ୍ର କଲେ ପରିଧାନ
ବିଭିନ୍ନ ଅଳଙ୍କାରରେ ଶରୀରର ମଣ୍ଡନ
ଗାଇଣ ଉତ୍ସବ ଗାନ
ଶଗଡ଼ ଗାଡ଼ିରେ ବସି କରିଲେ ଗମନ । ୪୬
ମଥାରେ ପଗଡ଼ି କାନ୍ଧେ ଦୋପଟା ପକାଇ
ଚାଲିଲେ ପୁରୁଷ ଗଣେ ଶଗଡ଼ ଅଡ଼ାଇ
ଯୁବକ ମାନଙ୍କ ମେଳେ
ନାଚକୁଦ ଗୀତଗାଇ ପ୍ରୀତି ଭାବ ଖେଳେ । ୪୭
ରାଧା ଗୋପୀ ଆଦି ଯେତେ ନବୀନ ତରୁଣୀ
ଢଳଢଳ ଯାତ୍ରା କଲେ ହୋଇକଣ ରଙ୍ଗିଣୀ
ପଟ୍ଟବସ୍ତ୍ର ଅଙ୍ଗ ଶୋଭା
ଅଙ୍ଗେ ନାନା ଅଳଙ୍କାର ପୁଷ୍ପମଣ୍ଡେ ଗନ୍ଧ । ୪୮

ରାମକୃଷ୍ଣ ଦୁଇଭାଇ ଆଗ ପଟୁଆରେ
ଚାଲିଥାନ୍ତି ଆନନ୍ଦରେ ବାଳକ ମେଳରେ
ଅଗ୍ରଭାଗେ ହଳଧର
ଚାଲିଛନ୍ତି କନ୍ଧେ ବହି ହଳ ଓ ମୂଷଳ । ୪୯
ମସ୍ତକରେ ସପ୍ତଫଣି କନ୍ଧେ ବନମାଳ
କଟି ଦେଶେ ନୀଳବସ୍ତ୍ର ଧରଇ ମଞ୍ଜୁଳ
ଦୁଇହାତ କଟିରେ
ଫୁଲମାଳ ବନ୍ଧାହୋଇ ଦିବ୍ୟ ଶୋଭା ଧରେ । ୫୦
କୃଷ୍ଣ କଟିଦେଶେ ଖୋସା ହୋଇଅଛି ବଂଶୀ
ବାଳକ ମେଳେ ଯାଆନ୍ତି ହୋଇ ହସଖୁସି
ରଙ୍ଗାଧରେ ସ୍ମିତ ହାସ୍ୟ
ମୁଖ ଶୋଭା ଦେଖି ସର୍ବେ ହୋଇଯାନ୍ତି ବଶ । ୫୧
ଉତ୍ସବ ମୁଖର ହୋଇ ଉଠିଛି ଧରଣୀ
ଗିରି ଗୋବର୍ଦ୍ଧନ ବଗେ ଚଳେ ଲୋକ ଶ୍ରେଣୀ
ମଧ୍ୟାହ୍ନ କାଳେ ମିଳିଲେ
ଗଛଗୁଡ଼ିକ ତଳେ ଯାଇଁ ବିଶ୍ରାମ କରିଲେ । ୫୨
ଫୁଲ-ଚନ୍ଦନ-ସିନ୍ଦୁରେ ଗିରିକୁ ମଣ୍ଡିଲେ
ଗାଗାଚାର୍ଯ୍ୟ ସାନ୍ଦୀପନୀ ମନ୍ତ୍ର ପାଠ କଲେ
ବିଭିନ୍ନ ବାଦ୍ୟ ବାଜିଲା
ଗିରି ଗୋବର୍ଦ୍ଧନ ଗିରି ମାନ୍ୟତା ଲଭିଲା । ୫୩
ଚଗୋବର୍ଦ୍ଧନ, ଗୋରୁଗାଈ, ବୃକ୍ଷଲତା ଗଣେ
ବନ୍ଦାପନା କଲେ ଲୋକେ ଆନନ୍ଦିତ ମନେ
କୃଷ୍ଣେ କଲେ ଅର୍ଘ୍ୟଦାନ
ମହାବିଷ୍ଣୁ ରୂପ ପ୍ରଭୁ କରିଲେ ଧାରଣ । ୫୪
ନାରୀମାନେ ଧରିଥିଲେ ପୂଜା ଅର୍ଘ୍ୟଥାଳୀ
ବନ୍ଦାଇଲେ ଭକ୍ତିଭରେ ଦେଇ ହୁଳହୁଳି
ହରିବୋଲ କରତାଳି
ଗାଇଲେ ମଙ୍ଗଳ ଗୀତ ଜୟ ବନମାଳୀ । ୫୫

ବାଳ ଗୋପାଳ ମୂରତ୍ତି ହେଲେ ବ୍ରହ୍ମରାଶି
ତ୍ରିଭଙ୍ଗ ଠାଣିରେ ଠିଆ ମନ୍ଦେ ମନ୍ଦେ ହସି
ଦେଖି ଧନ୍ୟ ଗୋପ ଗୋଷ୍ଠ
ମାନବା ବସ୍ତ୍ରୁ ପୂଜିଲେ ଗନ୍ଧ ପୁଷ୍ପ ଦେଇ । ୫୬

ଗୋପ ଗୋପୀଗଣେ ଶୁଣ କହିଲେ ଶ୍ରୀକୃଷ୍ଣ
ଅନ୍ୟ ଦେବତା ପୂଜନେ ନାହିଁ ପ୍ରୟୋଜନ
ଫଳ ଦାତା ଦେବଗଣ
ସନ୍ତୁଷ୍ଟ ହେଲେ କରନ୍ତି କାମନା ପୂରଣ । ୫୭

ଶ୍ରଦ୍ଧାଭାବେ କର୍ମ କରି ତ୍ୟାଗ କରି ଫଳ
ଫଳଭୋକ୍ତା ହେଲେ ତୁମ୍ଭ ମିଳେ କର୍ମଫଳ
ଏ ନିୟମେ କର କର୍ମ
ଦୁର୍ଲ୍ଲଭ ମାନବ ଜନ୍ମ କରିବାକୁ କର୍ମ । ୫୮

ତ୍ୟାଗୀ ବଇରାଗୀ ଅବା ସନ୍ନ୍ୟାସୀ ସଜ୍ଜନ
କର୍ମ କରି ଫଳକର ପ୍ରଭୁଙ୍କୁ ଅର୍ପଣ
ଫଳାଗ୍ରାହୀ ହେଲେ ହରି
ଧନ୍ୟ ହେବ ନରଜନ୍ମ ଭବୁ ଯିବ ତରି । ୫୯

ଦେଖ ନାରାୟଣ ନର ଦେହେ ଜନ୍ମିଛନ୍ତି
ଅକର୍ମା ହୋଇଣ କର୍ମ ସୂତ୍ରେ ମଜ୍ଜିଛନ୍ତି
ଭକତ ସହିତ ଖେଳ
ଭକ୍ତ ଗୃହେ ଭୁଞ୍ଜୁଛନ୍ତି ଭାବେ ବନମାଳୀ । ୬୦

ଯିଏ ଯେତେ ଯୋଗ୍ୟ ତା ସଙ୍ଗେ ଖେଳନ୍ତି ସେତେ
ଭକତ ମାତ୍ର ବାନ୍ଧି ପାରେ ମନନ ସୂତ୍ରେ
ଅନ୍ୟକୁ ନୁହନ୍ତି ଦୃଶ୍ୟ
ଭାବ ବନୋଇଆ ପ୍ରଭୁ ଭକ୍ତ ଭାବେ ବଶ । ୬୧

ଭେକ ଲଗୁଅଛି କହି ମୁଖ ବସ୍ତାରିଲେ
ମୁଖ ମଧ୍ୟେ ବିଶ୍ୱ ସୃଷ୍ଟି ସକଳ ଦେଖିଲେ
ସ୍ତମ୍ଭୀଭୂତ ହୋଇଗଲେ
ମହାବସ୍ତ୍ରୁ ମାୟା ଦେଖି ବୁଝି ନ ପାରିଲେ ।୬୨

ବେନି ପୁତ୍ର ନେଇ ମାତା କୋଳେ ବସାଇଲେ
ପୂଜାର ସାମଗ୍ରୀମାନ ସ୍ନେହେ ଭୁଞ୍ଜାଇଲେ
ନୈବେଦ୍ୟ ନ ପାଇ ଇନ୍ଦ୍ର
ବାୟୁ-ବାତ୍ୟା-ବ୍ରଜ-ବୃଷ୍ଟି କଲେ ବହି କ୍ରୋଧ ।୬୩
ପ୍ରବଳ ବୃଷ୍ଟି ପ୍ରବାହେ ଗୋପ ଜଳାର୍ଣ୍ଣବ
ପର୍ବତ ଗୁହାରେ ସର୍ବେ କଲେ ଯାଇ ଠାବ
ଗୋପାଳେ ବିରକ୍ତ ହେଲେ
ଇନ୍ଦ୍ର ପୂଜା ଭଗ୍ନ ହେତୁ ଯାତନା ଭୋଗିଲେ ।୬୪
କୃଷ୍ଣ ନାମେ ଅଭିଯୋଗ କରିଲେ ଆଗତ
କହିଲେ ବିନାଶ ହେଲୁ ଅରଜିବା ବିତ୍ତ
ଭାସିଗଲୁ ଘରଦ୍ୱାର
ରହିବା କେଉଁଠି ବୋଲି କରିଲେ ଚିତ୍କାର ।୬୫
ଗୋପ ଗୋପୀଙ୍କର ଚିତ୍ତ ଦେଖି ଶଙ୍କା ପୂର୍ଣ୍ଣ
ଆଶଙ୍କା ଦୂର ମାନସେ ଶଂକାରି ଶ୍ରୀକୃଷ୍ଣ
କରି କନିଷ୍ଠାଙ୍ଗୁଳିରେ
ଗିରି ଗୋବର୍ଦ୍ଧନ ଟେକି ଧଇଲେ ଶୂନ୍ୟରେ ।୬୬
ଛତ୍ରପ୍ରାୟ ବିସ୍ତାରିତ ଗିରି ଗୋବର୍ଦ୍ଧନ
ଗିରି ତଳେ ଆଶ୍ରା ନେଲେ ପୋପଗୋପୀଗଣ
ଧଇଲେ ସପତ ଦିନ
ତ୍ରିଭଙ୍ଗ ଭଙ୍ଗିରେ ଠିଆ ଦେବ ନାରାୟଣ ।୬୭
ଶୁଣ ହେ ସୁବିଜ୍ଞ ଜନେ ବିଚିତ୍ର ଚରିତ
ଗୋପେ ସାତଦିନ ସାତରାତି ବୃଷ୍ଟିପାତ
ହେଲେହେଁ ଅନବରତ
ନ ବହିଲ ଗୋପଦାଣ୍ଡେ ଟୋପେ ଜଳସ୍ରୋତ ।୬୮
ଏଥିର କାରଣ ଶୁଣ ଶାସ୍ତ୍ରର ପ୍ରମାଣ
ଶିବପାର୍ବତୀ ବ୍ରାହ୍ମଣ ଭୋଜନ ଆଖ୍ୟାନ
ଏକ ଦିନେ ହୈମବତୀ
ସ୍ୱାମୀଙ୍କୁ ଡାକି କହିଲେ ସଧୀରେ ଭାରତୀ ।୬୯

ହରିଜନ୍ମ ଆଜ ସ୍ୱାମୀ କରିଅଛୁ ବ୍ରତ
ବିପ୍ରେ ଭୋଜନ ଦେବାକୁ ବଳିଅଛୁ ଚିତ୍ତ
ବ୍ରାହ୍ମଣେ କର ବରଣ
ଭୋଜନ ଦେଇ ତୋଷିବା ବିପ୍ରଙ୍କର ମନ । ୭୦
ଶଙ୍କର କହିଲେ ତହିଁ ନ ବଳାଅ ମନ
କି ସମ୍ବଳ ଅଛୁ ଘରେ ଦେବାକୁ ଭୋଜନ ?
କ୍ଷାନ୍ତ ହୁଅ ହୈମବତି
ଭୋଜନ ଦେବାକୁ ବିପ୍ରେ ନାହିଁତ ଶକତ । ୭୧
ମାଅ ଦେବୀ ନ ଶୁଣିଲେ ସ୍ୱାମୀଙ୍କ ବଚନ
ଅଟଳ ରହିଲେ ବିପ୍ରେ ଦେବାକୁ ଭୋଜନ
କହିଲେ ବେଗେ ଯାଇଣ
ଗୃହେ ଭୋଜନ ଦେବାକୁ ବିପ୍ରେ ଡାକଆଣ ।୭୨
ପତ୍ନୀଙ୍କ କଥାକୁ ଲଙ୍ଘି ନ ପାରି ଶଙ୍କର
ବିପ୍ରେ ଡାକିବାକୁ ଗଲେ ହୋଇ ତରବର
ଅଗସ୍ତି-ଦୁର୍ବାସା ଦୁଇ
ବିପ୍ରଙ୍କୁ ଭେଟିଲେ ପଥେ କଇଳାସ ସାଇଁ । ୭୩
ବେନି ବିପ୍ର ଦେଖି ଶିବ କରନ୍ତି ବିଚାର
ଜଣକ ନିମନ୍ତେ ନାହିଁ ଯଥେଷ୍ଟ ଆହାର
ଡାକି ନେଲେ ଦୁଇ ଜଣ
କ୍ଷୁଧାସ୍ତା ହୋଇବୁ ଦେଇ ନ ପାରି ଭୋଜନ । ୭୪
ବିଶେଷେ ଦୁର୍ବାସା ଋଷି କୋପୀ ବିପ୍ରବର
ସେ ମଧ୍ୟ କରନ୍ତି ପୁଣି ପ୍ରଚୁର ଆହାର
ନ ପାଇଲେ ପୂର୍ଣ୍ଣଗ୍ରାସ
ଅଭିଶାପ ଦେବେ କ୍ରୋଧେ ହେବ ସର୍ବନାଶ ।୭୫
ଏହା ଚିନ୍ତି ଦୁର୍ବାସାଙ୍କୁ ନ କରି ବରଣ
ଅଗସ୍ତିଙ୍କୁ ଡାକି ନେଲେ ଦେବାକୁ ଭୋଜନ
ବରଣ ହୋଇ ଭରତେ
କୈଳାସକୁ ଚଳିଗଲେ ଭୋଜନ ନିମନ୍ତେ । ୭୬

ସମାଦର କରି ଗୃହେ ବସାଇଲେ ନେଇ
ପରଷିଲେ ଭୋଜ୍ୟ ବସ୍ତୁ କରେ ମହାମାୟୀ
ଯେତେ ପରଷିଲେ ନେଇ
ବସିଲେ ହାତକୁ ଟେକ ଗୃହି ଗୃହି ଦେଇ । ୭୭
ଆଣ ଆଣ ବୋଲି ରଡ଼ ଘୁଡ଼ନ୍ତି ଉଚରେ
ଅଧାପୂରି ପେଟ ମୋର ଜଳୁଛୁ ଭୋକରେ
ସବୁ ପରଷିଲେ ନେଇ
ନ ପୂରିଲା ପେଟ ଋଷି ବସିଲେ ହଠେଇ । ୭୮
ଲଜ୍ଜିତ ହୋଇ ପାର୍ବତୀ ସ୍ୱାମୀଙ୍କୁ କହିଲେ
ହାଣ୍ଡି କୁଣ୍ଡି ସବୁ ସଫା ଲଗି ନାହିଁ ତଳେ
ଏଥକୁ ଉପାୟ କର
ପତ୍ନୀ କଥା ଶୁଣି କହୁ ଅଛନ୍ତି ଶଙ୍କର । ୭୯
ଆହେ ଦ୍ୱିଜବର ଯାହାଥିଲା ମୋର ଘରେ
ପରଷିଲେ ଉମା ସବୁ ତୁମ୍ଭର ପତରେ
ଘରେ ଆଉ କିଛି ନାହିଁ
ସେତିକରେ ଶାନ୍ତ ଲଭ ହେ ବିପ୍ର ଗୋସାଇଁ । ୮୦
ଅଗସ୍ତି କହିଲେ ପେଟ ଅପୂରି ମୋହର
ଅନ୍ନ ନ ଥିଲେ ସଲିଳ ଦିଅ ଗଙ୍ଗାଧର
ଜଳ ପାନେ ହେବ ତୃପ୍ତ
ଋଷି କଥା ଶୁଣି ଜଳ ଯୋଗାଇଲେ ମାତ । ୮୧
ସରିଗଲା ସବୁ ଜଳ ଶୂନ୍ୟ ହେଲା ଘଟ
ତଥାପି ପୂରିଲା ନାହିଁ ଋଷିଙ୍କର ପେଟ
ପୁଣି ସେ ମାଗିଲେ ଜଳ
ଯୋଗାଇ ନ ପାରି ଜଳ ପାର୍ବତୀ ବିକଳ । ୮୨
ସ୍ୱାମୀଙ୍କ ଚରଣେ ପଡ଼ି କରିଲେ ଗୁହାରି
ଉପାୟ କର ଏଥିକି ଅନ୍ଧକ ଅରିଷ୍ଟ
ପତ୍ନୀ କଥାରେ ଶଙ୍କର
ଋଷିଙ୍କୁ କହିଲେ ଯୋଡ଼ି ନିଜ ବେନି କର । ୮୩

ହେ ଅଗସ୍ତି ମୁନି କ୍ଷମା କର ଆମ୍ଭ ଦୋଷ
ଯାହା ଥିଲା ଘରେ ଦେଲୁ ଅନ୍ନଜଳ ଗ୍ରାସ
ସେତିକରେ ହୁଅ ତୋଷ
ଘରେ ଆଉ କିଛି ନାହିଁ ଦେବାକୁ ତ ଗ୍ରାସ । ୮୪
ଏତିକରେ ଶାନ୍ତ ଲଭ ଆହେ ଦ୍ୱିଜବର
ଦ୍ୱାପରେ ପୂର୍ଣ୍ଣ ହୋଇବ ଉଦର ତୁମ୍ଭର
ଗୋବର୍ଦ୍ଧନ ପୂଜାକାଳେ
ଜଳପାନେ ତୋଷ ହେବ ଯମୁନା ମଣ୍ଡଳେ ।୮୫
ନନ୍ଦ ରାଜାର ନନ୍ଦନ କୃଷ୍ଣ ଭଗବାନ
ଇନ୍ଦ୍ର ନ ପୂଜି ପୂଜିବେ ଗିରି ଗୋବର୍ଦ୍ଧନ
କୋପ କରି ମଘବାନ
ବରଷିବେ ଘୋର ଜଳ ସପ୍ତଦ୍ୱିନ ଦିନ । ୮୬
ସେ ପ୍ରଳୟ ଜଳପାନେ ପୂରିବ ଉଦର
ରକ୍ଷା ପାଇଯିବ ଗୋପ ଆହେ ଦ୍ୱିଜବର
ଗୋପ ଦାଣ୍ଡେ ଟୋପେ ଜଳ
ପ୍ରବାହିତ ହେବ ନାହିଁ ରକ୍ଷିବ ଗୋକୁଳ । ୮୭
ଆସନ୍ନ ବିପଦୁ ରକ୍ଷା ପାଇବେ ସକଳେ
ରହିବ ତୁମ୍ଭର କୀର୍ତ୍ତି ଏ ମହୀ ମଣ୍ଡଳେ
ତୋଷ ହେବେ ନାରାୟଣ
ବନ୍ଧୁହିତେ କାର୍ଯ୍ୟ କରି ହୋଇଯିବ ଧନ୍ୟ । ୮୮
ଶିବଙ୍କର କଥାଶୁଣି ଉଠିଲେ ଅଗସ୍ତି
ଆଶ୍ୱସ୍ତ ହୋଇଲେ ମନେ ଲଜ୍ଜିତା ପାର୍ବତୀ
ବିପ୍ରେ ଭୋଜନ ପ୍ରଦାନ
କେତେ ଯେ କଠିନ କଥା ଅରଜିଲେ ଜ୍ଞାନ ।୮୯
କରନ୍ତେ ଅଗସ୍ତି ମୁନି ଗୋପର ମଙ୍ଗଳ
ଗୋପ, ଗୋପୀ, ଗୋପୀନାଥ ପୂଜିଲେ ସକଳ
ଋଷିଙ୍କୁ ଦେଲେ ଭୋଜନ
ପୂର୍ଣ୍ଣ ଗ୍ରାସ କରି ମୁନି କରିଲେ କଲ୍ୟାଣ । ୯୦

ଗିରିଧାରୀ ରୂପ ଦେଖି ଦେବତା ସକଳେ
ଶରଣ ପଶିଲେ ଆସି କୃଷ୍ଣ ପାଦ ତଳେ
ଇନ୍ଦ୍ର କ୍ଷମା ଭିକ୍ଷା କଲେ
"ଉପଇନ୍ଦ୍ର" ଉପାଧିରେ ଭୂଷିତ କରିଲେ । ୯୧
ମାନବୀ ବିଷ୍ଣୁଙ୍କ ପୂଜା କଲେ ମଘବାନ
ଦେବଠୁ ମାନବ ବଡ଼ ହୋଇଲା ପ୍ରମାଣ
ବାର୍ତ୍ତା ପାଇ ରାଜା କଂସ
ଜାଣିଲା ତା କାଳସମ ନନ୍ଦରାଜା ଶିଷ୍ୟ । ୯୨

ନମୋ ଗୁରୁ ପରଂବ୍ରହ୍ମ କୃଷ୍ଣ ଅଭିରାମ
କରମଳା କାନ୍ତ ହରେ-ରାମ-କୃଷ୍ଣ-ଶ୍ୟାମ
ନୀଳ ଜୀମୂତ ମୂରତି
ପଦ୍ମ ପଳାଶ ନୟନ ଦେଖି ଚିତ୍ତ ଶାନ୍ତ । ୯୩
ସେହି ଅଲକ୍ଷ ରୂପକୁ କିବା ଦେବା ଲକ୍ଷ
ଯା' ଗମ୍ଭୀର ହସ ଦେଖି ଦୂର ହୁଏ ଦୁଃଖ
ସାରସ ପାଦେ ଶରଣ
ଶରଣ ରକ୍ଷଣ ସ୍ୱାମୀ ସୁବ୍ରତା ନନ୍ଦନ । ୯୪
ଜୟ ପ୍ରେମାନନ୍ଦ ଜୟ ଭୁ ସଚିଦାନନ୍ଦ
ଜୟ ଭୁ ମୁକୁନ୍ଦ ଜୟ ଜୟ ନିତ୍ୟାନନ୍ଦ
ଶାନ୍ତ ଆନନ୍ଦ ଆଶ୍ରମ
ସତ୍ୟ ନାରାୟଣ ସ୍ୱାମୀ କରିଛ ବିଶ୍ରାମ । ୯୫
ଛୟାନବେ ପଦେ ଅଧ୍ୟା ହୋଇଲା ସମ୍ପୂର୍ଣ୍ଣ
ଗୀତରେ ଭଣିଲା ବୃନ୍ଦାଯ ମୃତ୍ତଜନ
କରେ ନାମ ସଂକୀର୍ତ୍ତନ
ହରେ-ରାମ-କୃଷ୍ଣ-ଶ୍ୟାମ ଗୁରୁ ଅଭିରାମ । ୯୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟେ ଗୋପଲୀଳା ଖଣ୍ଡେ
ଗିରିଗୋବର୍ଦ୍ଧନ ପୂଜା ଆଖ୍ୟାନେ
ନାମ ଉନଚତ୍ୱାରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି -**

ବନ୍ଦଇ ଶ୍ରୀ ବଳଦେବ ରୋହିଣୀ ନନ୍ଦନ
ରେବତୀ ରମଣ ହଳ ମୂଷଳ ଧାରଣ
ପଦ୍ମପଦ୍ମରେ ଶରଣ
ଶରଣ ରକ୍ଷଣ ନୀଳାମ୍ବର ସଙ୍କର୍ଷଣ । ୧

ଶୁକ୍ଳାମ୍ବର ଶରୀର ଶିରରେ ସପ୍ତଫଣି
ଶୋଭିପାଏ ମଥାରେ ନୀଳ ମର୍କତମଣି
ଅଛ ବନ୍ଦେ ବଳରାମ
କରୁଛି ପଦ୍ମରେ ପ୍ରଭୁ ସହସ୍ରେ ପ୍ରଣାମ । ୨

କାଦମ୍ବରୀ ପାନେ ସଦା ଚିତ୍ତ ବିମୋହିତ
ଜଗତ ହିତ ସାଧନ ଜୀବନର ବ୍ରତ
ଜଗନ୍ନାଥ ଜ୍ୟେଷ୍ଠ ଭ୍ରାତ
ତାଳଧ୍ୱଜ ରଥାରୂଢ଼ ହେ ସୁଭଦ୍ରା ଭ୍ରାତ । ୩

ଦେବକୀ ନନ୍ଦନ ଆହେ ବସୁଦେବ ସୁତ
ରୋହିଣୀ ତନୟ ନନ୍ଦ ଯଶୋଦା ପାଳିତ
ଦୁଇପିତା ତିନ ମାତ
ତ୍ରିତାପ ହରଣକାରୀ ନୀଳାଚଳ ନାଥ । ୪

ନୀଳାଚଳେ ନୀଳାମ୍ବର ନାମକୁ ଧରିଣ
ଭାଇଭଗ୍ନୀ ସଙ୍ଗେ ବିଜେ ରତ୍ନ ସିଂହାସନ
କର ପ୍ରଭୁ ପରିତ୍ରାଣ
ବୃନ୍ଦାବନ ପଶିଅଛୁ ପାଦରେ ଶରଣ । ୫



# ଚତ୍ୱାରିଂଶ ଅଧ୍ୟାୟ
# ସଂସ୍କାରକ ଶ୍ରୀକୃଷ୍ଣ
## ରାଗ - କର୍ଣ୍ଣାଟୀ

ଶ୍ରୀ କୃଷ୍ଣ ଚରିତ- ମାନସ ଶ୍ରବଣ
କରେ ଆହେ ସୁଜ୍ଞଜନ
ପଦପଦକରେ ସୁଧା ଝରୁ ଅଛି
ଆକଣ୍ଠ କରହୋ ପାନ । ୧
ହେ ଶାନ୍ତ ଆନନ୍ଦ ଆଶ୍ରମ ଠାକୁର
ତମେ ତ ଜଗତ ଈଶ
ଯା ପାଦ କଞ୍ଜକୁ ଆଶ୍ରା କରିଛନ୍ତି
ଭକତ-ସନ୍ୟାସ-ଶିଷ୍ୟ । ୨
ଆନନ୍ଦ ଆଶ୍ରମ ଅନନ୍ତ ଗୁମ୍ଫାରେ
ବସି କରୁଅଛ ଖେଳ
କେ-ଜାଣିବ ତୁମ୍ଭ ଖେଳର କୌଶଳ
ଖେଳ ଲୁଚକାଳି ଖେଳ । ୩
ସତ୍ୟ-ଶାନ୍ତ-ଦୟା ଜ୍ଞାନ ସ୍ୱରୂପକୁ
ଧରି ଶ୍ୟାମ ଅବତାର
ଗୋଲୋକର ଛଟା ଠାରେ ଲୀଳାକର
ଲୀଳାମୟ କଳାକର । ୪
ହେ ନବ ନୀରଦ ଶ୍ୟାମଳ ସୁନ୍ଦର
କରମଳା କାନ୍ତ ଶ୍ୟାମ
ଭକ୍ତ ସଙ୍ଗେ ନିତ୍ୟ ଲୀଳା କରୁଅଛି
ଭକ୍ତ ପ୍ରିୟ ଅଭିରାମ । ୫
ନିର୍ଗୁଣରୁ ଆସି ଗୁଣରେ ପ୍ରକାଶି
କରୁଛ ସଗୁଣ ଖେଳ
ସତ୍ୟନାରାୟଣ ସ୍ୱାମୀ ସ୍ୱରୂପରେ
ଶିରିଣି ଖିଆରେ ମେଳ । ୬

ଜୀବ ହୃଦେ ବସି ଲୀଳା କରୁଅଛ
ତୁମ୍ଭେ ଯେଣୁ ଲୀଳାମୟ
ତୁମ୍ଭ ବିନା କାହିଁ ଲୀଳା ହୁଅଇ କି
ହେ ଶ୍ୟାମ ! ଭକତ ପ୍ରିୟ । ୭

ଶ୍ୟାମ ମନ୍ତ୍ର ହୃଦେ ଜପ କରୁ ଅଛି
ଶ୍ୟାମ ସ୍ୱରୂପ ସ୍ମରଣ
ଓମ ଐମ ହ୍ରୀମ୍ ଶ୍ୟାମାୟ ନମଃ"
ବୀଜ ମନ୍ତ୍ର କରେ ଗାନ । ୮

ହେ କଞ୍ଜ ନୟନ କୃଷ୍ଣ ପ୍ରାଣଧନ
କମଳ ପାଦେ ଶରଣ
ହରେ-ରାମ-କୃଷ୍ଣ- ଶ୍ୟାମ-ଅଭିରାମ
ସ୍ମରଣେ ଯାଉ ମୋ ଦିନ । ୯

କ୍ରମେ ରାତ୍ରି ଶେଷ ହୋଇଲା ପ୍ରବେଶ
ଆରକ୍ତ ଊଷା ସମୟ
ପୂର୍ବ ଆକାଶରେ ଅରୁଣ ଉଦୟ
ସରେ ଫୁଟେ ସରରୁହ । ୧୦

ଡାକିଲେ କୁକୁଟ୍ କଜ୍ଜ୍ୱଳ ପାତିଆ
କାକ, ପିକ, କୁମ୍ଭାଟୁଆ
ଶମ୍ଭୁ ଆଳେ କମ୍ଭୁ ଶବଦ ଶୁଭିଲା
ବିପ୍ର ମୁଖେ ବେଦବୋହା । ୧୧

ଶୟନ ମନ୍ଦିରେ ଡାକିଲେ ଜନନୀ
ଉଠ ଉଠ ବାପଧନ
ରାତ୍ରି ଅବସାନ ଉଚ୍ଛିଲେଣି ଦିନ
ଡାକୁଛନ୍ତି ସଖାଗଣ । ୧୨

ସ୍ୱାସ୍ଥ୍ୟରକ୍ଷା ମତେ ପ୍ରାତଃ ନିଦ୍ରାମନା
ଶରୀର ହୁଅଇ କ୍ଷୀଣ
ମାତାଙ୍କ ବଚନେ ଉଠିଲେ ନନ୍ଦନେ
କଲେ ମୁଖ ପ୍ରକ୍ଷାଳନ । ୧୩

ତରବର ହୋଇ ସ୍ନାନ ମାର୍ଜନାଦି
ଶେଷ କଲେ ଦୁଇଭାଇ
ଜଳଯୋଗ କରି ପ୍ରସ୍ତୁତ ହୋଇଲେ
ଯିବାକୁ ଗାଈ ଚରାଇ ।୧୪
ଆସିଣ ମିଳିଲେ ଗୋପାଳ ବାଳକେ
ସଙ୍ଗରେ ଗାଈ ବାଛୁରୀ
ବାଳ ଗୋପାଳର ବେଶ ଧରିଛନ୍ତି
କୃଷ୍ଣ ଭାବ ଅନୁସରି ।୧୫
ନାନା ବର୍ଣ୍ଣ ପୁଷ୍ପେ ମାଳାମାନ ଗୁନ୍ଥି
ଲମ୍ବାଇଲେ କଣ୍ଠ ଦେଶେ
ମୟୂର ଚନ୍ଦ୍ରିକା କେ ବାନ୍ଧଣ ଶିରେ
ଗଣ୍ଡରେ କୁସୁମ ଖୋସେ ।୧୬
ଲୀଳା ଅବତଂସ ପରମ ପୁରୁଷ
ପ୍ରଭୁଙ୍କ ମାନବ ଲୀଳା
ଗୋପବାସୀ ମାନେ ନୟନେ ଦେଖନ୍ତି
ଅଲୌକିକ ଲୀଳା ଖେଳା ।୧୭
ମାଧୁର୍ଯ୍ୟ ଲୀଳାକୁ ଗୋପପୁରବାସୀ
କରୁଥାନ୍ତି ଉପଭୋଗ
ରାମ କୃଷ୍ଣ ପ୍ରତି ଅନ୍ତର ପ୍ରଦେଶେ
ଭରିଥାଏ ଅନୁରାଗ ।୧୮
ରାମ କୃଷ୍ଣ ପାଦ ପରଶେ ଧରଣୀ
ପରିବେଶ ରଙ୍ଗାୟିତ
ଗୋପ ବୃନ୍ଦାବନ ମଧୁସ୍ରାବୀ ପୁଷ୍ପ
ସମ୍ଭାରରେ ସୁଶୋଭିତ ।୧୯
ଫଳ, ପୁଷ୍ପେ ବନ- ଉପବନ ପୂର୍ଣ୍ଣ
ସମୃଦ୍ଧ ଗିରି ପ୍ରାନ୍ତର
ଗାଭୀ ବହୁ କ୍ଷୀର ବତ୍ସା ପେଟ ପୂର
କ୍ଷୀର ପାନେ ମତ୍ତ ହେଲ ।୨୦

ରାମ କୃଷ୍ଣଙ୍କର ବାଳକ ସୁଲଭ
ଲୀଳା ଦେଖି ଗୋପଚୟ
ଭାବ ଆବେଗରେ ମଜ୍ଜି ଯାଇଛନ୍ତି
ଅନ୍ତରାତ୍ମା କୃଷ୍ଣମୟ । ୨୧

କ୍ରମେ କ୍ରମେ ଦୁଇ ଭାଇ ବଡ ହୋଇ
ଗୋପାଳ ବାଳକ ମେଳେ
ବନକୁ ଗୋଧନ ଚରାଇ ଯାଆନ୍ତି
କଅଁଳ ସୂରଯ ବେଳେ । ୨୨

ରାମ କୃଷ୍ଣ ଦୁଇ ଭାଇ ଦଳପତି
ଚଳନ୍ତି ବନ ପ୍ରଦେଶେ
ସମାନ ବୟସ ହାସ ପରିହାସ
ସଖାଙ୍କ ମନକୁ ରସେ । ୨୩

ବନରେ ବୁଲନ୍ତି ଗୋଧନ ଚରନ୍ତି
ବଜାନ୍ତି ଶ୍ୟାମ ବାଂଶୀ
ପରାପର ଭେଦ ଭାବ ଭୁଲି ଯାଇ
ନାଚନ୍ତି ପ୍ରୀତି ଆଚରି । ୨୪

ଅନବଦ୍ୟ ପରି- ବେଶର ମଧ୍ୟରେ
କୃଷ୍ଣଙ୍କର ବେଣୁ ସ୍ୱନ
ଶ୍ରବଣେ ପ୍ରକୃତି ତନ୍ମୟ ହୋଇଣି
ନବ ବେଶ ପରିଧାନ । ୨୫

ବନର ମୟୂର ମୟୂରୀ ସହିତ
ବୃକ୍ଷଲତା, ଗାଈକୁଳ
ସାଙ୍ଗ, ସାଥୀ, ପଶୁ- ପକ୍ଷୀ ଯମୁନାର
ସୁନୀଳ ତରଙ୍ଗ ମାଳ । ୨୬

ସେ ବଂଶୀ ତାନରେ ମୋହି ମୁଗ୍‌ଧ ହୋଇ
ଅନାଇଁ ରହି ଅଛନ୍ତି
ଅବ୍ୟକ୍ତ ଆନନ୍ଦ ଅନୁଭବ କରି
ମନ ଆନନ୍ଦେ ନାଚନ୍ତି । ୨୭

ଏମନ୍ତ ସମୟେ ମଧ୍ୟାହ୍ନ ହୋଇଲା
ମଥା ଉପରେ ତପନ
କାଳନ୍ଦୀ ଜଳରେ ଜଳକ୍ରୀଡ଼ା କଲେ
ସଙ୍ଗେ ଘେନି ସଖାଗଣ । ୨୮
ସ୍ନାନ ଶେଷ କରି ବସନ ଭୂଷଣ
ହୋଇଲେ ବାଳକ ଗଣ
କ୍ଷୁଧା ଲାଗିବାରୁ ଭୋଜନେ ବସିଲେ
ଏକତ୍ର କରି ଆସନ । ୨୯
ଘରୁ ଆଣିଥିବା ଖାଦ୍ୟ ଦ୍ରବ୍ୟ ମାନ
ସଖାଙ୍କୁ କଲେ ଅର୍ପଣ
କଏ ଆଣିଥିଲା କ୍ଷୀରି, ପୁରି, ପିଠା
କଏ ବା ଅନ୍ନ ବ୍ୟଞ୍ଜନ । ୩୦
ଲଙ୍କା, ଲୁଣ, ଅଦା ଆମ୍ବୁଲ,ଆଚାର
ଷଡରସ ଦ୍ରବ୍ୟମାନ
ସଭିଙ୍କର ଖାଦ୍ୟ ଏକ ସ୍ଥାନେ ରଖି
ଏକତ୍ର କଲେ ଭୋଜନ । ୩୧
ଆଗେ ରାମ କୃଷ୍ଣ ବେନଙ୍କୁ ଭୁଞ୍ଜାଇ
ପଛେ କରନ୍ତି ଗ୍ରହଣ
ଶ୍ରୀ ହସ୍ତରେ କୃଷ୍ଣ ସଖାଙ୍କୁ ଭୁଞ୍ଜାଇ
ଅଧେ କରନ୍ତି ଭୋଜନ । ୩୨
ଅନ୍ୟକୁ ଭୁଞ୍ଜାଇ ଆପଣେ ଭୁଞ୍ଜନ୍ତି
ନ ଥାଏ କିଛି ବାରଣ
ଆନନ୍ଦ ବଜାରେ ବସିଣ ମଜାରେ
ଯେପରି ଭୁଞ୍ଜନ୍ତି ଜନ । ୩୩
ଭୋଜନ ସମୟେ ମିଳିଲେ ସେଠାରେ
ଅକସ୍ମାତ ବେଦବର
ଦେଖିଲେ ଗୋପାଳ ବାଳକ ମେଳରେ
ଭୁଞ୍ଜନ୍ତି ବେନି ସୋଦର । ୩୪

ବସୁରି ଲେ ବ୍ରହ୍ମା ଉଚ୍ଛିଷ୍ଟ ଭକ୍ଷଣ
କରୁଛନ୍ତି କେଉଁପରି
କି'ବା ବିଷ୍ଣୁ ତେଜ ନାହିଁ ଏହାଙ୍କର
ଗୋପପୁରେ ବାସକରି । ୩୫

ମାୟାରେ ପଡ଼ଣ ଭୁଲିଗଲେ ଜାତି
ଅଜାତି ବିଚାର ହୋଇ
ପରୀକ୍ଷା କରିବା ଏହାଙ୍କର ତେଜ
ବିଷ୍ଣୁ ଅଟନ୍ତି କି ନାହିଁ ? ୩୬

ଏହା ଚିନ୍ତି ବ୍ରହ୍ମା ଗାୟତ୍ରୀ ଛନ୍ଦରେ
ଗୋବତ୍ସା କରି ହରଣ
କମଣ୍ଡଳୁ ମଧ୍ୟେ ବତ୍ସା ଗଣେ ଭରି
ସ୍ୱପୁରେ କଲେ ଗମନ । ୩୭

ଅବଶେଷେ ବନ- ଭୋଜ ଶେଷ କରି
କଲେ ମୁଖ ପ୍ରକ୍ଷାଳନ
ଦେଖିଲେ ବାଳକେ ହେମ୍ବାରଡ଼ି ଦେଇ
ଧାଉଁଛନ୍ତି ଗାଭିଗଣ । ୩୮

ବତ୍ସାଙ୍କୁ ନ ପାଇ ବାଇ ହୋଇ ଗାଈ
ଗୁହାଳେ ପଶିଲେ ଧାଇଁ
ଏ ବିଚିତ୍ର ଦୃଶ୍ୟ ଦେଖି ଗୋପବାଳେ
ପଛରେ ଗଲେ ଗୋଡ଼ାଇ । ୩୯

ବାଛୁରି ହଜାଇ ଫେରିବାରୁ ଗାଈ
ପିତା ମାତା କୋପ କଲେ
କ୍ରୋଧ ହୋଇ ନନ୍ଦ ତେନ୍ତୁଳି ଛାଟରେ
କୃଷ୍ଣଙ୍କୁ ପ୍ରହାର କଲେ । ୪୦

ଦେହଫାଟିଗଲା ରୁଧିର ବହିଲା
ବାଳକେ କଲେ କ୍ରନ୍ଦନ
ଝରଝର ହୋଇ ନୟନରୁ ଧାର
ଝରିଲା ଝର ଯେସନ । ୪୧

ଅନ୍ତରେ ଜାଣିଲେ ପ୍ରଭୁ ଅନ୍ତର୍ଯ୍ୟାମୀ
ବ୍ରହ୍ମାଙ୍କର ଦୁଷ୍ଟପଣ
କିଛି ନ କହିଣ ଆପଣା ଶରୀରୁ
ଗୋବତ୍ସା କଲେ ଉତ୍ପନ୍ନ । ୪୨

ଯେବଣ ଗାଈର ଯେଉଁ ପରି ବତ୍ସା
ସେପରି କରିଲେ ସୃଷ୍ଟି
ଗାଈ ହେମ୍ବାରଡ଼ି ଶୁଣି ବତ୍ସାଗଣ
ଆସିଲେ ବନୁ ଲେଉଟି । ୪୩

ଗାଈଗଣେ ବତ୍ସା ପାଇ ଶାନ୍ତ ହେଲେ
ଗୋପାଳେ ହୋଇଲେ ପ୍ରୀତ
ବୁହୁଁ ବୁହୁଁ ସନ୍ଧ୍ୟା ଆସି ଉପଗତ
ସୂର୍ଯ୍ୟ ହେଲେ ଅସ୍ତମିତ । ୪୪

ଗୋଧୂଳି ସନ୍ଧ୍ୟାରେ ଯଶୋବନ୍ତୀପୁରେ
ବତ୍ସାଏ କରିଲେ ଗୋଳ
ସମ୍ଭାଳି ନପାରି ବତ୍ସା ଘେନି ବ୍ରହ୍ମା
ପ୍ରବେଶିଲେ ଗୋପପୁର । ୪୫

ଦେଖିଲେ ଗୁହାଳେ ବତ୍ସାଙ୍କ ସହିତ
ଶୋଇଛନ୍ତି ଗାଈମାନେ
ଏ ଦୁର୍ଲ୍ଲଭ ଦୃଶ୍ୟ ଦେଖି ବେଦ ବର
ଉଦ୍‌ଘୃଣ୍ଣ ହେଲେ ମନେ । ୪୬

ବୁଝିଲେ ବସ୍ତୁ ଦ୍ରୋହୀ ମୁଁ ହୋଇଲି
ଜାଣି ନ ପାରିଲି ଶକ୍ତି
ଜଗତ ଗୋଷ୍ଠୀଙ୍କ ଯେ ସୃଷ୍ଟି କରିଛି
ତାହାର କ ଜାତି ପଙ୍କ ? ୪୭

ସଭିଙ୍କର ପୂଜ୍ୟ ପିତା ହେ ଅଟନ୍ତି
ସର୍ବେ ତାହାଙ୍କ ନନ୍ଦନ
କୃଷ୍ଣ ନ ଥିବାରି ସ୍ଥାନଙ୍କ ଦେଖଇ
ସେ ଅଟନ୍ତି ସର୍ବାତ୍ମନ । ୪୮

ବହୁ ଅନୁତାପ କରି ବେଦ ବର
ପଡ଼ିଲେ ଚରଣେ ଯାଇ
ଗୋବିନ୍ଦ ଛାମୁରେ ସମର୍ପିଲେ ବନ୍ଧା
ମୁଖେ ବୋଲି ତ୍ରାହି ତ୍ରାହି । ୪୯

ଦୃଷ୍ଟାନ୍ତ ଦେଇଣ କହିଲେ ଶ୍ରୀକୃଷ୍ଣ
ଶୁଣ ଆହେ ବେଦବର
ବୈଦିକ ଭାରତେ ଜାତି ଭେଦ ପ୍ରଥା
ପ୍ରଚଳିତ ଯେ ପ୍ରକାର । ୫୦

ବୈବସ୍ୱତ ମନୁ ପୁତ୍ର ହେଲେ ଦିଷ୍ଟ
ତାଙ୍କ ତନୟ ନାଭାଗ
ରାଜପୁତ୍ର ଥାଇ ବୈଶ୍ୟ କନ୍ୟା ବିଭା
କରିବାରୁ ମହାଭାଗ । ୫୧

ଜାତିଚ୍ୟୁତ ହୋଇ ବୈଶ୍ୟରେ ଗଣିତ
ହୋଇଲେ ରାଜ ନନ୍ଦନ
କୃଷି ଗୋପାଳନ ବେପାର ବଣିଜ
ଜୀବିକା କଲେ ଗ୍ରହଣ । ୫୨

ବୈଶ୍ୟ ବୃତ୍ତି କରି ଜୀବିକା ନିର୍ବାହ
କରି ବୈଶ୍ୟ ହୋଇଗଲେ
ଭଲନ୍ଦନ ତାଙ୍କ ପୁତ୍ର ଜାତ ହୋଇ
ବୈଶ୍ୟ ବୃତ୍ତି ନ କରିଲେ । ୫୩

ରାଜର୍ଷି ନୀପଙ୍କ ଆଶ୍ରମକୁ ଯାଇ
ତହିଁ କଲେ ଅବସ୍ଥାନ
କ୍ଷତ୍ରିୟ ହୋଇବା ପାଇଁ ରାଜର୍ଷିଙ୍କୁ
କଲେ ବହୁ ନିବେଦନ । ୫୪

ନୀପ ତାଙ୍କୁ ଧନୁ- ର୍ବିଦ୍ୟା, ରାଜନୀତି
ଶିକ୍ଷାଦେଇ ଯୋଗ୍ୟକରି
ପରାମର୍ଶ ଦେଇ କହିଲେ ଏଥର
ହୁଅ ଯାଇ ଦଣ୍ଡଧାରୀ । ୫୫

ତୁମ୍ଭ ଦାଦା, କକା ମାନଙ୍କୁ ସକ୍ଷାତ
କରି ମାଗ ଭାଇ ଭାଗ
ପୈତୃକ ସମ୍ପତ୍ତି ଦାବୀ ଅନୁସରେ
ଜାର୍ଯ୍ୟ କର ମହାଭାଗ । ୫୬

ଯଦ୍ୟପି ନଦେବେ ସମ୍ପତ୍ତିରୁ ଭାଗ
ନ୍ୟାର୍ଯ୍ୟ ଦାବୀ ଅନୁଯାୟୀ
କକା ଦାଦା ସଙ୍ଗେ ଯୁଦ୍ଧ କରି ବଳେ
ଆଣ ସ୍ୱରାଜ୍ୟ ଛଡାଇ । ୫୭

ଏହାହିଁ କ୍ଷତ୍ରିୟ ପରଂପରା ବୋଲି
ଜାଣ ଆହେ ଉଲଦନ
ଗୁରୁ ପରାମର୍ଶ କ୍ରମେ ଉଲଦନ
କଲେ ରାଜ୍ୟ ଆକ୍ରମଣ । ୫୮

ରାଜ୍ୟ ଅଧିକାର କରିଥିବା ଲୋକେ
ଯୁଦ୍ଧେ କରି ପରାଜିତ
ପିତୃରାଜ୍ୟ ଗୋଟି ଆପଣା ଶକ୍ତିରେ
କରିନେଲେ କବଳିତ । ୫୯

ବିଜିତ ରାଜ୍ୟରେ ନିଜର ପିତାଙ୍କୁ
ନୃପତି ହୋଇବା ପାଇଁ
କହିବାରୁ ପିତା ମନା କରି ଦେଲେ
ନିଜେ ହେଲେ ନର ସାଇଁ । ୬୦

ପିତାଙ୍କ ଆଦେଶେ ଉଲଦନ ରାଜା
ହୋଇକଲେ ରାଜପଣ
ରାଜ କନ୍ୟା ବିଭା ହୋଇ ଧର୍ମନ୍ୟାୟେ
କରିଲେ ପ୍ରଜା ପାଳନ । ୬୧

ସେ ପ୍ରଜା ବତ୍ସଳ ନୃପତି ଥାଇଣ
ରାଜସୂୟ, ଅଶ୍ୱମେଧ
ଯଜ୍ଞ ଅନୁଷ୍ଠାନେ କରି ପୁଣ୍ୟାର୍ଜ୍ଜନ
ଧାର୍ମିକ ଗଣେ ପ୍ରସିଦ୍ଧ । ୬୨

ତପସ୍ୟା କରି ସେ ରାଜର୍ଷି ଆଖ୍ୟାକୁ
କ୍ରମେ କରିଲେ ଅର୍ଜ୍ଜନ
ରାଜ ଧର୍ମ ବଳେ ସୁଖ୍ୟାତ ଅର୍ଜିଣ
ଶ୍ରେଷ୍ଠ ନରପତି ଗଣ୍ୟ । ୬୩

ଅମ୍ବରିଷ ନାମେ ତାଙ୍କର ଗୋଟିଏ
ପୁତ୍ର ହୋଇଥିଲେ ଜାତ
ବିଷ୍ଣୁ ଭକ୍ତ ରୂପେ ରାଜା ଅମ୍ବରିଷ
ଶାସ୍ତ୍ର ପୁରାଣେ ବିଖ୍ୟାତ । ୬୪

ତପନ ବଂଶରେ କୀର୍ତ୍ତିମାନ ରାଜା
ଥିଲେ ପିତା, ପୁତ୍ର ଦୁଇ
ପ୍ରାତଃ ସ୍ମରଣୀୟ ଅଟନ୍ତି ସେମାନେ
ଜାଣ ଆହେ ବେଦଯାଇଁ । ୬୫

ଏଣୁ ଜଣାଯାଏ ବୈଦିକ ଭାରତେ
ଜାତିଭେଦ କୁସଂସ୍କାର
ନଥିଲା ଆଦ୍ୟରେ କ୍ରମେ ପ୍ରବେଶିଲା
ସମାଜେ ଏ ଅନ୍ଧକାର । ୬୬

ବେଦ ଧର୍ମ ମତେ କର୍ମ ଅନୁସାରେ
ଲୋକେ ବ୍ରାହ୍ମଣ କ୍ଷତ୍ରିୟ
ବୈଶ୍ୟ ଶୂଦ୍ର ଆଦି ଚାରି ଜାତି ରୂପେ
ଦେଉଛନ୍ତି ପରିଚୟ । ୬୭

ଯିଏ ଯେଉଁ ବୃତ୍ତି କଲା ତାହା ପ୍ରତି
ସେହି ରୂପେ ନିରୂପିତ
ନିର୍ଦ୍ଦିଷ୍ଟ ଭାବରେ କାହା ଜାତି ପ୍ରତି
ନ ଥିଲା ଜନ୍ମ ସ୍ଥାୟୀତ୍ୱ । ୬୮

କର୍ମଥିଲା ବ୍ୟକ୍ତି ଜାତିର ପ୍ରମାଣ
ବୃତ୍ତିରୁ ଜାତି ଉତ୍ପନ୍ନ
ବଂଶ ପରିଚୟ ଗତ ଜାତି ବାଦ
ସମାଜରେ ଅର୍ଥଶୂନ୍ୟ । ୬୯

ଚତୁଃବର୍ଣ୍ଣ ଜାତି ସୃଷ୍ଟି ହୋଇଛନ୍ତି
ଗୁଣ କର୍ମ ଅନୁଯାୟୀ
ବିପ୍ର ହୋଇ ଶୂଦ୍ର କରମ କରିଲେ
ଶୂଦ୍ରରେ ଗଣିତ ହୋଇ । ୭୦
ଶୂଦ୍ର ହୋଇ ବିପ୍ର କର୍ମ ଯେବେ କରେ
ସେ ବ୍ରାହ୍ମଣ ପାରେ ହୋଇ
ଏ ମହାନ ଦୀକ୍ଷା ଶିକ୍ଷା ଦେଉଅଛୁ
ଏ ଭାରତ ବେଦ ଭୂଇଁ । ୭୧
ସ୍ମିତ ହାସ୍ୟ କରି କହିଲେ ଶ୍ରୀହରି
ବାଇ ହେଲ ବେଦବର
ଅଜ୍ଞାନତା ଭ୍ରମ ହୃଦେ ପୂରି ଅଛୁ
ଜାତିଭେଦ କୁସଂସ୍କାର । ୭୨
ପିତାକ କରଇ ପୁତ୍ରେ ଭିନ୍ନା ଭିନ୍ନ
ସକଳେ ତାଙ୍କର ପୁତ୍ର
ଘୃଣ୍ୟ ଜାତି ଭେଦ ସମାଜେ ପ୍ରମାଦ
କରଚନ୍ତା ଦୁଷ୍ଟଭୂତ । ୭୩
ଗୋବତ୍ସା ଉଚ୍ଛିଷ୍ଟ ଗୋରସକୁ ଯେଷ୍ଣେ
ଦେବେ କରନ୍ତି ଗ୍ରହଣ
ଉଚ୍ଛିଷ୍ଟ ବୋଲିଣ କେହି ନ କହନ୍ତି
ନୈବେଦ୍ୟ ରୂପେ ଅର୍ପଣ । ୭୪
ତେସନେ ଭକ୍ତର ଉଚ୍ଛିଷ୍ଟ ଶ୍ରୀହରି
ଭାବେ କରନ୍ତି ଗ୍ରହଣ
ଭକ୍ତର ଜିହ୍ୱାରେ ରସପାନ କରି
ରସ ଗ୍ରାହୀ ଭଗବାନ । ୭୫
ନୀର ତ ଅଇଁଠା କ୍ଷୀରତ ଅଇଁଠା
ଆଉର ଅଇଁଠା ବେଦ
ନୀର-କ୍ଷୀର-ବେଦ ଛାଡ଼ି ଧର୍ମ କର୍ମ
କେବେ କି ହୋଇବ ସାଧ । ୭୬

ଏହା କହି କୃଷ୍ଣ ଅଙ୍କୁ ଜାତ ବତ୍ସା
ରଖିଲେ ନେଇଣ ଅଙ୍ଗେ
ଗାଈ ଜାତ ବତ୍ସା ବ୍ରହ୍ମାଠାରୁ ଆଣି
ଗାଈଙ୍କୁ ଦେଲେ ଶ୍ରୀ ରଙ୍ଗେ । ୭୭

ଚରଣେ ପ୍ରଣାମ କରି ବେଦବର
ଗଲେ ଯଶୋବନ୍ତୀ ପୁର
ଭବ ବନୋଦ୍ଧିଆ ଠାକୁର ଚରଣେ
ଶରଣ ପଶହୋ ନର । ୭୮

ଅଣାଅଶି ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ସୁଜନେ କର ଶ୍ରବଣ
ଗୀତରେ ଭଣିଲ ମୂଢ଼ ବୁଲ ଦାସ
ସାହା କର ନାରାୟଣ । ୭୯

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳ ଖଣ୍ଡେ ସଂସ୍କାରକ ଶ୍ରୀକୃଷ୍ଣ ଅଧ୍ୟାୟନେ
ଏକ ଚତ୍ୱାରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀ କୃଷ୍ଣାର୍ପଣ ମସ୍ତୁ ।



**ବୋଲ**

ଆରେ ବାପ ନନ୍ଦନ
ଚରାଇ ଗଲେ ଗୋଧନ
ବିଳମ୍ବ ନ କରି ଧନ ଫେରିବୁ ଶୀଘ୍ର
ତୋ ବିଳମ୍ବେ ମନ ଖେଦ ଚିତ୍ତେ ପଡ଼ିଲା ପ୍ରମାଦ
ବନ ମଧ୍ୟେ ରହିଛନ୍ତି ଭଲ୍ଲୁକ ବ୍ୟାଘ୍ର
ନିଶାଚର ଚଯ୍ୟେ ପ୍ରଚୁର
ନିର୍ଭୟେ ବୁଲିବା ବନେ ନୁହେଁ ଉଚିତ । ୧

ମଥୁରାର ନୃପତି କଂସ ମନେ ବହି ଅଛି ରୋଷ
ପାଇଲେ କରିବ ଧନ ପ୍ରାଣେ ବିନାଶ
ତୋ ବନ୍ଧୁନେ ବାପଧନ ନ ରହିବ ପିଣ୍ଡେ ପ୍ରାଣ
ଜୀବନ ବନ୍ଧୁନେ ଯେସନ୍ତେ ହୁଅଇ ଧ୍ୱଂସ
ପୁଅଙ୍କୁ ବୃତ୍ତାନ୍ତ ଜନନୀ
ଶ୍ରୀ ଅଙ୍ଗ ପୋଛିଲେ ଧରି ପଣତ କାନି । ୨

କ୍ରମେ ରାତ୍ରି ଉପଗତ ପୁତ୍ରଙ୍କୁ ବେନି ମାତ
ମଣୋହି ଶାଳେ ଚଳିଲେ ଭୋଜନ ପାଇଁ
ରାମକୃଷ୍ଣ, ସଙ୍ଗେ ନନ୍ଦ ବସୁନନ୍ଦ, ଉପନନ୍ଦ
ଭୋଜନ ପାଇଁ ଆସନେ ବସିଲେ ଯାଇଁ
ବିବିଧ ପ୍ରକାର ବ୍ୟଞ୍ଜନ
କ୍ଷୀର-ପୁରି-ପୂଳି-ଲଡ଼ୁ-ସୁପକ୍ୱ ଅନ୍ନ । ୩

ନାନାବିଧ ଅନ୍ନ ବ୍ୟଞ୍ଜନ ଆକଣ୍ଠ କରି ଭୋଜନ
ଶ୍ରୀମୁଖ ପଖାଳି ଶଯ୍ୟା କରିଲେ ଯାଇ
ଚରଣ ଚାପିଲେ ପିତା ବାଞ୍ଛା କରିଲେ ମାତା
ନିର୍ଭୋଡ଼ ନିଦେ ଶୋଇଲେ ଦୁଇଟି ଭାଇ
ଗମ୍ଭୀର ହୋଇଲା ନିଶିଥ
ପିତାମାତାଙ୍କ ଆନନ୍ଦ କହି ନୁହେଁତ । ୪

ବୋଲେ ବୃନ୍ଦା ଦାସ ହୀନ ନନ୍ଦ ଯଶୋବନ୍ତୀ ଧନ୍ୟ
ଅଭୟ ଚରଣ ଚାପ ଶଯ୍ୟାରେ ବସି
କେତେ ଯୁଗ ତପ କରି କୋଳେ ଧଇଲ ଶ୍ରୀହରି
ଭୋଜନ କରାଅ ଅନ୍ନ କରେ ପରଶି
ବାତ୍ସଲ୍ୟ ପ୍ରେମେ ବନ୍ଧଗତ
ଦେବକୀ ଜାତ କରାଇ କୋଳକୁ ବଞ୍ଚିତ । ୫



# ଏକଚତ୍ୱାରିଂଶ ଅଧ୍ୟାୟ
## (ସଂସ୍କାରକ ଶ୍ରୀକୃଷ୍ଣ)

ରାଗ - ଆଷାଢ଼ଶୁକ୍ଳ

ସୁଜନେ କୃଷ୍ଣ ଚରିତ ମାନସ    ଶ୍ରବଣେ ପାନକର ଦିବ୍ୟରସ
ଗୋପଲୀଳାର ବିଶେଷ ମହତ୍ତ୍ୱ    ଶ୍ରୀରାଧାକୃଷ୍ଣ ପ୍ରେମ କଥାମୃତ
ଆନନ୍ଦ ମୁହୂର୍ତ୍ତ
ରସରାଜ ରସବତୀ ଏକାନ୍ତ । ୧

ଯାମଳା ଅର୍ଜ୍ଜୁନ ଭଞ୍ଜନ କାଳେ    ବୃକ୍ଷାଘାତେ ପଡ଼ିଥିଲେ ଭୂତଳେ
ପିନ୍ଧିଲ ବସନ ଫଣତ କାନ    ଚିରି ପୋଛୁଥିଲେ ଶୋଣିତ ଧାର
ପ୍ରଥମ ଦେଖାରେ
ପରସ୍ପର ପଡ଼ିଗଲେ ପ୍ରେମରେ । ୨

ନିବେଳା ସମୟେ ଯମୁନାଯାଏ    କାଳନ୍ଦୀ କୂଳେ କୃଷ୍ଣ ଭେଟପାଏ
କଦମ୍ବ ମୂଳରେ ହୁଏ ମିଳନ    ରାଧାନାମେ ଶୁଭେ ବାଂଶରୀ ସ୍ୱନ
ଆନନ୍ଦ ଉନ୍ମତ୍ତ .
କଟାକ୍ଷ ପାତରେ ହରଇ ଚିତ୍ତ । ୩

କାଳୀୟ ଦଳନ କାଳେ ପ୍ରଘଟ    ଗୁପ୍ତପ୍ରେମ କଥା ହୋଇଲା ରାଷ୍ଟ୍ର
ସର୍ପର ଫଣାରେ କୃଷ୍ଣଙ୍କୁ ଦେଖି    ସଜ୍ଞାହୀନ ହୋଇ ଗଲେ ସୁମୁଖୀ
ଦେଖି ଏହି ସ୍ଥିତି
ବିମୁଖ ହେଲେ ନନ୍ଦ ଯଶୋବନ୍ତୀ । ୪

ଗୋପର ଗୋପାଳ ଗଣେ ଦୁଃଖିତ    ରାଧା ବ୍ୟବହାରେ ସର୍ବେ ଅତିଷ୍ଠ
ପିତା ବୃଷଭାନୁ, କପିଳା ମାତା    ଝିଅ ବ୍ୟବହାରେ ପାଇଲେ ବ୍ୟଥା
ଅଚେତ ଅବସ୍ଥା
ଦେଖିଣ ଲଜରେ ପୋତିଲେ ମଥା । ୫

ଜାଣନ୍ତେ ଝିଅର ଗୋପନ ପ୍ରୀତି    ପିତା ମାତା ରାଗ ରାଧାର ପ୍ରତି
ପ୍ରହାର କରିଲେ ଘରକୁ ନେଇ    ଅଶ୍ରୁ ନେତ୍ରେ ରଣ୍ଡି ରହିଲେ ରୁହିଁ
ଭୟେ ଥରେ ଗାତ୍ର
ବତାସେ ଥରଇ ଯେସନେ ପତ୍ର । ୬

ପିତା ବୃଷଭାନୁ ପାଖେ ବସାଇ    କହନ୍ତି ଝିଅକୁ କଥା ବୁଝାଇ
କୃଷ୍ଣ ତ ଅଟନ୍ତି ନୃପନନ୍ଦନ,    ବୟସରେ ମଧ୍ୟ ତୋଠାରୁ ସାନ
ମାନ ମୋ ବଚନ
ଛାଡ଼ କୃଷ୍ଣ ସଙ୍ଗ ମୋହର ରାଣ । ୭

ସମ୍ବନ୍ଧ ନ ହେବ ତହିଁ ସ୍ଥାପନ     ଯୋଗାଏ ନାହିଁତା ସଙ୍ଗେ ମିଳନ
କାଳକ୍ରମେ ହେବ ସେ ଶୂର ସେନ,     କରିବ ରାଜ ନନ୍ଦିନୀ ଗ୍ରହଣ
ଆମ୍ଭେ ନୀଚ ଜନ
ରାଜାଙ୍କର ବନ୍ଧୁ ହେବା କେମନ ? ୮
ପିତା ବୃଷଭାନୁ ବାରଣ କରି     ରଖିଲେ ଝିଅକୁ ବନ୍ଧନ କରି
ଦ୍ୱାରଦେଶେ ଦେଲେ ପଂକାଇ ରୁବ     ଶ୍ରୀରାଧା କାନ୍ଦନ୍ତି କୃଷ୍ଣଙ୍କୁ ଭାବି
ଅନ୍ନ ଜଳ ମନା
ପିତା ମାତା, ଭ୍ରାତା କଠିନ ମନା । ୯
ନିକୁଞ୍ଜ କୁଟୀରେ ପଡ଼ି ରହିଣ     କୃଷ୍ଣ ପାଦ ପଦ୍ମେ ଚିତ୍ତ ଥୋଇଣ
ଶୁଣନ୍ତି ଦୂରରୁ ବଂଶୀ ନିଃସ୍ୱନ     କୃଷ୍ଣ ପ୍ରେମ ହୃଦ କନ୍ଦରେ ପୂର୍ଣ୍ଣ
ଉଦ୍‌ବେଳିତ ମନ
ଭାବନ୍ତି ପାଖରେ ଠିଆ ଶ୍ରୀକୃଷ୍ଣ । ୧୦
ରାଧାର ନିମନ୍ତେ ପାଗଳ କୃଷ୍ଣ     ମାତାଙ୍କୁ କହିଲେ ଧୀର ବଚନ
ରାଧା ବିଭା ହେବି କରିଛି ମନ     ଯୋଗାଡ଼ କର ମା ମଙ୍ଗଳ ଲଗ୍ନ
ରାଧା ମୋ ସଙ୍ଗିନୀ
ଛାଡ଼ି ନପାରିବି ସତ୍ୟ ଜନନୀ । ୧୧
କୃଷ୍ଣ କଥାରେ କ୍ରୋଧାନ୍ୱିତ ହୋଇ     କହିଲେ କି କଥା କହୁ କହ୍ନାଇ
ତୋ କଥା ଶ୍ରବଣେ ଚିତ୍ତ ଅସ୍ଥିର     ଦେବକି ଉତ୍ତର ଆରେ କୁମର ?
ବୟସରେ ବଡ଼
ରାଧା ବଧୂହେବା କଥାକୁ ଛାଡ଼ । ୧୨
କୃଷ୍ଣ କହିଲେ ନୁହେଁ ନୂଆ କଥା     ଆଗୁ ପ୍ରଚଳିତ ଅଛି ବ୍ୟବସ୍ଥା
ବହୁଲୋକ ତାଙ୍କଠାରୁ ବୟସେ     ବଡ଼ଝିଅ ବିଭା କରି ହରଷେ
ଦାମ୍ପତ୍ୟ ଜୀବନ
ବିତାଇବା କଥା ଅଛି ପ୍ରମାଣ । ୧୩
ଜନନୀ କହିଲେ ସେ କଥା ଛାଡ଼     ପୁଅ ଠାରୁ ବୋହୂ ହୋଇବ ବଡ଼
ମୋ ଘରେ ସେପରି ଚଳିବ ନାହିଁ     ଏପରି ବିବାହେ ସମ୍ମତି ନାହିଁ
ଶୁଣ ମୋ ବଚନ
ତୁହି ଅଟୁ ପୁଣି ରାଜ ନନ୍ଦନ । ୧୪

ଶ୍ରୀକୃଷ୍ଣ କହିଲେ ଯେ ଭଲ ଝିଅ ତୁମ୍ଭଙ୍କୁ ମାତା ପରି କରେ ସ୍ନେହ
ଝିଅପରି ବୋହୂ ଯେବେ ହୋଇବ ସେପରି ବଧୂ ପାଇବା ଦୁର୍ଲ୍ଲଭ
ମୋହର ବିଚାରେ
ବୋହୂ କରି ଆଣ ରାଧାକୁ ଘରେ । ୧୫

ଜନନୀ କହିଲେ ନୁହଁ ଅବାଧ୍ୟ ରାଧାକୁ ବୋହୂ କରିବା ଦୁଃସାଧ୍ୟ
ତୁମ୍ଭ ରାଜା ପୁଅ ସେ ପ୍ରଜା ଝିଅ କପଟ କରିବୁ ତାକୁ ବିବାହ
ନାହିଁ ଲଜ୍ଜା, ଭୀତି
ଗାଆଁ ସାରା ଲୋକେ ତାକୁ ଜାଣନ୍ତି । ୧୬

ରଙ୍ଗ ଢଙ୍ଗ ଦେଖି ଘୃଣା ଲାଗଇ ନାନା କଥା ମାନ କର୍ଣ୍ଣେ ଶୁଣଇ
ସେପରି ବୋହୂରେ କି ପ୍ରୟୋଜନ ଅଛି ବାହି ରହି ପଛେ ନନ୍ଦନ
ଦୁଃଖ ନାହିଁ ମନେ
ରାଧା ବୋହୂ ହେବା ନଶୁଣେ କର୍ଣ୍ଣେ । ୧୭

ଶ୍ରୀକୃଷ୍ଣ କହିଲେ ପୁଅର କଥା ନ ରଖିଲେ ହେବ ତା ମନେ ବ୍ୟଥା
ଘରଛାଡ଼ି ଯେବେ ପଳାଇ ଯାଏ କି ଲଭ ହୋଇବ ହଜାଇ ପୁଏ
ଶୁଣିମାତା ବ୍ୟସ୍ତ
କହିଲେ ନକର ମୋତେ ବିରକ୍ତ । ୧୮

ପଚାରି ବୁଝତୋ ପିତାଙ୍କ ମତ ବୋହୂ କରିବାକୁ ସେକି ପ୍ରସ୍ତୁତ
ମାତା ବଚନେ ପିତାଙ୍କୁ ପୁଚ୍ଛିଲେ ନନ୍ଦ ନୃପ ହୃତେ; କାରଣ କଲେ
ତୁମ୍ଭ ରାଜା ପୁଅ
ତୋହ ଲାଗି ଲୋଡ଼ା ରାଜାର ଝିଅ । ୧୯

ରାଧାଠାରେ ପୁଣ ନଲାଗମନ ମାନ ପ୍ରତିବାଦ କରିଲେ କୃଷ୍ଣ
ବୁଝାଇ କହିଲେ ନନ୍ଦ ରାଜନ ମୋ କଥାକୁ ମାନ ମୋ ବାପଧନ
ପୁଚ୍ଛ ଗାର୍ଗାଚାର୍ଯ୍ୟ
ସେ ଯାହା କହିବେ କରସେ କାର୍ଯ୍ୟ । ୨୦

ଗାର୍ଗାଚାର୍ଯ୍ୟ ସାନ୍ଦିପନି ଏ ଦୁଇ ପରଦିନ ଆସି ମିଳିଲେ ତହିଁ
ଆଦର ସମ୍ମାନ ସହିତ ରାଜା ବସାଇ କରିଲେ ଚରଣ ପୂଜା
ଶିର ଦେଇଁ ଆସୀନ
ଉଠାଇ ନେଲେ ନନ୍ଦନ । ୨୧

ଗୁରୁଜନ ପାଦେ ପ୍ରଣାମ କଲେ     ପାଦ ଧୂଳି ନେଇ ଶିରେ ମାରିଲେ
ଚକାସନ ମାରି ଶାନ୍ତ ଚିତ୍ତରେ     ବସିଲେ ଶ୍ରୀକୃଷ୍ଣ ଇଷ୍ଟ ମେଳରେ
କଲ୍ୟାଣ କରିଲେ
ଆୟୁଯଶ ବୃଦ୍ଧି ହେଉ ବୋଇଲେ । ୨୨
ନନ୍ଦ କହିଲେ ପୁତ୍ର କଥା ଶୁଣି     ରାଧାକୁ ବିବାହେ ବଳୁଛି ମନ
ବୃଷଭାନୁ ଆମଠୁ ନୀଚଜାତି     ବୟସେ ବଡ଼ ପୂଣିତା ଦୁହିତା
ବଧୂ ପଣେ ରାଧା
ବରିବାକୁ କୁଳେ ରହିଛି ବାଧା । ୨୩
କିପରି ବିବାହ କରିବ କୃଷ୍ଣ     ଉତ୍ତର ଜହନ୍ତୁ ବିଧି ବିଧାନ
ଆଚାର୍ଯ୍ୟ କହିଲେ ଏ ଅସମ୍ଭବ     ରାଧାକୁ କିପରି ବିଭା କରିବ ?
ଉତ୍ତରିଲେ କୃଷ୍ଣ
ପିତାଙ୍କ କଥାକୁ କିଏ ଆପଣ । ୨୪
ପରସ୍ପର ଆମ୍ଭେ ହୋଇଛୁ ରାଜି     ତୁମ୍ଭେ କ୍ଷମା ହେଉ ଅଛି ଅବଜ୍ଞ
ଶ୍ରୀରାଧା ମୋହର ପ୍ରାଣ ସଙ୍ଗିନୀ     କିପରି ବଞ୍ଚିବ ଛାଡ଼ିଣ ଧନି
ରାଧାଛାଡ଼ି କୃଷ୍ଣ
କେବେ କି ଧରି ପାରିବ ଜୀବନ ? ୨୫
ଗୁରୁ କହିଲେ ବିବାହ ବ୍ୟବସ୍ଥା     ନୁହେଁ ପାସ ପାଶୀ ଇଚ୍ଛାର କଥା
ମନରାଜ ବିଭା ଅସ୍ପୃହଣୀୟ     ସମାଜ ଶୃଙ୍ଖଳା ଜାଣ ତନୟ
ରୂପ-ଗୁଣ-ବର୍ଣ୍ଣ
ଲାଳନ-ପାଳନ-ବଂଶ ବିଶେଷ । ୨୬
ନାନା କଥାମାନ ବିଚାରା ଧୀନ     ଗୁରୁତା ଗମ୍ଭୀରତା ପ୍ରଣିଧାନ
ବିବାହ ସମ୍ବନ୍ଧେ ଏମନ୍ତ ହୋଇ     ଏଥିରେ ଅନ୍ୟଥା କରି ନୁହଇ
ଅଗ୍ନି ସାକ୍ଷି କରି
ବିବାହ ବନ୍ଧନେ ପୁରୁଷ ନାରୀ । ୨୭
ହେ କୃଷ୍ଣ ତୁମ୍ଭେ ଆଦର୍ଶ ପୁରୁଷ     ତୁମ୍ଭେ ନ ରଖିଲେ ଧର୍ମ ବିନାଶ
ଆମ୍ଭେ ଜାଣୁ ତୁମ୍ଭେ ମୁକତି ଦାତା     ବେଦ ଭୂମି ଭାରତ ରକ୍ଷାକର୍ତ୍ତା
ନୁହଁ ନନ୍ଦସୁତ
ବସୁଦେବଙ୍କର ତୁମ୍ଭେତ ସୁତ । ୨୮

ରାମ ମଧ୍ୟ ବସୁଦେବଙ୍କ ପୁତ୍ର, ବଡଭାଇ ତୁମ୍ଭେ ଦୁଇଟି ଭ୍ରାତ
କଂସ ଭୟରେ ଗୋପରେ ଆଣି, ନନ୍ଦ ଘରେ ଆମ୍ଭେ ରଖିଛୁ ବେନି
ତୁମ୍ଭର ହାତରେ
କଂସ ନାଶ ଯିବ ଏଇ ଆଶାରେ । ୨୯

କଂସକୁ ହେଲାଣି ପଚିଶ ବର୍ଷ, ବିଗତ ପଚିଶ ବର୍ଷ ନରେଶ
ଅତି ଭୟଙ୍କର କଂସ ଶାସନ, ପ୍ରଜାଙ୍କ ଧନ ଜୀବନ ବିପନ୍ନ
ଭୋଗୁଛନ୍ତି ଦୁଃଖ
ତୁମ୍ଭ ଯୋଗୁଁ ପ୍ରାପ୍ତ ହୋଇବେ ସୁଖ । ୩୦

ବସୁଦେବ ଦେବକୀ ତାତମାତ, ଗତ ବାରବର୍ଷ ଧରି ଦୁଃଖିତ
ଗୃହିଁ ଅଛନ୍ତି ତୁମ୍ଭ ଆଗମନ, ନୟନେ ଦେଖିଲେ ହୋଇବେ ଧନ୍ୟ
ସମୟ ପ୍ରବେଶ
ମଥୁରା ଡକାଇ ନେବତ କଂସ । ୩୧

ମହାବିଷ୍ଣୁ ତୁମ୍ଭେ ହୋଇଛ ଜନ୍ମ ତୁମ୍ଭ ଯୋଗେ ଦୁଷ୍ଟେ ହେବେ ନିଧନ
ଆଚାର୍ଯ୍ୟ ବଚନେ କୃଷ୍ଣ ମଉନ ଚଳିଲେ ଆଚାର୍ଯ୍ୟ ତେଜିଣ ସ୍ଥାନ
ଜନମ ବୃତ୍ତାନ୍ତ
ଶୁଣିଣ ଗମ୍ଭୀର ହେଲେ ଅଚ୍ୟୁତ । ୩୨

କୁଞ୍ଜବନେ ବସି ବାଇଲେ ବଂଶୀ, ରାଧାନାମ ଗୋଟି ଅଧରେ ଘୋଷି,
ବିଚାରନ୍ତି ରାଧା ଶୁଣିଲେ ସ୍ୱନ, କପରି ହୋଇବ କୁଞ୍ଜେ ମିଳନ ।
ଗୃହ ଦ୍ୱାରେ ରହି
ଲୋକଙ୍କ ଘରେ କୃଷ୍ଣ କଥା ଭାବି । ୩୩

ବାତାୟନ ଫାଙ୍କେ ଦେଖିଲେ ରାଈ, କୁଞ୍ଜବନେ ଜ୍ୟୋତ୍ସ୍ନା ଡେଉ ଖେଳଇ
କୁଳୁ କୁଳୁ ସ୍ୱନେ ବହେ ଯମୁନା, ପାଦପ ପଂକ୍ତି ମର୍ମର ମୂର୍ଚ୍ଛନା
ଶ୍ରବଣେ ସେ ସ୍ୱନ
ଯାଗିଲା ପୀରତି ଚିତ୍ତ ଉଚ୍ଛନ୍ନ । ୩୪

ଶୁଣନ୍ତି ଶ୍ରୀରାଧା ଆନେ ଆଶ୍ରୁତ, ପ୍ରେମିକା ଜାଣଇ ପ୍ରେମ ମହତ୍ତ୍ୱ
ଗୃହବନ୍ଦୀ ଥାଇ ଭାବନ୍ତି ରାଈ, କପରି କୁଞ୍ଜରେ ମିଳିବି ଯାଇଁ
ଶ୍ରୀମୁଖ ବଚନ
ରାଧା ବିନା କେଲି କୁଞ୍ଜ ବାରଣ । ୩୫

ଶ୍ରୀରାଧା ମୋହର ରାସ ସଙ୍ଗୀନୀ, ପ୍ରେମ ପୂଜାରିଣୀ ଅଟଇ ଧନି,
ଏହା ଯେବେ ସତ୍ୟ ରାଧା ନ ନେଇ, କରିବେ କି ରାସ କୁଞ୍ଜେ କହ୍ନାଇ
ଶ୍ରବଣ ନିଶ୍ଚେତ
ଶ୍ରାବା ବେଗେ ନେତ୍ରୁ ଅଶ୍ରୁ ପ୍ଲାବିତ । ୩୬
ବିରହ ବେଦନା ନ ପାରି ସହି, ଭୂମିରେ ପଡ଼ିଲେ ଅଚେତ ହୋଇ
ବଂଶୀ ସ୍ୱନ ଆଉ ଶୁଭିଲା ନାହିଁ, ଉଠି ବସି ପୁଣି ଭାବନ୍ତି ରାଇ
ଧିକ୍ ଏ ଜୀବନ
ମିଳନ ବିନାକି ରହିବ ପ୍ରାଣ ? । ୩୭

ଏହା ଚିନ୍ତି ରାଈ ଉଠିଲେ ବସି, ଦେଖିଲେ ଗୃହରେ ଝୁଲୁଛି ରସି,
ରସି ଧରି କୃଷ୍ଣ ଆସନ୍ତି ଖସି, କୃଷ୍ଣ ଦେଖି ରାଈ ହୋଇଲେ ଖୁସି ।
କହିଲେ କହ୍ନାଇ
କାନ୍ଧେ ବସ ବେଗେ ଯିବା ପଳାଇ । ୩୮

କୃଷ୍ଣଙ୍କ କାନ୍ଧରେ ବସିଲେ ରାଇ, ରଜ୍ଜୁ ଟାଣିଲେ ରାମଦାମ ଦୁଇ
ଗୃହ ପଥ ଦେଇ ହେଲେ ବାହାର, ଓହ୍ଲାଇ ଗଲେ ଆଗ ହଳଧର
ଓଳଗ୍ଗୁ ତଳରେ
ଠିଆ ହେଲେ ରାମ ଭୂମି ଉପରେ । ୩୯
ରାମ କାନ୍ଧେ ଦାମ ବସିଲେ ଯାଇଁ, ଦାମର କାନ୍ଧେ ବସିଲେ କହ୍ନାଇ
କହ୍ନାଇ କାନ୍ଧରେ ବସିଲେ ରାଈ, ଗୃହ ଉପରୁ ଆସିଲେ ଓହ୍ଲାଇ
କୁଞ୍ଜବନେ ଗଲେ
ଗୋପ ଗୋପୀ ମିଳି ରାସ କରିଲେ । ୪୦
ଯୁଗଳ ମୂର୍ତ୍ତି ହେଲେ ରାଧାକୃଷ୍ଣ, ବଜାଇଲେ ବଂଶୀ ସ୍ୱର ଟେକଣ
ତାଳମାରି ସର୍ବେ କରିଲେ ନୃତ୍ୟ, ନୁପୁର ନିକ୍ୱଣେ କୁଞ୍ଜ କମ୍ପିତ
ଅପ୍ରକଟ ଲୀଳା
ନିକୁଞ୍ଜ କାନନେ ପ୍ରକଟ ହେଲା । ୪୧
ରାସ ଶେଷେ ଗୃହ ବାଟରେ ନେଇ, ପ୍ରକୋଷ୍ଠ ଭିତରେ ଛାଡ଼ିଲେ ରାଇ
ସକାଳୁ ଦେଖିଲେ କପିଳା ମାତା, ଶୋଇଅଛି ଝିଅ ହରାଇ ଚେତା
ରାହାସ [illegible]ଶରେ
ହାସ୍ୟରେଖା ଫୁଟି ଉଠେ ଅଧରେ । ୪୨

ଗୋପୀମାନଙ୍କ ପଦେ ଅଧ୍ୟାୟ ଶେଷ, କିଶୋର କିଶୋରୀ ରାସ ବିଶେଷ
ମଦ ପଦକରେ ପୂରିଛି ରସ, ରସଗ୍ରାହୀ ପାନେ ହୋଇବେ ତୋଷ
ବୋଲେ ବୃନ୍ଦାବନ
ଶ୍ରୀରଙ୍ଗା ଚରଣ କରିଛି ଆଶ । ୪୩

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଶ୍ରୀରାଧା ଉପାଖ୍ୟାନେ
ନାମ ଏକ ଚତ୍ୱାରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

ଆରତି ଭଞ୍ଜନ ହରି ଜୟ ଜଗନ୍ନାଥ
ଜୟ ବଳରାମ ଜୟ ସୁଭଦ୍ରାଈ ମାତ । ୧
ଜୟ ଜୟ ଜଗନ୍ନାଥ ଜଗତ ସାଆନ୍ତ
ଜଗତ ଜନ ମୋହନ ଅରୂପ ଅନନ୍ତ । ୨
ଅନାଦି ପରମ ବ୍ରହ୍ମ ନିତ୍ୟ ନିରଞ୍ଜନ
ସଗୁଣ ନିର୍ଗୁଣ ଜୟ ବ୍ରହ୍ମ ସନାତନ । ୩
ନୀଳାଚଳେ ବିଜେ କରି ଅଛ ତିନି ନାଥ
ମହାମାନବୀୟ ଲୀଳା ଦେଖି ପ୍ରମୂର୍ଚ୍ଛିତ । ୪
ସ୍ୱାଇଭଗ୍ନୀ ଘେନି ଲୀଳା କର ଜଗନ୍ନାଥ
ବୃନ୍ଦାବନ କରେ ପ୍ରଭୁ ଶତ ପ୍ରଣିପାତ । ୫
ଆରତ ଜନକୁ ରକ୍ଷା କର ଜଗନ୍ନାଥ
ନୀଳାଦ୍ରି ବିହାରୀ ଜୟ ନୀଳାଚଳ ନାଥ । ୬



# ଦ୍ୱାଚତ୍ୱାରିଂଶ ଅଧ୍ୟାୟ

## ଗୁଞ୍ଜରୀ ରାସ

ରାଗ - କଳଶୀ ବାଣୀ

ଶୁଣ ସୁଜନେ ଶ୍ରୀକୃଷ୍ଣ ଚରିତ ମାନସ
ରସରାଜ କୃଷ୍ଣଚନ୍ଦ୍ର ଗୁଞ୍ଜରୀ ରାହାସ ।
ଷୋଳସହସ୍ର ଗୋପବାଳୀ ସଙ୍ଗେ ଚନ୍ଦ୍ରାବଳୀ
କରନ୍ତି ଗୁଞ୍ଜରୀ ରାସ କୁଞ୍ଜେ ବନମାଳୀ । ୧
ରାସ ବାଦ ଦେଇ କୃଷ୍ଣ ଉଦାର ଚରିତ
ଅନୁଶୀଳନେ ଅପୂର୍ଣ୍ଣ ହୋଇବ ନିଶ୍ଚିତ
ରସରାଜ କୃଷ୍ଣଚନ୍ଦ୍ର ଜୀବନ ଗାଥାରେ
ସମସ୍ତ ଲୀଳା ଉପଲବ୍ଧ ରଙ୍ଗା ଅବତାରେ । ୨
ଯୁଗଯୁଗ ଧରି ଯାହା ମଣିଷ ମନରେ
ଲୁକ୍କାୟିତ ରହିଅଛି ହୃଦୟ କନ୍ଦରେ
ତରଙ୍ଗ ଛାଡ଼ି ଯେପରି ନ ରହେ ସାଗର
ଜ୍ୟୋତ୍ସ୍ନା ଛାଡ଼ି ନ ରହଇ ଯେସନେ କଳାକର । ୩
ପ୍ରେମ ଛାଡ଼ି ରହି ନ ପାରନ୍ତି ନାଗର
ପ୍ରେମ ଲକ୍ଷଣ ସଦ୍ଗୁଣ ଶର୍କର ସାଗର
ପ୍ରଭୁଙ୍କୁ ପ୍ରେମ କରିବାରେ ନାହିଁ ତ ଦୋଷ
ଜଗତ ଗୋଟାକ ନାଥ କୃଷ୍ଣ ହିଁ ପୁରୁଷ । ୪
ଜୀବନର ସମ୍ବନ୍ଧ ବର୍ଣ୍ଣିତା ପାଶୋରି
ଶାନ୍ତି ଲଭେ ଶତ ପ୍ରେମପ୍ରୀତି ଅନୁସରି
ଜୀବନକୁ ମଧୁମୟ ତଥା ରସସିକ୍ତ
କରି ପ୍ରୀତ କରୁଥାଏ ପ୍ରେମମୟ ଶତ । ୫
ଅନିର୍ବଚନୀୟ ଯେଉଁ ନିରାକାର ତତ୍ତ୍ୱ
ପ୍ରେମ ପୁଲକିତ ହେଲେ ସାକାର କଳ୍ପିତ
ଉଚ୍ଚାରିତ କରି ରଖେ ଶତ ଅନୁବର୍ତ୍ତି
ଆନନ୍ଦମୟ ଏ ସୃଷ୍ଟି ଜୀବ ବ୍ରହ୍ମ ତତ୍ତ୍ୱ । ୬

ସଗୁଣ ବ୍ରହ୍ମ ସହିତ ଶରୀର ମିଳନ
ହେବା ଠାରୁ ଅଧିକ କି ଅଛି ପ୍ରୟୋଜନ ?
ଏଣୁ ସେହି ଦିବ୍ୟ ଅଙ୍ଗେ ଦୈହିକ ମିଳନ
ଜୀବର ପରମୋଧର୍ମ ଅନ୍ୟ ନାମ ପ୍ରେମ । ୭
ବୈଷ୍ଣବ ଧର୍ମର ମୂଳ ବୀଜ ପ୍ରେମ ତତ୍ତ୍ୱ
ରାଧାକୃଷ୍ଣ ବୃନ୍ଦାବନେ ମିଳନ ଏକାନ୍ତ
ନିତ୍ୟସ୍ଥଳେ ହୁଏ ଯେଉଁ ରାସର ବିଧାନ
ବୃନ୍ଦାବନେ ସେହି ଲୀଳା ରଚିଲେ ଶ୍ରୀକୃଷ୍ଣ । ୮
ନିର୍ମଳ ଶରଦାକାଶ କୁମାର ପୂର୍ଣ୍ଣିମା
କୁଞ୍ଜବନେ ବିଛୁରିତ ଶୁଭ୍ର ସୌମ୍ୟ ଜ୍ୟୋତ୍ସ୍ନା
ମଦନ ମୋହନ ବେଶ ହୋଇଣ ଶ୍ରୀକୃଷ୍ଣ
ମିଳିଲେ ବୃନ୍ଦାବନରେ କାମିନୀ ମୋହନ । ୯
ବୁଝିଲେ ଗୁହ୍ୟରୀ ରାସେ ପୁଂସ ଅଙ୍ଗ ନାହିଁ
ନାରୀ ଅଙ୍ଗେ ସେବା ପୂଜା ଭୋଗ ରାଗ ହୋଇ
ଏଣୁ ତପୀ ମାନେ ଗୋପୀ ଅଙ୍ଗକୁ ବହିଲେ
ଅଙ୍ଗଦେହୀ ଭକ୍ତ ଅଙ୍ଗସଙ୍ଗ ଲାଭ କଲେ । ୧୦
କୃଷ୍ଣଙ୍କ ଗୁହ୍ୟରୀ ରାସ ଅଟେ ଅପ୍ରକଟ
କିଶୋର କିଶୋରୀ ବେନି ମିଳନେ ପ୍ରକଟ
ନିତ୍ୟସ୍ଥଳେ ଶ୍ରୀରାଧାଙ୍କୁ ବାମରେ ବସାଇ
ନିତ୍ୟରାସ କରୁଥାନ୍ତି ରସିକ କହାଇ । ୧୧
କ୍ଷଣେ କାଳ ଶ୍ରୀରାଧାଙ୍କୁ ନ ପାରନ୍ତି ମୁଞ୍ଚି
ନିତ୍ୟ ବିହାରରେ ବାଧା ନ ହୁଅଇ କିଞ୍ଚି
ରାଧାକୃଷ୍ଣ ବେନି ଅଙ୍ଗ ନୁହେଁ ଭିନ୍ନାଭିନ୍ନ
ଏକ ବ୍ରହ୍ମ ବେନି ରାଗ କ୍ରୀଡ଼ାର କାରଣ । ୧୨
କଳ୍ପଣା କରିଲେ ଯେବେ କୃଷ୍ଣ ଅବତାର
ରାଧାଙ୍କୁ ପଠାଇ ଦେଲେ ଆଗ ମର୍ତ୍ତ୍ୟପୁର
ପଦ୍ମବନ୍ତୁ ବୃଷଭାନୁ ପାଇ କନ୍ୟାରତ୍ନ
ଶ୍ରଦ୍ଧାରେ ପାଳନ କଲେ ଦେଇ ରାଧା ନାମ । ୧୩

ରାଧା ଅଂଶେ ଷୋଳ ସହ୍ର ନବୀନ ଯୁବତୀ
ଗୋପଲୀଳା କରିବାକୁ ଗୋପେ ଜନ୍ମିଛନ୍ତି
ଅମର ଭୁବନ ତେଜି ଦେବତା ସକଳେ
ନରଲୀଳା କରିବାକୁ ଗୋପେ ଗୋପବାଳ । ୧୪
ଦିବ୍ୟ ବସ୍ତୁମାନ କୁଞ୍ଜବନେ ପରିପୂର୍ଣ୍ଣ
କୃଷ୍ଣ ପ୍ରୀତି ଅର୍ଥେ ସବୁ ହୋଇଛି ସୃଜନ
ଅଷ୍ଟ କୁଞ୍ଜେ ଷଡଋତୁ ସଦା ବିଦ୍ୟମାନ
ଦୁର୍ବାସା ଋଷି କରନ୍ତି କୁଞ୍ଜ ସମାର୍ଜନ । ୧୫
ରସିକାମାନଙ୍କ ମନ ମୋହିବାର ପାଇଁ
ମୋହନ ମୂରଲୀ କରେ ଦେଲେ ବେଦସାଇଁ
ହିଉତ୍ସ୍ୱର ବେଣୁ ରନ୍ଧ୍ରେ ଖଞ୍ଜିଛି ସଜାଡି
ସେ ସ୍ୱର ଶୁଣିବା ଲୋକ ଚିତ୍ତ ଯାଏ ଜଡି । ୧୬
ପ୍ରଥମ ରନ୍ଧ୍ରେ ବସିଲେ ଦେବୀ ସରସ୍ୱତୀ
ଦ୍ୱିତୀୟ ରନ୍ଧ୍ରେ ବସିଲେ କାମ ପତ୍ନୀ ରତି
ତୃତୀୟ ରନ୍ଧ୍ରରେ ରମା ଚତୁର୍ଥରେ ଉମା
ପଞ୍ଚମରେ ଜଗଦ୍ଧାତ୍ରୀ ଷଷ୍ଠେ ବ୍ରହ୍ମାବାମା । ୧୭
ବସିଲେ ସପ୍ତମ ରନ୍ଧ୍ର ମୂଳେ କାମଦେବ
ଏମନ୍ତ ଏ ସପ୍ତସ୍ୱର ମୂରଲୀ ପ୍ରଭାବ ।
ମୋହିନୀମାନେ ବସିଲେ ସର୍ବ ରନ୍ଧ୍ରେ ଆସି
ବେଣୁ ନାମ ଗୋଟି ହେଲା 'ମୋହନ ବଇଁଶୀ' ।୧୮
କଦମ୍ବ ମୂଳେ ବସିଲେ ଯାଇ ବଂଶୀ ଧାରୀ
ବଜାଇଲେ ସେ ବଂଶୀକୁ ରାଧାନାମ ଧରି
କୋକିଳ ପଞ୍ଚମ ତାନେ ମୂରଲୀ ବାଜଇ
ସ୍ୱନଶୁଣି ଗୋପ ଗୋପୀ ହୋଇଗଲେ କାଇ । ୧୯
ଏକେ ସୁନ୍ଦର ସୁଣକୁ ନାହିଁ ପଟାନ୍ତର
ହସ୍ତେ ମୋହନ ବଂଶୀ ବଜାନ୍ତି ଶ୍ରୀଧର
ଘରଦ୍ୱାର କୁଳମାନ ତେଜି ଗୋପବାଳୀ
ଚାଲିଗଲେ କୁଞ୍ଜବନେ ଯେଣେ ଚନ୍ଦ୍ରାବଳୀ । ୨୦

ମଧୁବନ, ବୃନ୍ଦାବନ, ନିକୁଞ୍ଜ କାନନ
ଅମ୍ବିକା, ରୁଦ୍ର, ତମାଳ ଏହି ଷଡବନ
ଏ ଷଡ ବନରେ ଷଡ଼ଋତୁ ରହିଥାନ୍ତି
ବେଣୁ ସ୍ୱନେ ଅସମୟେ ସଞ୍ଚାର ହୁଅନ୍ତି । ୨୧

କୁଞ୍ଜ ପରେ କୁଞ୍ଜ ଡେଇଁ ଚାଲିଲେ କାମିନୀ
ପନ୍ଦର ବୟସୀ ସର୍ବେ ନବୀନ ତରୁଣୀ
ଠାଣିରେ ଢୁଳୁଅଛନ୍ତି ମତ୍ତଗଜ ଢଳି
ମୁଖେ ସର୍ବେ ଗାଉଥାନ୍ତି କୃଷ୍ଣ ବନମାଳୀ । ୨୨
କାନନ ପରେ କାନନ କରି ଅତିକ୍ରମ
ନିକୁଞ୍ଜ କାନନେ ଯାଇ ମିଳିଲେ ବହନ
ଯମୁନା ତଟ ଦେଶରେ ସୁରମ୍ୟ କାନନ
ସୁନ୍ଦର, ସୁସଜ୍ଜ ଶୋଭା ହରି ନିଏ ମନ । ୨୩
ଶରତ ଋତୁ ସେ ବନେ କରିଥାଏ ବାସ
ପତ୍ର-ଫୁଲ-ଫଳେ ବୃକ୍ଷ ଦିଶନ୍ତି ସୁବେଶ
ପକ୍ଷୀଗଣେ କରୁଥାନ୍ତି କାକଳୀ କୂଜନ
ପକ୍ଷୀ କଣ୍ଠୁ ଶୁଣାଯାଏ କୃଷ୍ଣ, କୃଷ୍ଣ, କୃଷ୍ଣ । ୨୪
ସୁବର୍ଣ୍ଣ ରେଣୁ ପ୍ରାୟେକ କୁଞ୍ଜବନ ବାଲି
ପାଦକୁ କୋମଳ ଲାଗେ କର୍ପୂରର ଧୂଳି
ଧବଳେଶ୍ୱର ପଥରେ ମହାନଦୀ ଶଯ୍ୟା
ଶରଧା ବାଲି ଗଦାରେ ଯେହ୍ନେ ଥାଏ ସଜ୍ଜା । ୨୫

ସେ ଶ୍ରଧା ବାଲିକୁ ଯେହ୍ନେ ଶ୍ରଦ୍ଧାରେ ଭକତେ
ବୋଳି ହେଉଥାନ୍ତି ନେଇ ଆପଣାର ଗାତେ
ସେହିପରି ଗୋପବାଳୀ ସେ ବନର ଧୂଳି
ଉଲ୍ଲସିତ ହେଉଥାନ୍ତି କପାଳରେ ବୋଳି । ୨୬

ସୁରମ୍ୟ ବାଲୁକା ଶଯ୍ୟା ଶାନ୍ତ ନିଶାକାଳେ
କୁମାର ପୂର୍ଣ୍ଣିମା ଜହ୍ନ ମଧୁ ଜ୍ୟୋତ୍ସ୍ନା ଢାଳେ
ସେ କାଳରେ ଦଣ୍ଡେ ବସି ଅଙ୍କାମାଳ ବାଳୀ
କୃଷ୍ଣ କୃଷ୍ଣ ଜପି କଣ୍ଠେ ଧୀରେ ଗଲେ ଚଳି । ୨୭

ବନଫୁଲେ ଶୋଭା ପାଉଅଛି କୁଞ୍ଜବନ
ତୋଳଲେ ଗୋପିକା ଗଣେ କୁସୁମ ବହନ
ମଲ୍ଲିଆ, ମାଧବୀ,ମଲ୍ଲୀ, ମନ୍ଦାର, ମାଳତୀ
କନିଅର, କୁରୁବେଲ, କୁମୁଦ, କେତକୀ । ୨୮
ଦଅଁଳା, ଅଁଳା, ବାସଙ୍ଗ, ପାଇକ, ପାଟଳୀ
ଛୁରିଅନା, ନାଗେଶ୍ୱର, ଚମ୍ପକ, ଶେଫାଳ ।
ଗନ୍ଧପୁଷ୍ପ, ଗୋଲାପ, ଗୋଲାପ, କିଆ, ସେବତୀ
ଟଗର, ପୁନାଗ, ଜାଈପୁଷ୍ପ ନାନା ଜାତି । ୨୯

ନାନା କୁସୁମ ଚୟନ କରି ଗୋପବାଳୀ
ଚଳଲେ କଦମ୍ବ ମୂଳେ ଯହିଁ ବନମାଳୀ
ଗୋପୀଙ୍କର ମନ କଥା ଜାଣି ଶିରୀକୃଷ୍ଣ
ଷୋଳସହସ୍ର କୃଷ୍ଣ ରୂପ କରିଲେ ଧାରଣ । ୩୦
ଗୋପୀକେ ଗୋଟିଏ କୃଷ୍ଣ କଲେ ଆଲିଙ୍ଗନ
ସର୍ବେ କୃଷ୍ଣ ପ୍ରିୟତମା ପ୍ରିତି ପାଇଁ ମନ
ଶୃଙ୍ଗାର ରସେ ରସାଇ ରସିକ ଶେଖର
ନାଶି ଅଙ୍ଗେ ମୋକ୍ଷ ହୋଇ ଲଭିବେ ପସ୍ୱର । ୩୧
ଏକର ପିରତି କଥା ଆନେ ଅଗୋଚର
ପ୍ରତ୍ୟେକ ଭାବନ୍ତି କୃଷ୍ଣ ଗୋଟିପଣ ମୋର
ଯେତେ ଗୋପୀ ତେତେ କୃଷ୍ଣ ଲଗିଲ ରହାସ
ରାଧାନାଥ, ଗୋପୀନାଥ, ରାଧା-ଗୋପୀ-ଈଶ । ୩୨
ଯୁଗଳ ମୂରତି ହେଲେ ଶିରୀ ରାଧା କୃଷ୍ଣ
ମଧୁର ସ୍ୱରେ କରିଲେ ବଇଁଶି ବାଦନ
ହାତେ ତାଳ ମାରି ସର୍ବେ ନାଚରେ ମାଣ୍ଡଳେ
ବେଣୁ ସ୍ୱନ ତାଳେ ତାଳେ ନାଚେ ମଣ୍ଡଳେ । ୩୩
ପ୍ରେମବଶେ ରାଧା ମୁଖେ ଦିଅନ୍ତେ ଚୁମ୍ବନ
ରାଧା ବଶ ହୋଇଗଲେ ଶ୍ରୀରାଧାରମଣ
ରାଧାକୃଷ୍ଣ ଏକ ଅଙ୍ଗ ଯୁଗଳ ମୂରତି
ମହାମିଳନରୁ ଜାତ ହେଲ ଦିବ୍ୟ ଜ୍ୟୋତି । ୩୪

ଘନମାଳ ମେଘେ ଯେସନ୍ତେ ଚମକେ ଚପଳା
କୃଷ୍ଣ ଅଙ୍ଗ ସଙ୍ଗେ ରାଧା ତଦ୍ରୂପ ଦିଶିଲ
ରାଧା ପ୍ରେମଗାରେ ଧୋଇ ଚନ୍ଦ୍ରର କଳଙ୍କ
କୃଷ୍ଣ କଳେବର କଙ୍କଣ୍ଡ କଲଙ୍କତର । ୩୫
ଅପ୍ରକଟ ଲୀଳା କିଏ ପାରିବ ବା କହି
ଅନୁଭବ କରିନଥିବେ ଯା ହରି ବିହି
ଯୋଗମାୟା ଶକ୍ତିବଳେ ରାସକଲେ ଶ୍ୟାମ
ପୂର୍ଣ୍ଣକଲେ ତପୀରୂପୀ ଗୋପୀ ମନସ୍କାମ । ୩୬
ଯେତେ ନାୟିକାଙ୍କ ସଙ୍ଗେ କଲେ କାମରତି
ସମସ୍ତଙ୍କୁ ବସ୍ତୁମାୟା ଲଗାଇ ଅଛନ୍ତି
ରେତ ନ ପକାଇ କରନ୍ତି ଯେ ରତି ରଙ୍ଗ
କୃଷ୍ଣଙ୍କର ରତି ମିଥ୍ୟା ସତ୍ୟନ୍ଦ୍ରିୟ ସଙ୍ଗ । ୩୭
ଗୋବିନ୍ଦ ମାୟାରେ ପଡ଼ି ସତ୍ୟ ପ୍ରାୟମଣି
ରମିଲେ ଗୋପାଳ ବାଳୀ କୁଞ୍ଜେ ବେଣୁ ପାଣି
ହରିପୁର ରହିଛନ୍ତି ଆତ୍ମାରୂପେ ଦେହେ
କ୍ରୀଡ଼ା କରନ୍ତି ପ୍ରକୃତି ଗଣେ ନାନା ସ୍ନେହେ । ୩୮
ପ୍ରତ୍ୟକ୍ଷେ ସେ ପରଂବ୍ରହ୍ମ ମର୍ତ୍ତ୍ୟେ ଜାତ ହୋଇ
ନାୟିକା ଗଣଙ୍କୁ ଦେନ ଖେଳନ୍ତି କହ୍ନାଇ
ଗୁହ୍ୟ ରାହାସ ଏହା ଜୀବବ୍ରହ୍ମ ଭାବ
ଭାବମୟୀ ହେଲେ ପାଇ ଭାବଗ୍ରାହୀ ଭାବ । ୩୯
ସକଳ ଘଟରେ ବାସ କରିଛନ୍ତି ହରି
ଘଟେ ଘଟେ ରାସ କରୁଛନ୍ତି ନରହରି
ହଂକାର ସଙ୍ଗେ ସକାର କରୁଅଛି ରାସ
ପରଂବ୍ରହ୍ମ ସଙ୍ଗେ ଜୀବବ୍ରହ୍ମ ସଦା ବାସ । ୪୦
ହଂସ ସୂତ୍ରେ ନତ୍ୟରାସ ହେଉଛି ଘଟରେ
ହଂସ ସୋଽହଂ କେନ୍ଦ୍ରଗତ ହଂସୂକ୍ଷ୍ମ ସ୍ୱରରେ
ଉଲଟ ପାଲଟ ଗତି ଭ୍ରମର ଗୁମ୍ଫାରେ
ଲାଗିଅଛି ନତ୍ୟରାସ ଓଁକାର ସୂକ୍ଷ୍ମରେ । ୪୧

ଜୀବର ମୁକତି ମାର୍ଗ ନାମ ବ୍ରହ୍ମ ତତ୍ତ୍ୱ
ଯେ ନାମ ଭଜଇ ସେହି ନରଗଣେ ଶ୍ରେଷ୍ଠ
ଏ ଯେଣୁ ସଂସାରେ ନାମ ବ୍ରହ୍ମ ଅଛିପୂର
ଜୀବ ପରମର ଖେଳ ହଂସ ଅନୁସର । ୪୨
ଜୀବବ୍ରହ୍ମ ତତ୍ତ୍ୱ ଜାଣି ଭଜଇ ଯେ ଜନ
ଲଭଇ ସେ ବିଭୁପ୍ରେମ ପାଇ ନର ଜନ୍ମ
ସେଠାକୁ କେବଳ ଲୟ ମନେ ହେତୁକର
ହେତୁହୀନ ଜନ ନବୁଝଇ ତତ୍ତ୍ୱସାର । ୪୩
ହେତୁଥିବା ଲୋକ ହୃଦେ ବସେ ଭାବଗ୍ରାହୀ
ଆଖିର ଆଗରେ ରୂପ ନୃତ୍ୟ କରୁଥାଇ
ଯଗି ବସିଥିଲେ ସିନା ପାଇ ବ୍ରହ୍ମ ଭେଟ
ଏଣୁ କରି ବ୍ରହ୍ମ ନୁହେଁ ସବୁଠି ପ୍ରକଟ । ୪୪
ସ୍ୱାମୀଙ୍କି ଯେ ହୃଦ ପଦ୍ମେ ଚିହ୍ନି ରଖିଥିବ
ସେ ସିନା ଜାଣଇ କୃଷ୍ଣ ଭାବରେ କିଲାଭ
ଜୀବବ୍ରହ୍ମ ସୂତ୍ର ପ୍ରଭୁ ଦିଅନ୍ତେ ବତାଇ
ଆତ୍ମ ରମଣେ ମାତିଲେ ଗୋପପୁର ଗୃହି । ୪୫
ଗୂଢ଼ସ ରହାସ ଏହା ଭକ୍ତଙ୍କୁ ଗୋଚର
ରଙ୍ଗା ଅବତାରେ ଏହା ହୋଇଲା ପ୍ରଚୁର
ନାରୀ ଅଙ୍ଗ ହେଲେ ସିନା ହୋଇବ ଭାହାଦ
ଅଙ୍ଗଦେହୀ ଭକ୍ତ ଜାଣେ କୃଷ୍ଣ ପ୍ରେମରସ । ୪୬
କୃଷ୍ଣ ପ୍ରେମ ଲୋଭ ପାଇଁ ତପୀ ମାନେ ନାରୀ
ତରିଗଲେ ଭବବାରି କୃଷ୍ଣେପ୍ରେମ କରି
କୃଷ୍ଣପ୍ରେମ ବିନା କିଏ ବୁଝିପାରେ ରହସ
ବିକସ ସବଶ ଝୁରୁ ଅଛଇ ପିପୁଷ । ୪୭
ଗୁରୁ ଅଭିରାମ ଉକ୍ତ ଏ ସହଜ ସୂତ୍ର
ଶ୍ୟାମ ଅବତାରେ ତାହା ହୋଇଲା ବ୍ୟକତ
ଏ ସୂତ୍ରେ ଜୀବ ପରମ ମଧ୍ୟରେ ମିଳନ
ଅଜପା ସୂତ୍ରେ ଭଜନ୍ତି ଭକ୍ତେ ନାରାୟଣ । ୪୮

କୁଞ୍ଜବନେ କୃଷ୍ଣ କେଳି କରୁଥିବା କାଳେ
ଦେବୀ ପୌର୍ଣ୍ଣମାସୀ ରାସସ୍ଥଳେ ରହୁଥିଲେ ।
ରାସକ୍ରୀଡା ଶେଷେ ଦେବୀ ହୋଇଲେ ପ୍ରକାଶ
ଯୁଗବାର୍ତ୍ତା ଜଣାଇଲେ ଯାଇଁ ନନ୍ଦଶିଷ୍ୟ । ୪୯

"କହିଲେ ହେ ରସେଶ୍ୱର ଯେଉଁ କାର୍ଯ୍ୟ ପାଇଁ
ଧର୍ମାବତାର ଧରାଧାମେ ମନେ କି ନାହିଁ
ମହାପ୍ରଭୁ ହୋଇ ରହିଲେ କାର୍ଯ୍ୟ ଅବହେଳା
ବଢ଼ୁ ଉପୁଜିବ କାଳେ ଆହେ ନନ୍ଦବାଳା । ୫୦

ବସୁନ୍ଧରା ପାପ ଭାର ନ ପାରଇ ସହି
ଆସି ଅଛି ସେହି କଥା ଦେବଙ୍କୁ ଜଣାଇ
ଗୋପଲୀଳା ଶେଷକରି କାର୍ଯ୍ୟ ହୁଅ ବ୍ରତୀ
ଧରାବକ୍ଷ ଦୁଷ୍ଟଗଣେ କରନ୍ତୁ ନିପାତ । ୫୧

କଂସ, କେଶୀ, ଜରାସନ୍ଧ, ଶାଲ୍ୱ, ଶିଶୁପାଳ
ଦନ୍ତବକ୍ର, ନରକାଦି, ପୁଣ୍ଡରୀକ ମହୀପାଳ
କୌରବାଦି ଶତଭ୍ରାତା କର୍ଣ୍ଣ, ଜୟଦ୍ରଥ
ଦୁଷ୍ଟ ନରପତି ଗଣେ କରନ୍ତୁ ନିହତ । ୫୨

ଯୁଗର ଆହ୍ୱାନ ପ୍ରଭୁ ନ ପାରୁଛ ଶୁଣି
ଗୋପଲୀଳା ଶେଷ କର ଆହେ ବେଣୁ ପାଣି
ଚକ୍ରଧାରୀ ହୋଇ କର ଦୁର୍ଜନ ଦଳନ
ସାର୍ଥକ କରନ୍ତୁ ନାମ "ବାସୁଦେବ କୃଷ୍ଣ" । ୫୩

ଯୋଗମାୟା କଥା ଶୁଣି କହିଲେ ଶ୍ରୀହରି
ସୁଖଖେଳ କଥା ମାତ୍ରେ ସ୍ମରଣ ମୋହର
ବାଲ୍ୟଲୀଳା ଆଜଠାରୁ ହୋଇଲା ସମ୍ପୂର୍ଣ୍ଣ
ଯୁଦ୍ଧଲୀଳା କରିବାକୁ ବଳୁଅଛି ମନ । ୫୪

ସତ୍ୟକଥା କହୁ ଅଛୁ ଶୁଣ ଆଗୋ ମାୟେ
ଶକ୍ତି ବିନା କି କରିବି ନାହିଁ ମୋ ଉପାୟେ
ତୁମ୍ଭେ ଶକ୍ତି ପ୍ରଦାୟିନୀ ଶକ୍ତି କର ଦାନ
ଶକ୍ତି ବିନା ଅସମ୍ଭବ କାର୍ଯ୍ୟ ସମ୍ପାଦନ । ୫୫

ଦୁର୍ଜ୍ଜନ ଦଳନ ପାଇଁ ମାନଷ ରୂପରେ
ଜାତହୁଅ ଜନମି ଗୋ ଏ ଧରାଧାମରେ
ତୁମ୍ଭର ସହାୟେ ଦୁଷ୍ଟ କରିବି ନିଧନ
ଶାନ୍ତ ହେବ ବସୁମତୀ ଧର୍ମ ସଂସ୍ଥାପନ । ୫୬

ନ ଧରିବ ଅସ୍ତ୍ରକୋଳ ତୁମ୍ଭେ ହେବ ଅନ୍ଧ
ତୁମ୍ଭ ଶକ୍ତି ବଳେ ଦୁଷ୍ଟେ ହୋଇବେ ନିଷ୍ପନ୍ଦ
କୃଷ୍ଣଶକ୍ତି ଧରି କୃଷ୍ଣା ନାମେ ହେବ ଖ୍ୟାତ
ରହିବ ଏକଥା ଯୁଗ ଯୁଗକୁ ବିଦିତ । ୫୭

ପଞ୍ଚତ୍ୟାଗୀ ନାମ ମୋର ନୁହେଁ ମାନବାକ୍ଷି
ମନ୍ତ୍ର ଉଚ୍ଚାରଣେ ନାରାୟଣ ନାମଧାରୀ
ନର ନାରୀ ହୃଦବାସୁ ନାମ ନରହରି
ନରହତ୍ୟା ନ କରିବ କରେ ଅସ୍ତ୍ରଧରି । ୫୮

କରାଇବି ଯୁଦ୍ଧ ଯଜ୍ଞ ନିଜେ ନ କରିଣ
ମରାଇବି ଦୁଷ୍ଟଗଣେ ନିଜେ ନ ମାରିଣ
ନରମେଧ ଯଜ୍ଞ ହେବ ଯୁଧିଷ୍ଠିର ହାତେ
ପୂର୍ଣ୍ଣାହୁତି ହେବେ ଦୁଷ୍ଟେ ତୁମ୍ଭର ନିମନ୍ତେ । ୫୯

କୃଷ୍ଣଙ୍କ ମୁଖରୁ ଶୁଣି ନିସ୍ତାର ବଚନ
ମୁକ୍ତି ପ୍ରଦାନ କରି ଦେବୀ ଅନ୍ତର୍ଦ୍ଧାନ
ନମୋ ନମୋ ନାରାୟଣ ଜଗତ କାରଣ
କୁଞ୍ଜବନ କାନ୍ତ ଆହେ ଶ୍ରୀରାଧା ରମଣ । ୬୦
ଜୟ ଜୟ ଗୋପୀ ନାଥ ଗୋଲକ ବିହାରୀ
ନଟବର, ବେଣୁଧର, ମୁକୁନ୍ଦ, ମୁରାରି
ତ୍ରିଭଙ୍ଗ ଭଙ୍ଗିମା ଠାଣି ଦିଶଇ ସୁନ୍ଦର
ଅଧରେ ମୋହନ ବଂଶୀ ମନ ଭୁଲା ସ୍ୱର । ୬୧
ଦ୍ୱିଭୁଜ ମୁରଲୀ କର କିଶୋର ସୁଜନ
ଅମିୟ ଆନନ୍ଦ ହାସ୍ୟ କମଳ ଅଧର
ଶ୍ରୀବତ୍ସ - ହୃଦକଣ୍ଠେ ରଜିକ ଶୋଭାର
ନିକୁଞ୍ଜ-କାନନ-କାନ୍ତ-କେଳି କଳାକର । ୬୨

ଅନନ୍ତ ବ୍ରହ୍ମାଣ୍ଡ ପତି ହେ ସଚ୍ଚିଦାନନ୍ଦ
ଜଗତଜନ ମୋହନ ହେ ଜଗଦାନନ୍ଦ
ନୟନାଭିରାମ ଆହେ ବଚନାଭିରାମ
କଳି କଳୁଷ ନାଶନ ଗୁରୁ ଅଭିରାମ । ୬୩

ଶ୍ୟାମଳ ସୁନ୍ଦର ତନୁ ରତନ ଭୂଷଣ
ପୂର୍ଣ୍ଣ ଚନ୍ଦ୍ର ପ୍ରାୟ ମୁଖ ନୀରଜ ନୟନ
ଇନ୍ଦ୍ରନୀଳକାନ୍ତ ମଣି ଶରୀର ଶୋଭନ
କଟି ତଟେ ଶୁକ୍ଳ ପାଟ କଠାଉ ସୁବର୍ଣ୍ଣ । ୬୪

ରକ୍ତ ପଦ୍ମ ଜିଣି ଶୋଭା ଚରଣ ଯୁଗଳ
ଗଳାରେ ମାଳତି ମାଳ ଦିଶଇ ମଞ୍ଜୁଳ
ନମୋ କୃଷ୍ଣ ଜଗଦ୍‌ଗୁରୁ ସତ୍ୟ ନାରାୟଣ
ସନାତନ ଧର୍ମ ସଂସ୍ଥାପନେ ଅବତୀର୍ଣ୍ଣ । ୬୫

ମାନବ ଶରୀରେ ଜନ୍ମି ମାନବୀୟ ଲୀଳା
ପ୍ରଭୁର କରୁଛ ମର୍ତ୍ତ୍ୟେ ଆହେ ପଦ୍ମଲୋଚନା
ଛଅଷଠି ପଦେ ହେଲା ଅଧ୍ୟାୟ ସଂପୂର୍ଣ୍ଣ
ଗୀତରେ ଭଣିଲା ବୃନ୍ଦାବନ ମୂଢଜନ । ୬୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଗୁଣ୍ଡିଚାବାସ ବର୍ଣ୍ଣନେ
ନାମ ଦ୍ୱାତ୍ରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



# ଦ୍ୱିଚତ୍ୱାରିଂଶ ଅଧ୍ୟାୟ

## ଯୋଗମାୟା ଜନ୍ମ ବୃତ୍ତାନ୍ତ

### ରାଗ - ବଙ୍ଗଳାଶ୍ରୀ

ଏଥୁ ଅନନ୍ତେ ଶୁଣ ଆହେ ସୁଜ୍ଞ ଜନେ
କୃଷ୍ଣ ଚରିତ ମାନସ
ପଦ ପଦକରେ ରସ ପୂରିଅଛି
ପାନ କର କୃଷ୍ଣ ରସ । ୧
ଆଖଡ଼ା ଶାଳରେ ଗୁରୁଙ୍କ ପୟରେ
ପ୍ରଣମି ଧର୍ମ ନନ୍ଦନ
କହିଲେ ହେ ଗୁରୁ ଶିକ୍ଷା ଶେଷ ଅନ୍ତେ
ଦକ୍ଷିଣା ଦେବାକୁ ମନ । ୨
ଯାହା ଆପଣଙ୍କ ଇଚ୍ଛା ତାହା ବୋଲ
ସତ୍ୟ କରିବ ପ୍ରଦାନ
ଦକ୍ଷିଣା ଗ୍ରହଣ କରି ଋଣ ମୁକ୍ତ
କରି ଦିଅ ଗୁରୁବ୍ରହ୍ମ । ୩
ବୋଲୁଛନ୍ତି ଦ୍ରୋଣ ହେ ଧର୍ମ ନନ୍ଦନ
ତୁମ୍ଭେ ଯା କହିଲ ସତ୍ୟ
ମାଗି ଧନ ରତ୍ନ ପ୍ରୟୋଜନ ନାହିଁ
ପ୍ରତିଶୋଧ ଚାହେଁ ଚିତ୍ତ । ୪
ଗୁରୁଙ୍କ ମୁଖରୁ କଥାକୁ ଛଡ଼ାଇ
ନେଇ ବୋଲେ କୁରୁନାଥ
ଅବିଳମ୍ବେ ଆଜ୍ଞା ଦିଅ ମୋତେ ଗୁରୁ
ପୂରାଇବି ମନୋରଥ । ୫
ବୋଲୁଛନ୍ତି ଦ୍ରୋଣ ଯେବେ ଇଚ୍ଛା ଅଛି
ଦ୍ରୁପଦଙ୍କୁ ଧରି ଆଣ
ଶୁଣି ଦୁର୍ଯୋଧନ ଦଣ୍ଡ ଯାଚି ଦେବେ
ପାଞ୍ଚାଳ ଭଳେ ଗମନ । ୬

ମାଗ ଦ୍ରୁପଦଙ୍କ   ସଙ୍ଗେ ଯୁଦ୍ଧ କରି
ଫେରିଲେ ପରାସ୍ତ ହୋଇ
ଦେଖି ଉପହାସ   କଲେ ପାଣ୍ଡୁ ପୁଏ
ଲଜ୍ଜିତ କୌରବ ସାଇଁ । ୭
ଅର୍ଜୁନଙ୍କୁ ଆଜ୍ଞା   ଦେଲେ ଦ୍ରୋଣ ଗୁରୁ
ଧରି ଆଣିବାର ପାଇଁ
ଗୁରୁ ଆଜ୍ଞା ପାଇ   ପାଦ ଗଡ଼ କରି
ଚଳିଗଲେ ଏକା ହୋଇ । ୮
କୃଷ୍ଣାବେଣୀ ନଦୀ   ତୀରେ ମହାଗିରି
ଉଠିଲେ ଗିରି ଶିଖରେ
ଧନୁରେ ଟଙ୍କାର   କରନ୍ତେ ଅର୍ଜୁନ
ଶୁଣି ଧାଇଁଲେ ନୃବରେ । ୯
ଦ୍ରୁପଦ ନୃପଙ୍କୁ   ଦେଖି ଧନଞ୍ଜୟ
ମନେ କରିଲେ ବିଚାର
ଗୁରୁଙ୍କ ମଇତ   ପାଞ୍ଚାଳ ରାଜନ
କିପରି ବନ୍ଧିବ ଶର ? । ୧୦
ଗୁରୁଙ୍କ ସମାନ   ଅଟନ୍ତି ଏ ମାନ୍ୟ
ବ୍ରାହ୍ମଣ କୁଳରେ ଜାତ
ଆଘାତ ନ ଦେଇ   ବଳେ ବାନ୍ଧି ନେଇ
ଭେଟାଇଲେ ବୀର ପାର୍ଥ । ୧୧
ଅଖଡା ଶାଳରେ   ଶୋଇଥିଲେ ଗୁରୁ
ନିଦ୍ରାରୁ ନ ଉଠାଇଣ
ଖଟର ଖୁରାରେ   ବାନ୍ଧି ଦ୍ରୁପଦଙ୍କୁ
ଚଳିଲେ ବୀର ଅର୍ଜୁନ । ୧୨
ସଜ୍ଜିଲେ ଜ୍ୟୋଷ୍ଠ   ସୋଦରେ ଡକାଇ
ଉଦ୍ଧାର କରାଇ ଦେବେ
ଉତ୍ତରରେ ଯାଇଁ   ବାର୍ତ୍ତା ଜଣାଇବେ
ଚୁଡ଼ା, ଭାତ, ଖଣ୍ଡା ପାଇବେ । ୧୩

ଏହି ସମୟରେ ଦୁଷ୍ଟ ଦୁର୍ଯ୍ୟୋଧନ
ସଙ୍ଗେ ଘେନ ଶତ ଭାଇ
ଆଖଡ଼ା ଶାଳରେ ଦେଖି ଦ୍ରୁପଦଙ୍କୁ
ପ୍ରହାର କଲେ ନଠେଇ । ୧୪
ସାତ ବେଣ୍ଠି କରି ଚୂଟି କାଟି ଦେଲେ
ମୁଖେ ଚୂନ କଳା ଦେଇ
ଦୁରପଦ ଦୁଃଖ ଦେଲେ ଦ୍ରୁପଦଙ୍କୁ
କ୍ରନ୍ଦନ କଲେ ନୃପାଇଁ । ୧୫
ଏକାଳେ ମିଳିଲେ ପାର୍ଥ, ଯୁଧିଷ୍ଠିର
ସଙ୍ଗେ ଗାଙ୍ଗେୟ, ବିଦୁର
ଦ୍ରୁପଦ ନୃପଙ୍କ ଦୁରବସ୍ଥା ଦେଖି
କ୍ରୋଧ କଲେ ପାର୍ଥ ବୀର । ୧୬
ଗୋଳ ଶୁଣି ନିଦ୍ରା ତେଜି ଗୁରୁ ଦ୍ରୋଣ
ଧାଇଁଲେ ରାଜାଙ୍କୁ ଧାଇଁ
କହିଲେ ହେ ନୃପ ଆପଣା ଦୋଷରୁ
ଗଞ୍ଜି ହେଲ ନରସାଇଁ । ୧୭
ଦ୍ରୁପଦ କହିଲେ ଅପରାଧୀ ମୁହିଁ
କ୍ଷମା କରି ଦିଅ ମିତ୍ର
ତାଚ୍ଛଲ୍ୟ କରିଣ କହୁଛନ୍ତି ଦ୍ରୋଣ
ତୁମ୍ଭେ ଅଟ ନରନାଥ । ୧୮
ଆମ୍ଭେତ ଭିକ୍ଷାସୀ ନୋହୁ ନରପତି
ମିତ୍ର ଅବା ହେବୁ କାହୁଁ
ନୃପତିଙ୍କ ସଙ୍ଗେ ଭିକ୍ଷୁକ ମଇତ୍ର
ହୁଅଇକି ମହାବାହୁ ? । ୧୯
ନୃପ ହୋଇଥିଲେ ହୁଅନ୍ତି ମଇତ୍ର
ସେ ଭାଗ୍ୟ ମୋହର କାହିଁ
ମିତ୍ର ବୋଲିଣ ସମ୍ବୋଧନ କଲେ
ଲଜ୍ଜା ହେବ ନରସାଇଁ । ୨୦

ଆମ୍ଭ ଶିଷ୍ୟ ହାତେ　　ପରାଜିତ ହୋଇ
ବନ୍ଦୀ ହେଲ ନରବର
ଏବେ ତ ପାଞ୍ଚାଳ　　ଶାସିତ ଆମ୍ଭର
ଆମ୍ଭେ ତହିଁ ନରେଶ୍ୱର । ୨୧
ତୁମ୍ଭେ ପରାଜିତ　　ହୋଇ ମୋ ଆଶ୍ରିତ
ଆମ୍ଭେ ଅଟୁ ନରନାଥ
ଏବେ ମୁଁ ମଇତ୍ର　　ପଣକୁ କି ଯୋଗ୍ୟ
ବିଚାର କରି କହତ ? ୨୨
ଦ୍ରୋଣ କଥା ଶୁଣି　　ଦ୍ରୁପଦ ରାଜନ
ହୋଇଲେ ବହୁ ଲଜ୍ଜିତ
ବୋଇଲେ ହେ ! ମିତ୍ର　　ଦୋଷ କରି ଅଛି
ତେଣୁ ମୁଁ କ୍ଷମାର ପାତ୍ର । ୨୩
ଦ୍ରୁପଦଙ୍କ ଦୁଃଖେ　　ଦୁଃଖିତ ହୋଇଣ
ବନ୍ଧନ ଖୋଲିଲେ ଦ୍ରୋଣ
କହିଲେ ମୋ ଶିଷ୍ୟେ　　ଅନ୍ୟାୟ କରିଲେ
ତାହାଙ୍କ ଦୋଷ ନ ଘେନ । ୨୪
ବ୍ୟକ୍ତ କଲେ ଦ୍ରୋଣ　　କ୍ଷମା କରି ଦେଲି
କ୍ଷମାହିଁ ବିପ୍ରର ଧର୍ମ
ଅପମାନ ପାଇ　　ପଳାଇ ଦ୍ରୁପଦ
ପଶିଲେ ଘୋର କାନନ । ୨୫
ପ୍ରତିଶୋଧ ନେବା　　ମାନସେ ରାଜନ
ଧ୍ୟାନ କରିଲେ ଶଙ୍କର
ନୃପ ତପେ ତୋଷ　　ହୋଇ ଆଶୁତୋଷ
ପୁଚ୍ଛିଲେ ଲୋଡ଼ୀକି ବର ? । ୨୬
ନୃପତି କହିଲେ　　ଆହେ ତ୍ରିଲୋଚନ
ଦିଅ ମତେ ଏହି ବର
ଦୁର୍ଯ୍ୟୋଧନ ଶତ　　ଭ୍ରାତା, ଦ୍ରୋଣାର୍ଜୁନ
ଜିଣିବି କରି ସମର । ୨୭

ଶଙ୍କର କହିଲେ ପ୍ରଥମ ଦୁଇଟି
ବର କରୁଛୁ ପ୍ରଦାନ
ତୃତୀୟ ବରକୁ ନାହିଁ ମୋ କ୍ଷମତା
ଅଜେୟ ବୀର ଅର୍ଜୁନ । ୨୮

ଆଉ କଥା ମାନ ଶତ୍ରୁତା ନ କର
ପାର୍ଥେ ବନ୍ଧୁ ଭାବ କର
ମହା ଯଜ୍ଞ କରି କନ୍ୟା ଉପୁଜାଇ
ପାର୍ଥଙ୍କୁ ପ୍ରଦାନ କର । ୨୯

ପାଣ୍ଡବ ବଳରେ କୌରବ ପକ୍ଷକୁ
ଜୟ କରି ନରପତି
ତୁମ୍ଭ ପୁତ୍ର ହସ୍ତେ ତୁମ୍ଭ ଶତ୍ରୁ ଦ୍ରୋଣ
ହେବେ ହତ ଯୋଗ୍ୟ ଶାସ୍ତି । ୩୦

ଶିଖଣ୍ଡି ନାମରେ ପୁତ୍ରେକ ଜନ୍ମିବ
ଅମ୍ବା କନ୍ୟା ଅଟେ ସେହି
ଭୀଷ୍ମଙ୍କୁ ସାଧିବା ପାଇଁ ଜାତ ହେବ
ବର ଦେଇଅଛି ମୁହିଁ । ୩୧

ତୁମ୍ଭର ଦ୍ୱିତୀୟ ସନ୍ତାନ ହାତରେ
ନିହତ ହୋଇବେ ଦ୍ରୋଣ
ଭୀଷ୍ମ ଦ୍ରୋଣ ହତ ହେଲେ ସିନା କ୍ଷୀଣ
ପାଇବ କୁରୁ ରାଜନ । ୩୨

ତୁମ୍ଭ କୋଳେ ଯୋଗ- ମାୟା ଜାତ ହୋଇ
ବିନାଶିବେ କୁରୁବୀର
ଦ୍ରୁପଦଙ୍କୁ ବର ଦେଇ ସଦାଶିବ
ଚଳିଲେ କୈଳାସ ପୁର । ୩୩

ଦିବ୍ୟବର ପାଇ ପାଞ୍ଚାଳ ନୃପତି
ଚଳିଲେ ଆପଣ ପୁରେ
କାମ୍ୟକ ନାମକ ଯଜ୍ଞ କରାଇଲେ
କୃଷ୍ଣାବେଣୀ ନଦୀ ତୀରେ । ୩୪

ଯାଗେ ଯାଜକ ବରଣ ହୋଇଲେ
ବ୍ୟାସମୁନି ତପୋଧନ
ଯଜ୍ଞୁ ଜାତ ହେଲେ ଦୁଇଗୋଟି ପୁତ୍ର
କୃଷ୍ଣା ନାମେ ଦିବ୍ୟନାରୀ । ୩୫

ଶିଖଣ୍ଡୀ ଓ ଧୃଷ୍ଟ- ଦ୍ୟୁମ୍ନ ନାମେ ଦୁଇ
ତନୟ ହୋଇଲେ ଜାତ
ଯାଜ୍ଞସେନୀ ନାମେ ଯୋଗମାୟା ଜାତ
ନାଶ କରିବାକୁ ଦୁଷ୍ଟ । ୩୬

ଯାଜ୍ଞସେନୀ, କୃଷ୍ଣା, ପାଞ୍ଚାଳୀ, ଦ୍ରୌପଦୀ
ଦେବୀଙ୍କର ଚାରି ନାମ
କୃଷ୍ଣ ଇଚ୍ଛା ଶକ୍ତି ବଳେ ଜନ୍ମିବାରୁ
କୃଷ୍ଣା କୃଷ୍ଣ ରୂପ ସମ । ୩୭

କନ୍ୟା ନାମ କୃଷ୍ଣା ଶୁଣି ପାଞ୍ଚାଳେଶ
କୃଷ୍ଣ ପ୍ରେମେ ହେଲେ ମତ୍ତ
କୃଷ୍ଣ କୃଷ୍ଣା ଦୁଇ ନାମରେ ପୂରିଛି
ଅନିର୍ବଚନୀୟ ପ୍ରେମ । ୩୮

କୃଷ୍ଣା କୋଳେ ଧରି କୃଷ୍ଣ ନାମ ସ୍ମରି
କୃଷ୍ଣମୟ ହେଲ ଚିତ୍ତ
କୃଷ୍ଣ କୃଷ୍ଣା ମଧ୍ୟେ ଅଭେଦ୍ୟ ସମ୍ପର୍କ
ଜ୍ଞାତ ହେଲେ ନରନାଥ । ୩୯

କୃଷ୍ଣ କାର୍ଯ୍ୟ ପାଇଁ କୃଷ୍ଣାଙ୍କୁ ପାଳିଲେ
କୃଷ୍ଣାବେଣୀ ଶିରପତି
କୃଷ୍ଣ କୃଷ୍ଣା ବେନି ଏକତ୍ର ହୋଇଣ
ବିନାଶିବେ କୁରୁଶକ୍ତି । ୪୦

ପିତାମହ ଭୀଷ୍ମ କ୍ଷତ୍ରିୟବର ଦ୍ରୋଣ
ଦୁର୍ଯ୍ୟୋଧନ ଶତ ଭ୍ରାତ
ଭାରତ ଯୁଦ୍ଧରେ ହତ କରିବାକୁ
ପୁତ୍ର କନ୍ୟାଏ ସମ୍ଭୂତ । ୪୧

ଭୀଷ୍ମ ପ୍ରତିଶୋଧ କାମନା କରିଣ
ଅମ୍ବା କନ୍ୟା ତପ କରି
ଦ୍ରୁପଦ ଗୃହରେ ଜାତ ହେଲେ ଆସି
ପ୍ରତି ହିଂସା ଭାବ ଧରି । ୪୨
ପୁତ୍ର କନ୍ୟା ତିନ ପାଳିଲେ ନୃପମଣି
ପ୍ରତିଶୋଧ ନେବା ପାଇଁ
ଦିନୁ ଦିନ ଶିଶୁ ବର୍ଦ୍ଧମାନ ହେଲେ
ଚନ୍ଦ୍ରକଳା ସମ ହୋଇ । ୪୩
ବିବାହ ବୟସ ଆସି ଉପଗତ
କନ୍ୟା ଖୋଜିଲେ ରାଜନ
ବିବାହ ଯୋଗାଡ଼ କଲେ ବିଧାନରେ
ବିପ୍ରଙ୍କୁ କରି ବରଣ । ୪୪
ପୁତ୍ର, କନ୍ୟା, ବଧୂ ନାତି, ନାତୁଣୀଙ୍କ
ସଙ୍ଗେ ପାଞ୍ଚାଳ ନୃପତି
ଆନନ୍ଦରେ କାଳ କାଟିଲେ ରାଜନେ
ନ୍ୟାୟେ ପାଳି ବସୁମତୀ । ୪୫
ଭାରତ ସମରେ ପ୍ରମୁଖ ଭୂମିକା
ନେବାକୁ ହେଲେ ପ୍ରସ୍ତୁତ
ଅସ୍ତ୍ର, ଶସ୍ତ୍ର ବିଦ୍ୟା ସାଧି ପୁତ୍ର ନାତି
ବୀର ଗଣରେ ବିଖ୍ୟାତ । ୪୬
ସପତ ପୂର୍ଣ୍ଣ ଛନ୍ଦରେ ଅଧ୍ୟାୟ
ଏଠାରେ ହୋଇଲା ଶେଷ
କାଳନଦୀ କୂଳେ କୁଟୀର କରଣ
କାଳ କାଟେ ଭୁଲନ୍ଦାସ । ୪୭

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଦ୍ରୁପଦ ରାଜାଙ୍କ ବରପ୍ରାପ୍ତି
ଓ ଯୋଗମାୟା ଜନ୍ମ ବୃତ୍ତାନ୍ତ କଥନେ
ନାମ ଦ୍ୱିଚତ୍ୱାରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି —**

ଅ କ୍ କା ମ ନ
ଚ କା ଡୋ ଳା କର ଦର୍ଶନ
ଚକା ବଟ ତଳେ ଚକାସନ ପାରି
ଅକ୍‌କା ମାରି ଦଣ୍ଡେ ବସିଣ । ଘୋଷା
ଦେଉଳକୁ ଧନେ ଧାଇଁ ଦରଶନେ
ଆସିଲେ ଗୋପାଳ ଭକ୍ତ
ଗୋପାଳଙ୍କ ବିନା ଅନ୍ୟ ନ ଜାଣନ୍ତି
ଗୋପାଳ ଘରେ ନିବିଷ୍ଟ । ୧
ରତ୍ନ ସିଂହାସନେ ବିକୃତ, ବିବର୍ଣ୍ଣ
ବିଗ୍ରହ ଦେଖି ବିରକ୍ତ
ମନ ଅବସାଦେ ଦେଉଳରୁ ଫେରି
ଆସିଲେ ଗୋପାଳ ଭକ୍ତ । ୨
ଆନନ୍ଦ ବଜାର ଦେଇ ଯିବା କାଳେ
ଡାକି କହିଲେ ପଣ୍ଡାଏ
ଉଭଟ କଳ୍ପଣା ନ କରଣ ଘେନ
କଇବଲ୍ୟ କାଣିକାଏ । ୩
ପଣ୍ଡା କଥା ଶୁଣି ବିଗୁଡ଼ିଲେ ଭକ୍ତେ
" କେବଳୀ " ନାହିଁ ଦର୍ଶନ
"ପ୍ରସାଦ" କପରି "କୈବଲ୍ୟ" ହୋଇଲା
ବିଶ୍ୱାସ ନ ଆସେ ମନ ? ୪



# ଚତୁଚତ୍ୱାରିଂଶ ଅଧ୍ୟାୟ

## କଂସଙ୍କୁ ଅବଜ୍ଞା

### ରାଗ- ଶଙ୍କରା ଭରଣ

ଶ୍ରୀକୃଷ୍ଣ ଚରିତ ମାନସ ଶୁଣ ସ୍ୱଜନ
ବିଚିତ୍ର ଏ କୃଷ୍ଣଲୀଳା ରସେ ପରିପୂର୍ଣ୍ଣ
ମଥୁରା ପୁରେ ବେପାର
କରିବାକୁ ନବବାଳୀ ନବରୁ ବାହାର । ୧
ପାଟ ମୁକୁଳରେ ନେତ ପତନକୁ ମଣ୍ଡି
ପତନକୁ ତା ଉପରେ ଥୋଇ ଦଧିହାଣ୍ଡି
ଭାଣ୍ଡମାନ ଚତୁଃ ପାର୍ଶ୍ୱେ
ଚୋଷିକା, ଲବଣୀ, ପନିର, ଘୃତ, ଗୋରସେ । ୨
ବାଇନ ଗୋରିଆ ଦ୍ରବ୍ୟ ପସରାରେ ଧରି
ଛବ ପ୍ରାପ୍ତି ଚଳିଗଲେ ଗୋପପୁର ନାରୀ
ଗୋଧିକା ଘାଟେ ମିଳିଲେ
ଦୁଇକୂଳ ଖାଏ ନଦୀ ନୟନେ ଦେଖିଲେ । ୩
ଅତ୍ୟନ୍ତ ଗଭୀର ନଦୀ କେହୁ ଅନ୍ତଃକରି
ଚକ୍ରାବର୍ତ୍ତ ହୋଇଜଳ କାଟଇ ଭଉଁରି
ନାବ ମଙ୍ଗେ କର୍ଣ୍ଣ ଧରି
କାଉଧର ବସିଅଛି ହଟିଆ ନାଗର । ୪
ବାଳୀଙ୍କ ଦୃଷ୍ଟି ପଡ଼ିଲା ମଙ୍ଗର ଉପରେ
ନିକଟକୁ ଯାଇ ଗୋପୀ ପୁଚ୍ଛିଲେ ସଧୀରେ
ଦିଅ ଘାଟ ପାର କରି
ମଥୁରୁ ଫେରି ଦେବୁ ଆମ୍ଭେ ରାଜଭୋଗ ଧରି । ୫
ବିଳମ୍ବ ହୋଇଲେ କୋପ କରିବେ ନୃପତି
ଆମ୍ଭଙ୍କ ହେଲେ ଗୋରସ ଗ୍ରାହକେ ଅଶାନ୍ତ
ନାବିକ କହିଲେ ଶୁଣ
ଘାଟ ମହାସୁଲ ଆଗ କରଗୋ ପ୍ରଦାନ । ୬

ଗୋପୀଏ ପୁଛିଲେ କାହ୍ନୁ କେଉଁ କଥା କହୁ
ଘାଟ ମାହାସୁଲ ଆମ୍ଭେ କେବେ ଦେଇ ନାହୁଁ
ନଷ୍ଟର ଗୋଧିକା ଘାଟ
ପିତୃପିତାମହ କାଳୁ ଫିଟି ଅଛୁ ବାଟ । ୭
କୃଷ୍ଣ କହିଲେ ଅଚଳ ପୁରୁଣା ନିୟମ
କାଲିଠୁଁ ଲଗି ହୋଇଛି ନୂତନ ଆଇନ
ମଥୁରାକୁ ଗଲେ ଗୋରସ
ରପ୍ତାନି ଦ୍ରବ୍ୟ ଉପରେ ପଡ଼ିବ ଟିକସ । ୮
ବଡ଼ଆ ଲଗି ରାଜାଙ୍କ ବଢ଼ିଛି କଉଡ଼
ପସରାରେ ପଇସାଏ ଯାଇ ଅଛି ବଢ଼ି
ନୃପତି ନିୟମ କଲେ
ଘାଟ ସାଧିବାକୁ ମୋତେ ଡ଼ାକ ଆଜ୍ଞା ଦେଲେ । ୯
ବୋଝକେ ଏକ ପଇସା ଭାରକରେ ଦୁଇ
ଏମନ୍ତ ଘାଟ ସଂଗ୍ରହ କରୁଅଛି ମୁହିଁ
ରାଜାଙ୍କ କଡ଼ା କାନୁନ
ଘାଟ ମାହାସୁଲ ଦେଇ ଚଲଗୋ ବହିନ । ୧୦
ଗୋପୀଏ କହିଲେ ଆମ୍ଭେ ନଦେଉଁ ପୁଟୁଣି
ଗୋରସ ପଦାର୍ଥ ଯାହା ଲୋଡ଼ନ୍ତ ନୃମଣି
ଆମ୍ଭେତ ଯୋଗାଇ ଦେଉ
ଘାଟ ମାହାସୁଲ ଦେବା କେବେ ଶୁଣି ନାହୁଁ । ୧୧
ନଷ୍ଟର ଅଟଇ ସଦା ଏ ଗୋଧିକା ଘାଟ
କର ଦେବାକୁ କମ୍ପାଇ କରୁଛ ଆକଟ
କଂସ ଶୁଣିଲେ ଏ ଉକ୍ତି
କି ଦଶା ହୋଇବ କାହ୍ନୁ ବିଚାରତୋ ମତି । ୧୨
ଶ୍ରୀକୃଷ୍ଣ କହିଲେ କଥା କହୁଛ ବଢ଼ାଇ
କଂସକଥା ମାନିବାକୁ ବାଧ୍ୟ ନୁହେଁ ମୁହିଁ
ଘାଟ ମହାସୁଲ ଦେଇ
ନଦୀପାର ହୋଇ ଯାଅ ଆଗୋ ଗୋପ ଗୃହି । ୧୩

ରାଜାଙ୍କର ଆଜ୍ଞା ଅଛି ସାଧିବାକୁ କର
ଅବଜ୍ଞା କରିବା ପାଇଁ ନାହିଁ ଅଧିକାର
ମୂହିଁ ଅଟେ ଆଜ୍ଞାକାରୀ
ହିନାଙ୍କରେ ନଛାଡ଼ିବ ପଣ୍ୟ ମଧୁପୁରୀ । ୧୪
ଗୋପୀଏ କହିଲ କମା କହୁ ଆଣିକରି
ଅଣ୍ଟିରେ ପଇସା ନାହିଁ ଯାଉଁ ହାଟକରି
ଫେରିବା କାଳେ ପାଉଣା
ଦେଇ ପାରି ହେବୁ ଘାଟ ନକର ମନା । ୧୫
ଶ୍ରୀକୃଷ୍ଣ କହିଲେ ଶୁଣ ଆଗୋ ଗୋପାଙ୍ଗନା
ଧନଥାଉଁ ଦେବା ପାଇଁ କରୁଅଛ ମନା
ଅଙ୍ଗେ ଭୂଷିଛ ଗହଣା
ଓଜନରେ ଅଧାକେଜି ହେବ ଶୁଦ୍ଧସୁନା । ୧୬
କର ଫାଙ୍କିବାର ମତି ନଧର ଗୋ କେହି
କର ନପାଇଲେ ପଣ୍ୟ ଛାଡ଼ି ଦେବନାହିଁ
ନନ୍ଦ ରାଜାଙ୍କ ଆଦେଶ
ପଣ୍ୟ କର ଠକିବାକୁ ନକର ସାହାସ । ୧୭
ଗୋପୀଏ କହିଲ କାହ୍ନୁ ନ କହ ଅମିତ
ଆମ୍ଭେ ଏଠି କର ଦେଲେ କଂସ ଦେବ ଶାସ୍ତି
ପରଂପରା ହେବ ଭଗ୍ନ
ଆମ୍ଭ ଅଭିଯୋଗମାନ କରନ୍ତୁ ଗ୍ରହଣ । ୧୮
ଶ୍ରୀକୃଷ୍ଣ କହିଲେ କଂସ ପ୍ରତି ନାହିଁ ଡର
ନନ୍ଦରାଜା ଆଜ୍ଞା ଗୋଟି ପାଳମିସୁ ମୋର
କଂସକୁ ମଣିଇ ଛାର
ତାହା କଥା କହି ମୋତେ ନ ଦେଖାଅ ଡର । ୧୯
ମୋହ କଥା ମାନ ଆଗ କଉଡ଼ି ଦେଇଣ
ପାରି ହୋଇ ଯାଅ ଘାଟ ନଷ୍ଟ ମୋ ବଚନ
କହ ଯା କଂସ ଛାମୁର
"ନନ୍ଦସୁତ ବଳାତ୍କାରେ ଘେନ ଗଲା କର" । ୨୦

ମୋ ବକ୍ତୃରେ କଂସ ନୁହେଁ ମଥୁରା ରାଜନ
ମଥୁରାର ନରପତି ବୃଦ୍ଧ ଉଗ୍ରସେନ
ଯମୁନା ଗୋପ ସମ୍ପତ୍ତି
କଂସ ଗୁର ଆଜ୍ଞା ଏଥେ ନୁହଇଁ କାଟନ୍ତ । ୨୧
ଗୋଧନ ଚରାଏ ମୁହିଁ ଗୋରସ ମୋହର
କଂସର ଏଥିରେ ନାହିଁ ଟିକେ ଅଧିକାର
ସେ କମ୍ପା ଦାବୀ କରିବ
ନ ଛୁଡ଼ିବ ଦୁଧଦହି କହୁଅଛି ଧ୍ରୁବ । ୨୨
ବିଳମ୍ବ କର ଗୋପୀଏ କହିଲ ହେ କୃଷ୍ଣ
ପାରିକର ଦିଅ ଘାଟ ଯିବୁ ମଧୁବନ
ଫେରିବା ସମୟେ କର
ଦୁଇଗୁଣ ଦେଇ ଆମ୍ଭେ ହୋଇ ଯିବୁ ପାର । ୨୩

ଶ୍ରୀକୃଷ୍ଣ କହିଲେ ଆଗୋ ନଷ୍ଟା ବାକ୍ୟ ଶୁଣ
ଅନୁକୂଳ କଉଡ଼ି ଆଗକର ପ୍ରଦାନ
ନଗଦ ନ ଦେଲେ ଧନ
ବଇନ୍ ନ କର ଛୁଡ଼ି ଦେବା ଅବଧାନ । ୨୪
ବେପାର ବଣିଜେ ଏହା ମୌଳିକ ନିୟମ
ପ୍ରଥମେ ଉଧାର ଦେଲେ ନ ଆସଇ ଧନ
ଅପଚୟ ସେହି ଦିନ
ଆଦ୍ୟରେ କଉଡ଼ି ମୋତେ କରଗୋ ପ୍ରଦାନ । ୨୫
ସମବେତ କଣ୍ଠେ କହିଲେ ସକଳ ନାରୀ
ବିଳମ୍ବ ନ କର ବେଗେ କର ଘାଟ ପାରି
ଆମ୍ଭଙ୍କ ହେବ ଗୋରସ
ବେଉଷା ବୁଡ଼ିଲେ ଘରେ ଶାଶୁ ହେବେ ରୋଷ । ୨୬
ନ କର ଆକଟ ପାରିକର ବେଗେ ତୁଠ
ହାଟ ଭାଙ୍ଗିଲେ ବିକ୍ରୟ ନ ହେବ ଠାଟ
ଅନୁରୋଧ ନ ଦଗୃଟ
ପାରିକର ଦିଅ ବେଗେ ଯମୁନାର ଘାଟ । ୨୭

ଗୋରସ ଦ୍ରବ୍ୟ ନ ପାଇ ଖୋଷା ହେବେ କଂସ
ଧରି ନେଇ ବନ୍ଦୀଖାନାରେ ଦଣ୍ଡିବେ ଅବଶ୍ୟ
କଂସକୁ ଆମ୍ଭର ଭୟ
ହଟହଟା କର ନାହିଁ ଯଶୋଦା ତନୟ । ୨୮
ବାରମ୍ବାର କଂସ କଥା କହି ଗୋପୀଚୟ
ଭୟ ଦେଖାନ୍ତେ ହୋଇଲେ ଯଶୋଦା ତନୟ
ଗୋରସ ପସରା ମାନ
ବଳାତ୍କାରେ ଯମୁନାରେ ଢ଼ାଳିଲେ ବହନ । ୨୯
କହିଲେ ମଥୁରା ପୁରେ ନ ଛୁଞ୍ଜେ ଗୋରସ
ଦେଖିବା କି କରି ପାରେ ମଥୁରା ନରେଶ
ତାହାକୁ ନାହିଁ ମୋ ଭୟ
ଢାଳନ୍ତେ ଗୋରସ ଜଳେ ମାର କ୍ଷୀର ପ୍ରାୟ । ୩୦
ଏହା ଦେଖି ଗୋପୀ କପାଳେ କର ପିଟିଲେ
ବେଉଷା ବୁଡ଼ିଲା ବୋଲି କ୍ରନ୍ଦନ କରିଲେ
ମାୟା ରଚିଲେ ଶ୍ରୀକୃଷ୍ଣ
ଦେଖିଲେ ତାଙ୍କ ପସରା ଧନରତ୍ନେ ପୂର୍ଣ୍ଣ । ୩୧
ଆନନ୍ଦେ ଆଭୀରୀ ବାଳୀ ଘରକୁ ଫେରିଲେ
ପଥମଧ୍ୟେ କୃଷ୍ଣ ଗୁଣ ଗାନ କରୁଥିଲେ
ତେତିଂଶ ପଦରେ ଶେଷ
ଭଣିଲା ଶ୍ରୀ ବୃନ୍ଦ ଦାସ ଅଭିରାମ ଶିଷ୍ୟ । ୩୨
ଜୟଜୟ ମା ତାରିଣୀ ଘଟଗାଁ ବାସିନୀ
ଗତମୁକ୍ତ ପ୍ରଦାୟିନୀ କମଳ ଲୋଚନୀ
ଘେନା କର ନିବେଦନ
କବିର ଜନନୀ କର ଏ କାବ୍ୟ ପୂରଣ । ୩୩
ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ କଂସକୁ ଅବଜ୍ଞା ଉପାଖ୍ୟାନେ
ନାମ ଚତୁଚତ୍ୱାରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି -**

(୨) ଥକାମନ

ଚକାଡୋଳା କର ଦର୍ଶନ
ଚକା ବଟ ତଳେ ଚକାପନ ପାରି
ଥକ୍‌କାମାରି ଦଣ୍ଡେ ବସିଣ । ଘୋଷା
ଶୁଣି ନ ଶୁଣିଲି ପରି ପଳାଇଲେ
ବାଇଶି ପାଉଚ୍ଛ ଡେଇଁ,
ଗୃଣ୍ଡେ ଗୃଣ୍ଡେ ଗୃଲ ଦାଣ୍ଡେ ଠିଆ ହେଲେ
ଦଣ୍ଡେ ମାହକ ନ ରହି । ୧

ଚକା ବଟ ତଳେ ଚକାପନ ପାରି
ହୁଙ୍କର କରନ୍ତ ଭକ୍ତ
ଦେଉଳକୁ ଗଲି ହଅଁ ନ ଦେଖିଲି
ଦେଖିଲି ମୁଣ୍ଡିଆ କାଠ । ୨

ନାସା, ନେତ୍ର, ଜିହ୍ୱା ଆସ୍ୱାଦନ ହୀନ
ଅବସାଦ ଗଲି ରହି
ନ ଦେଖି ଗୋପାଳ ଶ୍ରମ ମୋ ବିଫଳ
ବେକାର ଆସିଲି ଧାଇଁ । ୩

ନପା କୂଳ ବଟ ତଳେ ବସି ଭକ୍ତ
ଉଦ୍‌ଭଟ ଚିନ୍ତାରେ ମଗ୍ନ
ଗୃହୁଁ ଗୃହୁଁ ସନ୍ଧ୍ୟା କାଳ ଉପଗତ
ଅସ୍ତାଚଳେ ଗଲେ ଇନ । ୪

ଥ କା ମ ନ
ଚକାଡୋଳା କର ଦର୍ଶନ ।



# ପଞ୍ଚଚତ୍ୱାରିଂଶ ଅଧ୍ୟାୟ

## ଧନୁଯାତ୍ରାର ପ୍ରସ୍ତାବ

### ରାଗ - ବଙ୍ଗଳାଶ୍ରୀ

ଏଥୁ ଅନ୍ତେ ଶୁଣ        ଆହେ ସୁଜ୍ଞ ଜନେ
କୃଷ୍ଣ ଚରିତ ମାନସ
ମଥୁରା ନଗରେ        ଦୁଷ୍ପ୍ରାପ୍ୟ ହୋଇଲା
ସର, ଲବଣୀ, ଗୋରସ । ୧
ଦୁଗ୍ଧଜାତ ଦ୍ରବ୍ୟ        ନ ପାଇଣ ଲୋକେ
ହୋଇଲେ ଅତି ବିରସ
ଗୋରସ ଦ୍ରବ୍ୟର        ମୂଲ୍ୟ ବୃଦ୍ଧି ହେତୁ
ରାଜାଙ୍କୁ ଲାଗିଲା ଦୋଷ । ୨
ସୁଲଭ ମୂଲ୍ୟରେ        ନିତ୍ୟ ବ୍ୟବହାର୍ଯ୍ୟ
ଯୋଗାଇବା ରାଜ କାର୍ଯ୍ୟ
ନ ଅଣ୍ଟ ହେବାରୁ        ଖାଉଟି ପଦାର୍ଥ
ପ୍ରଜାଏ ହେଲେ ଅଧର୍ଯ୍ୟ । ୩
ଶିଶୁ ଖାଦ୍ୟ ମୂଲ୍ୟ        ବୃଦ୍ଧି ହେବା ହେତୁ
ପଡିଲା ରାଜ୍ୟେ ଚହଲ
ପ୍ରଚଳିତ ରାଜ-        ଛତ୍ର ପ୍ରତି ଆସ୍ଥା
ହରାଇଲେ ପ୍ରଜାକୁଳ । ୪
ରୋଗୀ, ଭୋଗୀ, ଯୋଗୀ,        ସଭିଙ୍କର ଖାଦ୍ୟ
ଅଟଇ ଯେଉଁ ଗୋରସ
ଦୁଷ୍ପ୍ରାପ୍ୟ ହେବାରୁ        ଗୋରସପାୟୀଙ୍କ
ବଢିଗଲା ଅସନ୍ତୋଷ । ୫
ଗୋଧିକା ଘାଟରେ        ଯାସବୁ ଘଟିଲା
ଜଣାଇଲା କଂସଚର
ଏ ଅଘଟଣ କଥା        ଶୁଣି କଂସ ରାଣ
ରାଗେ ହେଲା ଜରଜର । ୬

ଗୋପର ଉପରୁ ନିଜ ଆଧିପତ୍ୟ
ଖର୍ବ ଜାଣି ନରନାଥ
ବସ୍ତୁରେ କପଟ ଧରି ରାମ କୃଷ୍ଣ
ଶିକ୍ଷା ଦେବ ସମୁଚିତ । ୭
ଆଠ ବର୍ଷେ ଅଷ୍ଟ- ମଲ୍ଲଙ୍କୁ ମାଇଲେ
ବାର ବର୍ଷେ କେଶୀ ବୀର
ଷୋଡଶ ବରଷେ ରାଜାଙ୍କ ଅମାତ୍ୟ
କରିବା ଅସହ୍ୟ ମୋର । ୮
ତିନି ପୁର ଜୟ କରି ଅଛି ମୁହିଁ
ତ୍ରିଦଶେ ପାଦେ ଖଟନ୍ତି
ମୋ ସମାନ ବୀର ଭାରତ ଭୂଇଁରେ
ଜଣେ କେ ଜନ୍ମି ନାହାଁନ୍ତି । ୯
କେତେ ବଡ ଯୋଦ୍ଧା ଅଟନ୍ତି ବାଳକେ
ଦେଖିଲେ ପଡିବ ଜଣା
ବୃପୋଡାଏ ମାର ଦାନ୍ତ ଝାଡ଼ ଦେବ
ହୋଇଯିବ ବୁଦ୍ଧି ବଣା । ୧୦
ଗୋମତ ରୁଷିର ଅଭିଶାପ ହେତୁ
ଗୋପକୁ ନ ପାରେ ଯାଇ
ବକାସ୍ଥାରେ ଗଲେ ବ୍ରହ୍ମଶାପ ବଳେ
ଛାତି ଫାଟି ମରିବଇଁ । ୧୧
ଏହା ଚିନ୍ତ କଂସ ଅସ୍ଥିର ମାନସ
ବସିଲ ବିବ୍ରତ ହୋଇ
ଏକାଳେ ମିଳିଲେ ନାରଦ ମହର୍ଷି
ହରିନାମ ମୁଖେ ଗାଇ । ୧୨
ମହର୍ଷିଙ୍କି ଦେଖି କଂସ ମହୀପତି
ବସାଇଲେ ପାଶେ ନେଇ
ଆଦର ପାଇଣ କଳିପ୍ରିୟ ମୁନି
କହିଲେ କୂଟେ ବୁଝାଇ । ୧୩

ମୋ କହିବା କଥା ନ କଲୁ ରାଜନ
ପଡ଼ିଲୁ ଆସି ବିପତ୍ତି
ଦେବକୀ ସପ୍ତମ ଅଷ୍ଟମ ଗର୍ଭର
ପୁତ୍ରେ ଗୋପେ ବଢ଼ୁଛନ୍ତି । ୧୪
ଚନ୍ଦ୍ରକୂଟ ମାୟା ବଳେ ସେ ନନ୍ଦନେ
ଗୋପେ ଯାଇ କଲେ ଠାବ
ଶତ୍ରୁତା କରଣ ମଲେ ଅଷ୍ଟମଲ୍ଲ
ପାଇଲୁ ତୁ ପରାଭବ । ୧୫
ଶତ୍ରୁତା କରିଲେ ଜିଣି ନ ପାରିବୁ
ଶତ୍ରୁଙ୍କୁ ସେ କାଳଯମ
ମିତ୍ରଭାବ କଲେ ଧରା ଦେବେ ଆସି
କର କୂଟେ ମିତ୍ରପଣ । ୧୬
ଧନୁଯାତ୍ରା ନାମେ ଯାତ୍ରା ଏ ଭିଆଇ
ନୃପତି ଗଣଙ୍କୁ ବରି
ରାମକୃଷ୍ଣ ଦୁଇ ଉତ୍ସବେ ଡକାଇ
ମାର ରାଜା କୂଟ କରି । ୧୭
କଳପ୍ରିୟ ମୁନି କୂଟ କଥା କହି
ହୋଇଗଲେ ଅନ୍ତର୍ଦ୍ଧାନ
ମୁନି ପରାମର୍ଶେ ଧନୁଯାତ୍ରା ପାଇଁ
କଲ କଂସ ଆୟୋଜନ । ୧୮
ଯାହାର ଭୟରେ ପାତାଳେ ବାସୁକି
ମଥା ଟେକି ଚାହେଁ ନାହିଁ
ଯାହା ପରାକ୍ରମେ ସ୍ୱର୍ଗର ଦେବତା
ଲୁଚିଲେ ଗୋପରେ ଯାଇଁ । ୧୯
ସେହି କଂସାସୁର ସମ୍ଭ୍ରମେ ନଗ୍ରରେ
ଧନୁଯାତ୍ରା ଭିଆଇଲେ
ଆଜ୍ଞା ପାଇ ବିଶ୍ୱ - କର୍ମା ଯାତ୍ରାସ୍ଥଳ
ଦିବ୍ୟବେଶେ ସଜାଇଲେ । ୨୦

ପୃଥିବୀ ସମ୍ରାଟ         ଯାହା କରୁଛନ୍ତି
    କ ଦେବା ତାଙ୍କୁ ଉପମା
ଦେଖିଲା ଲୋକର         ଆଖି ଝଲସଇ
    ବିସ୍ତୃତ ଯାହାର ସୀମା । ୨୧

ଚନ୍ଦ୍ରକୂଟ ଠାରୁ         ମଥୁରା ପର୍ଯ୍ୟନ୍ତ
    ଦ୍ୱାଦଶ ଯୋଜନ ପଥ
ବିସ୍ତୃତ ଅଞ୍ଚଳେ         ସାମରିକ ଘଣ୍ଟି
    କରିଛନ୍ତି ନରନାଥ । ୨୨

ରାଜା, ମହାରାଜା,         ସୈନ୍ୟ, ସେନାପତି
    ସଙ୍ଗେ ସାମରିକ ଶକ୍ତି
ଶିବିର ପକାଇ         ଜଗି ରହିଛନ୍ତି
    ମିତ୍ରପକ୍ଷ ମନ ଚିନ୍ତି । ୨୩

କୂଟ କରି କଂସ         ନୃପଙ୍କୁ ଡକାଇ
    ପାରିଛି ସୈନ୍ୟ ଘୁଞ୍ଚଣି
ରାମକୃଷ୍ଣ ଦୁଇ         ଭାଇଙ୍କ ବିନାଶ
    କରିବାକୁ ଦୈତ୍ୟମଣି । ୨୪

ମାଗଧୀ ସୈନ୍ୟଙ୍କୁ         ସଜାଇ ରଖିଛି
    ଜରୁରୀ କାର୍ଯ୍ୟର ପାଇଁ
ମାରଣାସ୍ତ୍ର ଧରି         ସଜାଗ ଅଛନ୍ତି
    କଂସର ଆଦେଶ ଚାହିଁ । ୨୫

ନଜର ଜନସ୍ତୁ         ଭ୍ରାତାଙ୍କ ହାତରେ
    ଦେଇଅଛି ଯାହା ଭାର
ଜ୍ଞାନ ଲଭ ସବୁ         ବୁଝନ୍ତି ସେମାନେ
    ସଙ୍ଗେ ଘେନ ସୈନ୍ୟ ବଳ । ୨୬

କଂସ ଭ୍ରାତ ନାମେ         ରାଜାର ନନ୍ଦନ
    ଜଗି ଅଛନ୍ତି ମଣ୍ଡପ
ସମ୍ମାନ ସହିତ         ସଭା ମଣ୍ଡପରେ
    ବସାନ୍ତି ନେଇଣ ଭୂପ । ୨୭

ମଲ୍ଲ ଯୂଥ ଧରି ସଭାରେ ଶୃଙ୍ଖଳା
ରଖନ୍ତି ଆକଟ କରି
ଗାର୍ଗାଚାର୍ଯ୍ୟ ବିପ୍ର- କୁଳ ପୁରୋହିତ
ଶୁଭ ଅଧିବାସ କରି । ୨୮
ମାତା ଛନ୍ଦୁମତୀ ଯାହାର ବିଧାନ
ଚନକ୍ଷ କରନ୍ତି ବସି
କଂସ ବୈନ ପତ୍ନୀ ହେତି ଓ ପ୍ରହେତି
ଯୋଗାଡ଼ନ୍ତି ଦ୍ରବ୍ୟ ଗଣି । ୨୯
ସହସ୍ର ସଂଖ୍ୟାରେ ଦାସୀ ପରିଚୃଷ୍ଟ
ଦିବ୍ୟ ନାରୀବେଶ ହୋଇ
କଂସ ନୃପତିର ସେବା କରୁଛନ୍ତି
ଗନ୍ଧ ଦ୍ରବ୍ୟ ଲେପ ଦେଇ । ୩୦
ସହସ୍ର ସଂଖ୍ୟାରେ ଶଙ୍ଖ ବାଜୁଅଛି
ଭଟେ ଗୀତ ଗାଉଛନ୍ତି
ସହସ୍ରେ ସେବକା ଆଲଟ ଚାମର
ଛତ୍ର ଧରି ଖଟିଛନ୍ତି । ୩୧
ଆସ୍ଥାନ ଉପରେ ବସି ଅଛି କଂସ
ଦେବ ଦଳନ କୃପାଣ
ସିଂହାସନ ପାର୍ଶ୍ୱେ ଉଭା ହୋଇଅଛି
ଦେଖି ଶତ୍ରୁ ଭୀତ ମନ । ୩୨
ପାର୍ଷଦ ଓ ଅମାତ୍ୟ ଶିରେ କର ଦେଇ
ଉଭା ହୋଇ ରହିଛନ୍ତି
ଋଷି ବିପ୍ର ଗଣେ ଉର୍ଦ୍ଧ୍ୱେ ବାହୁ ଟେକି
କଲ୍ୟାଣ କରୁ ଅଛନ୍ତି । ୩୩
କୋଟିଏ ସଂଖ୍ୟାରେ ଗଜମୁକ୍ତା ଜଳେ
ଆଲୋକିତ ମଧୁପୁର
ନବଦିନ ଯାତ୍ରା କରି ଅଛି କଂସ
ଧନ ରତ୍ନ ଏକାକାର । ୩୪

ପୂର୍ବେ ଯଦୁ ବଂଶେ ଯେତେ ରଜା ଥିଲେ
ନ ଥିଲେ କେ କଂସ ସମ
ଯାହାକୁ ବିନାଶ କରିବାକୁ ବିଷ୍ଣୁ
ଆସି ହୋଇଛନ୍ତି ଜନ୍ମ । ୩୫
ତ୍ରିପୁରେ କାହାକୁ ଭୟ କରେ ନାହିଁ
ସର୍ବଦା ଦୃଢ଼ ନିର୍ଭୟ
ମାତ୍ର ରାମକୃଷ୍ଣ ଦୁଇ ଭାଇ ପ୍ରତି
ରହିଅଛି ମହାଭୟ । ୩୬
କୌଶଳେ ତାହାଙ୍କୁ ମରାଇବା ପାଇଁ
ଚିନ୍ତୁଅଛି କଂସରାଣ
କୂଟେ ଧନୁଯାତ୍ରା ଭିଆଇ ଅଛି ସେ
କେହି ନ ଜାଣନ୍ତି ମର୍ମ । ୩୭
ନାରଦଙ୍କ ଠାରୁ ଦେବକୀ ନନ୍ଦନ
ବଞ୍ଚିଥିବା ଶୁଣି କଂସ
ଯାଦବ ଗଣଙ୍କୁ ସନ୍ଦେହ କରିଣ
ହରାଇ ଦେଲା ବିଶ୍ୱାସ । ୩୮
ବସୁଦେବ ସଙ୍ଗେ ଯାଦବ ଗଣଙ୍କୁ
ନିଶେଷ କରିବା ପାଇଁ
ଦୃଢ଼ ନଗରସ୍ଥ ବ୍ୟବସ୍ଥା କରିଲା
ମାଗଧୀ ସୈନ୍ୟ ଯୋଗାଇ । ୩୯
କଂସର ବିଶ୍ୱସ୍ତ ଅମାତ୍ୟ ପ୍ରଦ୍ୟୋତ
ଅଟେ ମୁଖ୍ୟ ସେନାପତି
ଶାଳକ ବୃହଦ୍ରଥ ପ୍ରାସାଦ ସୁରକ୍ଷା
ଦାୟିତ୍ୱେ ରହି ଅଛନ୍ତି । ୪୦
ବିଚାରଇ କଂସ ଦୃଢ଼ ନଗରସ୍ଥ
ବଳୟ ଭେଦ କରିଣ
କପଟେ ଗୋପଙ୍କୁ ଗୁପତରେ ରଖିଲେ
ଦେବକୀ ଦୁଇ ନନ୍ଦନ ? ୪୧

ଯଦି ପ୍ରକୃତରେ ବସୁଦେବ ସୁତ
ଅଟନ୍ତି ଏ ରାମକୃଷ୍ଣ
କପଟ ଏ କଥା ସମ୍ଭବ ହୋଇଲା
ଘଟଣା ରହସ୍ୟ ପୂର୍ଣ୍ଣ । ୪୨
ପୁତନା ସମ୍ବାଦ ଦେଇଥିଲା ମୋତେ
ଦେବକୀ ସପ୍ତମ ଗର୍ଭ
ଆପଣା ଗୁଣେ ସେ ନଷ୍ଟ କରି ଦେଲା
ମୃତ ବସ୍ତୁ ଏ ସମ୍ଭବ । ୪୩
ଅଷ୍ଟମ ଗର୍ଭରେ କନ୍ୟା ଜାତ ହେଲା
ଦେଖିଲି ନୟନେ ମୁହିଁ
ସେ କନ୍ୟାକୁ ହତ୍ୟା କରିବା ସମୟେ
ଗଲା ସେ ଖସି ପଳାଇ । ୪୪
ଦେବକୀର ପୁତ୍ର ବନ୍ଦୀ ଘରେ ଜନ୍ମି
କପରି ଗୋପକୁ ଗଲା
ଏତେ ବଡ଼ ଷଡ଼- ଯନ୍ତ୍ରରେ କାହାର
ଗୁପତ ହାତ ରହିଲା ? ୪୫
ଯଦ୍ୟପି ପୁତନା ଜାଣିଥିଲା କଥା
କୃଷ୍ଣେ ବିଷ ଦେବାପାଇଁ
ଛଳନା କରିକି ଗୋପପୁରେ ଯାଇ
ଆତ୍ମହତ୍ୟା କଲା ଚହିଁ ? ୪୬
ମନେ ହୁଏ ନିଜ ପତି ପୁତ୍ର ପ୍ରାଣ
ରକ୍ଷା କରିବାର ପାଇଁ
ନିଜ ପ୍ରାଣ ବଳି ଦେଇଣ କଥାକୁ
ରଖିଲା କୁଟେ ଲୁଚାଇ ? ୪୭
କୃଷ୍ଣଙ୍କୁ ମାରିବା ପରିବର୍ତ୍ତେ ଗୋପେ
ଦେଲା ନିଜ ପ୍ରାଣ ବଳି
ଏ ଅତି ରହସ୍ୟ ଜନକ ବ୍ୟାପାର
ସହଜେ ନୁହଇଁ କଳି । ୪୮

ମାତ୍ର ଏହା ପଛେ ସଂଗଠିତ ଭାବେ
ରହି ଅଛି ଷଡଯନ୍ତ୍ର
ଯାଦବ ମୁଖ୍ୟଙ୍କ ହାତ ରହିଥିବା
ସନ୍ଦେହ ସ୍ୱତଃ ଜାଗ୍ରତ । ୪୯

କାରାଗାରୁ ଶିଶୁ ସ୍ଥାନାନ୍ତର ପଛେ
ପ୍ରଦ୍ୟୋତର ଥିବ ହାତ
ତାହା ଅଜ୍ଞାତରେ ଏ ଦୁରୂହ କାର୍ଯ୍ୟ
ସମ୍ଭବ ନୁହେଁ କେବେତ । ୫୦

ବନ୍ଦୀଗୃହ ସହିଁ ଜଗି ରହିଥିଲେ
ଅନେକ ସୈନ୍ୟ ସାମନ୍ତ
ସେ ଅଭେଦ୍ୟ ବ୍ୟୂହ ଭେଦ କରି କେହ୍ନେ
ଗଲେ ବସୁଦେବ ସୁତ ? ୫୧

ପୂତନାର ଏହି ଷଡଯନ୍ତ୍ର ପଛେ
ପ୍ରଦ୍ୟୋତର ଥିବ ହାତ
ସେ ମୋର ପ୍ରଧାନ ସେନାପତି ଥାଇ
ଷଡ଼ଯନ୍ତ୍ରେ ଅବା ଲିପ୍ତ ? ୫୨

ଏହା ଚିନ୍ତା କରି ଅବିଶ୍ୱାସ କଲା
ଯାଦବ ମୁଖ୍ୟଙ୍କ ପ୍ରତି
ଭାବେ ରାମକୃଷ୍ଣ ସଙ୍ଗେ ସେମାନଙ୍କୁ
ଦେବ ଉପଯୁକ୍ତ ଶାସ୍ତି । ୫୩

ଯାଦବ ମୁଖ୍ୟଙ୍କ ପ୍ରତି ଘୃଣାଭାବ
ହେଲା କ୍ରମେ ଘନୀଭୂତ
ମାତ୍ର ମନ କଥା ମନରେ ରଖିଲା
ନ କରି କାହିଁ ପ୍ରକଟ । ୫୪

ବିଚାରିଲା ମନେ ଯାଦବ ମୁଖ୍ୟଙ୍କୁ
ଏକତ୍ର ଡକାଇ ଆଣି
ଉତ୍ତର ବୁଝିବ ଏ ଷଡ଼ଯନ୍ତ୍ରର
ରହସ୍ୟପୂର୍ଣ୍ଣ କାହାଣୀ । ୫୫

ଏହା ଶୁଣି କଂସ ପ୍ରଦ୍ୟୋତ ହାତରେ
ଡକାଏ ଯାଦବ ମୁଖ୍ୟ
କଂସର ଡାକରା ପାଇଣ ସେମାନେ
କଲେ ବିଚାର ବିମର୍ଶ । ୫୬

କହିଲେ ବିଗତ ପଚିଶ ବର୍ଷ
ମଧ୍ୟରେ ଦିନକ ପାଇଁ
ଆମ୍ଭମାନଙ୍କୁ ତ କେବେ ଡାକି ନାହିଁ
ଆଜି କିମ୍ପାଇ ଡାକଇ ! ୫୭

ଏ ଡାକରା ପଛେ ତା ମନ୍ଦ ଉଦ୍ଦେଶ୍ୟ
ଥିବା ହୁଏ ଅନୁମିତ
ଏଣୁ ଆତ୍ମରକ୍ଷା ନିମନ୍ତେ ଗୋପନେ
ଘେନିଚଲେ ମାରଣାସ୍ତ୍ର । ୫୮

ପଞ୍ଚଦଶଜଣ ଯାଦବ ମୁଖ୍ୟଙ୍କ
ସଭାରେ ବୋଲେ ରାଜନ
ଯାଦବ କୁଳର ପ୍ରତିଷ୍ଠା ନିମନ୍ତେ
ଉତ୍ସବର ଆୟୋଜନ । ୫୯

ନବ ଦିନ ଯାଏ ଉତ୍ସବ ମଣ୍ଡପେ
ପ୍ରତିଯୋଗିତା ଚାଲିବ
ଧନୁରେ ଯେ ଶର ସନ୍ଧାନ କରିବ
ଯୋଗ୍ୟ ବିବେଚିତ ହେବ । ୬୦

ଖାଇବା, ପିଇବା, ରହିବା ଆଦିର
ହୋଇଅଛି ସୁବ୍ୟବସ୍ଥା
ଆପଣମାନଙ୍କ ସହଯୋଗ ପାଇଁ
ପ୍ରକାଶ କଲି ଏ କଥା । ୬୧

ମୁଣ୍ଡ ଟୁଙ୍ଗାଇଣ ସମ୍ମତି ପ୍ରକାଶ
କଲେ ପ୍ରମୁଖ ଯାଦବ
ମୁହଁ ଖୋଲି କେହି ପଦେ ନ କହିଲେ
ଆପଣାର ମନୋଭାବ । ୬୨

ସଭାର ଦୃଷ୍ଟିରୁ ପ୍ରସ୍ତାବ ଆଗତ
କରି ପୁଚ୍ଛେ କଂସଗଣ
ଆହେ ବସୁଦେବ ସତ୍ୟ କରି ତୁମ୍ଭେ
କମ୍ପା କଲ ସତ୍ୟଭଗ୍ନ ? ୭୩

ଦେବକୀ ସପ୍ତମ ଅଷ୍ଟମ ଗର୍ଭର
ପୁତ୍ରେ ନ କରି ପ୍ରଦାନ
ଚତୁରି କରି ନେଇ ଗୋପରେ ରଖିଲ
ଏହା କି ସତ୍ୟ ଧରମ ? ୭୪

କଂସ କଥା ଶୁଣି ସଭା ଭ୍ରମିଭୂତ
ବୁଝି ନ ପାରିଲେ ତଥ୍ୟ
କଥାକୁ ବିଶ୍ୱାସ କରି ନ ପାରିଲେ
ସତେ କି ପୁତ୍ରେ ଜୀବିତ ? ୭୫

କଂସ କଥା ଶୁଣି କପାଳ କୁଞ୍ଚିତ
ହେଲା ବସୁଦେବଙ୍କର
କ୍ରୋଧରେ ସେ କିଛି କହିବା ଆଗରୁ
ଅକ୍ରୂର ଦେଲେ ଉତ୍ତର । ୭୬

କହିଲେ ଦେବକୀ ଅଷ୍ଟମ ଗର୍ଭରେ
ଜାତ ହେଲା ଯେଉଁ ସୁତ
ସେ ପୁତ୍ରକୁ ମୁହିଁ ଗୋପେ ବଦଳାଇ
ଆଣିଥିଲି କନ୍ୟା ରତ୍ନ । ୭୭

ଦେବକୀର ପୁତ୍ର ଯଶୋଦାର କନ୍ୟା
ମଧ୍ୟେ ଅଦଳ ବଦଳ
ମୋହ ଯୋଗୁ ଏହି ଅସାଧ୍ୟ ସାଧନ
ଯୋଜନାବଦ୍ଧେ ସଫଳ । ୭୮

ଯଦି କେହି ତୁମ୍ଭଙ୍କୁ ଠକି ଦେଇଥାଏ
ବସୁଦେବ ନୁହେଁ ମୁହିଁ
କଂସ ପଚାରିଲା କମ୍ପା ଏହା କଲ
କହ ସେ କଥା ଫିଟାଇ ? ୭୯

ଅକ୍ରୂର କହିଲେ ଦେବକୀର ଦୁଃଖ
ଦେଖି ସହି ନ ପାରିଲି
ହତ୍ୟା ଅପରାଧ ଦୂରେଇ ରଖିବା
ଭାବି ଏହା କରିଥିଲି । ୭୦
ନସୃଷ୍ଟ ବିଧାନ କେ କରିବ ଆନ
ଯାହା କପାଳ ଲିଖନ
ବଞ୍ଚିବା ପ୍ରାଣୀକୁ କେ ମାରି ପାରିବ
ମୃତକୁ କେ ଦେବ ପ୍ରାଣ ? ୭୧
ନନ୍ଦର ନନ୍ଦନ ଯାହା ନାମ କୃଷ୍ଣ
ବସୁଦେବର ସେ ସୁତ
ଦେବକୀ ଅଷ୍ଟମ ଗର୍ଭରୁ ସେ ଜନ୍ମି
ଫିଟାଇ କହିଲି ତଥ୍ୟ । ୭୨
କେବଳ ଅଷ୍ଟମ ଗର୍ଭଜାତ ନୁହେଁ
ସପ୍ତମ ଗର୍ଭର ସୁତ
ସେ ମଧ ଦେବକୀ ଗର୍ଭରୁ ସମ୍ଭୂତ
ନୁହଇଁ ରୋହିଣୀ ପୁତ୍ର । ୭୩
ରୋହିଣୀର ମୃତ ବତ୍ସ ବଦଳାଇ
ଦେବକୀ ତନୟ ନେଇ
ରୋହିଣୀ କୋଳରେ ଦେଇଥିଲି ମୁହିଁ
କଥା ନ ଜାଣନ୍ତି କେହି । ୭୪
ରାମକୃଷ୍ଣ ଦୁଇ ଦେବକୀ ତନୟ
ସପ୍ତମ, ଅଷ୍ଟମ ଗର୍ଭ
ବନ୍ଦୀ ଘରୁ ଯାଇ ନନ୍ଦ ଘରେ ରହି
ଗୋପାଳ ସାଙ୍ଗରେ ଭାବ । ୭୫
ଅକ୍ରୂର କଥାକୁ ଶୁଣି ଯଦୁ ମୁଖ୍ୟ
ହୋଇଗଲେ ସ୍ତମ୍ଭୀଭୂତ
ଜ୍ଞାତ ହେଲେ ସର୍ବେ ତାଙ୍କ ମୁକ୍ତିଦାତା
ନନ୍ଦଗୃହେ ସୁରକ୍ଷିତ । ୭୬

ମନର ଭାବନା ପ୍ରକାଶ ନ କରି
ବସିଲେ ମଉନ ହୋଇ
ଜାଣିଲେ ଅକ୍ରୂର ଜୀବନ ବିପନ୍ନ
କଂସ ଚ ଛାଡ଼ିବ ନାହିଁ । ୭୭
ଅକ୍ରୂର ମୁଖରୁ ନିଷ୍ଠା କଥା ଶୁଣି
କ୍ରୋଧ ପ୍ରକାଶ ନ କରି
ଛଳନା କରିଣ କହେ କଂସାସୁର
ଶୁଣି ଖୁସି ହେଲ ଭାରି । ୭୮
ଲୋକ ମୁଖେ ଶୁଣେ ସେ ଦୁଇ କୁମର
ବୀର ଗଣେ ଶ୍ରେଷ୍ଠ ବୀର
ବାଳକ କାଳରୁ ଯୁଦ୍ଧବିଦ୍ୟା ସାଧି
ମହାବୀର ଧନୁର୍ଦ୍ଧର । ୭୯
ସେମାନେ ମୋହର ଏ ଧନୁ ଯଜ୍ଞରେ
ଯୋଗଦେଲେ ହେବେ ଧନ୍ୟ
ନିଜର ବୀରତ୍ୱ ପ୍ରତିଷ୍ଠା କରିଣ
ସଭାରେ ପାଇବେ ମାନ୍ୟ । ୮୦
ଅକ୍ରୂରକୁ ଚାହିଁ ବୋଲେ କଂସାସୁର
ଗୋପପୁରେ ତୁମ୍ଭେ ଯାଇ
ଏ ଧନୁ ଯାଗକୁ ନିମନ୍ତ୍ରଣ କରି
ଡାକି ଆଣ ଦୁଇଭାଇ । ୮୧
ନେଇଥିଲ ଯା'କୁ ଡାକି ଆଣ ତାଙ୍କୁ
ଆସିବେ ତୁମ୍ଭର ବୋଲେ
ନୟନେ ଦେଖିଲେ ଧନ୍ୟ ମୁଁ ହୋଇବି
ଭଣଜାକୁ ମାନ୍ୟ କଲେ । ୮୨
କଂସର କଥାରେ ସମ୍ମତ ହୋଇଣ
କହିଲେ ନ କର ଚିନ୍ତା
ମଥୁରାକୁ ଯାଇ ଡକାଇ ଆଣିବି
ରାମକୃଷ୍ଣ ଦୁଇ ଭ୍ରାତା । ୮୩

ଅକ୍ରୂରଙ୍କୁ ଗୁପ୍ତ ସଭିଙ୍କୁ ବିଦାୟ
କରିଦେଲା କଂସାସୁର
ଯାଦବେ ସକଳେ ଗୃହକୁ ଫେରିଲେ
ମନେ ଭୟଙ୍କର ଡର । ୮୪

ସେମାନଙ୍କ ମନେ ଧାରଣା ଜନ୍ମିଲା
ଧନୁର୍ଯଜ୍ଞେ ଚକ୍ରପାତ
କରିବା ମାନସେ ରାମକୃଷ୍ଣ ଦୁଇ
ଡକାଇ ଆଣୁଛି ଦୁଷ୍ଟ । ୮୫

ରାମକୃଷ୍ଣ ସଙ୍ଗେ ଯାଦବ ମୁଖ୍ୟଙ୍କୁ
କୂଟେ କରାଇବ ହତ
ଏ ଷଡଯନ୍ତ୍ରର ପ୍ରତିଶୋଧ ନେବ
ଘଟାଇ ରକତ ପାତ । ୮୬

ଆନନ୍ଦ, ବିସ୍ମୟ ସାଗରେ ବୁଡ଼ିଣ
ରହିଲେ ଯାଦବ ଯୂଥ
ବହୁ ପୁରୁଷାର୍ଥ କରି ଅକ୍ରୂରଙ୍କୁ
ବୋଲେ କଂସ ନରନାଥ । ୮୭

ଯଦୁ ବଂଶେ ତୁମ୍ଭେ ଏକାନ୍ତ ବିଶ୍ୱାସୀ
ଅ-କ୍ରୂର ନାମ ତୁମ୍ଭର
କ୍ରୂରତା ବିହୀନ ଥିବାରୁ ହୃଦୟ
କାର୍ଯ୍ୟ ସିଦ୍ଧି ହେବ ମୋର । ୮୮

ଶ୍ୟାମଳ ସୁନ୍ଦର ଦିବ୍ୟ କଳେବର
ନିର୍ମଳ ହୃଦୟ ତୋର
ବିଷ୍ଣୁ ଭକ୍ତ ପ୍ରାୟ ଶୋଭା ଅନୁମେୟ
ଧୀରମତି, ଶକ୍ତସ୍ଥିର । ୮୯

ଶାନ୍ତଦୂତ ପଣେ ଗୋପ ପୁରେ ଚାଲ
କାର୍ଯ୍ୟ ସିଦ୍ଧି ହେବ ମୋର
ଆହେ ମନ୍ତ୍ରୀବର କୌଶଳ କରିଣ
ରାମକୃଷ୍ଣ ଧରି ଫେର । ୯୦

ତୁମ୍ଭ ଆଗୁ ଅକ୍ଷ- ମଲ୍ଲ ପଠାଇଲି
ଫ୍‌ରସାବ ହ୍ରଦେ ବନ୍ଧ
ଯାଇଣ ଥିବାରୁ ରାମକୃଷ୍ଣ ହାତେ
ନିଧନ ହୋଇଲେ ସେହି । ୯୧

ମାତ୍ର ତୁମ୍ଭେ ଏବେ ଶାନ୍ତିଦୂତ ଭାବେ
ଗୋପକୁ କରି ଗମନ
ବୁଝାଇ, ସୁଝାଇ ରାମକୃଷ୍ଣ ଦୁଇ
ମଥୁରାକୁ ଡାକି ଆଣ । ୯୨

ସେ ବେନି ନନ୍ଦନ ଦେଖିଲେ ନୟନେ
ନେତ୍ର ମୋ ହେବ ପବିତ୍ର
ଭଣଜାଙ୍କୁ ଦେଖି ହେବ ବଡ଼ ସୁଖି
ଚିତ୍ତ ମୋ ହୋଇବ ଶାନ୍ତ । ୯୩

ଏହା କହି କଂସ ମଣିମାଳା ଏକ
ଲମ୍ବାଇଲା କଣ୍ଠେ ନେଇ
ସୁବର୍ଣ୍ଣ ମୁକୁଟ ବାନ୍ଧିଲା ମଥାରେ
ଆଦର କରି ନୃସାଇଁ । ୯୪

ଅକ୍ରୁର ପୁଚ୍ଛିଲେ କେତେ ଗଉରବେ
କରୁଅଛ ମନ୍ତ୍ରୀପତି
କଥା ଦେଲି ଦୁଇ ଭାଇ ଧରି ଆଣି
ଭେଟାଇବି ତୁମ୍ଭ କତି । ୯୫

ଅନେକ ଗୋପାଳ ବାଳକ ସଙ୍ଗରେ
ଆସି ପାରନ୍ତି ରାଜନ
ବାଳକ ସ୍ୱଭାବେ ଗୋଳ ଆରମ୍ଭିଲେ
କ୍ଷମା ଦେବ ନରରାଣ । ୯୬

ବୁଝାଇ କହିଲେ କଂସକୁ ଅକ୍ରୁର
ଘେନ ମୋର ପରାମର୍ଶ
ସାମାନ୍ୟ ବାଳକ ବୋଲି ଭାବ ନାହିଁ
ସେ ଅଟନ୍ତି ଜଗଦୀଶ । ୯୭

ଯୁଗ ଲୀଳାଖେଳା କରିବା ନିମନ୍ତେ
ହୋଇଛନ୍ତି ଅବତୀର୍ଣ୍ଣ
ଦୁଷ୍ଟଙ୍କୁ ବିନାଶି ସନ୍ଥଙ୍କୁ ପାଳିବେ
ନିଶ୍ଚିତ କଥାଏ ଜାଣ । ୯୮
ଯୁଗେ ଯୁଗେ ଦୁଷ୍ଟ ଦଳନ ନିମନ୍ତେ
ହୁଅନ୍ତି ମନୁଷ୍ୟ ଜନ୍ମ
ଶେଷ, ନରସିଂହ, ବାମନ, ପରଶୁ-
ରାମ, ଶ୍ରୀରାମ, ଶ୍ରୀକୃଷ୍ଣ । ୯୯
ପରମ ଦୟାଳୁ ଅଟନ୍ତି ସେ ପ୍ରଭୁ
ପଶ ଚରଣେ ଶରଣ
ଶତ୍ରୁତା ନ କରି ମିତ୍ର ଭାବ କର
ଏତିକ ମୋ ନିବେଦନ । ୧୦୦
କ୍ରୋଧେ କହେ କଂସ ଶତ୍ରୁର ପ୍ରଶଂସା
କମ୍ପା କରୁ ଅଛୁ ଜିହ୍ୱା
ମୋହ ବାହୁବଳେ ଝିପୁର ଜିଣିଲି
ମୋଠାରୁ ବଡ଼ କି ସେହ ? ୧୦୧
ମୋ ଶତ୍ରୁ ପ୍ରଶଂସା ନ ଗାଇ ମୋ ଆଗେ
ଗୋପପୁରେ ଚଳ ତ୍ୱରା
କୌଶଳ କରଣ ରାମକୃଷ୍ଣ ଆଣି
ମୋ ଆଗେ ହାଜର କର । ୧୦୨
ଅକ୍ରୂର କହିଲେ ଯାହା ରାଜା ଆଜ୍ଞା
କେ କରି ପାରେ ଅବଜ୍ଞା
ମୋହ ଦୂତ ପଣେ କାର୍ଯ୍ୟ ସିଦ୍ଧି ହେବ
କହୁଛି କରି ପ୍ରତିଜ୍ଞା । ୧୦୩
ଏହା କହି କଂସ ଆଜ୍ଞା ପତ୍ର ଦେଲା
ସମ୍ଭ୍ରମେ ବିଦାୟ ନେଇ
ଶୁଭ ମୂହୂର୍ତ୍ତରେ ରଥ ଆରୋହଣ
ଚଳିଲେ ଶ୍ରୀକୃଷ୍ଣଧାୟୀ । ୧୦୪

ଏକଶତ ପାଞ୍ଚ                ପଦରେ ଅଧ୍ୟାୟ
ଏଠାରେ ହୋଇଲା ଶେଷ
ଗୀତରେ ଭଣିଲା              ଜନ ବୃନ୍ଦାବନ
ଗୁରୁ ଅଭିରାମ ଶିଷ୍ୟ । ୧୦୫

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ବର୍ଣ୍ଣନେ ଧନୁଯାତ୍ରା ପ୍ରସ୍ତାବ ଆଖ୍ୟାନେ
ନାମ ପଞ୍ଚ ଚତ୍ୱାରିଂଶ ଅଧ୍ୟାୟ ସମାପ୍ତଂ ।
ଶ୍ରୀକୃଷ୍ଣାର୍ପଣ ମସ୍ତୁ ।

**ବୋଲି — ( ୩ )**

ଅ ନା ମ ନ
ଚକାଡୋଳା କର ଦର୍ଶନ

ଚକା ବନ୍ଧ ତଳେ              ଡକାସନ ପାରି
ଅକାମାରି ଦଣ୍ଡେ ବସିଣ (ଘୋଷା)

ଦେଖିଲେ ଅଦୂରେ              ଡାଣି ପହଣ୍ଡିରେ
ଆସୁଛନ୍ତି ତିନି ଜଣ
ଗୋପାଳ ବାଳକ              ବାଳକା ବେଶରେ
ଗୋରସ ଘର ବୋହିଣ । ୧
କାଳିଆକୁ ଗୋପୀ              ଡାକିଣ କହିଲି
ବୁଢାରେ ବାବାଙ୍କୁ ଯାଇ
ଖାଇବାକୁ ଯଦି              ଇଚ୍ଛା ହେଉ ଅଛି
ନେଇଯାନ୍ତୁ ଦୁଧ ଦହି । ୨
ଡିଅଟି କହିଲା              ବାବାଙ୍କ ପାଖରୁ
କଉଡ଼ି ମିଳିବ ନାହିଁ
ଦୁଧ ଦହି କାହିଁ              ମାଗଣାରେ ଦେବା
ଗୁଲମ ଯିବା ପଳାଇ । ୩

କାଳିଆ କହିଲା ଶୁଣଲେ ସୁଅଙ୍ଗୀ
ନିତ ଆମ ବ୍ୟବସାୟ
ଆଜକ ଏଠାରେ ବାବାଜୀଙ୍କୁ ଦେଖା
ନ ହେଉ ପଛକେ ଆୟ ॥ ୪

ଅନ୍ତଥି ଆମର ଉପାୟେ ରହିଲେ
ନିନ୍ଦା ହୋଇବ ରହିନ
ଅନ୍ନମାନ ଯାକି ଭୁଞ୍ଜାଇ ପାରିଲେ
ଶ୍ରୀକ୍ଷେତ୍ର ହୋଇବ ଧନ୍ୟ । ୫



# ଷଷ୍ଟଚତ୍ୱାରିଂଶ ଅଧ୍ୟାୟ
## ଅକ୍ରୂରଙ୍କ ଗୋପପୁର ଗମନ
### ରାଗ - କେଦାର

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
ପଦପଦକରେ ରସ ଝରୁଅଛି
ରସ କଲ୍ଲୋଳ ସମାନ
ପୂର୍ବ ଆକାଶେ
ସିନ୍ଦୂର ଫାଟିଲେ ରଙ୍ଗ ପ୍ରକାଶେ । ୧

କୁକୁଟ, କୋଇଲି କାକ, କୁମ୍ଭାଟୁଆ,
ଡାହୁକ, ଜଳପାଡି
କଳ କଣ୍ଠରବେ କୃଷ୍ଣବର୍ଣ୍ଣ ପକ୍ଷୀ
ଗାଇଲେ ମଙ୍ଗଳ ଗୀତି
ଉଷା ତରୁଣୀ
କବା ବଣା ସ୍ୱନେ ହେକେ ରଟିଣୀ । ୨

ଯମୁନାକୁ ତୀର ହୋଇଣ ଅନ୍ତର
ମିଳିଲେ କୁଞ୍ଜ ବନରେ
କୁଞ୍ଜ ବନ ଶୋଭା ଅତି ମନ ଲୋଭା
ଦର୍ଶନେ ଚିତ୍ତକୁ ହରେ
କୁସୁମ ଚୟ
ଫୁଟିବାରୁ କୁଞ୍ଜ ସୁଗନ୍ଧମୟ । ୩

ଜାଇ, ଯୂଥି, ମଲ୍ଲୀ, ମାଧବୀ, ମାଳତୀ,
କୁରୁବେଳ କନିଅର
କେତକୀ, କାଞ୍ଚନ, କଦମ୍ବ, କମଳ
କୁନ୍ଦ, କୁମୁଦ, ମନ୍ଦାର
ଆଦି କୁସୁମ
ଫୁଟିବାରୁ କୁଞ୍ଜ ଶୋଭା ସୁଷମ । ୪

ପାଦପୁ ପତିତ ଫୁଲ, ଫଳ, ଦଳ
ଉଡାଇ ନିଏ ମରୁତ
କୁଞ୍ଜବନ ଭୂଇଁ ଅତି ପରିଷ୍କାର
ଘାସ, ତୃଣ ବିବର୍ଜିତ
ନବ ପଲ୍ଲବେ
ମଣ୍ଡିତ ବିଟପୀ ଗଣ ସ୍ୱଭାବେ । ୫

ବୃକ୍ଷ ମୂଳେ ସ୍ୱର୍ଣ୍ଣ ମଣ୍ଡପ ନିର୍ମିତ
ସୂର୍ଯ୍ୟ କରେ ଦୀପ୍ତିମାନ
ନବ କିଶଳୟ ବିଛୁରିତ ହୋଇ
ଧରିଛନ୍ତି ନାନାବର୍ଣ୍ଣ
ପଡ଼ ନିହାର
ପ୍ରତେ ହୁଏ କିବା ମୁକୁତା ହାର । ୬

କାଳିନ୍ଦୀ କୂଳରେ କଦମ୍ବ ଡାଳରେ
ମାଡିଛି ମାଳତୀ ଲତା
କେଳି କଦମ୍ବକୁ କୋଳ କରିଅଛି
କୋମଳ ଲତା ବନିତା

ଭକ୍ତ ଅକ୍ରୂର
ଦେଖି ଏହି ଦୃଶ୍ୟ ଭାବେ ବିଭୋର । ୭
କଂସରାଜା ଦୂତ    ନୟନ ପଥରେ
କୁଞ୍ଜବନେ ଶୋଭା ଦେଖି
ଶତ ପ୍ରଣିପାତ    କଲେ ହସ୍ତ ଟେକି
ସଶ୍ରଦ୍ଧେ ରଥ ଉପେକ୍ଷି
ଭାବେ ଉନ୍ମତ୍ତ
ସାରା ଶରୀର ହେଲା ରୋମାଞ୍ଚିତ । ୮
ଧାରଧାର ହୋଇ    ପ୍ରେମ ଅଶ୍ରୁବାରି
ଗଡ଼ିଲା ନୟନୁ ତାର
ଅଷ୍ଟ ଅଳଙ୍କାର    ଭୂଷିତ ଶରୀର
ବାଷ୍ପରୁଦ୍ଧ କଣ୍ଠସ୍ୱର
ଦୁର୍ବାସା ମୁନି
ସମାର୍ଜନ୍ତି କୁଞ୍ଜ ବାଢେଣି ଦେନି । ୯
ସେ ପୁଣ୍ୟ ଭୂମିର    ପବିତ୍ର ଧୂଳିକୁ
ମଥାରେ ବୋଳି ଅକ୍ରୂର
ତହୁଁ କିଛି ନେଇ    ଗର୍ଭକୁ କ୍ଷେପିଣ
ବୋଲେ ପ୍ରଭୁ କ୍ଷମା କର
ବିଦଗ୍ଧ ମନେ
ଅନାଇ ରହିଲେ ବିଟପୀ ଗଣେ । ୧୦
ତରୁଲତା ଗଣେ    ସ୍ନେହେ କୋଳ କରି
ଆଉଁଷି ଦେଲେ ସ୍ୱକରେ
ପତ୍ର ପୁଷ୍ପ ଗୁଚ୍ଛ    ଓଗାଳି ଆଣିଣ
ଲଗାଇଲେ ନିଜ ଶିରେ
ଦର୍ଶନ ସାରି
ରଥ ବହି ଗଲେ ଶ୍ରୀହରି ସ୍ମରି । ୧୧
କୃଷ୍ଣପ୍ରେମେ ଚିତ୍ତ    ହୋଇ ଦ୍ରବୀଭୂତ
ବାକ୍ୟସ୍ଫୁରେ ଗଦଗଦ

ଭକ୍ତ ଜାଣେ ସିନା ଭକ୍ତର ମନନ୍ତ
ପାନ କରେ ମକରନ୍ଦ
ଧୀରେ ସ୍ୟନ୍ଦନ
ଚଳାଇ ମିଳିଲେ ନନ୍ଦ ଭବନ । ୧୨

ମଧ୍ୟାହ୍ନ ସମୟ ହୋଇଛି ସେବେଳେ
ଅଟକିଲା ଯାଇ ରଥ
ଆଦର କରିଣ ନନ୍ଦ ନନ୍ଦରାଣୀ
ଘେନି ଗଲେ କଂସ ଦୂତ
ପିଢ଼ା ପକାଇ
ନନ୍ଦ ନନ୍ଦନ ପାଦ ଦେଲେ ଧୋଇ । ୧୩

ଦେବ ଶଙ୍କର୍ଷଣ ବିଞ୍ଚଣା କରିଲେ
ଶ୍ରୀକରେ ଧରି ବ୍ୟଜନ
ମଧୁର କୋମଳ ବାକ୍ୟ କହି ନନ୍ଦି
ତୋଷିଲେ ଆତ୍ମୀୟ ମନ
ଦେବୀ ଯଶୋଦା
ପରଶିଲେ ଅନ୍ନ ବହ୍ନିଣ ଶ୍ରଦ୍ଧା । ୧୪

ଶଯ୍ୟାରେ ଶୁଆଇ ଚରଣ ଚିପିଣ
ଦୁଇଭାଇ ପୁଲକିତ
ଭକ୍ତସେବ୍ୟ, ପ୍ରଭୁ ସେବକ ହୋଇଲେ
ଭବର ଏ ବିପରୀତ
ନ ଥାଏ ଜ୍ଞାନ
ସେବ୍ୟ ସେବକ ଏ ବେନି ଅଭିନ୍ନ । ୧୫

ଆଶ୍ୱସ୍ତ ହୋଇଣ ବସନ୍ତେ ଅକ୍ରୂର
ପଚାରିଲେ ଗୋପପତି
କୁଶଳେ ଅଛନ୍ତି କି ପ୍ରଜା ସକଳେ
ମଧୁପୁର ନରପତି
କହ ଅକ୍ରୂର
ଦେବକୀ ବସୁଦେବଙ୍କ ଖବର ? ୧୬

ଅକ୍ରୂର କହିଲେ    କଂସ ଭୟେ ସର୍ବେ
ଦୁଃଖେ କାଟୁଛନ୍ତି କାଳ
ପଶୁ ହତ୍ୟାକାରୀ    ଗୃହେ ବନ୍ଧା ପଶୁ
ଯେସନେ ପ୍ରାଣ ବିକଳ
ଧନ ଜୀବନ
କଂସ ଥିବା ଯାଏ ବିପଦ ପୂର୍ଣ୍ଣ । ୧୭

କଥା ବଦଳାଇ    ପଚାରିଲେ ନନ୍ଦ
ଆସିବାର ଅଭିପ୍ରାୟ
ଅକ୍ରୂର କହିଲେ    ରାଜା ଆଜ୍ଞା ପତ୍ର
ନେଇ ଆସିଅଛି ରାୟ
କଂସ ଆଦେଶ
ମଥୁରାକୁ ଯିବେ ତୋ ବେନି ଶିଷ୍ୟ । ୧୮

ଅକ୍ରୂର ର କ୍ରୂର    ବାକ୍ୟ ଶୁଣି ନନ୍ଦ
ମୁଖରୁ ନ ସ୍ଫୁରେ କଥା
ମୋହନ ହୋଇଣ    ବସିଲେ ରାଜନ
ତଳକୁ ପୋତିଣ ମଥା
ପୁଚ୍ଛିଲେ କୃଷ୍ଣ
ଆଉ କି କହି ଅଛି କଂସ ରାଜନ ? ୧୯

ଅକ୍ରୂର କହିଲେ    କଂସ କହି ଅଛି
ଆଦେଶ କଲେ ଅମାନ୍ୟ
ଲୁଣ୍ଠନ କରିବ    ବଳେ ଗୋପପୁର
ପ୍ରଜାଙ୍କୁ ଦେବ କଷଣ
ଅତି ନିଷ୍ଠୁର
ଦୟା ଧର୍ମ ଜାଣେ ନାହିଁ ପାମର । ୨୦

ଏହା କହି ମନ୍ତ୍ରୀ    କଣ୍ଠରୁ ଫିଟାଇ
ଦେଲେ ରାଜା ଆଜ୍ଞା ପତ୍ର
ଆଜ୍ଞା ପତ୍ର ନେଇ    ଶିରେ ଲଗାଇଲେ
ମାନ୍ୟ କରି ଗୋପ ନାଥ

ମୁଦ୍ର ଖୋଲିଣ
କୁଳ ପୁରୋହିତ କଲେ ପଠନ । ୨୧

" ଲେଖି ଅଛି କଂସ ଆହେ ଗୋପଗଣ
ପାଇ ମୋର ଆଜ୍ଞା ପତ୍ର
ତୋ ବେନି ନନ୍ଦନ ରାମକୃଷ୍ଣ ଦୁଇ
ଆଣିବୁ ଦେଖିବି ନେତ୍ର
ସଙ୍ଗେ ଗୋରସ
ଶତଭାର ଆଣିବୁ ଗୋପଗଣ । ୨୨

ଏ ମୋହର ଆଜ୍ଞା କରିଲେ ଅବଜ୍ଞା
ଗୋପ ନଗ୍ର ନାଶ ଯିବ
ଦେଖା ଦରଶନ ସଙ୍ଗତରେ ଧେନୁ
ଅକ୍ରୁର ସଙ୍ଗେ ଆସିବ
କଲେ ଅମାନ୍ୟ
ପଛେ ଦୋଷ ଦେବୁ ନାହିଁ ରାଜନ । ୨୩

କଂସ ଆଜ୍ଞାପତ୍ର ପାଇ ନନ୍ଦନୃପ
ବସିଲେ ହୋଇ ବିଷର୍ଣ୍ଣ
ଅକ୍ରୁର କହିଲେ ବିଳମ୍ବ ନ କରି
ବେଗେ ଚାଲ ହେ। ରାଜନ
କାଳ ବିଳମ୍ବ
ନ ଯୋଗାଏ ମୋତେହେ ଗୋପ ଦେବ । ୨୪

ଅଧିକ ସମୟ ରହି ନ ପାରିବ
ରାଜା ଆଜ୍ଞା ଅଛି ମୋତେ
ବିଳମ୍ବ କରିଲେ ତୋ ବେନି ତନୟ
ବଳେ ଘେନି ଯିବ ରଥେ
ନିଷ୍ଠୁର ବାଣୀ
ଶୁଣି କାନ୍ଦିଲେ ଯଶୋଦା ଜନନୀ । ୨୫

ସାନ୍ତ୍ୱନା ଦେଇଣ ଗାର୍ଗ୍ୟ ମହାମୁନି
କହିଲେ ହେ ନନ୍ଦ ଶୁଣ

କଂସ ରାଜାଆଜ୍ଞା କରିଲେ ଅବଜ୍ଞା
ବିପଦ ପଡ଼ିବ ଜାଣି
ପ୍ରଜା କଲ୍ୟାଣ
ରାଜଧର୍ମ ବୋଲି ମନରେ ଘେନ । ୨୬

ବୋଲୁଛନ୍ତି ଗାର୍ଗ୍ୟ ଶୁଣ ମହାଭାଗ
ଭାରତର ଯେ ଦୁର୍ଗତି
ନୃପତିଏ ୮୪ - ଧର୍ମ ତ୍ୟାଗ କରି
କରୁ ଅଛନ୍ତି ଅନୀତି
ଦେବ ବ୍ରାହ୍ମଣ
ମୁନିଋଷି ବୃତ୍ତି କଲେ ହରଣ । ୨୭

ଏଣୁ ପର୍ଶୁରାମ ଏକ ବିଂଶବାର
ନିକ୍ଷତ୍ରି କରିବା ପରେ
ଆଉ ସେହି ପରି ଶକ୍ତିଶାଳୀ ରାଜା
ନ ରହିଲେ ପୃଥିବୀରେ
ଯିଏ ଏକତ୍ର
ପ୍ରତିଷ୍ଠା ହୃଦରେ ନେବେ ନେତୃତ୍ୱ । ୨୮

ଯଦ୍ୟପି ମିଥିଳା ଅଯୋଧ୍ୟା ନାମରେ
ଥିଲା ଦୁଇ ରାଜଶକ୍ତି
ସେ ଦୁଇ ରାଜ୍ୟର ନୃପତି ଜନକ
ଦ ଶ ର ଥ ରେ ଅପ୍ରୀତି
ଶୈବ ବୈଷ୍ଣବ
ଧର୍ମ ଧାରଣାରୁ ବଇରୀଭାବ । ୨୯

ଏକାଳେ ଲଙ୍କାର ରାଜନ ରାବଣ
ଅତ୍ୟନ୍ତ ପ୍ରଭାବଶାଳୀ
ହେବାରୁ ଅସୁରେ ବୁଲି ନର୍ଭୟରେ
ବ୍ୟାପିଗଲେ ବନସ୍ଥଳୀ
ଗିରି କାନନ
ବୁଲି କଲେ ମୁନିଋଷି ହନନ । ୩୦

ନରମାଂସ ଖାଇ ଯଜ୍ଞସ୍ଥଳ ଭାଙ୍ଗି
ଅନ୍ୟାୟ କଲେ ବରିଷ୍ଟ
ଅସୁର ଉପଦ୍ରରେ ଜନପୁର ଲୋକେ
ଭୋଗ କଲେ ଦୁଃଖକଷ୍ଟ
ଦେବ ବ୍ରାହ୍ମଣ
ଡାକଦେଲେ ପ୍ରଭୁ କର କାରଣ । ୩୧

ଅସୁରି ଶକ୍ତିର ଅବସାନ ପାଇଁ
ଚିନ୍ତା କଲେ ଋଷିମୁନି
ବିଶ୍ୱାମିତ୍ର ଋଷି ମନରେ ଉତ୍କଣ୍ଠା
ଧର୍ମରେ ହୋଉଛି ଗ୍ଲାନି
ଦୁଷ୍ଟ ନିପାତ
କରଣ କରିବେ ପୃଥିବୀ ଶାନ୍ତ । ୩୨

ବିଶ୍ୱାମିତ୍ର ଋଷି ଜ୍ଞାତ ହୋଇଗଲେ
ଯୋଗ୍ୟ ଦଶରଥ ସୁତ
ଅଯୋଧ୍ୟା ନଗରେ ଯାଇ ଋଷିବର
ରାଜାଙ୍କୁ ମାଗିଲେ ସୁତ
ଅଯୋଧ୍ୟା ନାଥ
ବିଶ୍ୱାସତେ ଦେଲେ ଋଷିଙ୍କୁ ସୁତ । ୩୩

ରାଜଧର୍ମ ବୁଝି ରାଜା ଦଶରଥ
ରାମଲକ୍ଷ୍ମଣ ନନ୍ଦନ
ଦଅନ୍ତେ ଋଷିଙ୍କୁ ଘେନି ବିଶ୍ୱାମିତ୍ର
କାନନେ କଲେ ଗମନ
ଅସୁର ମାରି
ଜାରନ୍ତି ରଖିଲେ ଏ ବସୁନ୍ଧରା । ୩୪

ଅସୁର ରାଜନ ରାବଣ ସହିତ
କୌଣସେ ହେଲେ ନିପାତ
ଧର୍ମ ରକ୍ଷା ହେବା ସଙ୍ଗେ ପୃଥିବୀରେ
ଶାନ୍ତି ହେଲା ସଂସ୍ଥାପିତ । ୩୫

ସ ମ ସ୍ୟ ଗ ତ

ତ୍ରେତା ଯୁଗର ଏ ଲୀଳା ଚରିତ । ୩୫
ଏ ଦ୍ୱାପର ଯୁଗେ ଜାତ ହୋଇଛନ୍ତି
ଦୁଷ୍ଟ ନରପତିଗଣ
ସର୍ବ ପ୍ରାପ୍ତ ଧର୍ମ ଜ୍ଞାନ କରି ଦୁଷ୍ଟେ
କରନ୍ତି ବଡ଼ିମା ପଣ
ପ୍ରଜା ମାରଣ
କରୁଛନ୍ତି ରାଜଧର୍ମ ତେଜଣ । ୩୬
କଂସର ଶାସନ ଅମାତରେ ପୂର୍ଣ୍ଣ
ନିରୀହ ନର ରକ୍ତରେ
ତରବାରୀ ତାର ତୃଷା ନିବାରଣ
କରୁଅଛି ନିରନ୍ତରେ
ସାଧୁ ସଜ୍ଜନ
ଧରି ନେଇ ବଳେ ଦିଏ କଷଣ । ୩୭
ଯେଉଁ ରାଜ୍ୟେ ରାଜା ବିଦ୍ୱାନ ମାନଙ୍କ
ଜିହ୍ୱାକୁ ଦିଅନ୍ତି କାଟି
ଯେଉଁ ରାଜ୍ୟେ ଊଷା- କାଳେ ଶୁଭେ ନାହିଁ
ମନ୍ଦିରେ ଆଳତି ଘଣ୍ଟି
ମ ନ୍ତ୍ରୋ ଚ୍ଚା ର ଣ
ନ କରନ୍ତି ବିପ୍ରେ ଦେବ ପୂଜନ । ୩୮
ଯଜ୍ଞ ହୋମ ଆଦି ନିଷେଧ ହୋଇଛି
ମନା ବିପ୍ରେ ଦାନପୁଣ୍ୟ
ସେ ରାଜ୍ୟ ରାଜନ ନିଧନ ଯୋଗାଏ
ଅତ୍ୟନ୍ତରେ ପ୍ରୟୋଜନ
ନା ର ଦ ବାଣୀ
ରାତ୍ର କାଳେ ନିଦ୍ରା ନ ଯାଏ ଶୁଣି । ୩୯
ଚିନ୍ତିତରେ ଚକ୍ଷୁ ମୁଦ୍ରିତ ହୁଅଇ
ଉଷାକାଳେ ଯାଏ ନିଦ୍ରା

ଆଜ୍ଞା ଦେଇ ଅଛୁ    ଶୟନେ ଯେପରି
ନ ଉପୁଜେ ତିଳେ ବାଧା
ବ୍ର ହ୍ମ ମୂ ହୂ ର୍ତ୍ତ
ଯେପରି ରହିବ ନିରବ ଶାନ୍ତ । ୪୦
ଆପଣା ପିତାଙ୍କୁ    ବଳେ ବନ୍ଦୀ କରି
ରଖିଅଛୁ କାରାଗାରେ
ଭଉଣୀ ଭିଣେଇ    ଛନ୍ଦି ଘରେ ଭରି
ଦଣ୍ଡ ଦିଏ ନିରନ୍ତରେ
ଶିଶୁ ସ ନ୍ତା ନ
ପୁତନା ଅସୁରୀ ହାତେ ନିଧନ । ୪୧
ରାଜ୍ୟ ଛାଡ଼ି ବହୁ    ପ୍ରଜା ପର ରାଷ୍ଟ୍ରେ
ଯାଇ କରିଛନ୍ତି ବାସ
ମାଗଧୀ ସେନାଙ୍କୁ    ରାଜ୍ୟରେ ରଖିଣ
ପ୍ରଜାଙ୍କୁ ଦିଅଇ କ୍ଳେଶ
ଆଉ ଅମିତ
ସହିବାକୁ ନାହିଁ ପ୍ରଜାଙ୍କ ଧୃତି । ୪୨
କଂସକୁ ନିଧନ    କରି ଦୁଇଭାଇ
କରନ୍ତୁ ଶାନ୍ତି ସ୍ଥାପନ
ଗୋପଲୀଳା ଶେଷ    କରି ମଥୁରାକୁ
କରନ୍ତୁ ଶୁଭ ଗ ମ ନ
କଂସ ପୀ ଡ଼ ନ
ନ ସହି କରନ୍ତି ନାରୀ କ୍ରନ୍ଦନ । ୪୩
ଗୋପପୁର ହିତ    ଦୃଷ୍ଟିରୁ ପୁତ୍ରଙ୍କୁ
ଦେଜ ଯାଅ ନରନାଥ
ତୁମ୍ଭ ପୁତ୍ର ବୋଲି    ଭାବଛ ଯାହାଙ୍କୁ
ସେ ଅଟନ୍ତି ଜଗନ୍ନାଥ
ଜଗତ ହିତ
ସାଧନେ ହୋଇ ଅଛନ୍ତି ସମ୍ଭୂତ । ୪୪

ପୃଥକ ସପକ୍ଷେ ଦେବ ବିପ୍ର ରୁଣି
ରହିଛନ୍ତି ଅନୁବର୍ତ୍ତୀ
ଶତ କଂସ ହେଲେ କି କରି ପାରିବେ
ରାମକୃଷ୍ଣ ବେନି ଥୁଡେ
ଧନୁ ଉତ୍ସବ
ଦେଖିବାକୁ ଗଲେ ଲଭ ହୋଇବ । ୪୫

ନୃପତି ସଭାରେ ସମ୍ମାନିତ ହେବେ
ବଢ଼ିବ ତୁମ୍ଭର ମାନ୍ୟ
ପିତାର ସମ୍ମୁଖେ ପୁତ୍ର ପୂଜ୍ୟ ହେଲେ
ପିତାଙ୍କ ଜୀବନ ଧନ୍ୟ
ଶୁଣି ଆଶ୍ୱସ୍ତ
ଯିବା ପାଇଁ ନନ୍ଦ ହେଲେ ପ୍ରସ୍ତୁତ । ୪୬

ମାତ୍ର ଗୋପାଙ୍ଗନା କହିଲେ ମଥୁରା
ପୁରକୁ ଛାଡ଼ିବୁ ନାହିଁ
କୃଷ୍ଣଙ୍କୁ ଛଡ଼ାଇ ନେବା ଆଗୁ ଆମ୍ଭ-
ମାନଙ୍କୁ ବିନାଶୁ ସେହି
କୃଷ୍ଣ ହରାଇ
ବଞ୍ଚି ନ ପାରିବୁ ଗୋପରେ ରହି । ୪୭

ବୁଝାଇ ସୁଝାଇ କହିଲେ ଶ୍ରୀକୃଷ୍ଣ
ଶୁଣ ଆଗୋ ଗୋପବାଳା
ହକାରି ଅଛନ୍ତି କଂସ ମହୀପତି
ମଥୁରାଯିବୁ ସଂଖୋଳା
କଲେ ବାରଣ
କଂସ ରଜା ଧରି ଦେବେ କଷଣ । ୪୮

ତୁମ୍ଭେ ଯେଉଁ କୃଷ୍ଣେ ଭାବ କରୁ ଅଛ
ଅନ୍ତରେ ତାହାଙ୍କ ବାସ
ବାହାରେ ନ ଖୋଜି ଭିତରରେ ଦେଖ
ଲାଗିଛି ଗୁହ୍ମଙ୍କ ହସ

ନେତ୍ର ଅଗ୍ରରେ
ନୃତ୍ୟ କରୁଛନ୍ତି ହଂସ ସ୍ୱରରେ । ୪୯
ଏକ ବିଂଶ ସହସ୍ର ଷଟଶ ସଂଖ୍ୟାରେ
ଜୀବ ପରମର ଗତି
ନାଭି ଠାରୁ ନାସା ଚବିଶ ଅଙ୍ଗୁଳ
ବେନି ଦ୍ୱାର ଅଛି ଯିହି
ନୁହଇଁ ଭେଟ
ହକାର ସକାର ସ୍ୱରରେ ନାଚ । ୫୦
ଆଠ ସହସ୍ର ଆଠ ଶତ ଅଠାଅଶୀ
ପଡ଼ିବାରୁ ନେତ୍ର ଦ୍ୱାର
ଦୃଷ୍ଟି ଅଗ୍ରେ ଥାଇ ଦର୍ଶନ ନ ମିଳେ
ଦର୍ଶନ ଯନ୍ତ୍ର ଅସ୍ଥିର
ପ୍ରାଣ ପବନ
ପ୍ରବାହିତ ହେତୁ ଦେହ କମ୍ପନ । ୫୧
ପ୍ରାଣ ପବନକୁ ହୃଦେ ସ୍ଥିର କଲେ
ପ୍ରକଟ ହେବେ କହ୍ନେଇ
ଦୃଷ୍ଟି ଯନ୍ତ୍ର ସ୍ଥିର ହୋଇଣ ରହିଲେ
ଦୃଷ୍ଟି ଅଗ୍ରେ ଦେଖା ପାଇ
ଏ ସୂତ୍ରେ ମୋତେ
ଭଜନ କରିଲେ ଦେଖିବ ଗାନେ । ୫୨
ଅଜପା ସ୍ୱରରେ ଯେ ଭଜନ କରେ
ଆଙ୍ଗଦେହୀ ଭକ୍ତ ସେହି
ଅନ୍ତର ଆତ୍ମାରେ ରମଣ କରିଲେ
ଆତ୍ମ ସୁଖ ମିଳି ଥାଇ
ଏ ହଂସ ସୂତ୍ର
ଅନ୍ତରଙ୍ଗ ଭକ୍ତେ କେବଳ ଜ୍ଞାତ । ୫୩
ବ୍ରହ୍ମତତ୍ତ୍ୱ ଜ୍ଞାନ ପାଇ ଗୋପୀଗଣେ
ବସିଲେ ଅଜପା କରି

ଦେଖିଲେ ନୟନ ଅଗ୍ରେ ଅନ୍ତର୍ଯ୍ୟାମୀ
ଦଶମ ସ୍ୱରୂପ ଧରି
ତ୍ରିଭଙ୍ଗ ଛନ୍ଦେ
ନୃତ୍ୟ କରୁଛନ୍ତି ଜଗଦାନନ୍ଦେ । ୫୪

ପରମ ଆତ୍ମାକୁ ଆତ୍ମାରେ ମିଳନ
କରାଇ ଆତ୍ମ ରମଣ
କୃଷ୍ଣ ପ୍ରେମ ରସେ ନମନ୍ତି ରହଣ
ହରାଇଲେ ବାହ୍ୟଜ୍ଞାନ
ଗୁହ୍ୟଗୀ ରାସ
ସୂତ୍ରେ ଗୋପାଙ୍ଗନା ହୋଇଲେ ବଶ । ୫୫

ଗୋପୀଙ୍କୁ ପ୍ରବୋଧି କାମ କଳାନିଧି
ମୁଖ ଦିଶେ ହସହସ
ଛପନ ପଦରେ ଅଧ୍ୟାୟ ସମ୍ପୂର୍ଣ୍ଣ
ସୁଜନେ ନ ଘେନ ଦୋଷ
କୃଷ୍ଣ ମାନସ
ଗୀତେ ଭଣିଲା ମୂଢ ବୃନ୍ଦାବନ । ୫୬

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଅକ୍ରୂରଙ୍କ ଗୋପଲୀଳା ବର୍ଣ୍ଣନେ
ନାମ ଷଷ୍ଠ ଚତ୍ୱାରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

## ବୋଲି — ( ୪ )

ଅ କା ମ ନ
ଚକାଡୋଳା କର ଦର୍ଶନ
ଚକା ବଟ ତଳେ ଚକାସନ ପାରି
ଥକା ମାରି ଦଣ୍ଡେ ବସିଣ ॥ ଘୋଷା ॥

ତିନି ଜଣ ଯାକ ପରସ୍ପର ପ୍ରଶ୍ନ
ଉତ୍ତରରେ କୁହାକୁହି
ସେମାନଙ୍କ କଥା ଶ୍ରବଣେ ଭକ୍ତଙ୍କ
ଅନ୍ତର ହୋଇଲା ଦହି । ୧

ଗୋପାଳ ଭକ୍ତ ଭାବନା ସାଗରେ
ଆପେ ଯାଇଛନ୍ତି ହଜି
ଗୋପାଳ ସୁନ୍ଦର ମୂରତିକୁ ଦେଖି
କିଏ ବା ନ ଯିବ ମଜି ? ୨

ସୁନ୍ଦର ଲପନ ମଧୁର ବଚନ
ଦେଖି ଶୁଣି ହତଜ୍ଞାନ
ଦୁଧ ଦହି ଛେନା ରଖିବା ଭାବନା
ମନରୁ ହେଲା ଉଭାନ । ୩



# ସପ୍ତଚତ୍ୱାରିଂଶ ଅଧ୍ୟାୟ

## ଶ୍ରୀକୃଷ୍ଣ ଅକ୍ରୂର କଥୋପକଥନ

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ହେ। ସୁବିଜ୍ଞ ଜନ
ରସିରେ ଶ୍ରୀକୃଷ୍ଣ ଅକ୍ରୂରଙ୍କ ମଧ୍ୟେ
ନାନା କଥୋପ କଥନ । ୧

ଅକ୍ରୂର କହିଲେ ଦ୍ୱାପର ଓ କଳି
ଯୁଗର ସନ୍ଧ୍ୟାଂଶ କାଳ
ଧର୍ମର ଉଦ୍ଧାର ଚେତନା ନଷ୍ଟ ଭ
ହେଉଅଛି ବେଳୁ ବେଳ । ୨

ରାଷ୍ଟ୍ର ନେତାଙ୍କର ଚିନ୍ତନ, ବଚନ
କାର୍ଯ୍ୟରେ ଛଳନା ପୂର୍ଣ୍ଣ
ଭିନ୍ନତା ଉଦ୍ରେକ ହେବାରୁ ରାଷ୍ଟ୍ରରେ
ଶାସନତନ୍ତ୍ର ଉଚ୍ଛିନ୍ନ । ୩
ରାଜନ୍ୟ ମଣ୍ଡଳି କ୍ଷମତାର ମୋହେ
ଦମ୍ଭଅହଂକାରେ ମାତି
ନିଜନିଜ ମଧ୍ୟେ ଶ୍ରେଷ୍ଠତ୍ୱ ଦାବୀରେ
ମଜ୍ଜିଛନ୍ତି ଦିନ ରାତି । ୪
ଭାରତ ବର୍ଷର ରାଜନ୍ୟ ମଣ୍ଡଳୀ
ମ· ରେ କୁରୁ ପାଞ୍ଚାଳ
ଅବନ୍ତୀ, ବିଦର୍ଭ ଆର୍ଯ୍ୟ ଜନପଦ
ମଧ୍ୟେ ଲାଗିଛି କନ୍ଦଳ । ୫
ପରସ୍ପର ମଧ୍ୟେ ଦ୍ୱନ୍ଦ ଉପୁଜଣ
ପ୍ରତ୍ୟେକ ରାଜ୍ୟ ଅନ୍ୟର
ରାଜ୍ୟ କବଳିତ କରିବା ଆସ୍ପର୍ଦ୍ଧା
କରୁଛନ୍ତି ନିରନ୍ତର । ୬
ପ୍ରସିଦ୍ଧ ମଥୁରା ରାଜ୍ୟେ ଅଭିଜାତ
ଶାସନର ପ୍ରଚଳନ
ପ୍ରାଚୀନ ଯାଦବ ପୌରବ ବଂଶର
ଯଯାତି ମହାରାଜନ । ୭
ତାହାଙ୍କର ଦୁଇ ରାଣୀ ଦେବଯାନୀ
ଶର୍ମିଷ୍ଠା ନାମେ କଥିତ
ଦେବଯାନୀ ଗର୍ଭେ ଜନ୍ମ ହେଲେ ଯଦୁ
ପୁରୁ ଶର୍ମିଷ୍ଠାଙ୍କ ସୁତ । ୮
ବୈମାତେୟ ଭାଇ ଥାଇ ଏହି ଦୁଇ
କଲେ ରାଜ୍ୟେ ରାଜପଣ
ସୂରସେନ ରାଜ୍ୟେ ଯଦୁ ରାଜା ହୋଇ
କରିଲେ ପ୍ରଜା ପାଳନ । ୯

ଯଦୁବଂଶୀ ବୋଲି ବିଜ୍ଞାପିତ ହୋଇ
ପଞ୍ଚଶାଖାରେ ବିଭକ୍ତ
ଅନ୍ଧକ, ସାତନ୍ୱ, ବୃଷ୍ଣି, ଯଦୁ, କୁରୁ
ଭୋଜ ବଂଶରେ ବିଖ୍ୟାତ । ୧୦
ପ୍ରତ୍ୟେକ ଗୋଷ୍ଠୀର ଦଳପତି ରାଜା
ନାମରେ ହେଲେ କଥିତ
ସେମାନଙ୍କ ମଧ୍ୟେ ନୈକତ ଶାସନ
ନୀତି ହେଲା ପ୍ରବର୍ତ୍ତିତ । ୧୧
ଅଭିଜାତ ଏଇ ଶାସନ ତନ୍ତ୍ରଟି
ଗଣତନ୍ତ୍ର ଅନୁରୂପ
ଲୋକମତ ପ୍ରତି ପ୍ରାଧାନ୍ୟ ପ୍ରଦାନ
କରୁଥିଲେ ଗଣାଧିପ । ୧୨
ଶୂରସେନ ରାଜ୍ୟ ରାଜଧାନୀ ହେଲା
ମଥୁରା ନାମେ ବିଖ୍ୟାତ
ମହାରାଜା ଉଗ୍ର- ସେନ ସେ ରାଜ୍ୟର
ମହାମାନ୍ୟ ନରନାଥ । ୧୩
ଅଭିଜାତ ପଞ୍ଚ- ରାଜନ୍ୟ ମଣ୍ଡଳୀ
ପରାମର୍ଶେ ରାଜପଣ
କରୁଥିଲେ ମହା- ରାଜା ଉଗ୍ରେସନ
ଗଣତନ୍ତ୍ରାନୁସରଣ । ୧୪
ଏହି ସମୟରେ ପାଞ୍ଚଗୋଟି ଆର୍ଯ୍ୟ
ଗୋଷ୍ଠୀ " ଆର୍ଯ୍ୟ ପଞ୍ଚଜନ "
ଯେଉଁ ଅଭିଜାତ ଜନତନ୍ତ୍ର ଭିତ୍ତି
କରିଥିଲେ ପ୍ରବର୍ତ୍ତନ । ୧୫
ସେହି ଆଦର୍ଶରେ ମଥୁରା ନଗରରେ
ଚଳୁଥିଲା ରାଜତନ୍ତ୍ର
ଅନୁ, ଦ୍ରୁହ୍ୟ, କୁରୁ, ପୁରୁ ଓ ଭରତ
ପାଞ୍ଚ ଗୋଷ୍ଠି ଏକତ୍ରିତ । ୧୬

ଏକତ୍ର ରହନ୍ତି ସ୍ଥାପନ କରଣେ
କରୁଥିଲେ ବସବାସ
ପଞ୍ଚ ଆର୍ଯ୍ୟ ଜନ କୁହା ଯାଉଥିଲେ
ଏହି ଆର୍ଯ୍ୟ ପାଞ୍ଚ ଶିଷ୍ୟ । ୧୭

ଏ ଆର୍ଯ୍ୟ ଗୋଷ୍ଠିକୁ 'ଜନ' କହୁଥିଲେ
ଭରତ ଜନ ପ୍ରଧାନ
ତାହାଙ୍କ ମିଳିତ ନଷ୍ଟତିରେ ସପ୍ତ-
ସିନ୍ଧୁ ଦେଶର ଶାସନ । ୧୮

ଏହି ସପ୍ତ ସିନ୍ଧୁ ଦେଶଟି ପ୍ରାଚୀନ
ଆର୍ଯ୍ୟ ଭୂଖଣ୍ଡ କଥିତ
ଶାସ୍ତ୍ର ପୁରାଣରେ ଆର୍ଯ୍ୟାବର୍ତ୍ତ ନାମେ
ହୋଇଅଛୁ ବର୍ଣ୍ଣିତ । ୧୯

ପ୍ରତ୍ୟେକ ଗୋଷ୍ଠୀର ଦଳପତି ରାଜା
ରୂପେ ଥିଲେ ସମ୍ମାନିତ
ସବୁ ରାଜା ମିଶି ଜଣେ ମହାରାଜା
କରୁଥିଲେ ମନୋନୀତ । ୨୦

ସମ୍ରାଟ ରୂପେ ସେ ପରିଚିତ ଥିଲେ
ଅନ୍ୟ ରାଜାଏ ସାମନ୍ତ
ସମ୍ରାଟଙ୍କ ଆଜ୍ଞା ପାଳନ କରଣେ
ରହୁଥିଲେ ଅନୁଗତ । ୨୧

କାଳ କ୍ରମେ ଏଇ ଆର୍ଯ୍ୟ ଜନ ପଦେ
ଅନୁରୂପ ପ୍ର ଶା ସ ନ
ପ୍ରବର୍ତ୍ତିତ ହୋଇ ଅଭିଜାତ ମାର୍ଗ
ହୋଇଥିଲା ପ୍ରଚଳନ । ୨୨

ଏମନ୍ତ ଶାସନ ପଦ୍ଧତି ଅଟଇ
ଦେବ ସଂସ୍କୃତି ପ୍ରଖ୍ୟାକ
ଗଣତନ୍ତ୍ରର ଏ ମୂଳ ଭିତ୍ତି ଅଟେ
ଜନତା ତହିଁ ଶାସକ । ୨୩

ପୃଥ୍ୱୀରେ ଯେପରି ମାନବ ଶାସନ
ସ୍ୱର୍ଗରେ ଦେବ ଶାସନ
ପବନ, ବରୁଣ, ଇନ୍ଦ୍ର, ଅଗ୍ନି, ଯମ
ଏହି ପାଞ୍ଚ ଦେବଗଣ । ୨୪
ସମସ୍ୟାନୁସାରେ ଶାସନ କାର୍ଯ୍ୟକୁ
କରୁଥାନ୍ତି ନିୟନ୍ତ୍ରଣ
ପରସ୍ପର ମଧ୍ୟେ ବୁଝାମଣା କରି
କରନ୍ତି ସୃଷ୍ଟି ପାଳନ । ୨୫
ମିଳିତ ଶାସନ ପରଂପରାମତେ
ଯେ ନିଷ୍ପତ୍ତି ନିଆଯାଏ
ତାହାକୁ ସମସ୍ତେ ମାନ୍ୟତା ଦିଅନ୍ତି
ମତ ପାର୍ଥକ୍ୟ ନ ଥାଏ । ୨୬
ପଞ୍ଚ ଜନର ଯେ ମିଳିତ ନିଷ୍ପତ୍ତି
ପଞ୍ଚ ଜନର ସୁଘୋଷ
ବିଷ୍ଣୁଙ୍କ ଶଙ୍ଖର ନାମ ପଞ୍ଚଜନ୍ୟ
ପ୍ରତୀକାତ୍ମକ ବିଶେଷ । ୨୭
ଏହି ପଞ୍ଚଜନରୁ ପଞ୍ଚାୟତ ରାଜ୍ୟ
ଧାରଣା ହୋଇଛି ସୃଷ୍ଟି
ପାଞ୍ଚ ଜଣ ମିଶି ପଞ୍ଚାୟତ କରି
ଦାୟିତ୍ୱ ପାଳିବେ ବାଣ୍ଟି । ୨୮
ଏ ଆର୍ଯ୍ୟାବର୍ତ୍ତରେ ଆର୍ଯ୍ୟୋତ୍ତରମାନେ
'ଗଣ' ନାମେ ପରିଚିତ
କାଳକ୍ରମେ ଏହି ଭାରତ ଭୂମିରେ
ଗଣରାଜ୍ୟ ପ୍ରବର୍ତ୍ତିତ । ୨୯
"ଜନଗୋଷ୍ଠି" ଗଣ ଗୋଷ୍ଠି "ମିଶିଯାଇ
ଜନ୍ମ ନେଲା ଏକ ଗୋଷ୍ଠି
ଉଭୟ ଗୋଷ୍ଠିର ସମନ୍ୱୟ ଘଟି
ଜନଗଣ ଦେଶ ସୃଷ୍ଟି । ୩୦

ଯଥାର୍ଥେ କଥିତ ଜନଗଣମନ
ଅଧିନାୟକ ଭାରତ
ହିମଗିରି-ଗଙ୍ଗା ଯମୁନା ଉଚ୍ଛଳ
ଜଲଧି ତରଙ୍ଗ ଧୌତ । ୩୧
ମହାରାଜା ଉଗ୍ର- ସେନ ନରପତି
ମଥୁରାରେ ଥିଲେ ବେଳେ
କୁରୁ ରାଜ୍ୟେ ଭୀଷ୍ମ ରାଜ ପ୍ରତିନିଧି
ରୂପେ ଖ୍ୟାତି ଅର୍ଜିଥିଲେ । ୩୨
ପାଞ୍ଚାଳ ରାଜ୍ୟରେ ଦ୍ରୁପଦ ରାଜନ
ଶକ୍ତିଶାଳୀ ନରପତି
ମଗଧ ରାଜ୍ୟରେ ଜରାସନ୍ଧ ମଲ୍ଲ
ଏକଛତ୍ରପତି କ୍ଷତ୍ର । ୩୩
ମଗଧର ରାଜ- ଧାନୀ ଗିରିବ୍ରଜ
ଇତିହାସାନୁଶୀଳନ
କଲେ ଜଣାଯାଏ ମଗଧ ସାମ୍ରାଜ୍ୟ-
ବାଦର ପ୍ରସାର ସ୍ଥାନ । ୩୪
ଏକଛତ୍ରବାଦୀ ରାଜା ଜରାସନ୍ଧ
ଅନ୍ୟ ରାଜ୍ୟ ଗୁଡ଼ିକର
ସ୍ୱାଧୀନତା ଅପ- ହରଣ କରିଣ
ରଖିଛି ନିଜ ହାତର । ୩୫
ରାଜଚକ୍ରବର୍ତ୍ତୀ ଉପାଧି ଧାରଣ
କରଣେ ଏକାଧିପତ୍ୟ
ବିସ୍ତାର କରିଣ ଭାରତ ବର୍ଷରେ
ଅଧର୍ମ ମାର୍ଗେ ଚାଳିତ । ୩୬
ଯୁଦ୍ଧ ବିଗ୍ରହରେ ଅନେକ ରାଜାଙ୍କୁ
କରିଥିଲେ ହେଁ ଅଟକ
ମହାବୀର ଭୀଷ୍ମ- ଦେବେ ଭୟ କରି
ନ ମାଡେ ପଞ୍ଚ କଟକ । ୩୭

ପରାକ୍ରମଶାଳୀ ମଥୁରା ରାଜ୍ୟକୁ
କରିବାକୁ ପଦାନତ
ନାନାବିଧ କୌଶଳ କରି ମଧ ଦୁଷ୍ଟ
ବାରମ୍ବାର ପରାଜିତ । ୩୮

ସ୍ୱଭାବେ ଯାଦବେ ସ୍ୱାଧୀନତା ପ୍ରିୟ
ଜାତିରୂପେ ପରିଚିତ
ସଦାଗ୍ରହ, ଦେଶ- ଭକ୍ତ, ଜାତିପ୍ରୀତ
କୁଳଧର୍ମ ଅନୁସୃତ । ୩୯

ମହାରାଜା ଉଗ୍ର- ସେନ ଦୂରଦ୍ରଷ୍ଟା
ବିଦ୍ୱାନ ପ୍ରଜା ବତ୍ସଳ
ସଂସ୍କାର ଧରମୀ ବର୍ଣ୍ଣାଶ୍ରମ ମାର୍ଗେ
ଥିବାରୁ ପ୍ରଜା ମଙ୍ଗଳ । ୪୦

ଯଜ୍ଞ, ଜ୍ଞାନ, ଧର୍ମ, ତପସ୍ୟା, ଆଗ୍ରହ
ବଢ଼ୁଥିଲା ଉନ୍ନତତର
ଦେବ ଋଷି ବିପ୍ର ସ୍ୱାଧ୍ୟାୟୀ ଥାଇଣ
ସ୍ୱଧର୍ମ ପାଳନେ ଖର । ୪୧

ଯାଦବ ଯୁବକେ ଦେଶରକ୍ଷା କାର୍ଯ୍ୟେ
ଧରୁଥିଲେ ଧନୁର୍ବାଣ
ବର୍ଣ୍ଣାଶ୍ରମ ମତେ ନିଜନିଜ କାର୍ଯ୍ୟ
କରୁଥିଲେ ସମ୍ପାଦନ । ୪୨

ସେହି ସମୟରେ ଚେଦି ରାଜା ଦମ-
ଘୋଷ ହୋଇ ପରାଜିତ
ଅବନ୍ତ ଓ ଶାଲ୍ୱ ଦୁଇ ନରପତି
ଥିଲେ ଜରା ଅଧୀନସ୍ଥ । ୪୩

ବିଦର୍ଭ ରାଜନ ଭୀଷ୍ମକ ଆପଣେ
ପରାଜୟ ଭୟ ଶଙ୍କି
ସକୂଟେ ମଗଧ ବଶ୍ୟତା ସ୍ୱୀକାର
କରି ମୌନ ରହିଛନ୍ତି । ୪୪

ସଂପ୍ରତି ମଥୁରା କୁ ଅବଦମିତ
କରିବା ତାହାର ଲକ୍ଷ
ତା କୁମନ୍ତ୍ରଣାର ହିତନକ ପ୍ରାପ୍ତ
ହୋଇଛି କଂସ ପ୍ରତ୍ୟକ୍ଷ । ୪୫
ବାହୁବଳେ ଜିଣି ନ ପାରି ମଥୁରା
ଜିଣିଲ କୂଟ ନୀତିରେ
ତାହା ପରାମର୍ଶେ କନ୍ୟାପତି କଂସ
ରାଜ୍ୟ ଘେନ ଗଲ ବଳେ । ୪୬
ଆର୍ଯ୍ୟଧର୍ମ ତଥା ଆର୍ଯ୍ୟ ଗୋଷ୍ଠି ପ୍ରତି
ଜରାସନ୍ଧ ବିତସ୍ପୃହ
ସେହି କାରଣରୁ ନରାସୁର ରୂପେ
ପରିଚିତ ଜରାତାପ୍ତ । ୪୭
ବର୍ଣ୍ଣାଶ୍ରମର ସେ ବିଦ୍ୱେଶ ଥିବାରୁ
ମଥୁରା ଆଭ୍ୟନ୍ତରୀଣ
ଶାସନ ଶୃଙ୍ଖଳା ନଷ୍ଟ କରି ଦେଇ
କଲ ଅଘଟଣ ମାନ । ୪୮
ନିଜ ଆଧିପତ୍ୟ ବିସ୍ତାର କରିଲ
ଭିଆଇ ଛନ୍ଦ କପଟ
ଜାମାତାକୁ କୂଟେ ପ୍ରଭାବିତ କରି
ଯାଦବଙ୍କୁ ଦେଲ କଷ୍ଟ । ୪୯
ବିଭେଦୀକରଣ ନୀତି ଅନ୍ୱେଷଣ
ଜନମତ ବିଭାଜିତ
ପ୍ରଜାଙ୍କ ମଧରେ ସ୍ୱାର୍ଥ ସାଧନର
ପ୍ରବୃତ୍ତି ହେଲ ଜାଗ୍ରତ । ୫୦
ନାନା ସୁଖଭୋଗ ମଧ୍ୟେ ଥାଇ ମଧ୍ୟ
ଯୁଗଧର୍ମ ପ୍ରଭାବରେ
ବ୍ୟକ୍ତି ଚରିତ୍ରରେ ଦ୍ୱନ୍ଦ ଦେଖା ଦେଲ
ବ୍ୟାପିଗଲ ଘରେ ଘରେ । ୫୧

ମନୁଷ୍ୟ ମଧ୍ୟରେ ରହିଥିଲା ଯେଉଁ
ସ୍ୱାର୍ଥପରତା ପ୍ରବୃତ୍ତି
ତାହାହିଁ ବୃଦ୍ଧ ଓ ବିଧାର କାରଣ
ଗ୍ରାସକଲା ଶତ୍ରୁ ବୃତ୍ତି । ୫୨

ବେଦରେ ବର୍ଣ୍ଣିତ ବର୍ଣ୍ଣ ଚତୁଷ୍ଟୟ
ଗୁଣକର୍ମ ବିଭାଗରେ
ସୀମିତ ନ ରହି ପରିଣତ ହେଲା
ଜନ୍ମିତ ଜାତି ବାଦରେ । ୫୩

ବଂଶାନୁକ୍ରମିକ ପରିଚୟ ରୂପେ
ଜାତି ପତ୍ରର ପ୍ରାଧାନ୍ୟ
ଗୁଣଧର୍ମ ଚ୍ୟୁତ କର୍ମମାର୍ଗ ହେବା
ହେତୁ ସମସ୍ୟା ଉତ୍ପନ୍ନ । ୫୪

ଗୁଣ ଧର୍ମ ହାନ ହେତୁ ଅନ୍ୟ ବୃତ୍ତି
ଗ୍ରହଣେ ଶାଙ୍କର୍ଯ୍ୟ ଦୋଷ
ଦାସତ୍ୱ ପ୍ରଥାର ଉଦ୍ଭବ ହୋଇଲା
ଯାହା କଳଙ୍କ ସର୍ବସ୍ୱ । ୫୫

ତେଣୁ ସାମାଜିକ ସନ୍ତୁଳନ ପୃଷ୍ଟି
ହୋଇ ସମାଜ ଉଚ୍ଛନ୍ନ
ଦ୍ୟୁତକ୍ରୀଡା ଜଣା ହାରଲେ ଦାସତ୍ୱ
ସ୍ୱୀକୃତର ନିରୂପଣ । ୫୬

ଏମନ୍ତ ସାମନ୍ତ- ବାଦୀ ଚନ୍ତା ଯୋଗୁ
ମାନବକ ମୂଲ୍ୟ ବୋଧ
ହୀନଘଟି ସୃଷ୍ଟି ହେଲା ସମାଜରେ
ଭିନ୍ନତା ପ୍ରଚୁର ବୋଧ । ୫୭

ଦାନ-ଧର୍ମ-ଦୟା- ଉଦାରତା ଆଦି
ଦଇବୀ ସମ୍ପଦମାନ
ଗର୍ବ-ଦର୍ପ-ଅସୂ- ୟା, ନର୍ଦୟାଆଦି
ଆସୁରୀ ସମ୍ପଦ ଜାଣ । ୫୮

ଦେବଗୁଣ ଆଉ ଆସୁରୀକ ଗୁଣ
ଜନ୍ମ ଚକ୍ରର ରହସ୍ୟ
ଆନୁସଙ୍ଗିକ ଏ ପରିବେଶ ହେତୁ
ମଣିଷ ମନରେ ବାସ । ୫୯

ଗର୍ବ ଅହଂକାର ଆଦି ଅବଗୁଣ
ମଣିଷକୁ ଗ୍ରାସକଲା
କୁସଙ୍ଗ ହେତୁରୁ ନିର୍ଦ୍ଦୟତାରେ ତା
କ୍ରମେ ପରିଣତ ହେଲା । ୬୦

ତପୋବନ ଥିଲା ମଣିଷ ମନକୁ
ଶୁଦ୍ଧ ସଂସ୍କାର କରଇ
ମାତ୍ର ଏ ବେଳକୁ ତାହାର ପ୍ରଭାବ
ଯାଇଛି ନିଉନ ହୋଇ । ୬୧

ଦୁରାତ୍ମା ମାନଙ୍କ ଅତ୍ୟାଚାର ହେତୁ
ତପୋବନର ପ୍ରଭାବ
ସଙ୍କୁଚିତ ହୋଇ କ୍ରମେ କ୍ରମେ ତାହା
ହୋଇଗଲାଣି ନଷ୍ଟ ଭ । ୬୨

ଯୁଗ ପ୍ରଭାବରୁ ଅକ୍ରମ ପର୍ଯ୍ୟାୟେ
ଅଧିକାଂଶ ବ୍ୟକ୍ତି ନିଜ
ମଧ୍ୟେ ଦ୍ୱିଧାଗ୍ରସ୍ତ ହୋଇଣ ଥିବାରୁ
କ୍ଲିଷ୍ଟ ମାନବ ସମାଜ । ୬୩

ପ୍ରତ୍ୟେକ ସ୍ତରରେ ସଂଶୟୁ ବ୍ୟକ୍ତିଭ
ସମାଜକୁ ଭାରାକ୍ରାନ୍ତ
କରି ଦେବା ହେତୁ ସଂଶୟାତ୍ମା ମାନେ
ଅଧିକନ୍ତୁ ଜାଗରିତ । ୬୪

କ୍ଷମତାଧାରୀ ଏ କ୍ଷମତା ବଳରେ
କରି ଧନ ଆହରଣ
ନିଜର ଅନ୍ୟାୟ ଅନୀତି କାର୍ଯ୍ୟର
କରୁଛନ୍ତି ଜୟଗାନ । ୬୫

କାଳର ଇଙ୍ଗିତେ ସଜ୍ଜନ ମାନଙ୍କ
ଚିନ୍ତା ଚେତନା ଉପେକ୍ଷା
କରି ଅନ୍ୟ ପକ୍ଷେ ଅବହେଳିତଙ୍କ
ଦେଖିଲେ ଶୋଷଣ-ଦୀକ୍ଷା । ୬୬
ଶାସନ ପଦ୍ଧତି ଔଧତ୍ୟରେ ପୂର୍ଣ୍ଣ
ହୋଇ ପୀଡ଼ା ପରାୟଣ
ଦୌରାତ୍ମ୍ୟର ହେତୁ ମମତା, ମାଧୁର୍ଯ୍ୟ
ହୋଇଛି ଅବଲୁଣ୍ଠନ । ୬୭
ନାରୀଏ ଲୁଣ୍ଠିତ ଲାଞ୍ଛିତ, ବିଳାସ
ସାମଗ୍ରୀ ହୋଇଅଛନ୍ତି
ଯୁବଶକ୍ତି ଅସଂ- ଯତ ହୋଇ ନିଜ
ମାର୍ଗ ଭୁଲି ଯାଇଛନ୍ତି । ୬୮
ହିଂସା ଓ କପଟ ଅବାରିତ ପଥ
ବିସ୍ତାର କରି ଦେଇଛି
ବ୍ୟକ୍ତିର ଚରିତ୍ର ଆତୁର, ବେଭର
କୁଟିଳ ହୋଇ ଯାଇଛି । ୬୯
ବ୍ୟବହାର ଅବା ବାହ୍ୟ ଆଚରଣୁ
ଅନ୍ତର୍ନିହିତ ଉଦ୍ଦେଶ୍ୟ
ଦୁର୍ବୋଧ୍ୟ ହୋଇଛି ଏମନ୍ତ ଭାବରେ
ସତ୍ୟ ନ ହୁଏ ପ୍ରକାଶ । ୭୦
ଯେଉଁ ଲୋକମାନେ ତପସ୍ୟାରେ ରତ
ଉଦ୍ଦେଶ୍ୟ ତାହାଙ୍କ ଭିନ୍ନ
ଲୋକ କଲ୍ୟାଣୀୟ କାର୍ଯ୍ୟରେ ନ ହୋଇ
କରେ ତା ସ୍ୱାର୍ଥ ସାଧନ । ୭୧
ବିଦ୍ୟାର୍ଥୀ, ଶିକ୍ଷକ କରୁଛନ୍ତି ଯେଉଁ
ଅଧ୍ୟୟନ, ଅଧ୍ୟାପନ
ଶୁଭଙ୍କର ସୃଷ୍ଟି ଉଦ୍ଦେଶ୍ୟ ନ ହୋଇ
ଧ୍ୱଂସ ମୁଖେ ଧାବମାନ । ୭୨

ଆପାତତଃ ଯେଉଁ    ମାନେ ଚଳୁଛନ୍ତି
ବଇଦିକ ଆଗ୍ରହରେ
ସେଥିପ୍ରତି ଶ୍ରଦ୍ଧା    ତଳେ ମାତ୍ର ନାହିଁ
କରନ୍ତି ବାହ୍ୟାଡମ୍ବରେ । ୭୩

ଅନ୍ତର୍ଯାମୀ ଛଡ଼ା    ଅନ୍ୟ କେଉଁ ବ୍ୟକ୍ତି
ଚରିତ୍ର କଳିବା କଷ୍ଟ
ଆତ୍ମ ଶ୍ଳାଘା, ପ୍ରବ-    ଞ୍ଚନାରେ ସମାଜ
ବିପଥଗାମୀ ଓ କ୍ଳିଷ୍ଟ । ୭୪

କପଟତା ସବୁ    ଆଜେ ଅବାରିତ
ଭାବେ ପନ୍ତ ବିସ୍ତାରିତ
ସତ୍ୟ ସଙ୍କୁଚିତ    ହୋଇ ମିଛ, ମାୟା
ବହୁଭାବେ ପ୍ରଚରିତ । ୭୫

ବୈଦିକ ଭାରତେ    ଯେ ବେଦ ବିଧାନ
ସତ୍ୟ    ଧର୍ମାନୁଶାସନ
ପ୍ରଚଳିତ ଥିଲା    ସଂସ୍କାର ଅଭାବୁ
ଆଜ ସେ ହୋଇଛି ମ୍ଳାନ । ୭୬

ସ୍ୱଧର୍ମ ସର୍ବଦା    ବ୍ୟକ୍ତି ଓ ସମାଜ
ଅଭ୍ୟୁଦୟେ ପ୍ରୟୋଜନ
ସାର୍ବଜନୀନ ଏ    ଆଚରଣ ବିଧି
ହୋଇଅଛି ଶ୍ରଦ୍ଧାହୀନ । ୭୭

ଦେବ-ଋଷି-ପିତୃ-    ଅତିଥି-ଇତର
ପ୍ରାଣୀ ଜଗତ ତର୍ପିତ
ତଥା ଉପାସିତ    ହେବା ଦୃଷ୍ଟିଭଙ୍ଗୀ
ସମାଜରୁ ଅନ୍ତର୍ହିତ । ୭୮

କାମ, କ୍ରୋଧ, ଲୋଭ,    ମୋହ, ମାତ୍ସର୍ଯ୍ୟାଦି
ଗ୍ରାସିଛି ସବୁରି ମନ
ଅନ୍ୟ ପକ୍ଷେ ସତ୍ୟ,    ଶାନ୍ତି, ଦୟା, କ୍ଷମା
ସଦଗୁଣ ମୂଲ୍ୟହୀନ । ୭୯

ଅମୃତ ଓ ଭ୍ରଷ୍ଟା- ଙ୍କର ସୀମାଖାତ
ଆଜି ବୃଦ୍ଧି ହୋଇଅଛି
ସମାଜର ପ୍ରତି ସ୍ତରକୁ ଆକ୍ରାନ୍ତ
କରି ପ୍ରାପ୍ତ ରଖିଅଛି । ୮୦
ମଣିଷ ମନରେ ଜାଗ୍ରତ ହୋଇଛି
ନର-ରାକ୍ଷସ ପ୍ରବୃତ୍ତି
ଅନ୍ତର୍ଯ୍ୟାମି ବିନା ଦେବ-ଦୈତ୍ୟ-ନର
ପ୍ରତିହତେ ନାହିଁ ଶକ୍ତି । ୮୧
ଦେବତା ମନ୍ତ୍ରୀଙ୍କ ଉପ୍ରେକ ଗୌରବ
ପ୍ରକୃତର ଗତି ସ୍ତବ୍ଧ
କଲ୍ୟାଣକର ଯେ ସତ୍ ଉପଦେଶ
ହୋଇଛି ମୂଲ୍ୟବୋଧ । ୮୨
କୌଣସି ଖଣ୍ଡିତ ପ୍ରଚେଷ୍ଟା ଏ ବ୍ୟାଧି
· ନିରାକରଣେ ଅକ୍ଷମ
ଏଣୁ ପରିପୂର୍ଣ୍ଣ ଚେତନା ଶକତି
ଜଗତ କଲ୍ୟାଣେ କାମ୍ୟ । ୮୩
ତାନ୍ତ୍ରିକାରୀ ଏହି ସ୍ୱରୂପ ସବୁହିଁ
ଅଭାବନୀୟ ଘଟିଛି
ପୃଥିବୀକୁ ରକ୍ଷା କରଣେ ସକ୍ଷମ
କେବଳ ଆଶ୍ଚର୍ଯ୍ୟ ଗୁରୁ । ୮୪
ଏ ଭାରତ ବର୍ଷ ଯୁଗେ ଯୁଗେ ଅଟେ
ଦେବଭୂମି, ବେଦଭୂମି
ଯୁଗେ ଯୁଗେ ଦିବ୍ୟ ସତ୍ତ୍ୱ ଯେଉଁ ପ୍ରଭୁ
ଆସନ୍ତି ସ୍ୱଦେହେ ଜନ୍ମି । ୮୫
ଶାସ୍ତ୍ରରେ କଥିତ ଦେବ ଗଣେ ସଦା
ଅଟନ୍ତି ଉତ୍ସବ ପ୍ରିୟ
ଆପଣାର ସୁଖ ସନ୍ତୋଷେ ନମନ୍ତି
ଅପରେ ମଣନ୍ତି ହେୟ । ୮୬

ଏହାର ସୁଯୋଗ ନେଇ ଦୈତ୍ୟଗଣେ
ଆସୁରିକ ଶକ୍ତିବଳେ
ଦେଶ ମାତୃକାକୁ ଆକ୍ରାନ୍ତ କରନ୍ତି
ଦେବ ଶକ୍ତି ଜିଣି ବଳେ । ୮୭

ସୁରାସୁର ସଂଗ୍ରା- ମର ଅନ୍ତ ନାହିଁ
ଅନ୍ତଃଦ୍ୱନ୍ଦ ଅବସାନ
ଫଳରେ ଏ ପୂର୍ଣ୍ୟ ଭୂମିରେ ସଂହତି
ସୂତ୍ର ହୋଇଯାଏ କ୍ଷୀଣ । ୮୮

ଦେବ ସଂସ୍କୃତିର ସୌକୁମାର୍ଯ୍ୟପରେ
ବାରମ୍ବାର ପଦାଘାତ
କରି ଆସୁରିକ ଶକ୍ତି ଉଦ୍‌ଥିତ
ହୋଇ ବିପନ୍ନ ଜଗତ । ୮୯

ଋଷି, ତପୋବନ, ଯଜ୍ଞ, ତପୋସ୍ଥାନ
ଦେବଳାୟ, ପରିବେଶ
ଭୂମି, କନ୍ୟା ଆଦି ଲୁଣ୍ଠିତ ହୋଇଣ
ସମାଜେ ଶାନ୍ତି ବିନାଶ । ୯୦

ଏମନ୍ତ ସମୟେ ମଗଧ ରାଜାଙ୍କ
କୂଟ କପଟ ଆଶ୍ରର
ଏ ଆର୍ଯ୍ୟାବର୍ତ୍ତକୁ ସ୍ତବ୍ଧ କରି ଦେଇ
ଯୁଦ୍ଧାନଳେ ଘୋରଖୋର । ୯୧

ସିନ୍ଧୁନଦୀ ଆର ପାଖର କୌଣସେ
ଆର୍ଯ୍ୟାବର୍ତ୍ତରେ ମ୍ଲେଚ୍ଛପ
ଦୃଷ୍ଟି ପକାଇଣ ଯୁଦ୍ଧ ବିଗ୍ରହରେ
କରୁଛନ୍ତି ଧର୍ମଲୋପ । ୯୨

ଦେଶାଭ୍ୟନ୍ତରରେ ସଂହତି ବିପନ୍ନ
ହେଉଅଛି ନିତ୍ୟପ୍ରତି
ପ୍ରଜାବାସୀ ମାନେ ଶୁଷ୍କ ନିରର୍ଥକ
ବାଦ ବିସମ୍ବାଦେ ମାତି । ୯୩

ଜୀବନ ଦର୍ଶନ ଅନ୍ତଃ ସାର ଶୂନ୍ୟ
ଦେଶବାସୀ ଏ ସଂତ୍ରସ୍ତ
ପାଷାଣ୍ଡ, ନାସ୍ତିକ ମତ ପ୍ରସାରିତ
ହୋଇ ଧର୍ମ ସଙ୍କୁଚିତ । ୯୪

ସଂସ୍କୃତି, ଚେତନା ପ୍ରତ୍ୟେକ ସ୍ତରକୁ
କରିଅଛି ଆଘ୍ରାତ
ପଦେ ପଦେ ସଦା- ଚାର ଭୂଲୁଣ୍ଠିତ
ବିଘ୍ନିତ ଓ ବିଡମ୍ବିତ । ୯୫

ରାଜ୍ୟରାଜ୍ୟ ମଧ୍ୟେ ଶତ୍ରୁଭାବ ବୃଦ୍ଧି
ହୋଇ ଶାନ୍ତି ବିଖଣ୍ଡିତ
ସାରା ଆର୍ଯ୍ୟାବର୍ତ୍ତ ଦୁର୍ଦ୍ଦିନରେ ପଡ଼ି
ହେଉଅଛି ହନ୍ତସନ୍ତ । ୯୬

ସୌରିରୂପୀ ଜରା- ସନ୍ଧ ଜମ୍ବୁଦ୍ୱୀପ
କବଳିତ ଇଚ୍ଛାକରି
ଆର୍ଯ୍ୟ ଜନପଦ ଗୁଡ଼ିକ ମଧ୍ୟରେ
ଲଗାଇ ଦେଇଛି କଳି । ୯୭

ଜନସାଧାରଣ ମଧ୍ୟରେ ବିଭେଦ
କୌଶଳେ ସୃଷ୍ଟିକରଣ
ଆଭ୍ୟନ୍ତର ଶାନ୍ତି ବିପନ୍ନ ସହିତ
ରାଜଶକ୍ତି ଛିନ୍ନଭିନ୍ନ । ୯୮

ଜରାସନ୍ଧ ପ୍ରରେ- ଚନାରେ ପଣ୍ଡିଶ
କନ୍ୟାପତି କଂସାସୁର
ପିତା ଉଗ୍ରସେନେ କୌଶଳେ ହଟାଇ
ହୋଇଗଲା ରାଜ୍ୟେଶ୍ୱର । ୯୯
ଯାଦବ ବୀରଙ୍କୁ ହତମାନ୍ୟ କରି
ସିଂହାସନେ ଅଧିଷ୍ଠିତ
ଦେଶୀୟ ସୈନ୍ୟଙ୍କୁ ନିରକୃତ କରି
ମାଗଧୀ ସେନା ନିଯୁକ୍ତ । ୧୦୦

ମଗଧର ଅଶ୍ୱା- ରୋହୀ, ଗଜାରୋହୀ
ପଦାତିକ ସୈନ୍ୟ ବଳ
କଂସେ ଦେହରକ୍ଷୀ ପଦରେ ନିଯୁକ୍ତ
ବଡ଼ବଡ଼ ଯୋଦ୍ଧା ମଲ୍ଲ । ୧୦୧

ଯାଦବ ମାନଙ୍କୁ ଭୟଭୀତ କରି
ଦବାଇ ରଖିବା ପାଇଁ
ସନ୍ତ୍ରାସବାଦକୁ ପ୍ରୋତ୍ସାହିତ କରେ
ହତ୍ୟା, ଧର୍ଷଣ ଘଟାଇ । ୧୦୨

ଯାଦବ ବଂଶରେ ଜନ୍ମି ଯାଦବଙ୍କୁ
କରନ୍ତି ତିଳେ ବିଶ୍ୱାସ
ଆତ୍ମୀୟ ସ୍ୱଜନେ ବଇରୀ ଚିହ୍ନଣ
କରେ ସନ୍ଦେହ ପ୍ରକାଶ । ୧୦୩

କ୍ଷମତା ଲୋଲୁପୀ ସୌରଶୂର ରାଜା
ପକ୍ଷେ ଏହା ସମ୍ଭାବତ
ବିପରୀତ ବୁଦ୍ଧି ଉଦ୍ରେକ ହେବାରୁ
ଅହିତକୁ ମଣେ ହିତ । ୧୦୪

ବହୁତ ଯାଦବ ମୁଖ୍ୟ କଂସଭୟେ
ଅନ୍ୟ ରାଜ୍ୟକୁ ପଳାଇ
ପର ରାଷ୍ଟ୍ରେ ରହି ଷଡ଼ଯନ୍ତ୍ରେ ଲିପ୍ତ
କଂସର ନିଧନ ପାଇଁ । ୧୦୫

ଅନ୍ୟ ଯେଉଁମାନେ ମାତୃଭୂମି ପ୍ରତି
ମମତା ଛାଡ଼ି ନ ପାରି
ମଥୁରା ନଗରେ ରହି ଯାଇଛନ୍ତି
ଜୀବନ ବିପନ୍ନ କରି । ୧୦୬

ଦେବକୀ ନନ୍ଦନ ଯାଦବ ମାନଙ୍କ
ତ୍ରାଣକର୍ତ୍ତା ହେବେ ଶୁଣି
ଭିଟାମାଟି ଛାଡ଼ି ନ ଯାଇ ସେମାନେ
ରହିଛନ୍ତି ଦିନଗଣି । ୧୦୭

ଆଶା, ବିଶ୍ୱାସର ଭରସା ଆକାଶେ
ବିଦ୍ୟୁତ୍‌ପ୍ରଭା ଝଲସିଲା
ଆତୁର, କାତର, ଅନ୍ତର ପ୍ରଦେଶେ
ଆଶାବାରି ବରଷିଲା । ୧୦୮

ଶ୍ରଦ୍ଧା ଓ ବିଶ୍ୱାସ ମାଣିକ ଶିଳାରେ
ଦେବକୀ ଓ ବସୁଦେବ
ବସାଇ ସଶ୍ରଦ୍ଧେ ସୁଂ ପଡ଼ି ଦୁଃଖ
ମଣିଲେ ସୁଖ ସମ୍ଭବ । ୧୦୯

ବନ୍ଧୁ ଦୁଃଖ କଷ୍ଟ ସହିଣ ସେମାନେ
ଅନାଇ ଅଛନ୍ତି ପଥ
ମଥୁରାକୁ ବିଜେ କରି ଦୁଇଭାଇ
ପୂର୍ଣ୍ଣ କର ମନୋରଥ । ୧୧୦

ନିଜର ଜୀବନ ରକ୍ଷା ପାଇଁ କଂସ
ମନୁଷ୍ୟ ସମାଜ ହତ
କରିବାକୁ କଲେ କୁଣ୍ଠିତ ନୁହଁଇ
ନରାସୁର ତା ଚରିତ । ୧୧୧

ଆପଣାର ଦୃପ୍ତ ବାହୁବଳେ ମିଥ୍ୟା
କରିବାକୁ ଭବିଷ୍ୟତ
ନିବେଧିଛି ଛିଦ୍ର ଥମାନ ଦୃଢ଼େ
ଜଗାଇ ସୈନ୍ୟ ସାମନ୍ତ । ୧୧୨

କଂସାସୁର ଦୃପ୍ତ ପଦାଘାତେ ପୃଥ୍ୱୀ
ଦେଖି ଅନ୍ତର ବିଦୀର୍ଣ୍ଣ
ମେରୁ ଯାଏ ପୃଥ୍ୱୀ ବିଜିତ ହୋଇଛି
ଦେବଗଣେ ଗୃହଶୂନ୍ୟ । ୧୧୩

ଧର୍ମ ସଙ୍କୁଚିତ ସତ୍ୟ ନିରାକୃତ
ଜପ ଯଜ୍ଞାଦି ବର୍ଜ୍ଜିତ
ଦିଗ୍‌ବଳୟ ଥରି ଉଠୁଛି ଭୟରେ
ମେରୁଦଣ୍ଡ ପ୍ରକମ୍ପିତ । ୧୧୪

ଛନ୍ଦମୟୀ ଦିବ୍ୟ ପ୍ରକୃତିର ଲସ୍ୟ
ହୋଇଅଛି ବିଛୁରିତ
ସଙ୍କୀର୍ଣ୍ଣ ଅଶାନ୍ତ ଅନୁଦ୍ଧ୍ବକପ୍ରଭ
ଊର୍ଦ୍ଧ୍ବ ଶିଖା ବିରହିତ । ୧୧୫

କୁସୁମ ସ୍ତବକ ପ୍ରସ୍ଫୁଟିତ ଛନ୍ଦେ
ବାୟୁ ସୁଖ ସ୍ପର୍ଶହୀନ
ପୃଥିବୀ ତା ଗନ୍ଧ ହରାଇ ବସିଛି
ଚନ୍ଦ୍ର ଶୀତଳ କିରଣ । ୧୧୬

ପରମାତ୍ମା ଅଂଶେ ଏ ଜୀବଜଗତେ
ଶ୍ରେଷ୍ଠ ଯେ ମନୁଷ୍ୟ ଗଣ
ଆପଣଙ୍କ ସମ୍ବେ- ଦନ ତତ୍ତ୍ୱାଂଶରେ
ଭୋଗୁ ଅଛନ୍ତି କଷଣ । ୧୧୭

ଦେବକୀ ଜନନୀ ପିତା ବସୁଦେବ
ଭୋଗନ୍ତି ଦୁଃଖ ଅଶେଷ
ଲୋତକ ବର୍ଷଣ କରି ବସିଛନ୍ତି
ରଖି ପ୍ରଭୁ ପାଦେ ଆଶ । ୧୧୮

ଶୋଭାମୟୀ ଏହି ସୁନ୍ଦର ପୃଥିବୀ
ଦିଶୁଅଛି ବିକଳାଙ୍ଗ
ଦିବ୍ୟ ସତ୍ତ୍ୱାଂଶକୁ ନିର୍ଜିତ କରିଣ
ବହେ ଆସୁର ତରଙ୍ଗ । ୧୧୯

ରାଜସିକ, ତାମ- ସିକର ଆସ୍ପର୍ଦ୍ଧା
ବିଶେଷ ଯାଇଛି ବଢ଼ି
ପ୍ରାଣ ବିକଳରେ ଆତୁର ମାନବେ
ରହିଛନ୍ତି କର ଯୋଡ଼ି । ୧୨୦

ବାହ୍ୟ, ଅନ୍ତଃ ପ୍ରକୃ- ତି ଅସ୍ୱାଭାବିକ ନୀୟୁ
ସନ୍ତୁଳନ ପ୍ରତିଦିନ
ମହାପ୍ରକୃତି ସ୍ୱ- ଭାବ ସାମରଥ
ହରାଇ ଦିଶେ ବିବର୍ଣ୍ଣ । ୧୨୧

ଏ ଅପ କୃଷ୍ଟି ରୁ ଆଜ କେ ବିଶ୍ୱକୁ
ରକ୍ଷା କରିବ ହେ ହରି
ଅଶ୍ରୁମୁଖୀ ମହୀ ମାଆ ମୁଖ ଦେଖି
କେ ରହିବ ଦେହ ଧରି ? ୧୨୨

ସର୍ବେ ଏକ ମୁଖ ହୋଇ ଡାକୁନ୍ତି
ରଖରଖ ନାରାୟଣ
ଜଗତ ପାଳନ କରତା ଆପଣ
କର ଦୁଃଖୁ ପରିତ୍ରାଣ । ୧୨୩

ଯେଉଁ ଧରଣୀକୁ କାଳକାଳ ଧରି
କରିଅଛ ଲୀଳାଭୂମି
ସେହି ତପସ୍ୱିନୀ ପ୍ରାଣ ପ୍ରିୟତମା
ଦୁଃଖ ହର ଅନ୍ତଃର୍ଯ୍ୟାମୀ । ୧୨୪

ବିଶ୍ୱହିତ ପାଇଁ ମଥୁରାପୁରକୁ
ଯାତ୍ରା କରନ୍ତୁ ଗୋସାଇଁ
ଦେଖନ୍ତୁ ଆହତ ଜଗତର ଦୁଃଖ
ଦୟାମୟତାକୁ ଚାହିଁ । ୧୨୫

ସ୍ୱପ୍ରତିଜ୍ଞା ରକ୍ଷା କର ଅକିଞ୍ଚନ
ଧରାକୁ କର ସୁଧନ୍ୟା
ମଧୁପୁରବାସୀ କାତରେ ପଡ଼ିଣ
କରୁଅଛନ୍ତି ପ୍ରାର୍ଥନା । ୧୨୬

ଆହେ ସତ୍ୟସନ୍ଧ ପ୍ରତିଜ୍ଞା ପୁରୁଷ
କରନ୍ତୁ ବାକ୍ୟ ସ୍ମରଣ
"ଦୁର୍ଜନ ଦଳନ ସଜ୍ଜନ ପାଳନେ
ଧରାଧାମେ ଅବତୀର୍ଣ୍ଣ" । ୧୨୭

ଅକ୍ରୂରଙ୍କ ଠାରୁ ନଷ୍ଟା କଥା ଶୁଣି
କୃଷ୍ଣ ହେଲେ ବିହ୍ୱଳିତ
ପିତାମାତା ଦୁଃଖ ସ୍ମରଣ କରିଣ
ଲୋଚନ ଲୋତକାପ୍ଳୁତ । ୧୨୮

ମଧୁପୁରେ ଯିବା ପାଇଁ ଦୁଇଭାଇ
ବଳାଇଲେ ନିଜ ଚିତ୍ତ
ନେତ୍ରରେ ଇସରା ଦେଇ ନେତ୍ରାନନ୍ଦ
ଅକ୍ରୂରଙ୍କୁ କଲେ ତୃପ୍ତ । ୧୨୯

"କଂସ ନିକଟରେ ରାମ କୃଷ୍ଣଙ୍କର
ଲୋକୋତ୍ତର ବାର୍ତ୍ତାମାନ
ପହଞ୍ଚୁ ଥିବାରୁ ମନେ ମନେ ଦୁଷ୍ଟ
ହେଉଥିଲା କମ୍ପମାନ । ୧୩୦

ସାରା ଭାରତରେ କଂସ ବିଫଳତା
ହୋଇବାରୁ ପ୍ରସାରିତ
ଲୋକଙ୍କ ମନରେ ଧାରଣା ଜନ୍ମିଲା
କୃଷ୍ଣ ମହା ବଳବନ୍ତ । ୧୩୧

ଗୋପନରେ ତାଙ୍କୁ ହତ୍ୟା କରିବାକୁ
କଲା ଯେତେ ଗୁପ୍ତ ଯୁଦ୍ଧ
ସେ ସବୁ ଯୁଦ୍ଧରେ ପରାଜିତ ହୋଇ
ବଢିଗଲା ଅବସାଦ । ୧୩୨

ତଦ୍ଦ୍ୱାରା କଂସର ଶକ୍ତି ଖର୍ବ ହେବା
ହୋଇଗଲା ପ୍ରମାଣିତ
ରାମକୃଷ୍ଣ ଦୁଇ ଭାଇଙ୍କ ଉପରେ
ଦୃଢ଼ ବିଶ୍ୱାସ ସ୍ଥାପିତ । ୧୩୩

ମଥୁରା ନଗରେ କଂସ ବିପକ୍ଷରେ
ନଗରବାସୀ ଏକତ୍ରିତ
ହୋଇଣ ଯାବତ ଅତ୍ୟାଚାର ମାନ
କଲେ କୂଟେ ପ୍ରତିହତ । ୧୩୪

ରାମକୃଷ୍ଣ ଆଗ- ମନକୁ ଆଗ୍ରହେ
ରହିଲେ ସକଳେ ଚାହିଁ
କଂସ ରଥେ ବସି ମଥୁରା ବିଜୟ
କରିବେ ସେ ଦୁଇଭାଇ । ୧୩୫

ଅପର ଦଳରେ ଗୋପପୁରେ ରହି
ଶାବୁଛନ୍ତି ରାମକୃଷ୍ଣ
ଧ୍ରୁପ୍ୟାଯୁଦ୍ଧ ଠାରୁ କାପ୍ୟାଯୁଦ୍ଧ ବରଂ
କଂସ ସଙ୍ଗେ ପ୍ରୟୋଜନ । ୧୩୬

ଅଧିକ ସମୟ ଲୁକ୍‌କାୟିତ ହୋଇ
ରହିଲେ କାର୍ଯ୍ୟ ବିଫଳ
ଆମ୍ଭ ପ୍ରକାଶରେ ଏ ଉତ୍ତମ ବେଳ
ହେଉ ମଥୁରା ମଙ୍ଗଳ । ୧୩୭

ଯାଦବେ ଯେପରି କଂସ ବିପକ୍ଷରେ
ହେଉଛନ୍ତି ସଙ୍ଗଠିତ
କଂସକୁ ସୁରକ୍ଷା ଦେବା ପାଇଁ ଜରା
ବଢ଼ାଇ ପାରେ ତା ହାତ । ୧୩୮
ଯାଦବ ବିପକ୍ଷେ ସାମରିକ କାର୍ଯ୍ୟ
କରିବା ଆଗରୁ କଂସ
ନିଧନ କରିବା ଉଚିତ ହୋଇବ
ବିଚାରିଲେ ନନ୍ଦ ଶିଷ୍ୟ । ୧୩୯
କୃଷ୍ଣଚନ୍ଦ୍ର ମନେ କଂସ ନିମନ୍ତ୍ରଣ
ସ୍ୱୀକାର କରିଲେ କୃଷ୍ଣ
ଦୃଢପଣେ କାର୍ଯ୍ୟ ସିଦ୍ଧି ହେଲା ଜାଣି
ଅକ୍ରୂର ଆନନ୍ଦ ମନ । ୧୪୦

ରାତ୍ରର ଦ୍ୱିତୀୟ ପ୍ରହର ରଜନୀ
ନିଶା କରୁଛି ଗର୍ଜନ
ଅକ୍ରୂର ଶାନ୍ତିରେ ଶୟନ କରିଲେ
ରାଧାପୁରେ ବଜେ କୃଷ୍ଣ । ୧୪୧
ଏକଶତ ବୟାଳ ଛନ୍ଦ ପଦେ ଅଧ୍ୟା
ଏଠାରେ ହୋଇଲା ଶେଷ
ରାମକୃଷ୍ଣ ଦୁଇ ଭାଇଙ୍କ ଚରଣ
ତଳେ ପଡେ ବୃନ୍ଦାବନ । ୧୪୨

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଅକ୍ରୂର ଶ୍ରୀକୃଷ୍ଣ କଥୋପକଥନେ
ନାମ ସପ୍ତଚତ୍ୱାରିଂଶ ଅଧ୍ୟାୟ ସମାପ୍ତଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

## ବୋଲି - (୪)

ଥ କା ମ ନ
ଚକାଡୋଳା କର ଦର୍ଶନ
ଚକାବନ୍ଦ ତଳେ ଚକାସନ କରି
ଥକାମାର ଦଣ୍ଡେ ବସିଣ ॥ ଘୋଷା ॥

ଗୋପାଳ ଭକ୍ତଙ୍କ ବହ୍ମଳତ ଭାବ
ଦେଖିଣ ଶ୍ରୀକ୍ଷେତ୍ର ପାଇଁ
ଭକ୍ତ ଗୋସେଇଁଙ୍କ କମଣ୍ଡଳୁ ଆଣି
ଦୁଧ କଞ୍ଜି ଢ଼ାଳି ଦେଇ । ୧

କହିଲେ ଗୋସେଇଁ ବିଳମ୍ବ ନ କରି
ଦିଅନ୍ତୁ ଏତିକି ପାଇ
ଗୋପାଳ ଘରର ପିଲା ଅଟୁ ଆମ୍ଭେ
ଗୋପାଳ ବୃତ୍ତି ଅଟଇ । ୨

ତୁମ୍ଭେ ଉପବାସ ଜାଣି ଏ ଗୋରସ
ଆଣିଛୁ ତୁମ୍ଭର ପାଇଁ
ମହାପ୍ରସାଦକୁ ହତାଦର କରି
ଗ୍ଲେକେ ବସିଛ କିମ୍ପାଇଁ ? ୩

ଶ୍ରୀକ୍ଷେତ୍ରରେ ଭୋଗ ଲାଗିବା ପ୍ରସାଦ
ମହାପ୍ରସାଦ ଅଟଇ
ଜଗନ୍ନାଥଙ୍କୁ ଯେ ଦ୍ରବ୍ୟ ଲାଗି ହୁଏ
ସ୍ୱକରେ ଭୁଞ୍ଜନ୍ତି ଖାଇଁ । ୪

ନୈବେଦ୍ୟ ସମର୍ପେ ଚକ୍ଷୁରେ ଦର୍ଶନ
ସାଅନ୍ତି ଶ୍ରୀ ନାରାୟଣ
ତେବେ ଉପଲବ୍ଧ ହୁଅଇ ପଣ୍ଡାଙ୍କୁ
ଠାକୁରେ କଲେ ଭଜନ । ୫
ସେଅଁଙ୍କ ଭୋଜନ ନିମନ୍ତେ ପ୍ରସାଦ
ଦେଉଳେ ହୁଏ ପାଚନ
ଶୁଦ୍ଧ ଅଶୁଦ୍ଧର ସନ୍ଦେହ ହୋଇଲେ
ଦେଖାଦିଏ ଆସି ଶ୍ୱାନ । ୬
ଏହି କାରଣରୁ ଦେଉଳ ଦେହରେ
ଶ୍ୱାନ ମୂରତି ଖୋଦନ
ଦୃଶାସ୍ପର୍ଶ ଦୋଷ ଜାଣିବା ନିମନ୍ତେ
ଜଗିଅଛି ରାତ୍ରଦିନ । ୭



# ଅଷ୍ଟ ଚତ୍ୱାରିଂଶ ଅଧ୍ୟାୟ

## ଶ୍ରୀରାଧାଙ୍କ ଠାରୁ ମେଲାଣି

( ରାଗ - ବଙ୍ଗଳାଶ୍ରୀ )

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ହୋ ରସିକ ଜନ
ଶ୍ରୀରାଧାଙ୍କ ପୁରେ ପ୍ରବେଶି ଶ୍ରୀକୃଷ୍ଣ
କହିଲେ ପ୍ରେୟସୀ ଶୁଣ । ୧
ତୁମ୍ଭେ ଆମ୍ଭେ ଦୁଇ ଏକ ବ୍ରହ୍ମ ହୋଇ
ଜନ୍ମିଲେ ଦୁଇ ଭାଗରେ
ଭାଗକେ ଶ୍ରୀମତୀ ଭାଗେକ ଶ୍ରୀପତି
ହୋଇ ଜାତ ମର୍ତ୍ତ୍ୟ ପୁରେ । ୨

ନିର୍ଗୁଣରୁ ଆସି ସଗୁଣ ହୋଇଲେ
ନିତ୍ୟଲୀଳା ଗୋପପୁରେ
ଏବେ ଗୋପଲୀଳା ଶେଷ ହୋଇଗଲା
ଚଳିବ ମଥୁରା ପୁରେ । ୩
ତାକ ଅଛି କଂସ ନ ଗଲେ ମଥୁରା
ପ୍ରଜାଙ୍କୁ ଦେବ କଷଣ
ପ୍ରଜାଙ୍କ ମଙ୍ଗଳ ରାଜ୍ୟ ହିତ ପାଇଁ
ଯିବ ମଥୁରାଭୁବନ । ୪
ଶ୍ରୀରାଧା କହିଲେ ହେ ପରମ ପ୍ରିୟ
ତୁମ୍ଭ ଇଚ୍ଛା ପୂର୍ଣ୍ଣ ହେଉ
ଏ ଦାସୀର ଚିତ୍ତ ପଙ୍କଜ ପଦ୍ମରେ
ଅନୁବର୍ତ୍ତେ ରହିଥାଉ । ୫
ଜୀବ ବ୍ରହ୍ମ ସୂତ୍ରେ ଶ୍ରୀପତି ଶ୍ରୀମତୀ
ସମାନ ହେଲେ କହେଇ
ସାଗର ସଦୃଶ ତୁମ୍ଭେ ହୃଦିଶାଳ
ତରଙ୍ଗ ମାତକ ମୁହିଁ । ୬
ସାଗର ସହିତ ତରଙ୍ଗ ଯେପରି
ହୋଇ ନ ପାରେ ତୁଳନ
ସେହିପରି ତୁମ୍ଭ ପ୍ରେମିକା ହେଲେହେଁ
ତୁମ୍ଭ ସଙ୍ଗେ ନୁହେଁ ସମ । ୭
ସମୁଦ୍ରକୁ ଯେହ୍ନେ ତରଙ୍ଗ ନ ଛାଡ଼େ
ସେପରି ତୁମ୍ଭଙ୍କୁ ମୁହିଁ
ଜୀବବ୍ରହ୍ମ ଖେଳ ସୂତ୍ରେ ନ ଛାଡ଼ଇ
ତୁମ୍ଭେ ମୋ ପରାଣ ସାଇଁ । ୮
ସଙ୍ଗେ ଧରି ଶିରୀ ବୋଲନ୍ତି ଶ୍ରୀହରି
ସାରସ ସୂତ୍ରରେ ରହି
ଘଟେ ଘଟେ ଏହି ସୂତ୍ରେ ଖେଳ ହୁଏ
ତୁମ୍ଭେ ବ୍ରହ୍ମ ଜୀବ ମୁହିଁ । ୯

ଏଣୁ ରାଇ ସଙ୍ଗେ    ରସିକ ଶେଖର
ରହିଥାନ୍ତି ନିରନ୍ତର
ଶବ୍ଦ ଯେଉଁପରି    ଆକାଶ ସହିତ
ରହିଅଛି କରି ଘର । ୧୦
କରମାଳ କରି    ଯେସନେ ନ ଛୁଡେ
ମେରୁ ପର୍ବତ ଶିଖର
ସେପରି କିଶୋରୀ    ହୃଦୟ ଶିଖରେ
ବିରାଜିତ ନିରନ୍ତର । ୧୧
ବୋଲେ ବୃନ୍ଦାସ    ରାଧା କୃଷ୍ଣ ରସ
ସୁଜନେ କର ଗ୍ରହଣ
ଅମୀୟ ଆନନ୍ଦ    ରସ ଝରି ଯାଏ
ଆକଣ୍ଠ କରି ହୋ ପାନ । ୧୨
ରାଧାକୃଷ୍ଣ ପ୍ରେମ    ସ୍ୱକୀୟ ଅଟଇ
ପରକୀୟା ସେ ନୁହଇଁ
ଶ୍ରୀପତି ଶ୍ରୀମତୀ    ପୁରୁଷ ଓ ସ୍ତ୍ରୀ
ଏକ ବ୍ରହ୍ମ ଦୁଇ ହୋଇ । ୧୩
ଯେତେବେଳେ ଭାବ    ମହାଭାବେ ମିଶେ
ତାକୁ କହ ରାଧାଭାବ
ରାଧା ଗୋପୀ ଭାବ    ଜଗତେ ଦୁର୍ଲ୍ଲଭ
ପୂର୍ବ ଭାଗ୍ୟ ଥିଲେ ଲଭ । ୧୪
ରମଣୀଙ୍କ ଗୁରୁ    ଅଟନ୍ତି ଶ୍ରୀମତୀ
ପ୍ରିତି ରସେ ପରିପୂର୍ଣ୍ଣ
ରସବତୀ ଯେବେ    ଗୁରୁ ନ ହୋଇବେ
କେ ପାଇବ କୃଷ୍ଣ ପ୍ରେମ ? ୧୪
କୃଷ୍ଣ ଆହ୍ଲାଦିନୀ    ବ୍ରହ୍ମ ସନାତନୀ
ମୂଳ ପ୍ରକୃତି ରୂପିଣୀ
ସର୍ବତ୍ର ବ୍ୟାପିନୀ    ପ୍ରେମ ପ୍ରଦାୟିନୀ
ଜୟ ଜୟ ରାଧାରାଣୀ । ୧୫

ଶ୍ରୀଶ୍ରୀକୃଷ୍ଣଙ୍କର ମହାଭାବ ରୂପା
କୃଷ୍ଣ ଅ ହ୍ଲାଦିନୀ ଶକ୍ତି
ଆଦ୍ୟ ରସମୟୀ ଆନନ୍ଦ ରୂପିଣୀ
ରସେଶ୍ୱରୀ, ରସବତୀ । ୧୬
ଶ୍ରୀକୃଷ୍ଣ କହିଲେ ଶୁଣ ଗୋ ଶ୍ରୀମତୀ
ଆଶ୍ଚର୍ଯ୍ୟ କହିବା ତଥ୍ୟ
ବସୁଦେବର ମୁଁ ସନ୍ତାନ ଅଟଇ
ନନ୍ଦ ଯଶୋଦା ପାଳିତ । ୧୭
ବଳରାମ ମଧ୍ୟ ଦେବକୀ ତନୟ
ନୁହଁନ୍ତି ରୋହିଣୀ ସୁତ
ରାଜପୁତ୍ର ହୋଇ କଂସ ଡରେ ଆସି
ନନ୍ଦ ଘରେ ହେଲୁ ଗୁପ୍ତ । ୧୮
କଂସ ମୋ ମାଉଳ କ୍ଷମତା ପାଗଳ
ଆମ୍ଭର ନିଧନ ପାଇଁ
କୃତେ ଧନୁଯଜ୍ଞ ଭିଆଇ ଆମ୍ଭଙ୍କୁ
ଡକାଇଛି ଯିବା ପାଇଁ । ୧୯
ଆମ୍ଭଙ୍କୁ ସେଠାକୁ ଡକାଇ ନେଇଣ
ଭାବୁଛି କରିବ ବଧ
ମାତ୍ର ମୁଁ ଜାଣିଛି ମୋହ ହସ୍ତେ କଂସ
ଜୀବନେ ହୋଇବ ବଧ । ୨୦
ଗୁରୁ ଗାର୍ଗାଚାର୍ଯ୍ୟ କହିଛନ୍ତି ମୋତେ
ଯାଦବଙ୍କ ତ୍ରାଣ ପାଇଁ
ତଥା ଧର୍ମ ରକ୍ଷା ନିମନ୍ତେ ମୋ ଜନ୍ମ
କଂସାସୁରେ ଭୟ ନାହିଁ । ୨୧
ମଥୁରାକୁ ଯିବା କର୍ତ୍ତବ୍ୟ ମୋହର
ଗଲେ ହେବ ଧର୍ମରକ୍ଷା
ଆତଙ୍କିତ ହୋଇ ଯଦୁ ସାତବଂଶ
କରିଅଛନ୍ତି ପ୍ରତୀକ୍ଷା । ୨୨

କୃଷ୍ଣ କଥା ଶୁଣି     ପୁଚ୍ଛିଲେ ଶ୍ରୀରାଧା
ମୁହିଁକି ଧରିବ ତ୍ରାଣ ?
ଶ୍ରୀକୃଷ୍ଣ କହିଲେ     କଂସକୁ ବଧକରି
ଫେରି ଆସିବ ବହନ । ୨୩
ନୋହିଲେ ତୁମ୍ଭଙ୍କୁ     ମଥୁରା ଡକାଇ
ନେଇ ରଖାଇବ ତହିଁ
ସବୁଦିନ ପାଇଁ     ରହିବ ମୋ ପାଖେ
ହୋଇ ମୋ ଆନନ୍ଦମୟୀ । ୨୪
କିଛିକ୍ଷଣ ରାଧା     ମଉନ ହୋଇଣ
କହିଲେ ଶୁଣ କହ୍ନେଇ
" ମଥୁରାକୁ ଯିବ     ବିଜୟୀ ହୋଇବ
ଜାଣି ପାରୁଅଛି ମୁହିଁ । ୨୫
କଂସ ମାରି ତୁମ୍ଭେ     ଶକ୍ତିଶାଳୀ ହୋଇ
ପାଇବ ଲୋକରେ ପୂଜା
ସେମାନେ ତୁମ୍ଭଙ୍କୁ     ସମ୍ମାନ କରିବେ
କରାଇ ମଥୁରା ରାଜା । ୨୬
ଶ୍ରୀକୃଷ୍ଣ କହିଲେ     ମୁହିଁ ରଜା ହେଲେ
ତୁମ୍ଭେ ହେବ ରାଜରାଣୀ
ତୁମ୍ଭଙ୍କୁ ଛାଡ଼ିମୁଁ     ରହି ନ ପାରିବ
ତୁମ୍ଭେ ମୋ ପ୍ରାଣ ସଙ୍ଗିନୀ । ୨୭
ଶ୍ରୀରାଧା କହିଲେ     ଗୋପାଳୁଣୀ ମୁହିଁ
ହୋଇ ନ ପାରିବ ରାଣୀ
ରାଜଜେମା ତୁମ୍ଭ     ଚରଣେ ଖଟିବେ
ହୋଇ ଜୀବନ ସଙ୍ଗିନୀ । ୨୮
ଶ୍ରୀକୃଷ୍ଣ କହିଲେ     ସେମାନଙ୍କ ମଧ୍ୟେ
ତୁମ୍ଭେ ହେବ ପାଟରାଣୀ
ମାଝ ବାଧା ଦେଇ     କହିଲେ ରାଧିକା
ମୁହିଁ ସାମାନ୍ୟ ତରୁଣୀ । ୨୯

ମଥୁରାରେ ତୁମ୍ଭେ ପ୍ରବଳ ପ୍ରତାପୀ
ନରପତି ହୋଇଥିବ
ମଥାରେ ମୁକୁଟ ହାତେ ଅସ୍ତ୍ରଶସ୍ତ୍ର
ମାନ ଶୋଭା ପାଉଥିବ । ୩୦
କ୍ରୂର ଓ କଠୋର ରକତ ପିପାସୁ
ଶକ୍ତିଶାଳୀ ଯୋଦ୍ଧା ଗଣେ
ଘେନି ବିଚରଣ କରୁଥିବା କାଳେ
ମୁହିଁକି ପଡ଼ିବ ମନେ ? ୩୧
ତୁମ୍ଭର ସେ ରୂପ ଦେଖି ମୁଁ ଆନନ୍ଦ
ହୋଇ ନ ପାରିବ ତିଳେ
ତୁମ୍ଭ କାହ୍ନା ରୂପ ମୋ ଆଖି ଆଗରେ
ନାଚୁଥିବ ସଦା ବେଳେ । ୩୨
କଣ୍ଠରେ କୁସୁମ କରରେ ବଂଶୀ
ଧରି କୁଞ୍ଜେ ବାଉଥିବ
ରଙ୍ଗ ଅଧରରେ ମନ୍ଦେମନ୍ଦେ ହସି
ମନ ମୋର ମୋହୁଥିବ । ୩୩
ଗୋପାଳ ରୂପରେ ଦେଖି ମୁଁ ତୁମ୍ଭକୁ
ହେଉଥିବ କେତେ ଖୁସି
ରାଜଚକ୍ରବର୍ତ୍ତୀ ବେଶକୁ ଦେଖିଲେ
ନ ଯିବ ପାଣେ ଭରସି । ୩୪
ରାଜପୁତ୍ରେ ମୋର ପ୍ରୟୋଜନ ନାହିଁ
ତୁମ୍ଭେତ ଗୋପାଳ ଶିଷ୍ୟ
ନଟବର ବେଶ ଧରି ନାଚୁଥିବ
ଦେଖିହେବ ଭବାବେଶ । ୩୫
ମୁହିଁ ଜାଣେ ତୁମ୍ଭେ ନ ଫେରିବ ଆଉ
ଯଦି କହିବା ଏ ଫେର
ଯେଉଁ କାହ୍ନାକୁ ମୁଁ ପ୍ରେମ କରିଅଛି
ନୁହଁ ସେ ନନ୍ଦ କୁମର । ୩୬

ମଥୁରା ନ ଯାଇ ଗୋପପୁରେ ରହି
ପିତାମାତା ସେବା କରି
ତୁମ୍ଭ ଆସିବାରୁ ପଥ ଗୁହିଁଥିବ
ତୁମ୍ଭ ନାମ ରୂପ ସ୍ମରି । ୩୭
ଦିନ, ମାସ, ବର୍ଷ, ବିତି ଯିବ ମୋର
ବସି ଯମୁନା କୂଳରେ
ବ୍ୟଥା-ଭରା ମୋର ହୃଦୟକୁ ଘେନି
ରହିଥିବ ପ୍ରତୀକ୍ଷାରେ । ୩୮
ଯେଉଁ ସବୁ କୁଞ୍ଜେ ତୁମ୍ଭ ସଙ୍ଗେ ହୋଇ
ଅଛି ମଧୁର ମିଳନ
ସେହି ସେହି କୁଞ୍ଜେ ବସୁଥିବ ସଞ୍ଜେ
ତୁମ୍ଭଙ୍କୁ କରି ସ୍ମରଣ । ୩୯
ସେମାନଙ୍କ କଣ୍ଠୁ ତୁମ୍ଭ ପ୍ରିତି ବାକ୍ୟ
ଶୁଣି ପ୍ରୀତ ହେଉଥିବ
ସେ କୁଞ୍ଜରୁ ଫୁଲ ତୋଳି ତୁମ୍ଭ ପାଇଁ
ବସି ମାଳା ଗୁନ୍ଥୁଥିବ । ୪୦
ସେ ଫୁଲ ମାଳକୁ ଯମୁନା ଜଳରେ
ଭସାଇ ଦେଉଣ ଥିବ
ଦୂର ଦେଶେ ରହି ସେ ମାଳା ଗ୍ରହଣ
କଲେ ମୁଁ ଆନନ୍ଦ ହେବ । ୪୧
ମଥୁରାକୁ ଗଲେ ନ ପାଇବ କାହା
ଦେଖିବ ଯାଦବ ପତି
କିନ୍ତୁ ଏହିଠାରେ ରହିଥିଲେ ମୁହିଁ
ଜାଗିବ କାହ୍ନାର ସ୍ମୃତି । ୪୨
ଏହି ଲତା କୁଞ୍ଜ କଦମ୍ବ, ଯମୁନା
ପକ୍ଷୀଙ୍କର କୂଜନରେ
ଶୁଣିବ ମୋହନ ବଂଶୀର ନିଃସ୍ୱନ
ଡାକୁଥିବ ରାଧା ଧୀରେ । ୪୩

ବ୍ରହ୍ମାଣ୍ଡ ଧୂଳି ପରେ ତୁମ୍ଭ ପାଦ
ଚିହ୍ନ ଦେଖି ହେବ ପ୍ରୀତି
ପବନ ହିଲ୍ଲୋଳେ ତୁମ୍ଭ ପ୍ରୀତି ବାର୍ତ୍ତା
ହେଉଥିବ ପ୍ରସାରିତ । ୪୪

ଗୋଧୂଳି ସଞ୍ଜରେ ଗୋବତ୍ସା ମେଳରେ
ଆସୁଥିଲ ଯେଉଁ ପରି
ସେପରି ଆସିବ ମୋ ନୟନ ପଥେ
ବଜାଇ ପ୍ରୀତି ବାଂଶରୀ । ୪୫

ତୁମ୍ଭ ଆଗମନ ବାରତା ପ୍ରଚାର
ହେଉଥିବ କୋଳାହଳେ
ଶୁଣା ଯାଉଥିବ ଗାଈ ବାଛୁରୀଙ୍କ
ହମ୍ବାରଡ ଅବହେଳେ । ୪୬

ସନ୍ଧ୍ୟା ଆଗମନେ ଦେବତା ପୂଜନେ
ବିପ୍ରଙ୍କର ସ୍ତୁତିଗାନେ
ନମନ୍ତି ନ ଯାଇ କର୍ଣ୍ଣ ଡେରିଥାଅ
ବ୍ରଜ ଯୁବତୀ ବଚନେ । ୪୭

ବେଦ ମନ୍ତ୍ର ଧ୍ୱନି ଠାରୁ ତାଙ୍କ ଡାକେ
ଅଶେଷ ଆନନ୍ଦ ପାଇ
ତାଙ୍କର ଅସନା ଅଗଣାରେ ନାଚ
କରୁଥିବ ଥେଇ ଥେଇ । ୪୮

ସନ୍ଧ୍ୟାକାଳେ ଦେବ ପୂଜନ ନ କରି
ଗାଈଆଳ ବାଳକ ମେଳେ
ଖେଳରେ ଆଉଁସି ଦେଉଥିବ ଗାଈ
ଆନନ୍ଦେ ଗୋରୁ ଗୁହାଳେ । ୪୯

ଜତେନ୍ଦ୍ର ସ୍ୱଙ୍କର ସ୍ୱାମୀ ସମ୍ବୋଧନ
ଶୁଣି ନ ଶୁଣିଲ ପରି
ଗୋପବାଳଙ୍କର ବୃକଭ ଡାକକୁ
ଶୁଣୁଥିବ କର୍ଣ୍ଣ ଡେରି । ୫୧

କାଟସ୍ଥ, ଶଙ୍ଖାରି, ମାଳି, କଇବର୍ତ୍ତ
କେତେ କାଳୀ, କଳାଭୂତ
ଘାଟିଆଳ ହୋଇ ଘାଟ ସାଧୁଥିବ
ଯଗି ଏ ଗୋଧିକା ଘାଟ । ୫୧

ଉପାସନା ପୀଠେ ଆରାଧନା ପାଇଁ
ମିବାକୁ କୁଣ୍ଠିତ ହୋଇ
ଶାସ୍ତ୍ରୁ ନଣନ୍ଦଙ୍କୁ ଉଚାଉଣ ଥିବ
କଳାଭୂତ ରୂପ ବନ୍ଧ । ୫୨

ଏଇ କୃଷ୍ଣ ମୋର ନୟନ ପିତୁଳା
ତାଙ୍କୁ କରେ ମୁହିଁ ପ୍ରେମ
ଗୋପି ଜନ ବଲ୍ଲ- ଭାୟ ସେ ଅଟନ୍ତି
ସଇ ପ୍ରେମରେ ବନ୍ଧନ । ୫୩

ଏଠାରେ ମୁଁ ଥିଲେ ଶୁଣୁ ଥିବ କର୍ଣ୍ଣ
ତୁମ୍ଭ ପ୍ରୀତି ସମ୍ଭାଷଣ
ନେତ୍ର କରୁଥିବ ତୁମ୍ଭ କମନୀୟ
ଗୋପାଳ ରୂପ ଦର୍ଶନ । ୫୪

ମୁଖ ଗାଉଥିବ ଦିବସ ସର୍ବଦା
ତୁମ୍ଭ ପ୍ରେମପ୍ରୀତି ଗାନ
ନିଶ୍ୱାସ ପ୍ରଶ୍ୱାସେ କରୁଥିବ ସଦା
କୃଷ୍ଣ ନାମ ଉଚ୍ଚାରଣ । ୫୫

କୃଷ୍ଣମୟ ଅଟେ ଏହି ବୃନ୍ଦାବନ
କୃଷ୍ଣ ଭାବରେ ନିମଗ୍ନ
କାଳିନ୍ଦୀ, କଦମ୍ବ, କେଳିକୁଞ୍ଜ, ଅନ୍ୟ
ସର୍ବତ୍ର କୃଷ୍ଣ ଗୁଞ୍ଜନ । ୫୬

କରେ ତାଡ଼, ଚୂଡ଼ି, କଡିଆଳ ସଜେ
ରୌପ୍ୟ ବାହୁଡ ଚରଣେ
କଟି ତଟେ ସ୍ୱର୍ଣ୍ଣ ମାଳି ଝୁଲୁଥିବ
ଖଚିତ ଅଷ୍ଟ ରତନେ । ୫୭

ଶିରେ ଶିଖିପୁଚ୍ଛ   କରେ ବଂଶୀଧର
ଆସୁଥିବ ଢଳଢଳ
ତୁମ୍ଭର ଏପରି   ପ୍ରେମମୟ ରୂପ
ଦର୍ଶନେ ପ୍ରେମ ପାଗଳୀ । ୫୮
ଏବେ ମୁଁ ତୁମ୍ଭଙ୍କୁ   ଦେଖୁଛି ଯେପରି
ଶୁଣୁଛି ମୁଖରୁ କଥା
ସେହିପରି ଏହି   କେଳି କୁଞ୍ଜେ ବସି
ଶୁଣିବ ମଧୁର ବାର୍ତ୍ତା । ୫୯
ରାଧାଙ୍କ ମୁଖରୁ   ପ୍ରେମପ୍ରିତ ପୂର୍ଣ୍ଣ
କଥାମାନ ଶୁଣି କୃଷ୍ଣ
ପ୍ରେମେ ବିଗଳିତ   ହେଲ ମନଃପ୍ରାଣ
ବୋଇଲେ ସଜନୀ ଶୁଣ । ୬୦
ମୋ ଦିବ୍ୟ ନେତ୍ରରେ   ଦେଖି ପାରୁଛି ମୁଁ
ମଥୁରାରେ ଏହିପରି
ରହିବ ନାହିଁ ମୁଁ   ପରନ୍ତୁ ରହିବ
ରାଜା ମହାରାଜା ପରି । ୬୧
ତୁମ୍ଭେ ମଧ୍ୟ ସେଠି   ମୋ ହୃଦୟ-ରାଣୀ
ହୋଇତ ରହିବ ନାହିଁ
ତୁମ୍ଭର ଜନମ   ଉଦୟ ତପନ
ମଧୁର ତୃନ୍ଦନ ପାଇଁ । ୬୨
ଆମୋଦ, ଆନନ୍ଦ   ବିତରଣ ପାଇଁ
ତୁମ୍ଭର ହୋଇଛି ଜନ୍ମ
ତୁମ୍ଭେ ଯେବେ ବୃନ୍ଦା-   ବନ ଛାଡ଼ି ଯିବ
ହୋଇବ ଆନନ୍ଦ ଶୂନ୍ୟ । ୬୩
ଏହି ଠାରେ ତୁମ୍ଭେ   ରହିଥିଲେ ପ୍ରିୟେ
ହେବ ଏ ମିଳନ ଭୂମି
ପ୍ରୀତିଡୋରରେ ବନ୍ଧା   ହୋଇ ଆସୁଥିବ
ନର୍ତ୍ତନ କରିଥେ ଭୂମି । ୬୪

ତୁମ୍ଭେ ରହିଥିଲେ    ମୁଁ ହିଁ ସିନା ଆସିବି
ପୁଣ୍ୟଭୂମି ବୃନ୍ଦାବନ
ତୁମ୍ଭେ ଏ ତୀର୍ଥର    ପ୍ରେମମୟୀ ଦେବୀ
ଆନନ୍ଦମୟୀ ରୂପେଣ । ୬୫
ବୃନ୍ଦାବନେ ଥିଲେ    ତୁମ୍ଭଙ୍କୁ ଦର୍ଶନ
କରୁଥିବେ ନରନାରୀ
ମୁଁ ମଧ୍ୟ ଦୂରରେ    ରହି ତୁମ୍ଭ ଠାରୁ
ଆସୁଥିବି ପ୍ରୀତି ସ୍ମରି । ୬୬
ଶ୍ରୀରାଧା କହିଲେ    ହେ କାହ୍ନା ତୁମ୍ଭଙ୍କୁ
ସବୁ ଦେଇଛି ସମର୍ପି
ଶେଷ ଭିକ୍ଷା ମୋର    ତୁମ୍ଭର ବାଂଶରୀ
ଦିଅ ମୋ କରେ ସମର୍ପି । ୬୭
ପ୍ରୀତି ମିଳନର    ସଙ୍କେତ ହୋଇବ
ରାଧାର ନ ହେବ ନିନ୍ଦା
ଜାଣିବ ଜଗତ    ରାଧାକୃଷ୍ଣ ଦୁଇ
ସ୍ୱକୀୟ ପ୍ରେମରେ ବନ୍ଧା । ୬୮
ମୋ ପାଶେ ବାଂଶରୀ    ରହିଥିଲେ ତୁମ୍ଭେ
ନିଶ୍ଚୟ ଆସିବ ଫେରି
ତୁମ୍ଭ ଆସିବାର    ପଥ ଚାହିଁ ବସି
ଥିବ ରୂପ ଅନୁସରି । ୬୯
ଶ୍ରୀରାଧାଙ୍କ କରେ    ମୋହନ ବଇଁଶୀ
ଶ୍ରୀକୃଷ୍ଣ କଲେ ପ୍ରଦାନ
କୃଷ୍ଣଙ୍କ ପ୍ରେମିକା    ସ୍ୱରୂପେ ଶ୍ରୀରାଧା
ସମାଜେ ପାଇଲେ ମାନ୍ୟ । ୭୦
ସ୍ୱକୀୟ ପ୍ରେମରେ    ପରିଣତ ହେଲା
ରାଧାକୃଷ୍ଣ ପ୍ରେମଲୀଳା
ଅପ୍ରକଟ ଲୀଳା    ପ୍ରକଟିତ ହୋଇ
ଜଗତରେ ପ୍ରସରିଲା । ୭୧

କୃଷ୍ଣଗତ ପ୍ରାଣା ହୋଇଗଲେ ରାଧା
ମନପ୍ରାଣ କୃଷ୍ଣମୟ
କୃଷ୍ଣ ବିନା କିଛୁ ନ ଦେଖିଲେ ନେତ୍ରେ
କୃଷ୍ଣଭାବରେ ତନ୍ମୟ । ୭୨

ଜିହ୍ୱା ରଟେ କୃଷ୍ଣ କର୍ଣ୍ଣ ଶୁଣେ କୃଷ୍ଣ
ନେତ୍ର ଦେଖେ କୃଷ୍ଣ ରୂପ
ନିଶ୍ୱାସ ପ୍ରଶ୍ୱାସେ ଶୁଭେ କୃଷ୍ଣ ନାମ
ଅଜପାରେ ହୁଏ ଜପ । ୭୩

ଶ୍ରୀକୃଷ୍ଣଙ୍କ ପ୍ରାଣ ଅଟନ୍ତି ଶ୍ରୀରାଧା
ରାଧାଙ୍କର ପ୍ରାଣ କୃଷ୍ଣ
ରାଧା-କୃଷ୍ଣ ପ୍ରେମ ଧାର ପ୍ରବାହିତ
ଯୁଗେ ଯୁଗେ ବୃନ୍ଦାବନ । ୭୪

ଶ୍ରୀରାଧା ଅଟନ୍ତି ଶ୍ରୀକୃଷ୍ଣ ପ୍ରେମିକା
କୃଷ୍ଣ ଆହ୍ଲାଦିନୀ ଶକ୍ତି
ରାଧା ରାସେଶ୍ୱରୀ କୃଷ୍ଣ ରାସେଶ୍ୱର
ରାଧାକୃଷ୍ଣ ପତ୍ନୀପତି । ୭୫

ଶ୍ରୀକୃଷ୍ଣ ପୁରୁଷ ଶ୍ରୀରାଧା ଶକତି
ତହୁଁ ସୃଷ୍ଟିଲା ଜଗତ
ଲକ୍ଷ୍ମୀ, ସରସ୍ୱତୀ, ସାବିତ୍ରୀ, ପାର୍ବତୀ
ସର୍ବେ ରାଧାଂଶେ ସମ୍ଭୂତ । ୭୬

ବୃନ୍ଦାବନେଶ୍ୱରୀ ଶ୍ରୀମତୀ ଶ୍ରୀରାଧା
ପ୍ରେମମୟୀ ରାସେଶ୍ୱରୀ
କୃଷ୍ଣପ୍ରେମ ପାଇଁ ରାଧା ଭବ ଲୋଡା
ରାଧାହିଁ ଗୋଲକେଶ୍ୱରୀ । ୭୭

ମହାରୂପୀ ନାରୀ ଅଟନ୍ତି ଶ୍ରୀରାଧା
ବୃନ୍ଦାବନେଶ୍ୱରୀ କହି
ଆଦି ରସମୟୀ ତଥା ପ୍ରେମମୟୀ
ଭାବମୟୀ, କାଳଜୟୀ । ୭୮

ଗୋପିଜନ ବଲ୍ଲ- ଭପ୍ କୃଷ୍ଣଚନ୍ଦ୍ର
ରାଧା-ଗୋପି ପ୍ରାଣପ୍ରିୟ
କିଶୋର କିଶୋରୀ ମିଳନେ ହୃଦୟ
ସର୍ବଦା ପୁଲକମୟ । ୭୯

ରାଧାକୃଷ୍ଣ କେବେ ଭିନ୍ନାଭିନ୍ନ ନୁହଁନ୍ତି
ଅଭିନ୍ନ ପ୍ରେମ ମୂରତି
ନୀରକ୍ଷୀର ପ୍ରାୟ ଜଡି ରହିଛନ୍ତି
ଜୀବ ହୃଦୟେ ବସନ୍ତି । ୮୦

ଲୌକିକ ମତରେ ରାଧାଠୁ ବିଦାୟ
ହେଲେ ରାଧାରମଣ
ଏକାଅଣୀ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ବୃନ୍ଦାବନ ଭଜେ କୃଷ୍ଣ । ୮୧

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ଗୋପଲୀଳା ଖଣ୍ଡେ ଶ୍ରୀରାଧାଙ୍କଠାରୁ ଶ୍ରୀକୃଷ୍ଣଙ୍କ ମେଲାଣି ଆଖ୍ୟାନେ ନାମ ଅଷ୍ଟ ଚଢ୍ୱାରିଂଶ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।

## ବୋଲି —( ୭ )

ଅ କା ମ ନ

ଚକାଡୋଳା କର ଦର୍ଶନ

ଚକା ବଟଚକ୍ଷେ ଚକାସନ ଘାଣ
ଅକାମାର ଦଣ୍ଡେ ବସିଣ ॥ ଘୋଷା ॥

ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନ
ଭୈରବୀ ଚକ୍ର ଅଟଇ
ତହିଁ ଚକାରୁଢ଼ ନ ହେଲେ ନୈବେଦ୍ୟ
ଗ୍ରହଣ କରନ୍ତି ନାହିଁ । ୧

ଭୈରବୀ ଚକ୍ରରେ ଅଧିଷ୍ଠିତ ହୋଇ
ଜଗନ୍ନାଥ ଭଇରବ
ମସ୍ତକରୁ ତାଙ୍କ ଅବିରତ ସ୍ରବେ
ଚନ୍ଦ୍ରାମୃତ ଉଦ୍‌ଭବ । ୨
ଭୂଗୋଳରେ ସାତ ସମୁଦ୍ର କଥିତ
ଆଠ ହୋଇଅଛି ଏଠେ
" ଆନନ୍ଦ ସାଗର " ଉଦ୍‌ବେଳିତ ହୁଏ
" ଜନ ସମୁଦ୍ର " ର ତଟେ । ୩
ଆନନ୍ଦ ସାଗର ତୀରେ ଠିଆ ହୋଇ
ଯଦି ମନ ନିରାନନ୍ଦ
ଆଉ କେଉଁଠାକୁ ଗଲେହୋ ଗୋସେଇଁ
ପାଇବ ଦିବ୍ୟ ଆନନ୍ଦ ? ୪
ଆନନ୍ଦ ବିଗ୍ରହ ଶ୍ରୀଜଗନ୍ନାଥ
ସ୍ୱଦେହେ ବିରାଜମାନ
ଦେଖୁ ଦେଖୁ ଯଦି ଅଦେଖା ହୋଇବ
ଆଉକି ପାଇ ଦର୍ଶନ ?
ଥକା ମନ
ତକାତୋଳା କର ଦର୍ଶନ ।



# ଊନ ପଞ୍ଚାଶତ ଅଧ୍ୟାୟ

## ମଥୁରା ଯାତ୍ରା

ରାଗ - ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
ମଧୁପୁର ଯାତ୍ରା କାଳେ ଗୋପ ଦାଣ୍ଡ
ହୋଇଗଲା ଲୋକାରଣ୍ୟ । ୧
କୃଷ୍ଣ ବଳରାମ ଗୋପବାସୀ ଠାରୁ
ବିଦାୟ ନେବାରେ ବ୍ୟସ୍ତ
ମାତ୍ର ସେମାନଙ୍କୁ ସହଜେ ବିଦାୟ
ଦେବାଥିଲା ବହୁକଷ୍ଟ । ୨
ପିଲା, ଛୁଆ, ବୁଢ଼ା ସମସ୍ତେ ଗୃହରୁ
ବାହାରି ବିଦାୟ ଦେଲେ
ଗୋପାଳ ବାଳକେ ବେଶଭୂଷା ହୋଇ
ଯିବାକୁ ଆସି ମିଳିଲେ । ୩
ଜନ ସମାବେଶ ଆଗେ ଠିଆ ହୋଇ
ମା' ଯଶୋଦା କାନ୍ଦୁଥିଲେ
ରାମକୃଷ୍ଣ ତାଙ୍କ ପାଦଧୂଳି ନେଇ
ମସ୍ତକରେ ଲଗାଇଲେ । ୪
ଯଶୋଦାଙ୍କ ପାଶେ ନବବଧୂ ବେଶେ
ଠିଆ ହୋଇଥିଲେ ରାଈ
ଦୃଷ୍ଟିରେ ଗମ୍ଭୀର ଅନୁରକ୍ତର
ନିଦର୍ଶନ ଥାଏ ରହି । ୫
ଉଦାସ ନୟନା ଗୋପକନ୍ୟା ମାନେ
ରାଈପାଶେ ଠିଆ ହୋଇ
ମୁଖ ଚନ୍ଦ୍ରମାକୁ ଅବନତ କରି
ସତୃଷ୍ଣେ ଅଛନ୍ତି ଚାହିଁ । ୬

ଅଙ୍ଗ ସୌନ୍ଦର୍ଯ୍ୟରୁ ଉଦାସୀନାବସ୍ଥା
ପ୍ରତୀୟମାନ ହୁଅଇ
ଛନ୍ଦହୀନ, ଗତି ହୀନ ଗୋପବାଳ
ଜଡ଼ପ୍ରାୟ ଠିଆ ରହି । ୭

ନେତ୍ର କୋଣେ କୃଷ୍ଣ ରାଧାଙ୍କୁ ଅନାଇ
ବିଦାୟ ସଙ୍କେତ ଦେଲେ
ସମସ୍ତଙ୍କୁ ହାତ ଯୋଡ଼ି ରାମକୃଷ୍ଣ
ଭକ୍ତି ପ୍ରଣାମ କରିଲେ । ୮

ସଭିଙ୍କ ନୟନ ଛଳଛଳ ହେଲା
ଲୋତକରେ ପରିପୂର୍ଣ୍ଣ
ବିଦାୟୀଙ୍କଠାରୁ ବିଦାୟ ଦେବାର
ଲୋକେ ଅତ୍ୟନ୍ତ ବିଷର୍ଣ୍ଣ । ୯

ଯେ ଏକ କରୁଣ ପରିବେଶ ଅଟେ
ବୃକ୍ଷ ଲତା-ପଶୁ-ପକ୍ଷୀ
ଗୋପ ନର ନାରୀ, କିଶୋର, କିଶୋରୀ
ଗାଭୀ ବଛା ସର୍ବେ ଦୁଃଖୀ । ୧୦

ସର୍ବେ ନିଜ ନିଜ ଭାବରେ ଅଶ୍ରୁଳ
ବିଦାୟ ଦେଉ ଅଛନ୍ତି
ଅନ୍ତରଯ୍ୟାମୀଙ୍କୁ ଅନ୍ତର ବେଦନା
ଅନ୍ତରେ ଜଣାଉଛନ୍ତି । ୧୧

ନନ୍ଦ ଜାଣିଛନ୍ତି ସମଗ୍ର ଜଗତ
ଯାହାଙ୍କ ଶୁଭଗମନ
ପୃଥିବୀରେ ଶାନ୍ତି ପ୍ରତିଷ୍ଠା ସହିତ
କରିବେ ଦୁଷ୍ଟ ଦଳନ । ୧୨

ଜଗତର ହିତ ପାଇଁ ଯିଏ ଜାତ
ତାଙ୍କୁ ଗୋଟେ ବୃନ୍ଦାବନେ
କିମିତି ରଖିଲେ ଜଗତର କ୍ଷତି
ହେବ ବିଚାରନ୍ତି ମନେ । ୧୩

ଗୋପିନାଥ ଆଜ    ଜଗନ୍ନାଥ ସାଜ
ଯଦୁନାଥ ହେବା ପାଇଁ
ଯଦୁକୁଳ ବୀର    କଂସ ନଥେ ବଧି
ଯାଉଛନ୍ତି ଜନ୍ମଭୂଇଁ । ୧୪
ପତ୍ନୀଙ୍କୁ ବୁଝାଇ    କହୁଛନ୍ତି ନନ୍ଦ
ନ କାନ୍ଦ ଆଗୋ ସୁକେଶୀ
ଗୋପପୁର ଆଜ    ଧନ୍ୟ ହୋଇଅଛି
ଧନ୍ୟ ଗୋପପୁର ବାସୀ । ୧୫
ନନ୍ଦଙ୍କୁ ଆଶ୍ୱା-    ସନା ଦେଇ ପୁଣେ
ବସିଲେ ରଥରେ ଯାଇ
ଧୀରେଧୀରେ ରଥ    ଗୋପ ରାଜଦାଣ୍ଡେ
ଗଡ଼ିଯାଏ ଆଙ୍କାପାଇ । ୧୬
ରଥ ସଙ୍ଗେ ସଙ୍ଗେ    ଧାଇଁଲେ ବାଳକେ
ଧୀରେ ଗଡ଼ିଯାଏ ରଥ
ବାଳକ ମେଳରେ    ବାଳ ଗୋପାଳଙ୍କ
ଛୁଟିଲା ସୁଖର୍ଦ୍ଧ ପଥ । ୧୭
ରଥରେ ବସିଣ    ରାମକୃଷ୍ଣ ଦୁଇ
ହେଲେ ହର୍ଷ ବିଷାଦିତ
ଶ୍ରୀଦାମୁ କାଳୀନ    ସଙ୍କେତ ପ୍ରଦାନ
କଲେ ହଲାଇଣ ହାତ । ୧୮
ଅଦୂରେ କାଳନ୍ଦୀ    କୂଳ ମପ ଡାଳ
ଅନ୍ତରାଳେ ବସି ଋଷୀ
ଉଦାସ ନୟନେ    ଚାହିଁ ରହିଛନ୍ତି
ଲୋତକରେ ପୂର୍ଣ୍ଣ ଆଖି । ୧୯
ରଥ ଗଡ଼ିବାର    ଶବଦକୁ ଶୁଣି
ତ୍ରିଦଶେ ହୋଇଲେ ତୋଷ
ଆକାଶରୁ ପୁଷ୍ପ    ବୃଷ୍ଟି କଲେ ଇନ୍ଦ୍ର
ଏଥର ମରିବ କଂସ । ୨୦

ଅଦୃଶ୍ୟ ହେବାରୁ ରାମକୃଷ୍ଣ ରଥ
ରାଧା ହେଲେ ମୂର୍ଚ୍ଛାଗତ
ଯଶୋଦା ଜନନୀ ତାଙ୍କୁ ଉଠାଇଣ
କଲେ ସ୍ନେହେ କୋଳାଗତ । ୨୧
ରାଧା ପାଇଁ କୃଷ୍ଣ ଆସିବେ ଗୋପକୁ
ଏ ଧାରଣା କରି ମାତ
ଆପଣା ଗୃହରେ ରଖାଇଲେ ରାଧା
କଲେ ସନ୍ୟାସିନୀ ବ୍ରତ । ୨୨
ରଥ ପଛେ ପଛେ ଧାଏଁ ବୃନ୍ଦାବନ
ଦେଖିବ ମଥୁରା ଲୀଳା
କଂସକୁ ବିନାଶି ଯଶୋଦା ନନ୍ଦନ
ହୋଇବେ ଦେବକୀ ବଳା । ୨୩
ଗୋପରୁ ମଥୁରା ବାର ଯୁଣ ପଥ
ଧାଇଁଲେ ଗୋପାଳ ବାଳେ
ଜଗନ୍ନାଥ ଯେହ୍ନେ ମାଉସି ଘରକୁ
ଚଳନ୍ତ ଭକତ ମେଳେ । ୨୪
ଗୋପାଳ ବାଳକ ଅଙ୍ଗେ ବସ୍ତ୍ର, ନେଳ
ବିକଶିତ ହେଉଅଛି
ସିଂହ ଶିଶୁ ପ୍ରାୟ ଝଣନ୍ତ ବାଳକେ
ରୂପ ବାରି ନ ହେଉଛି । ୨୫
ଗୋପାଳ ବାଳକ ମେଳେ ବାଳକୃଷ୍ଣ
ଚଳିଲେ ହୋଇ ଉତ୍ଫୁଲ
ଅକ୍ରୂର ପଠାଇ ଡକାଇ ନେଉଛି
କପଟେ କଂସ ମାତୁଳ । ୨୬
ପଥେ ଯାଉଁ ଯାଉଁ କହିଲେ ଅକ୍ରୂର
ତୁମ୍ଭଙ୍କୁ ଦେଖିବା ପାଇଁ
ମଥୁରା ନିବାସୀ ଗୃହିଁ ବସିଛନ୍ତି
ନେତ୍ରରେ ପଲକ ନାହିଁ । ୨୭

ପିତା ବସୁଦେବ ଜନନୀ ଦେବକୀ
ହୋଇ ଅଛନ୍ତି ବ୍ୟାକୁଳ
ଦୀର୍ଘ ଷୋଳ ବର୍ଷ ଅପେକ୍ଷା କରିଣ
ନେତ୍ରୁ ଶୁଖି ଅଛି ଜଳ । ୨୮

କଂସ ଉତ୍ପୀଡ଼ନ ସହି ନ ପାରିଣ
ଯାଦବେ ଭୟେ ଶଙ୍କିତ
ପୁତ୍ର ହରା ମାତା କ୍ରନ୍ଦନ ଧ୍ୱନିରେ
ମଧୁପୁର ବିଷାଦିତ । ୨୯

ପ୍ରଲମ୍ବା ତା ମନ୍ତ୍ରୀ ଅତି ବୁଦ୍ଧିମାନ
ସୁଦୂର ଦୃଷ୍ଟି ସମ୍ପନ୍ନ
ଅନ୍ଧକ ବଂଶର ପ୍ରମୁଖ ପ୍ରଦ୍ୟୋତ
କଂସେ କରେ ସମର୍ଥନ । ୩୦

କଂସ ବାହିନୀର ମୁଖ୍ୟ ସେନାପତି
ଅସୀମ ଶକ୍ତି ସାମର୍ଥ୍ୟ
ଯାବତ ଅନ୍ୟାୟ କାର୍ଯ୍ୟସମ୍ପାଦନ
ତା ଦ୍ୱାରା କରାଏ ଦୁଷ୍ଟ । ୩୦

କଂସରର ସେବକ ପଣେ ଖଟିଛନ୍ତି
ପ୍ରଦ୍ୟୋତର ପରିବାର
ଯାଦବ ମାନଙ୍କୁ ଦମନ କାର୍ଯ୍ୟରେ
ସେହିମାନେ ଧୁରନ୍ଧର । ୩୨

ବିଗତ ପଚିଶ ବର୍ଷ ଧରି କଂସ
କରୁଛି ରାଜ୍ୟ ଶାସନ
ତା ଶାସନ କାଳେ ବହୁ ଦୁଃଖ କଷ୍ଟ
ପାଇ ଧରିଛୁ ଜୀବନ । ୩୩

ବେଳେ ବେଳେ ମୁହିଁ ଆଶ୍ଚର୍ଯ୍ୟ ହୁଅଇ
ଏତେ ବିପଦରେ ପଡ଼ି
ଜୀବନ ଧରିଛୁଁ ବଞ୍ଚିଛୁ କପରି
ମରଣ ମୁଖେ ନ ପଡ଼ି । ୩୪

ପୂଜ୍ୟ ଉଗ୍ରସେନ ବୃଦ୍ଧ କାଳେ ବନ୍ଦୀ
ତୁମ୍ଭ ଜନକ ଜନନୀ
ନର୍କର ଯନ୍ତ୍ରଣା ଭୋଗ କରୁଛନ୍ତି
ନେତ୍ରରୁ ଗଡ଼ାଇ ପାଣି । ୩୫

ସେମାନଙ୍କ ଆଖି ଆଗରେ ତୁମ୍ଭ ଷଡ଼ଭାଇ
ଜନ୍ମ ମାତ୍ରେ କଲା ନାଶ
ନାରଦ ମୁନିଙ୍କ ଭବିଷ୍ୟ କଥାରେ
ରଖିଣ ପୂର୍ଣ୍ଣ ବିଶ୍ୱାସ । ୩୬

ତୁମ୍ଭ ଦୁଇ ଭାଇ ଜନମ ମାତ୍ରକେ
ରଖିଲୁ ଗୋପରେ ଆଣି
ନିଜ ଜୀବନକୁ ବିପନ୍ନ କରିଲୁ
ମୁକ୍ତି ଦାତା ତୁମ୍ଭେ ଜାଣି । ୩୭

ଯାଦବ କୁଳର ତ୍ରାଣକର୍ତ୍ତା ତୁମ୍ଭେ
ସତ୍ୟ ଧର୍ମର ରକ୍ଷକ
ଏହି ଆଶା ଆମ୍ଭେ ପୋଷଣ କରିଣ
ସହିଅଛୁ ବହୁ ଦୁଃଖ । ୩୮

କଂସେ ଭୟଙ୍କର କାଳ ଯେ ଶିଶୁଙ୍କୁ
ରଖିଥିଲ ଗୋପେ ଗୁପ୍ତ
ଆଜ ମୁଁ ତାହାଙ୍କୁ ଡାକି ନେଉଅଛି
କଂସ କରିବାକୁ ହତ । ୩୯

ଅକ୍ରୂର ଆଖିରୁ ବନ୍ଦ ବନ୍ଦ ହୋଇ
ବହିଲା ଲୋତକ ଧାର
ଆଶ୍ୱାସନା ଦେଇ କହିଲେ ଶ୍ରୀକୃଷ୍ଣ
ମନେ ଶୋଚନା ନ କର । ୪୦

ଆମ୍ଭେ ଦୁଇ ଭାଇ କର୍ଣ୍ଣେ ଶୁଣି ଅଛୁ
କଂସର ଅନୀତି କଥା
ଯାଦବ ମାନଙ୍କ କ୍ଷତି ଯୋଉଥିଲୁ
ସେ ଦୁଷ୍ଟ ଦେଇଛି ପୀଡ଼ା । ୪୧

ସେମାନଙ୍କ ଗୃହ   ଜମିରୁ ତାହାଙ୍କୁ
କରାଇ ଅଛି ବଞ୍ଚିତ
ଅନେକ ଲୋକଙ୍କୁ   ତଡ଼ି ଦେଇଅଛି
ଅନେକ କରିଛି ହତ । ୪୨

ମାଆ ମାନଙ୍କର   କୋଳରୁ ସନ୍ତାନ
କରିଛି ଅପହରଣ
ଯାଦବ ମୁଖ୍ୟଙ୍କ   କନ୍ୟାଙ୍କ ସତୀତ୍ୱ
ହୋଇଅଛି ଭୂଲୁଣ୍ଠନ । ୪୩

ହତ୍ୟା, ବିଭୀଷିକା,   ଲୁଣ୍ଠନ, ଧର୍ଷଣ
ତାକୁ ଲାଗେ ଖେଳ ପରି
ଗୁରୁ ଶିଷ୍ଟ ପ୍ରତି   ସମ୍ମାନ ନ ଥାଏ
ବିପ୍ରଙ୍କୁ ଦଣ୍ଡଇ ଧରି । ୪୪

ପିତୃ ପିତାମହ   ନିର୍ଣ୍ଣିତ ପନ୍ଥାରୁ
ସମ୍ପୂର୍ଣ୍ଣ ଭାବେ ବିଚ୍ୟୁତ
ସେ ଧର୍ମ-ଶତ୍ରୁର   ନିଧନ ଯୋଗାଏ
ଜଗତ ହୋଇବ ଶାନ୍ତ । ୪୫

ଅକ୍ରୂର କହିଲେ   ଯାଦବ ମୁଖ୍ୟଙ୍କ
ସଙ୍ଗେ ତୁମ୍ଭ ମୃତ୍ୟୁ ପାଇଁ
ଛଳନା କରଣ   ଏହି ଧନୁର୍ଯଜ୍ଞ
ଭିଆଇ ଅଛଇ ସେହି । ୪୬

ଜଗାଇ ରଖିଛି   ମାଗଧୀ ସେନାଙ୍କୁ
କୃତଘ୍ନ ତା ସେନାପତି
ଜରାସନ୍ଧର ସେ   ତନୟ ଅଟଇ
କଂସ ତା ଭଗିନୀ ପତି । ୪୭

ଦୁଷ୍ଟ ନୃପତିଙ୍କୁ   ବରଣ କରିଛି
ଆସିଛନ୍ତି ସେନ ସୈନ୍ୟ
ଛାଉଣି ପକାଇ   ଜଗି ରହିଛନ୍ତି
ସେନ ଅସ୍ତ୍ରଶସ୍ତ୍ର ମାନ । ୪୮

ଭାବନ୍ତି ତୁମ୍ଭଙ୍କୁ    ହତ୍ୟା କରି ଦୁଷ୍ଟ
ନିଃଶଙ୍କ ହୋଇବ ମହି
ଭବିଷ୍ୟତ ବାଣୀ    ମିଥ୍ୟା ହୋଇଗଲା
ବୋଲି କରିବ ବଡ଼ାଇ । ୪୯

ଶ୍ରୀକୃଷ୍ଣ କହିଲେ    ମାରିବା ଆଗରୁ
ସେ ତ ମରି ପଡ଼ିଥିବ
ତା କୃତ କର୍ମର    ଫଳ ସେ ଭୋଗିବ
ନିୟତି ଖେଳ ଏ ଧ୍ରୁବ । ୫୦

ମାନବ ଜାତିର    ତ୍ରାଣକର୍ତ୍ତା ମୁହିଁ
ମୋତେ କେ କରିବ ହତ
ଏହା କହୁଁ କହୁଁ    ମୁଖମଣ୍ଡଳରୁ
ଦିବ୍ୟଜ୍ୟୋତି ବିକଶିତ । ୫୧

ଦେଖିଲେ ଅକ୍ରୂର    କୃଷ୍ଣ ଚତୁର୍ଦ୍ଦିଗେ
ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ରାଦି
ଘୂରି ବୁଲୁଛନ୍ତି    ଆଜ୍ଞାକାରୀ ହୋଇ
ସୃଷ୍ଟି ନିୟମ ସମ୍ପାଦି । ୫୨

ଦୃଢ଼ଭକ୍ତି ହେଲେ    ବସୁଦେବ ସୁତ
ବାସୁଦେବ ଭଗବାନ
ଭକ୍ତିପୂର୍ଣ୍ଣ ହୃଦେ    ବେନି କର ଯୋଡ଼ି
ଉଦ୍ୟତ କରି ପ୍ରଣାମ । ୫୩

ଅକ୍ରୂରଙ୍କ କର    ଧରିଣ ଶ୍ରୀକୃଷ୍ଣ
ସେ କାର୍ଯ୍ୟ କଲେ ବାରଣ
ମାତ୍ର ତାଙ୍କ କଣ୍ଠେ    ଝଙ୍କୃତ ହୋଇଲା
" କୃଷ୍ଣ ସ୍ୱୟଂ ଭଗବାନ " । ୫୪

ପ୍ରଖର ବେଗରେ    ରଥ ଗଡ଼ିଯାଏ
ଶ୍ରୀକୃଷ୍ଣ ପୁଚ୍ଛିଲେ ପ୍ରଶ୍ନ
ବାପା ପଠାଇବା    ଆମ୍ଭଙ୍କୁ କଂସକରେ
ଆମ୍ଭର କି ପ୍ରୟୋଜନ ? ୫୫

ବାପାଙ୍କୁ ପଛରେ ପକାଇ ଆଗରେ
ନ ଯିବ ମଥୁରା ପୁରେ
ବାପା ପାଦେ ରୁଲ ଯାଉଥିବା ବେଳେ
ମୁଁ ଯାଏଁ ବସି ରଥରେ । ୫୬

ଅକ୍ରୂର କହିଲେ ବୃନ୍ଦାବନ କଥା
ଭୁଲିଯାଅ ଦୁଇ ଭାଇ
ତୁମ୍ଭେମାନେ ଏବେ ରାଜପୁତ୍ର ଅଟ
ବସୁଦେବ ପୁତ୍ର ହୋଇ । ୫୭

ସନ୍ଧିଜ ଭାବରେ ଉତ୍ତରିଲେ କୃଷ୍ଣ
ମୁଁ ଅଟେ ଗୋପାଳ ଜାତ
ନନ୍ଦ ଯଶୋଦା ମୋ ଜନକ ଜନନୀ
ଗୋପ ଗୋପୀ ପ୍ରିୟ ସାଥୀ । ୫୮

ସେମାନଙ୍କୁ ଭୁଲି ରହି ନ ପାରିବି
ସେମାନେ ମୋହର ପ୍ରାଣ
ଗୋପଗୋପୀ ସ୍ନେହ ସଙ୍ଗେ ତୁଳନୀୟ
ନୁହେଁ ରାଜସିଂହାସନ । ୫୯

କୃଷ୍ଣ କଥା ଶୁଣି ଅକ୍ରୂର ମନରେ
ସନ୍ଦେହ ହୋଇଲା ଜାତ
ଭାବିଲେ ସମ୍ଭ୍ରାନ୍ତ ଯଦୁବଂଶର ଏ
ନୁହେଁ କି ଜନ୍ମିତ ସୁତ ? ୬୦

ଗମ୍ଭୀର ହୋଇଣ କହିଲେ ଶ୍ରୀକୃଷ୍ଣ
ଏଠି ଅପେକ୍ଷା କରିବା
ବାପା ଆସିଗଲେ ତାଙ୍କ ସଙ୍ଗେ ମିଶି
ମଥୁରା କଟକେ ଯିବା । ୬୧

ଆଜ୍ଞା ଅନୁକ୍ରମେ ଯମୁନା କୂଳରେ
ଅକ୍ରୂର ରଖିଲେ ରଥ
ନନ୍ଦ ଆସିବାକୁ ଅପେକ୍ଷା କରିଲେ
ରଥ ତେଜ ବେନି ସୁତ । ୬୨

ଏକାଳେ ଅକ୍ରୂର ଗୋଧିକା ଘାଟରେ
ଇଚ୍ଛା କରି ତୀର୍ଥସ୍ନାନ
ଜଳରେ ବୁଡ଼ନ୍ତେ ଦେଖିଲେ ନୟନେ
ତହିଁ ବାସୁଦେବ କୃଷ୍ଣ । ୭୩

ବିସ୍ମରିଲେ ମନେ କି ଅବା ରଥରୁ
ଆସି ଜଳେ ଗଲେ ଲୁଚି
ତରବର ହୋଇ ଜଳରୁ ଉଠିଣ
ଦେଖିଲେ ରଥହିଁ ହସୁଛି । ୭୪

ପୁଣି ଜଳେ ବୁଡ଼ି ସନ୍ଦେହରେ ପଡ଼ି
ଦେଖିଲେ ମୁଖ ସାରସ
ଜାଣିଲେ ଅକ୍ରୂର ଜଳ ସ୍ଥଳ ବନ
ଗିରି ପୃଥିବୀ ଆକାଶ । ୭୫

ସବୁଠାରେ କୃଷ୍ଣ ଲୀଳା ଲଗିଅଛି
କୃଷ୍ଣ ସ୍ୱରୂପ ପ୍ରକାଶ
କୃଷ୍ଣ ନ ଥିବାର ସ୍ଥାନ କାହିଁ ନାହିଁ
କୃଷ୍ଣମୟ ସାରା ବିଶ୍ୱ । ୭୬

ଏଥୁ ସେ ଜାଣିଲେ ପୁରୁଷ ତାଙ୍କର
ହେଲେ ବସୁଦେବ ସୁତ
ବାସ୍ତବରେ ସେହି ଜଗତ କରତା
ବ୍ୟାପୀ ଅଛନ୍ତି ଜଗତ । ୭୭

ଅଠଷଠୀ ପଦେ ଅଧ୍ୟାୟ ସମ୍ପୂର୍ଣ୍ଣ
ପରିପୂର୍ଣ୍ଣ କୃଷ୍ଣ ରସ
ବୋଲେ ବୃନ୍ଦାଦାସ ଆହେ ସୁଜ୍ଞଜନେ
ପାନ କରି ହୁଅ ତୋଷ । ୭୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ମଥୁରାଯାତ୍ରା ଜ ପା ଖ୍ୟା ନେ
ନାମ ଊନଚତ୍ୱାରିଂଶତ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

**ବୋଲି—**

ଥ କା ମ ନ

ଚକାଡୋଳା କର ଦର୍ଶନ

ଚକାବଟତଳେ ଚକାସନପାରି
ଥକାମାର ଦଣ୍ଡେ ବସିଣ । ଘୋଷା

ଗୋପାଳ ବାଳକେ ଦେଇଥିବା ଦ୍ରବ୍ୟ
ଆନନ୍ଦେ କରି ଭୋଜନ
ଚକାବଟତଳେ ଶୋଇ ଯାଇ ଭକ୍ତେ
ଦେଖିଲେ ଦିବ୍ୟ ସ୍ୱପନ । ୧

ଗୋପାଳ ସୁନ୍ଦର ରୂପକୁ ଦେଖାଇ
କହୁଛନ୍ତି ଭକ୍ତେ ଶୁଣ !
ଚିହ୍ନି ନ ପାରିଲ ଖାଇ ଭଉଣୀଙ୍କୁ
ଯାଇଥିଲୁ ତିନଜଣ । ୨

ଦୁଧଛେନା ଦେଇ ପଳାଇ ଆସିଲୁ
ଆମ୍ଭେଯେଣୁ ଭକ୍ତାଧୀନ
ଆମ୍ଭର ଅତିଥି ଉପାସ ରହିଲେ
ହେବୁ ଯେଣୁ ଅପମାନ । ୩

ଯଦି ଆମ୍ଭ ରୂପ ଦେଖିବାକୁ ଇଛା
ଗରୁଡ଼ ପଛରେ ରହି
ସ୍ୱରୂପ ଦର୍ଶନ କର ସ୍ୱନୟନେ
ଅନ୍ୟତ୍ର ପାଇବ ନାହିଁ । ୪

ଏହା କହି ପ୍ରଭୁ ଅନ୍ତର୍ଦ୍ଧାନ ହେଲେ
ନିଦରୁ ଉଠିଲେ ଭକ୍ତ
ଆଶ୍ଚର୍ଯ୍ୟ ଦେବଙ୍କ ଦର୍ଶନ ନିମନ୍ତେ
ଚଳିଲେ ହୋଇ ଉତ୍କଣ୍ଠ । ୫

ଦେଉଳକୁ ଯାଇ ଗରୁଡ଼ ପଛରେ
ଦେଖିଲେ ଗୋପାଳ ବେଶ
ନାଲି ଅଧରରେ ଖିଲ ଖିଲହସ
ଦେଖଣ ହୋଇଲେ ବଶ । ୬

ଦେଖିଲେ ଦେଉଳେ ଗୋପାଳ ମନ୍ତ୍ରରେ
ନୈବେଦ୍ୟ ହୁଏ ଅର୍ପଣ
ସ୍ୱଦେହରେ ବଜେ କରି ସ୍ୱହସ୍ତେରେ
ଭଞ୍ଜୁଛନ୍ତି ନାରାୟଣ । ୭

ଦେଖିଏ ଅପୂର୍ବ ମାନବୀୟ ଲୀଳା
ପବିତ୍ର ହେଲା ନୟନ ।
ଦାରୁବ୍ରହ୍ମ ରୂପେ ଦେଉଳରେ ବଜେ
ଆପଣେ ଗୋପାଳ କୃଷ୍ଣ । ୮

ଭାଇଭଗ୍ନୀ ଧରି ଲୀଳା କରୁଛନ୍ତି
ଲୀଳାମୟ ଜଗନ୍ନାଥ
ମୂଢ଼ ବୃନ୍ଦାଦାସ ଚରଣ ଆଶ୍ରିତ
ଶରଣ ନୀଳାଦ୍ରୀନାଥ । ୯



# ପଞ୍ଚାଶତ ଅଧ୍ୟାୟ

## ମଥୁରାରେ ଆଲୋଡନ

( ରାଗ - ରସକୁଲ୍ୟା )

ଶ୍ରୀକୃଷ୍ଣ ଚରିତ ମାନସ ଶୁଣ
ରସକୋଲ୍ଲରେ ହୋଇଛୁ ପୂର୍ଣ୍ଣ
ରସାମୃତ କାବ୍ୟ କର୍ଣ୍ଣରେ ଯେବେ
ଶ୍ରବଣେ ତୃଷା ନ ହେବ ଖଣ୍ଡନ
କୃଷ୍ଣରସେ ପରିପୂର୍ଣ୍ଣ ଯେ
ଅକ୍ରୁରଙ୍କୁ କଂସ ଗୋପକୁ ପଠାଇ
ବିଚାରେ ଆପଣା ମନ ଯେ । ୧

ରାମକୃଷ୍ଣ ଦୁଇ ଏଥେ ଆସିଲେ
ଆଉ କ ଫେରିବେ ଗୋପକୁ ଭଲେ
ପୃଥିବୀ ମଧ୍ୟରେ ମୁଁ ବଳଶାଳୀ
ମୋ ସଙ୍ଗେ ସମରେ କେ ଯିବ ବଳି
ମେରୁପାଏ ମନ୍ତ୍ରୀ ଜୟ ଯେ
ବିଜୟ କେତନ ଉଡେ ଫରଫର
ଶୁଭେ କଂସ ଜୟଜୟ ଯେ । ୨

ପଡୋଶୀ ରାଜାଏ ଭୟ କରଣ
ଖଟିଛନ୍ତି ପାଦେ ପଶି ଶରଣ
ଶ୍ୱଶୁର ମୋହର ମଗଧ ପତି
ଜରାସନ୍ଧ ମଲ୍ଲ ନାମରେ ଖ୍ୟାତି
ଶାଲ୍ୱ, ଶିଶୁପାଳ ରକ୍ମୁ ଯେ
ବନ୍ଧୁ ମିତ୍ର ହୋଇ ସପକ୍ଷେ ଛନ୍ତି
ଡରନ୍ତି ତାହାଙ୍କୁ ଯମ ଯେ । ୩

ଜରାସନ୍ଧ ସୁତ ଶଳା ବୃତଘ୍ନ
ମୋ ସେନା ବାହିନୀ ପ୍ରମୁଖ ଗଣ୍ୟ
ତାହାଙ୍କ ଅଧୀନେ ସପ୍ତ ସଂଖ୍ୟାରେ
ନିଯୁକ୍ତ ମାଗଧୀ ସୈନ୍ୟ ରାଜ୍ୟରେ
ମଥୁରା ଶାସନ ଭାର ଯେ
ତା ହାତେ ଅର୍ପିତ ହୋଇଣ ଥିବାରୁ
ସୁରକ୍ଷିତ ନିରନ୍ତର ଯେ । ୪

ମିତ୍ର ପକ୍ଷ ନୃପେ ଡ଼ାକରା ପାଇ
ଅଙ୍ଗବଳ ଧରି ଅଛନ୍ତି ରହି
ଶିବିର ପଡ଼ିଛି ବାର ଯୋଜନ
ଆସ୍ଥାନ ଜମାଇ ଅଛନ୍ତି ସୈନ୍ୟ
ସକୂଟେ ସମର ସଜ୍ଜା ଯେ
ନଗ୍ରେ ପ୍ରବେଶିଲେ ବାହାରି ନ ପାଇ
କୁମରେ ପାଇବେ ସଜା ଯେ । ୫

ନାମକୁ ମାତ୍ରକ ଏ ଧନୁ ଯାତ
ଯୋଗାଡ଼ କରିଛି କରିଣ କୂଟ
ରାମକୃଷ୍ଣ ସଙ୍ଗେ ଯାଦବ ମୁଖ୍ୟ
ଏକତ୍ର ବିନାଶ କରିବା ଲକ୍ଷ
ଷଡଯନ୍ତ୍ରକାରୀ ଗଣ ଯେ
ଉପଯୁକ୍ତ ଶିକ୍ଷା ଦେବାର ନିମନ୍ତେ
ଧନୁଯାତ୍ରା ଆୟୋଜନ ଯେ । ୬

ମୋ ବୀର ଦର୍ପରେ ଯାଦବ ଗଣେ
ରହିଛନ୍ତି ଭୟେ ମୂଷିକ ପଣେ
ତ୍ରଚଳିତ ରାଜ- ତନ୍ତ୍ର ବିପକ୍ଷେ
ଜନ ଜାଗରଣ ନାହିଁ ପ୍ରତ୍ୟକ୍ଷେ
ପ୍ରମୁଖ ଯାଦବ ଗଣେ ଯେ
ଛାଡ଼ି ଦେଲେ ଅନ୍ୟ ମାନେ ଅନୁରକ୍ତ
ବିଶ୍ୱସ୍ତ ସେବକ ପଣେ ଯେ । ୭

ଅନ୍ଧକ ବଂଶର ମୁଖ୍ୟ ପଦ୍ୟୋତ
ମୋ ସେନା ବାହିନୀ ପ୍ରମୁଖ ସେତ
ତା ପତ୍ନୀ ପୂତନା ରାଜ ଭବନେ
ରାଜ କର୍ମଚାରୀ ତା ଭାଇ ମାନେ
ବିଶ୍ୱାସୀ ଭୃତ୍ୟ ସେମାନେ ଯେ
ଅନୁରକ୍ତ ହୋଇ ପାଦେ ଖଟିଛନ୍ତି
ସୁଜନାନ୍ତ ଅନୁକ୍ଷଣେ ଯେ । ୮

ଅନେକ ପ୍ରମୁଖ ଯଦୁ ନେତାଏ
କରିଛନ୍ତି ଆତ୍ମ ଗୋପନ ଭୟେ
ଏକତା, ମମତା ନାହିଁ ତାଙ୍କର
ନ ମିଳେ ତାଙ୍କର ଖୋଜ ଖବର
ଛିନ୍ନ ଛତ୍ର ଅବସ୍ଥାରେ ଯେ
ବିଦେଶେ ଥିବାରୁ ସେମାନଙ୍କ ଠାରୁ
ଭୟ ନାହିଁ ଆଭ୍ୟନ୍ତରେ ଯେ । ୯

ପୂର୍ବେ ଯେ ବିପ୍ରଙ୍କ ଥିଲା ପ୍ରଭାବ
ଧନରତ୍ନ ପାଇ ହୋଇଛି ଖର୍ବ
କୃତଘ୍ନ କଠିନ ବ୍ୟବହାରରେ
ପ୍ରତିବାଦ ଜଣେ କେହି ନ କରେ
ସହୁଛନ୍ତି ମୁଣ୍ଡ ପାତି ସେ
ଭୟଭୀତ ହୋଇ ସର୍ବେ ରହିଛନ୍ତି
ଶାସନ କଠିନ ଅତି ଯେ । ୧୦

ଯେଉଁମାନେ ରାଜ୍ୟ ଭିତରେ ଥାଇ
ବିରୋଧ କରନ୍ତି ପାଦ ବଢାଇ
ଶାରୀରିକ ଦଣ୍ଡ ପ୍ରଦାନ କରି
ଦବାଇ ରଖିଛି ସେ ନରନାଥ
ମନ୍ତ୍ରଣା କକ୍ଷରେ ବସି ସେ
ତର୍କଣା କରଇ ହୃଦୟ ମଧ୍ୟରେ
ମନେ ମନେ ହୋଇ ଖୁସି ଯେ । ୧୧

କଠିନ ଶାସନ କରଣେ କ୍ଷମ
ହେଲେ ମଧ୍ୟ ତାର ଅସ୍ଥିର ମନ
ନିଜେ ଭୟଭୀତ ହୋଇଣ ଅଛି
ଦେବକୀ ଅଷ୍ଟମ ଗର୍ଭ ବଞ୍ଚିଛି
ନାରଦ ମୁନିଙ୍କ ବାଣୀ ଯେ
ସଫଳ ହୋଇଲା ଜାଣି ନାରଦଙ୍କୁ
ଭ୍ରାନ୍ତିକାନ୍ତ କଂସ ମଣି ଯେ । ୧୨
ନିଶାର୍ଦ୍ଧ ସମୟେ ବିଶ୍ୱସ୍ତ ଭୃତ୍ୟ
ସଙ୍ଗେ ପରାମର୍ଶ କରେ ଏକାନ୍ତ
ଅକ୍ରୂର ସହିତ ଆସିଲେ କୃଷ୍ଣ
କପଟ କରିବ ପ୍ରାଣେ ନିଧନ
ରାମକୃଷ୍ଣ ସହିତରେ ଯେ
ବିଶ୍ୱାସ ଘାତକ ଯାଦବ ମୁଖ୍ୟଙ୍କୁ
ଶିକ୍ଷା ଦେବ ଏକସରେ ଯେ । ୧୩
ମନ୍ତ୍ରଣା କକ୍ଷରେ ମନ୍ତ୍ରଣା କାଳେ
ଦୂତ ଜଣାଇଲା ଚରଣ ତଳେ
ଅନ୍ଧକ ବାହ୍ଳିକ ଯାଦବ ମୁଖ୍ୟ
ଦେଖା କରିବାକୁ ବଳେ ପ୍ରତ୍ୟକ୍ଷ
ଦ୍ୱାରଦେଶେ ଉପସ୍ଥିତ ଯେ
ଆଜ୍ଞା ହେଲେ ତାଙ୍କୁ ଭେଟାଇବ ଆଣି
ଯାଦବ କୁଳ ବନ୍ଦିତ ଯେ । ୧୪
ଭ୍ରୂଲତା କୁଟୀଳ କରିଣ କଂସ
ବକ୍ଷରେ ଏ କଥା କଲା ପ୍ରବେଶ
ଅବାଧ ବୃଦ୍ଧ ଏ କଠିନ ଗ୍ରନ୍ଥ
କଠିନ କରିଣ କହେ ଘାରଣ୍ଡ
ତା କଥା ସହିବା କଷ୍ଟ ଯେ
କୁଳ ଇଷ୍ଟ ଯେଣୁ ଅବଜ୍ଞା ନ କର
ଆସ୍ଥାନୁ ଉଠିଲା ଦୁଷ୍ଟ ଯେ । ୧୫

ଦ୍ୱାରଦେଶେ ଯାଇ          କଲ ସ୍ୱାଗତ
ଭିତରକୁ ନେଲ          ଧରିଣ ହାତ
ସୁହ କାନ୍ଧେ ହାତ          ରଖି ଚଳିଲେ
ଆସ୍ଥାନ ପାଖେ          ନେଇ ବସାଇଲେ
ପୁଚ୍ଛିଲ ବାକ୍ୟ ସଧୀରେ ଯେ
ହେ ପିତୃବ୍ୟ ଏତେ          ଗଭୀର ନିଶିଥେ
କମ୍ପା ଆସିଲ ଏଠାରେ ଯେ ? ୧୬

ମୁଣ୍ଡ ଟେକି ଚାହିଁ          ଧାଡକୁ ଚାହିଁ
ଦେଖିଲେ ବାହୁକ          ନେହ ଭୁଲାଇ
ପ୍ରଦ୍ୟୋତ୍ୟ, ବୃତଘ୍ନ,          ମାଗଧୀ ସୈନ୍ୟ
ମନ୍ତ୍ରଣା କକ୍ଷରେ          ଦଣ୍ଡାୟମାନ
ପଚ୍ଚରଲ କଂସାସୁର ଯେ
ଆଜ୍ଞା ହେଉ ତାତ          କ ସେବା କରିବ
ପଚ୍ଚରୁଛି କର ଯୋଡ଼ି ଯେ ? ୧୭

ବାହୁକ କହିଲେ          ହିତୋପଦେଶ
ଦେବାକୁ ଆସିଛି          ହେ ନୃପ ଶିଷ୍ୟ
ଯାଦବ କୁଳରେ          ବୟସ୍କ ବ୍ୟକ୍ତି
ହେତୁ ଆସିଅଛି          କର୍ତ୍ତବ୍ୟ ଚିନ୍ତି
ପୁଚ୍ଛଇ ତୁମ୍ଭଙ୍କୁ ଧୀରେ ଯେ
ଶୁଣିଲି ଦେବକୀ          ତନୟ କୃଷ୍ଣଙ୍କୁ
ଡ଼କାଇଛ ମଧୁପୁରେ ଯେ ? ୧୮

ମନ୍ତ୍ରୀ ଅକ୍ରୂରଙ୍କୁ          ଗୋପେ ପେଶିଛ
ଡ଼ାକି ଆଣିବାକୁ          ଦେବକୀ ବତ୍ସ
ନାରଦ ମୁନିଙ୍କ          ଭବିଷ୍ୟ ବାଣୀ
ଭୟଭୀତ ତୁମ୍ଭେ          କର୍ଣ୍ଣରେ ଶୁଣି
ଘେନ ଉପଦେଶ ମୋର ଯେ
ଭବିଷ୍ୟତ ବାଣୀ          ମିଥ୍ୟା ପ୍ରମାଣିତ
ନିମନ୍ତେ ଉପାୟ କର ଯେ । ୧୯

ଶ୍ଳେଷ କରି କଂସ ପୃଚ୍ଛିଲା ତାତ
ଭବିଷ୍ୟତ ବାଣୀ ସର୍ବଦା ସତ୍ୟ
କପଟ ଏ ମିଥ୍ୟା ହେବ କହତ
ବିଶ୍ୱାସ ନ ହୁଏ ମୋହର ଚିତ୍ତ
ବାହୁକ ବୋଲନ୍ତି ଶୁଣ ଯେ
ଅପକର୍ମ ପାଇଁ ଅନୁତାପ କଲେ
ପାପରାଶି ବିନାଶନ ଯେ । ୨୦

ଏହା କଲେ ପୁନଃ ଜନ୍ମ ପାଇବ
ଭବିଷ୍ୟତ ବାଣୀ ମିଥ୍ୟା ହୋଇବ
ଏହାହିଁ ସିଦ୍ଧାନ୍ତ ବଚନ ମୋର
ଇଷ୍ଟ ଉପଦେଶ ଗ୍ରହଣ କର
ପିତୃବ୍ୟ କଥାକୁ ଶୁଣି ଯେ
ତାଚ୍ଛଲ୍ୟ କରିଣ କହେ କଂସରାଣ
କପଟ ତାହା ମୁଁ ମାନ ଯେ ? ୨୧

ଅନୁତାପ କରି ଲୋକ ବହୁତ
ଭୋଗିଛନ୍ତି ଦଣ୍ଡ ଅଛି ଦୃଷ୍ଟାନ୍ତ
ବାହୁକ କହିଲେ ସେ ମୂଲ୍ୟହୀନ
ଆନ୍ତରିକତାର ଅଭାବ ଜାଣ
ପରନ୍ତୁ ଛଳନାପୂର୍ଣ୍ଣ ଯେ
ପ୍ରଭୁଙ୍କ ପଦରେ ଆତ୍ମ ନିବେଦନ
କଲେ ହୁଏ ଇଚ୍ଛା ପୂର୍ଣ୍ଣ ଯେ । ୨୨

ଇଚ୍ଛାମୟ ଇଚ୍ଛା କରନ୍ତି ପୂର୍ଣ୍ଣ
କରନ୍ତି ଆର୍ତ୍ତିର ଆର୍ତ୍ତି ହରଣ
ଶରଣ ରକ୍ଷଣ ଶୁଣନ୍ତି ସ୍ୱନ
ଭକତ ଡାକକୁ ଡେରନ୍ତି କର୍ଣ୍ଣ
କରନ୍ତି ହରଣ ଆର୍ତ୍ତି ଯେ
ଆର୍ତ୍ତତ୍ରାଣ ନାମେ ବାନା ଉଡୁଅଛି
ସେ ଯେଣୁ ଜଗତ ନାଥ ଯେ । ୨୩

ବସୁଦେବ ପୁତ୍ର      ପାଦେ ଶରଣ
ପଶିଲେ ହୋଇବ      ଶଷ୍ଟ ଖଣ୍ଡନ
କୃଷ୍ଣ ଅନୁଗ୍ରହେ      ଅରାତି ଶୂନ୍ୟ
ହୋଇଣ ନିର୍ବିଘ୍ନେ      କାଟିବ ଦିନ
ଶୁଣିସେ ବଭ୍ରୁ ପେ କହେ ଯେ
ଆତ୍ମରକ୍ଷା ପାଇଁ      ଯାହା ମୁଁ କରିଛି
ତହିଁକି ନାହିଁ ମୋ ଭୟେ ଯେ । ୨୪

ବାହୁକ କହିଲେ      ରାଜ କୁମାର
ମୋଠାରେ ବିଶ୍ୱାସ      ନାହିଁ ତୁମର
ଆପଣା ଦୋଷ ନ      କର ସ୍ୱୀକାର
ଗାଳି ମାରି କହୁ      ଅଚ୍ଛତ ଗିର
ଦଇବକୀ ବସୁଦେବ ଯେ
ତାଙ୍କ ଠାରେ ଯେଉଁ      ଅନ୍ୟାୟ କରିଛ
ତହିଁକି ଦଣ୍ଡ ପାଇବ ଯେ । ୨୫
ବାନ୍ଧିଛ ଯାଦବ      ଦାସତ୍ୱ ପଣେ
ଭୟ ଦେଖାଇଛ      ବ୍ରାହ୍ମଣ ଗଣେ
ପବିତ୍ର ମଥୁରା      ନର୍କ କୁଣ୍ଡରେ
ପରିଣତ ତୁମ୍ଭ      ଘୃଣ୍ୟ କର୍ମରେ
ନେଉଛ ଶିଶୁଙ୍କ ପ୍ରାଣ ଯେ
ସେ ଦୋଷେ ଦଣ୍ଡିତ      ହୋଇବ ନିଶ୍ଚୟ
ଏଥିରୁ ମିଳେ ପ୍ରମାଣ ଯେ । ୨୬
ହରିଛ ଯାଦବ-      ଙ୍କ ସ୍ୱାଧୀନତା
ଭିଟାମାଟି ହରି      ନେଲ ଅଯଥା
ସେସବୁ ଆମ୍ଭଙ୍କୁ      ଫେରାଇ ଦିଅ
ଶାନ୍ତିରେ ରହନ୍ତୁ      ମାଟିର ପୁଅ
ବାସୁଦେବ ଦଇବକୀ ଯେ
ପୁତ୍ର ସଙ୍ଗେ ସୁଖେ      ରହନ୍ତୁ ରାଜ୍ୟରେ
ପ୍ରଜାଏ ହୁଅନ୍ତୁ ସୁଖୀ ଯେ । ୨୭

ମଥୁରା ତେଜଣ          ଯାଦବେ ଯେତେ
ପଳାଇ ଅଛନ୍ତି          ଭୟେ ଅନ୍ୟଦେ
ସେମାନଙ୍କୁ ପୁଣ          ଡକାଇ ଆଣି
ରାଜ୍ୟରେ ରଖାଅ          କୁମର ମଣି
    ପୂର୍ବ ପରି ବିପ୍ର ଗୃହେ ଯେ
ବେଦ ଧ୍ୱନି ସଙ୍ଗେ          ଦେବତା ପୂଜନ
    ହେଉ ପୁଣି ଦେବାଳୟେ ଯେ । ୨୮

ଧୂର୍ତ୍ତବନ୍ତ ନାରୀ          ଗଣେ ନିର୍ଭୟେ
କୋଳରେ ଧରନ୍ତୁ          ଶିଶୁ ତନୟେ
ପ୍ରତିହିଂସା ପର-          ସ୍ୱଣ ନ ହୋଇ
ଘୃଣ କାର୍ଯ୍ୟେ ଲିପ୍ତ          ନ ହୁଅ ତୁହି
    ସ୍ୱଦେଶୀ ସୈନ୍ୟ ରକ୍ଷଣ ଯେ
ଆତଙ୍କ ଜନକ          ଶାସନ ନ କରି
    ଶାନ୍ତିରେ କଟାଅ ଦିନ ଯେ । ୨୯

ମାଗଧୀଙ୍କ ଦ୍ୱାରା          ଆତଙ୍କ ରାଜ
ପରସ୍ୱ ହରଣେ          ନ କର କାର୍ଯ୍ୟ
ପର ନାରୀ ପ୍ରତି          ଅନ୍ୟାୟ ଦୃଷ୍ଟି
ପ୍ରଜା ଅତ୍ୟାଚାରେ          ନ ଦିଅ ମତି
    ତୁ  ପିତା ଉଗ୍ରସେନ ଯେ
ବନ୍ଦୀ ମୁକ୍ତ କରି          ରାଜ୍ୟେ ନରପତି
    କରି କର ପା ପୂଜନ ଯେ । ୩୦

ତୁମେ ଯୁବରାଜ          ପଦରେ ରହି
ରାଜକାର୍ଯ୍ୟେ କର          ସାହାଯ୍ୟ ଯାଇଁ
ନିର୍ଭୟରେ ପ୍ରଜା          କରନ୍ତୁ ବାସ
ଏହାହିଁ ହେଉଛି          ମୋ ଉପଦେଶ
    ଯାଦବ କୁଳେ ମୁଁ ଇଷ୍ଟ ଯେ
ମୋ କଥା ପାଳନ          କଲେରେ ନନ୍ଦନ
    ଗୁରୁ ଇଷ୍ଟ ତୁଷ୍ଟ ହେବେ ଯେ । ୩୧

କ୍ରୋଧ କରି କଂସ ପୁଚ୍ଛେ ପିତୃବ୍ୟ
ଏହା କଲେ ପ୍ରାପ୍ୟ ଶାସ୍ତି କି ହେବ ?
ତୁମ୍ଭେ ସବୁ ଅଛ ସବୁ ଖଳତା
ମୋହର ଭିତରେ ଅଛି ସାଇତା
ସେ ସବୁକୁ ପରିତ୍ୟାଗ ଯେ
କରିବାକୁ ମୋତେ ଉପଦେଶ ଦିଅ
ଧନ୍ୟ ତୁମ୍ଭ ଅନୁରାଗ ଯେ । ୩୨

ତାହାପରେ କିଣ ହେବ ପିତୃବ୍ୟ
ଖୋଲି କରି କହ ସେ କଥା ଧ୍ରୁବ ?
ବାହୁକ କହିଲେ ଦେବାଶିର୍ବାଦ
ଧୋଇ ଦେବ ମନୁ ସବୁ ବିଷାଦ
ମଥୁରା, ଯାଦବ ଗଣେ ଯେ
ସୁରକ୍ଷା ପ୍ରଦାନ କରି ହେବ ଧନ୍ୟ
ପୂଜା ପାଇବ ବିଧାନେ ଯେ । ୩୩

କୃଷ୍ଣ ବାସୁଦେବ ଚରଣାଶ୍ରିତ
ହେଲେ ପୂର୍ଣ୍ଣ ହେବ ତୋ ମନୋରଥ
ତୁମ୍ଭେ ଯା ଶୁଣିବ ଦେବେ ସତତ
ପଚାରୁଛି କହ ମୋ ଆଗେ ସତ୍ୟ
ତୁମ୍ଭେ କି ଅଛ ପ୍ରସ୍ତୁତ ଯେ
ବଧ୍ୟରୂପେ ବୋଲଇ ଭାବିବାକୁ ଦିଅ
ନ କରି ମୋତେ ଉଚାଟ ଯେ । ୩୪

ଅଟ୍ଟହାସ୍ୟ କରି କହନ୍ତେ ଦୁଷ୍ଟ
ଶୁଣିଣ ବାହୁକ ହେଲେ ଲଜ୍ଜିତ
କ୍ରୋଧରେ କହିଲେ ଦୃଢ଼ ବୃତ୍ତାନ୍ତ
ହତକୁ ମଣୁଛ ତୁମ୍ଭେ ଅଜ୍ଞାତ
ହରାଇ ବସିଛ ଜ୍ଞାନ ଯେ
ଯାଦବ କୁଳର ମୁକୁଟ ଦାତାଙ୍କ
ନିଧନେ ତୁମ୍ଭର ଧ୍ୟାନ ଯେ । ୩୫

ମାତ୍ର ଶେଷ କଥା କହୁ ଯାଉଛୁ
କରି ନ ପାରିବ ତାଙ୍କର କିଛୁ
ଯାଦବ ବଂଶର ସେ ଦୀପ ଶିଖା
କରିଛନ୍ତି ତାଙ୍କୁ ଲୋକେ ପ୍ରତୀକ୍ଷା
ତାଙ୍କଠି ପୂର୍ଣ୍ଣ ଭରସା ଯେ
ତୁମ୍ଭର ମଙ୍ଗଳ ହୁଅନ୍ତା ଅବଶ୍ୟ
ପୋଷଣ କଲେ ସେ ଆଶା ଯେ । ୩୬

ଶୁଣି ସର୍ପ ପ୍ରାୟ ଗର୍ଜି ବୋଲଇ
ଅନୁଚିତ କଥା ଯୋଗାଏ ନାହିଁ
ମୋହ ମନୋବଳ ଭାଙ୍ଗିବା ପାଇଁ
ଭୟଭୀତ ମୋତେ କର କପାଇଁ ?
ଦବିବା ବ୍ୟକ୍ତି ନୁହଇଁ ଯେ
ଦବାଇ ରଖିବା ପ୍ରବୃତ୍ତି ମୋହର
ରାଜ୍ୟରେ ନୃପତି ମୁହିଁ ଯେ । ୩୭

ବୋଲନ୍ତି ବାହୁକ ତୋ ଆଚରଣେ
ଶୁଦ୍ଧ ଚିନ୍ତା ଯେବେ ନ ରଖ ମନେ
ଈଶ୍ୱର କରିବେ ତୁମ୍ଭ ବିଗୃହ
ଦୋଷ ଅନୁରୂପେ ଦଣ୍ଡଟି ସାର
କ୍ରୋଧେ କହେ କଂସାସୁର ଯେ
ଈଶ୍ୱରଙ୍କ ପ୍ରତି ଭୟ ନାହିଁ ମୋର
ବାହୁବଳେ ବଳୟାର ଯେ । ୩୮

ତୁର ନନ୍ଦ ସୁତ କେତେ ମାତର
ଶରଣ ପଶିବ ତାହା ପୟର
ମୋ ପାଦେ ଶରଣ ପଶିଲେ ସେହୁ
ରଖିବ ତାହାର ଜୀବନ ମୁହିଁ
ଶୁଣି ତା ନିଷ୍ଠୁର ବାଣୀ ଯେ
ମର୍ମାହତ ହୋଇ ଫେରିଲେ ବାହୁକ
ମନ୍ତ୍ରଣା କକ୍ଷୁ ତକ୍ଷଣି ଯେ । ୩୯

କଂସର ଇସରା ପାଇ ଦୁରନ୍ତ
ହତ୍ୟା କରାଇଲା ସେ ବେନି ଜନ
ପିତା ପୁତ୍ର ବେନି ତେଜିଲେ ପ୍ରାଣ
ରାଜରାସ୍ତା ଜଳ ଶୋଣିତେ ସ୍ନାନ
କେହି ନ ପାରିଲେ ଜାଣି ଯେ
ଶ୍ୱାନ ଶୃଗାଳଙ୍କ ବିକଟ ଶବଦେ
କମ୍ପିତ ଅର୍ଦ୍ଧ ରଜନୀ ଯେ । ୪୦

ପ୍ରଦ୍ୟୋତକୁ ଡାକି ଦେଲା ଆଦେଶ
ପଥେ ରାମକୃଷ୍ଣ କର ବିନାଶ
ଯଜ୍ଞସ୍ଥଳେ ଯେହ୍ନେ ନ ପାରେ ଆସି
ଦେଖି ନ ପାରିବେ ମଥୁରାବାସୀ
ସଜାଇ ରଖିବ ସୈନ୍ୟ ଯେ
ପଦାକୁ ବାହାରି ନ ପାରିବେ ଲୋକେ
ଭୟ ଜାତ ହେବ ମନ ଯେ । ୪୧

ଫେରିଲେ ପ୍ରଦ୍ୟୋତ ମୁଣ୍ଡ ଝୁଙ୍ଗାରି
ଦେଖିଲେ ନିଅନ୍ତି ଶବ ଘୋଷାରି
ଦୁଇଗୋଟି ଶବ ମାଗଧୀ ସୈନ୍ୟ
ନେଲାବେଳେ ଛିଡ଼ି ପଡ଼େ ବସନ
ରାଜରାସ୍ତା ଶୂନ୍ ଶାନ୍ ଯେ
ଖାମ୍ବ ଅନ୍ତରାଳେ ରହି ଦୃଶ୍ୟ ଦେଖି
ହରାଇ ଦେଲା ସେ ଜ୍ଞାନ ଯେ । ୪୨

ବୁଲାଦାସ ବୋଲେ ବିନାଶ କାଳେ
ବିପରୀତ ବୁଦ୍ଧି ତୁଳଇ ହେଳେ
ହିତକଥା ଗୋଟି ହୁଏ ଅହିତ
ହିତକାରୀ ଲୋକେ କରଇ ହତ
ବିବେକ ବିଧ୍ୱଂସ ମାତ୍ର ଯେ
ଆପଣା ହାତରେ ଆପଣାର ଜିଭ
ଆପଣେ ଦିଅଇ କାଟି ଯେ । ୪୩

ଚୌରିକଣ ପଦେ ଅଧ୍ୟାୟ ଶେଷ
ସୁଜନେ ଶ୍ରବଣ କର ମାନସ
ପଦ ପଦ କରେ ପୂରିଛି ରସ
ଗୀତରେ ଭଣିଲ ଶ୍ରୀ ବୁଲ୍‌ଦାସ
ଶ୍ରୀକୃଷ୍ଣ ପଦ୍ମବର୍ଣ୍ଣିତ ଯେ
କାଳନଦୀ କୂଳେ କୁଟୀର କରିଣ
କଲେ କରମଳାକାନ୍ତ ଯେ । ୪୪

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ଗୋପଲୀଳା ଖଣ୍ଡେ ମଥୁରାରେ ଆଲୋଡନ ବର୍ଣ୍ଣନେ ନାମ ପଞ୍ଚାଶତ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

## ବୋଲ ( ୨ ) —

ଥ କା ମ ନ
ଚକାଡୋଳା ଙ୍କର ଦର୍ଶନ
ଚକାବଟତଳେ ଚକାଣ୍ଠନ ପାଇ
ଥକାମାର ଦଣ୍ଡେବସିଣ । ଘୋଷା
ଗୃହ ଧାମେ ଯାଇ ଶିଷ୍ଟଭେଟ ବର
ପ୍ରଭୁଙ୍କ ଭୋଜନ ଶାଳ
ଭାଇ ଭଉଣୀଙ୍କୁ ସାଥିରେ ଘେନିଣ
ଭୁଞ୍ଜନ୍ତି ଶ୍ରୀ ଆଦିମୂଳ । ୧
ଆପଣେ ଭୋଜନ କରି ଜଗତକୁ
ଭୁଞ୍ଜାଉ ଅଛନ୍ତି ହରି
ସୁଖା ଓ ଶଙ୍କୁଡ଼ି ନାଇ ବାଧ୍ୟ ହୁଏ
ଯାହାର ଲୋଡ଼ା ଯେପରି । ୨

ଆନନ୍ଦ ବଜାର    ଦେଇ ଯିବାକାଳେ
କୈବଲ୍ୟ କଣିକା ପାଇ
ଦେଉଳକୁ ଯାଇ    ଦର୍ଶନ କରିଲେ
" କେବଳୀର" ଦେଖା ପାଇ । ୩
ଏଠାରେ ପ୍ରଭୁଙ୍କ   ଦେଖା ନ ପାଇଲେ
କାହିଁ ନପାଇବ ଘୂରି
ମାନବ ରୂପରେ   ଲୀଳା କରୁଛନ୍ତି
ଦାରୁ ବ୍ରହ୍ମ ରୂପ ଧରି । ୪
ତୁମ୍ଭେତ ବହୁତ    ଜ୍ଞାନ ସାଧି ଅଛ
ଆମ୍ଭେ ବା କହିବୁ କସ
ଦୁଧ, ଛେନା ରଖ    ଆମ୍ଭେ ଯାଉଅଛୁ
ନୋହିଲେ ଶ୍ୱାନର ଗ୍ରାସ । ୫
ଆଗ ପଛ ହୋଇ   ଦାଣ୍ଡି ପହଣ୍ଡିରେ
ଚାଲିଗଲେ ତିନିଜଣ
ଦିବସର କାର୍ଯ୍ୟ   ଶେଷ କରି ସୂର୍ଯ୍ୟ
ଚଳିବାକୁ   ଗଲେ ଲୀନ । ୬



# ଏକପଞ୍ଚାଶତ ଅଧ୍ୟାୟ

## ରାମକୃଷ୍ଣଙ୍କ ମଥୁରା ବିଜୟ

( ରାଗ - ରାମକେରୀ )

ଶ୍ରୀକୃଷ୍ଣ ଚରିତ ମାନସ ଜନେ କର ଶ୍ରବଣ
ପଦପଦକରେ ପୂରିଛି ରସ କର ହେ। ପାନ । ୧
ମଥୁରା ନଗ୍ରର ସୀମାରେ ରଥ କଲା ପ୍ରବେଶ
ଦେଖିଲେ ରଜକ କୁଠରେ ଉଡ଼େ ଦେବାଙ୍ଗ ବାସ । ୨
ଶୁଖାଇ ରଜକ ଭାଙ୍ଗଇ ସିଝି ଅତରି ବାସ
ସୁଦିବ୍ୟ ବସନ ଦେଖିଣ ବାଳକେ କଲେ ଆଶ । ୩
ରଜକ କୁଠକୁ ଧାଇଁଲେ ଗୋପ ବାଳେ ସତ୍ୱର
ନିଜନିଜ ବସ୍ତ୍ର ଚାହିଁଣ ବଳେ କରିଲେ ଯୂର । ୪
ସ୍ୱର୍ଗପୁର ଜୟ କରିଣ ଆଣିଥିଲା ଏ ବସ୍ତ୍ର
ସେ ବସ୍ତ୍ର ବାଳକେ ଧାରଣ କଲେ ଅଙ୍ଗ ସଜ୍ଜିତ । ୫
ଦେବାଙ୍ଗ ବସନ ପିନ୍ଧିଣ ଦିବ୍ୟରୂପ ଧଇଲେ
ସ୍ୱର୍ଗର ଦେବତା ସମାନ ଅବା ଜଣା ପଡ଼ିଲେ । ୬
ବସ୍ତ୍ରଯୂର କାଳେ ରଜକ କରିବାରୁ କନ୍ଦଳ
ପ୍ରହାର କରନ୍ତେ ବାଳକେ ପଡ଼ିଗଲା ଚହଳ । ୭
ସେ କଥା ପଡ଼ିଲା ଯାଇଁଣ କଂସ ରାଜା କାନରେ
ଅଘଟଣ କଥା ଶ୍ରବଣେ ଲୋକେ ଅବାକ ହେଲେ । ୮
ମୁହୂର୍ତ୍ତିକ ମଧ୍ୟେ ଘଟଣା ହୋଇଗଲା ପ୍ରଚୁର
ଆସିଲେ ଆସିଲେ ଧ୍ୱନିରେ ମୁଖରିତ ନଗର । ୧୦
ଦିବ୍ୟ ବସନରେ ସଜ୍ଜିତ ହୋଇଛନ୍ତି ବାଳକେ
ନାଚନ୍ତି ବିଭୋର ହୋଇଣ ଧରି ଏକୁ ଆରକେ । ୧୧
ରାମକୃଷ୍ଣ ଜୟ ଧ୍ୱନିରେ ଆକାଶ ମୁଖରିତ
ଶୋଭାଯାତ୍ରା ଧୀରେ ଚାଲନ୍ତି ନଗ୍ର ପ୍ରଧାନ ପଥ ।୧୨
ନଗ୍ରର ମଧ୍ୟରେ ମିଳନ୍ତେ ରାମକୃଷ୍ଣ ଦି ଭାଇ
ମାଆ ମାଟି ବୁକେ ଆଙ୍କିଲେ ଚୁମ୍ବନ ଶ୍ରଦ୍ଧାବନ୍ଧ ।୧୩

ଶତ ପ୍ରଣିପାତ କରଣ ରେଣୁ କପାଳେ ବୋଳି
ଥୋକାଏ କ୍ଷେପିଲେ ଗର୍ଭକୁ ତୋଳି ପବନ ଧୂଳି ।୧୪
ଭୂମିରୁ ଉଠିଣ କରିଲେ ଗୁରୁ ଇଷ୍ଟେ ପ୍ରଣାମ
ଯୋଡ଼ହସ୍ତ ହୋଇ କରିଲେ ଲୋକମାନଙ୍କୁ ମାନ୍ୟ ।୧୫
କଣ୍ଡା ଓ ଘୁମୁରା ବଜାଇ ଗୋପ ବାଳକ ଗଣ
ତାଳେ ତାଳେ ନୃତ୍ୟ କରନ୍ତି କୃଷ୍ଣ ଗୀତ ଗାଇଣ ।୧୬
ପ୍ରତେ ହୁଏ ଅବା ଚୈତନ୍ୟ ଭକ୍ତଗଣଙ୍କ ସଙ୍ଗେ
ଶ୍ରୀକ୍ଷେତ୍ର ଦାଣ୍ଡରେ ବଜାଇ ନୃତ୍ୟ କରିଣ ରଙ୍ଗେ । ୧୭
ବଡଦାଣ୍ଡେ ବଡ଼ ଠାକୁର କବା ପହଣ୍ଡି ବଜେ
ନାଚନ୍ତି ସେବକ, ଭକତ ବଭିନ୍ନ ବାଦ୍ୟ ବାଜେ । ୧୮
ଘୋଷ ଯାତ୍ରା ପ୍ରାୟ ଶୁଭଇ ଲୋକମାନଙ୍କ ଗୋଳ
ଗାଉଛନ୍ତି ଗୋପ ବାଳକେ ଉଚ୍ଚକଣ୍ଠେ ଓଗାଳ । ୧୯
ମଧୁପୁରବାସୀ ଏ ବାଳ ଲୀଳା କରି ଦର୍ଶନ
ଅପୂର୍ବ ଆନନ୍ଦ ପାଇଲେ କହିଣ ଧନ୍ୟ ଧନ୍ୟ । ୨୦
ଅକ୍ରୂରଙ୍କୁ ଗୃହେଁ କହିଲେ ସଧୀରେ ଶଙ୍କର୍ଷଣ
ମାମୁଁଙ୍କୁ ଜଣାଅ ଆସିଲେ ଭଣଜା ରାମକୃଷ୍ଣ । ୨୧
ସାଙ୍ଗରେ ଗୋପାଳ ବାଳକେ ବହୁ ସଂଖ୍ୟାରେ ଛନ୍ତି
ଧନୁଯାତରା ଦେଖିବାକୁ ସର୍ବେ ଆସି ଅଛନ୍ତି । ୨୨
ସାଥିରେ ଶତକେ ସଂଖ୍ୟାରେ ଛନ୍ତି ଗୋପାଳଗଣ
ଆଣିଛନ୍ତି ଭେଟି ଗୋରସ ନନ୍ଦ ନୃପ ଆପଣ । ୨୩
ଶୋଭାଯାତ୍ରା କରି ଆସନ୍ତି ରାଜ ପଥରେ ପୋଏ
ମିଳିବେ ଦଣ୍ଡକ ମଧ୍ୟରେ ଆସି ପୁରେ ସଭିଏଁ । ୨୪
ବାରତା ନେଇଣ ଅକ୍ରୂର ରଥ ଘେନି ଚଳିଲେ
ବେନି ଧାଡ଼ି ହୋଇ ବାଳକେ ଧୀରେ ମାଡଗଲିଲେ ।୨୫
ସ୍ଥିର ଆନ୍ଦୋଳନ ସମୟେ ଯେହ୍ନେ ଦଅନ୍ତି ଧ୍ୱନି
ଅନୁରୂପ ଧ୍ୱନି ଦଅନ୍ତି ପୂରି ଉଠେ ଅବନୀ । ୨୬
ଶୋଭାଯାତ୍ରା ଆଗେ ଚାଲନ୍ତି ରାମକୃଷ୍ଣ ଦି ଭାଇ
ଢ଼ଳଢଳ ଚଳ ଯାଆନ୍ତି ଶୋଭା କଳି ନୁହଇ । ୨୭

ନନ୍ଦ ମହାଗୃହ ଗୃହରେ ପଛେ ଗୋପାଳ ମେଳେ
କୋଳାହଳ ଶୁଣି ଉତ୍ସୁକେ ଲୋକେ ଦାଣ୍ଡେ ଧାଇଁଲେ ।୨୮
ବାତାୟନ ପଥେ ବଧୂଏ ଶୋଭାଯାତ୍ରା ଦେଖନ୍ତି
ବଢ଼ଭୀ ଉପରେ କେ ଅବା ବସି ଦେଖୁ ଅଛନ୍ତି । ୨୯
ସଭିଙ୍କ ମନରେ ଆନନ୍ଦ ତଥା ଭୟ ଉତ୍କଣ୍ଠା
କେତେବେଳେ କସ କରିବ କଂସ ନ ମିଳେ ପନ୍ଥା ।୩୦
କି ଅବା ବର୍ଣ୍ଣିବା ନଗରର ଶୋଭା ଅତି ସୁସଜ୍ଜ
ଧବଳ ପ୍ରସାଦେ ଶୋଭିତ କୋଠା ଅତ୍ୟନ୍ତ ଉଚ୍ଚ ।୩୧
ରାଜଧାନୀ ବଳି ନଗର ପ୍ରାୟ ପ୍ରଶସ୍ତ ମାନ
ଯୋଜନାବଦ୍ଧାନୁକ୍ରମରେ ହୋଇ ଅଛି ନିର୍ମାଣ ।୩୨
ନବ ଅତିଥିଙ୍କ ସ୍ୱାଗତ ପାଇଁ ନଗ୍ର ସଜ୍ଜିତ
ମାଳମାଳ ଆମ୍ବ ତୋରଣ ପୁର ଦ୍ୱାରେ ମଣ୍ଡିତ ।୩୩
ପ୍ରତି ଦ୍ୱାରଦେଶେ ରଖିଛି ଜଳପୂର୍ଣ୍ଣ କଳସ
ଆମ୍ବଡାଳ ନାରିକେଳରେ ହୋଇଅଛି ସୁବେଶ ।୩୪
ଛକେଛକେ ଶୋଣ ସଜ୍ଜିତ ପୁଷ୍ପ ନବ ବସନେ
ସ୍ୱାଗତମ୍ ଲେଖା ହୋଇଛି ବଡ଼େ ଅତି ଯତନେ ।୩୫
ଅଇଁଲା, ତୁଳସୀ, ମାଳତି ପୁଷ୍ପେ ଶୋଣ ସଜ୍ଜିତ
କୃଷ୍ଣପ୍ରିୟ ଦ୍ରବ୍ୟ ଦର୍ଶନେ କୃଷ୍ଣ ଭାବ ଜାଗ୍ରତ ।୩୬
ଲିପା ହୋଇ ଦାଣ୍ଡ ଗୋମୟେ କାହିଁ ପଡ଼ିଛି ଝୁଣ୍ଟି
ଚନ୍ଦନ ଛେର ତାଉପରେ ବାସ ଉଠେ ଚହଟି ।୩୭
ବଞ୍ଚା ହୋଇଅଛି କର୍ପୂର ଗୁଣ୍ଡି ସିଞ୍ଚା ଅତର
ଅଭିନବ ପରିପାଟିରେ ପରିବେଶ ସୁନ୍ଦର ।୩୮
ଶୁକ୍ଳବସ୍ତ୍ର ବିଛା ହୋଇଛି ପ୍ରଭୁ ଚଳି ପଥରେ
ଶୁକ୍ଳପୁଷ୍ପ ବିଞ୍ଚା ଯାଇଛି ଗନ୍ଧ ଆମୋଦ ଭରେ ।୩୯
ରାସ୍ତାର ଉଭୟ ପାର୍ଶ୍ୱରେ ଧାଡ଼ି ଧାଡ଼ି ପାଦପ
କୁସୁମରେ ଗଭା ମଣ୍ଡିତ କମନୀୟ ସେ ରୂପ ।୪୦
ଆଞ୍ଜୁଳା, ଆଞ୍ଜୁଳା ଅଜାଡ଼ି ଦେଉଅଛନ୍ତି ଫୁଲ
ଉଡ଼ନ୍ତି ଭ୍ରମରେ ଭ୍ରମରେ ହୋଇଣ ମାଳମାଳ ।୪୧

ଯାହାର ଯୋଗାଡ ଏମନ୍ତ ନାହିଁ ତା ପଟାନ୍ତର
ସଜାଇଛୁ ବିଶ୍ୱକରମା କରି ଅତି ସୁନ୍ଦର । ୪୨
ନିମନ୍ତ୍ରିତ ଜମ୍ବୁ ଜାତି କଂସାସୁର ରାଜନ
ବିଶ୍ୱ ଦେଇଛନ୍ତି ମାର୍ଗରେ ସଜ୍ଜିଥିବା ରତନ । ୪୩
ନିଜ ବଡ଼ିମା ପ୍ରଦର୍ଶନେ କରିଅଛି ଏମନ୍ତ
ରତ୍ନର ଉଜ୍ଜ୍ୱଳେ ନଗରର ଶୋଭା ଉଦ୍‌ଭାସିତ । ୪୪
ଧନରତ୍ନ ବାରି ନୁହଇ ଦର୍ଶକେ ଆଚମ୍ବିତ
ଧୂପକାଠି ଧୂଆଁ ରଖିଛି ନଗ୍ର କରି ଆବୃତ୍ତ । ୪୫
ଗୋପାଳ ବାଳକ ମେଳରେ ଚଳିଯାନ୍ତି ନନ୍ଦନ
ବୃକ୍ଷ, ଅଟ୍ଟାଳିକା, ଛାତରେ ବସି ଦେଖନ୍ତି ଜନ । ୪୬
କଳାଧଳା ଦୁଇ ଭାଇଙ୍କି ନେତ୍ର ପଥେ ଦେଖିଣ
କେ କରେ କଲ୍ୟାଣ କେଏବା କରେ ଅଶ୍ରୁ ବର୍ଷଣ । ୪୭
କେ କରେ ପ୍ରଣାମ ଭକ୍ତିରେ ଯୋଡ଼ି ତା ବେନି ହସ୍ତ
ବିପ୍ରେ ଆଶିର୍ବାଦ କରନ୍ତି ଉର୍ଦ୍ଧେ ଟେକିଣ ହାତ । ୪୮
ପରଂବ୍ରହ୍ମ ସ୍ୱରୂପ କେଏ କରୁଅଛି ଦର୍ଶନ
ଜ୍ୟୋତିବ୍ରହ୍ମ ରୂପେ ଯୋଗୀଏ କରୁଛନ୍ତି ଦର୍ଶନ ।୪୯
ଦୈତ୍ୟ ନିସୂଦନ ରୂପକୁ ଦୁଷ୍ଟ ଲୋକେ ଦେଖନ୍ତି
ବ୍ରହ୍ମାଣ୍ଡ ପାଳନ କରତା ସନ୍ଥ ଜନେ ମଣନ୍ତି । ୫୦
ନାରାୟଣ ରୂପେ ବ୍ରାହ୍ମଣେ କରି ଦିବ୍ୟ ଦର୍ଶନ
ଦୁର୍ବାକ୍ଷତ ଶିରେ ପକାଇ କରୁଛନ୍ତି କଲ୍ୟାଣ । ୫୧
ମଙ୍ଗଳା ଚରଣ ଗାଆନ୍ତି ଉର୍ଦ୍ଧେ ସ୍ୱର ଟେକିଣ
ସ୍ୱାଗତ କରନ୍ତି ସମ୍ଭ୍ରମେ ଶ୍ରୀନର ନାରାୟଣ । ୫୨
ଜାଣିଲେ ଏ ହାଣ କରତା ନିରେଖିଣ ବଦନ
ମାନବ ରୂପରେ ଶ୍ରୀବିଷ୍ଣୁ ଧରାରେ ଅବତୀର୍ଣ୍ଣ । ୫୩
ତୁଳନା କରନ୍ତି ରୂପକୁ ଗୃହିଁ ସଜ୍ଜନଗଣ
ବ୍ରହ୍ମା, ବିଷ୍ଣୁ, ଶିବଠାରୁ ଏ ମୂର୍ତ୍ତି ମନୋରଞ୍ଜନ । ୫୪
ବିଷ୍ଣୁ ଚତୁର୍ଭୁଜ ଅଟନ୍ତି ବ୍ରହ୍ମା ଚତୁର ବଦନ
ସଦାଶିବ ପଞ୍ଚ ଆନନ ଦେଖିବାକୁ ବିବର୍ଣ୍ଣ । ୫୫

ମାନ୍ତ ଏ ମାନବୀ ହସ୍ତୀଙ୍କ ରୂପ କି ମନୋରମ
ସମାନ ନୋହିବେ ତୁଳନେ ଶତ ସହସ୍ର କାମ । ୫୬
ଦ୍ୱିଭୁଜ ମୁରଲୀ କର ଏ ରୂପ ନବ କିଶୋର
ଅମୀୟ ଆନନ୍ଦ ସୁହାସ୍ୟ ମଣ୍ଡେ ରଙ୍ଗ ଅଧର । ୫୭
ଶୁକ୍ଳନୀଳ ବର୍ଣ୍ଣ ଦି ଭାଇ ଗଙ୍ଗା ଯମୁନା ପ୍ରାୟ
ଦେଖି ମଧୁପୁରବାସୀଙ୍କ ହୃଦେ ଭାବ ଉଦୟ । ୫୮
ପୁତ୍ର ହରା ମାତା ଡ଼ାକଇ ଆସ କୋଳକୁ ମୋର
ତୋ ପାଇଁ ମୋ ପୁଅ ମାରିଛି କଂସାସୁର ପାମର । ୫୯
ଆସଆସ ବାପ ଧନରେ ମୁଖେ ଦେବି ଚୁମ୍ବନ
ତୋପାଇଁ ଧରିଛି ଜୀବନ ତେଜି ମୋର ସନ୍ତାନ । ୬୦
ମୋ ପୁଅ ସମାନ କୋଳରେ ତୋତେ ବସାଇ ମୁହିଁ
ସ୍ତନ୍ୟପାନ କରାଇ ତୋଷ ହେବି ଆରେ କହ୍ନେଇ । ୬୧
କଳାଧଳା ଦୁଇ ଭାଇଙ୍କି ନେତ୍ର ପଥେ ଦେଖିଣ
କେ କରେ କଲ୍ୟାଣ କିଏ ବା କରେ ଅଶ୍ରୁ ବର୍ଷଣ । ୬୨
ମଦନ ମୋହନ ମୂରତି ଦେଖି ବାଳଏ ମଗ୍ନ
ବରପାତ୍ର ଆସି ମିଳିଲେ ବୋଲି ଭାବନ୍ତି ମନ । ୬୩
କାମିନୀ କୁଳକୁ କନ୍ଦର୍ପ ସମାନ ଦେଖାଯାନ୍ତି
କଟାକ୍ଷପାତରେ କାମିନୀ କାମାନଳେ ଜଳନ୍ତି । ୬୪
ବହୁରୂପୀ ପରାୟ ଲୋକେ ଦେଖା ଦିଅନ୍ତି କୃଷ୍ଣ
ଯିଏ ଯେଉଁ ରୂପେ ଭାବଇ ପାଏ ସେଇ ଦର୍ଶନ । ୬୫

କୁଞ୍ଚିତ କୁନ୍ତଳ କେଶରେ ଲମ୍ବି ଅଛିଲ ବେଣୀ
ଜନମନ ବାନ୍ଧି ନେବାକୁ କି ଅବା ରଜ୍ଜୁ ଶ୍ରେଣୀ । ୬୬

ମଥାରେ ମାଣିକ୍ୟ ମୁକୁଟେ ମୟୂର ଚୂଳ ଖଞ୍ଜା
ଶୂଳଚଳଣରୁ ପ୍ରତ୍ୟୟ ଯାଦବ ବଂଶୀ ରାଜା । ୬୭

ସୁଠାମ ଶରୀର ଗଠନ ନରସିଂହ ପରାୟ
ବର୍ତ୍ତୁଳ ବକ୍ଷସ୍ଥଳ ବାହୁ ଆରତ ଜନାଶ୍ରୟ । ୬୮

ପନ୍ତିପନ୍ତି ଦାନ୍ତ ଦିଶଇ ଦ୍ରାକ୍ଷା ବୀଜ ସମାନ
ଆରକ୍ତ ଅଧର କିବା ସିନ୍ଦୂର ଫଟା ଗଗନ । ୬୯

କମଳ କୁସୁମ କଳିକା ବେନି ନୟନ ଶୋଭା
ସ୍ୱଭାବେ କିଶୋର ବୟସ କିସ ଉପମା ଦେବା ? ୭୦
ଉଚ୍ଚ କପାଳରେ ଶୋଭିତ ବାସ ଚନ୍ଦନ ଚୋପା
ଗୋରଚନା ବିନ୍ଦୁ ଅଙ୍କିତ ମାତା ଅଙ୍ଗୁଳି ଟିପା । ୭୧
ମତ୍ତହସ୍ତୀ ପ୍ରାୟ ଗମନ୍ତି ଧୀର ମନ୍ଥର ଗତି
ଜଗତ ମୋହନ ରୂପକୁ ଲୋକେ ଚୃହିଁ ରହନ୍ତି । ୭୨
ଠେଲାପେଲା ହୋଇ ଦେଖନ୍ତି କ୍ରମେ ଆଗକୁ ବଢ଼ି
ଲୋକ ଭିଡ଼ ଦେଖି ପ୍ରହରୀ ଯାଉଛନ୍ତି ବାହୁଡ଼ି । ୭୩
କିମ୍ବଦନ୍ତୀ ପ୍ରାୟ ଯା ଜନ୍ମ କାହାଣୀ ଶୁଣୁଥିଲେ
ନୟନରେ ଦେଖି ତାହାଙ୍କୁ ବିହ୍ୱଳିତ ହୋଇଲେ । ୭୪
ପ୍ରିତିପୁଷ୍ପ ଦେଇ କରିଲେ ପ୍ରଭୁ ପାଦ ବନ୍ଦନ
ଜୟଜୟ ଧ୍ୱନି ନିନାଦେ ମୁଖରିତ ଗଗନ । ୭୫
ଯେ ବେଗେ ଗୃହାନ୍ତି କୁମରେ ଦେଖି ଲୋକେ ହର୍ଷିତ
ଠେଲାପେଲା ହୋଇ ଦେଖନ୍ତି ଦେବକୀ ଦେବୀ ସୁତ । ୭୬
ମୋହୁଛନ୍ତି ସର୍ବ ମନକୁ ସେ ଯେ ବିଶ୍ୱ ମୋହନ
ଅଲଭ୍ୟ ଦର୍ଶନେ କରନ୍ତି ପ୍ରଭୁ ଗୁଣ କୀର୍ତ୍ତନ । ୭୭
ଏକକୁ ଆରକେ ଆଙ୍ଗୁଳି ଦେଖାଇ କହେ ମିତ
ଦେଖଏ କୁମର ଦୁହିଁକି ଦେବକୀ ଦେବୀ ସୁତ । ୭୮
କଂସ କାରାଗାରେ ଜନମି ହେଲେ ଗୋପରେ ଗୁପ୍ତ
ଭାର ନିବାରଣେ ମାନବ ରୂପେ ବିଷ୍ଣୁ ସମ୍ଭୂତ । ୭୯
ଏହାଙ୍କୁ ମାରିବା ନିମନ୍ତେ ଯେତେ ପେଷିଲା ଦୈତ୍ୟ
ମାରିବା ଆଗରୁ ସେମାନେ ସର୍ବେ ହେଲେ ନିହତ । ୮୦
ଜନ୍ମ ଷଷ୍ଠଦିନେ ପୁତନା ସ୍ତନେ ବିଷ ବୋଳିଣ
ମାରିବାକୁ ଯାଇ ଆପଣେ ହେଲା ଗୋପେ ନିଧନ । ୮୧
ଷଷ୍ଠ ଦିବସରେ ଶକଟାସୁର ହୋଇଲା ହତ
ଉଠିଆରି ଦିନ ମରିଲା ଗୋପରେ ତୃଣାବର୍ତ୍ତ । ୮୨
ଆଠ ବର୍ଷେ ଅଷ୍ଟ ମଲ୍ଲଙ୍କୁ କଲେ ପ୍ରାଣେ ନିଧନ
କାଳୀୟ ନାଗୁଣୀ ଦର୍ପକୁ କଲେ ଜଳେ ଦଳନ । ୮୩

କାଳନ୍ଦୀ ବିଶାକ୍ତ ସଳିଳ ମଧୂଜଳ ହୋଇଲା
ତୃଷାତୁର ପ୍ରାଣୀ ଗଣଙ୍କ ତୃଷା ହରଣ କଲା । ୮୪
ଇନ୍ଦ୍ର ପୂଜା ନ କରି କଲେ ଗୋବର୍ଦ୍ଧନ ପୂଜନ
କ୍ରୋଧରେ ମଘବା କରନ୍ତେ ଗୋପେ ଘୋର ବର୍ଷଣ । ୮୫
ବାମହାତ କାନି ଆଙ୍ଗୁଳିରେ ଟେକି ଧରି ଗିରି
ରକ୍ଷାକଲେ ଗୋପ ଗୋବତ୍ସା ସପ୍ତାଏ ଗିରିଧାରୀ । ୮୬
ଇନ୍ଦ୍ର ଦର୍ପ ଚୂର୍ଣ୍ଣ କରିଣ ପୂଜା କଲେ ଗ୍ରହଣ
ଉପେନ୍ଦ୍ର ଉପାଧି ପ୍ରଦାନ କଲେ ସୁରରାଜନ । ୮୭
ବ୍ରହ୍ମାଙ୍କ ଅଜ୍ଞାନ ବିନାଶ କଲେ ବତ୍ସା ହରଣେ
ବହୁ ଅସମ୍ଭବ କରମ କଲେ ଦୁଇ ନନ୍ଦନେ । ୮୮
ବଳରେ ନ ପାରି କୌଶଳେ କରିବାକୁ ନିହତ
ଡ଼କାଇଛୁ କୂଟେ ମଥୁରା ଦେବକୀ ଦୁଇ ସୁତ । ୮୯
ଷଡ଼ଯନ୍ତ୍ର କରି ଅଛଇ କରିବାକୁ ନିଧନ
କରନ୍ତୁ ଶଙ୍କର ତାଙ୍କର ସବୁ ଇଷ୍ଟ ଖଣ୍ଡନ । ୯୦
ଯଦୁବଂଶ ତ୍ରାଣକର୍ତ୍ତା ଏ କଂସ ନିଦାନ ବୈଦ୍ୟ
ରକ୍ଷିବେ ମଥୁରାବାସୀଙ୍କୁ କଂସ ନିହତ କରି । ୯୧
ପରସ୍ପର କଥା ହୋଇଣ ମଧୁପୁର ଜନତା
ଶୋଭାଯାତ୍ରା ସଙ୍ଗେ ଚାଲନ୍ତି ମନରୁ ଛାଡ଼ି ଚିନ୍ତା । ୯୨
ଜୟ ରାମକୃଷ୍ଣ ଧ୍ୱନିରେ ତ୍ରୈଲୋକ ପୂରିତ
କୃଷ୍ଣଙ୍କ ମଥୁରା ବିଜୟ ବାରତା ପ୍ରସାରିତ । ୯୩
ପଞ୍ଚାନବେ ପଦେ ଅଧ୍ୟାୟ ଏଠାରେ ସମ୍ପୂର୍ଣ୍ଣ
ତୁଳସୀଦାସ ଭଣେ ଗୀତରେ ଜନେ କର ଶ୍ରବଣ । ୯୪
ଶରଣ ରକ୍ଷଣ ଶ୍ରୀକୃଷ୍ଣ ପାଦେ ଶତ ପ୍ରଣତି
ନ ଧରିବ ଦୋଷ ସଜ୍ଜନେ କରୁଅଛୁ ବିନତି । ୯୫

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ରାମକୃଷ୍ଣଙ୍କ ମଥୁରା ବିଜୟ ଆଖ୍ୟାନେ
ନାମ ଏକ ପଞ୍ଚାଶତ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।

## ବୋଲି —

ସଖି ! କଏ ସେ କ ଗୋ !
କାହାର ଏ ରଙ୍ଗ ଗୃଳକ ?
ମଥାକୁ ହଲାଇ    ଗ୍ରୀବକୁ ଫୁଲାଇ
ଆସୁଅଛୁ ଝୁଲି ଝୁଲକ ? ୧
ଧଳାକଳା ଦୁଇ    ଭାଇ ଚଳଯାନ୍ତି
ରାଜ ଦାଣ୍ଡେ ହଲି ହଲକ
ବାଲଗୋପାଳଙ୍କ    ମେଳେ ଶୋଭାପାଆ
ନାଚକୁଦ ଖେଳ ଖେଳକ । ୨
ମଦନ ମୋହନ    ବେଶ ଧରିଛନ୍ତି
ହରନ୍ତି ଯୁବତୀ ଧୃତିକ
ତରୁଣୀଙ୍କ ଚିତ୍ତ    ହରଣ କରନ୍ତି
କଟାକ୍ଷ ପାତରେ ମନ୍ଥକ । ୩
ରାମକୃଷ୍ଣ ଦୁଇ    ଭାଇ ଏ ଅଟନ୍ତି
କଂସକୁ ନଥାଏ ଖ୍ୟାତିକ
ଦେବକୀ ଉଦରେ    ଜନ୍ମି କାରାଗାରେ
ରହିଲେ ଗୋପରେ ଲୁଚିକ । ୪
ବୋଲେ ବୁଲଦାସ    ବୋଲିଛନ୍ତି କଂସ
ପଠାଇ ଅକ୍ରୂର ମନ୍ତ୍ରିକ
ବିଚାରିଛି ମନେ    ଧନୁର୍ଯଜ୍ଞସ୍ଥାନେ
ମାରିବ ସମନ ପତିକ । ୫



# ଦ୍ୱାପଞ୍ଚାଶତ ଅଧ୍ୟାୟ

## କୁବ୍‌ଜା ଉପାଖ୍ୟାନ

### ରାଗ-ବଙ୍ଗଳାଶ୍ରୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ଆହେ ସୁଜ୍ଞଜନ
ରସା ସାରରସ ସରସିରେ ସ୍ନାନ
କରିକର ରସପାନ । ୧
ବେଳ ସାତ ଘଡି କାଳେ ପହୁଁଆର
ମିଳିଲ୍ ନବର ଦ୍ୱାରେ
ଜନ ଗହଳରେ ପୂରି ଅଛୁ ଦାଣ୍ଡ
ଯୋରିଷ ନ ପଡେ ତଳେ । ୨
ହେନ୍ତ ପଥ ଦେଇ କଂସ ରଜା ପାଇଁ
ସୁଗନ୍ଧ ପଦାର୍ଥନେଇ
କୁବୁଜା ନାମରେ କଂସର ମାଲ୍ୟାଣୀ
ଯାଉଥିଲ୍ ନଇଁ ନଇଁ । ୩
ସମ୍ଭ୍ରାନ୍ତ କୁଳରେ ଜନମ ତାହାର
ତା ନାମ ଅଟେ ମାଳିଣୀ
ତା ସୁନ୍ଦର ରୂପ ସର୍ବ୍ୱତ ସମାନ
ନାହାନ୍ତି ଜଣେ ରମଣୀ । ୪
ତା ମାଆ କଂସର ରାଜ ପ୍ରାସାଦରେ
ଥିଲେ ମୁଖ୍ୟ ସେବାକାରୀ
ଗନ୍ଧ ଦ୍ରବ୍ୟ ନିତି ଯୋଗାଇ ଦଅନ୍ତି
ଉଦ୍ୟାନୁ ସଂଗ୍ରହ କରି । ୫
ଧନମାନ ଯଶ ଖ୍ୟାତି ସମ୍ମାନରେ
ସମ୍ଭ୍ରାନ୍ତ ବଂଶରେ ଜାତ
ହୋଇଣ ଥିବାରୁ ମାଳିଣୀର ଭାଗ୍ୟ
ଥିଲ୍ ବଡ ଉଜ୍ଜଳିତ । ୬

କଂସର ପ୍ରଧାନ ହସ୍ତୀ ମାହୁନ୍ତର
ଅଙ୍ଗାରକ ନାମେ ସୁତ
ଗଜ ବାହିନୀର ମୁଖ୍ୟ କର୍ମଚାରୀ
କାର୍ଯ୍ୟରେ ଥିଲେ ନିଯୁକ୍ତ । ୭
ରାଜାଙ୍କ ରଥର ସାରଥି ଯେପରି
ଉଚ୍ଚପଦ ଅଧିକାରୀ
ରାଜ ପାଟ ହସ୍ତୀ ମାହୁନ୍ତ ସେପରି
ସମ୍ମାନର ଅଧିକାରୀ । ୮
ରାଜାଙ୍କ ମାଳ୍ୟାଣୀ ଅନୁରୂପ ଭାବେ
ସମ୍ଭ୍ରାନ୍ତ ପଦାଧିକାରୀ
ଅନ୍ତଃପୁର ସେବା ଦାୟିତ୍ୱରେ ଥାଇ
ରାଜାଙ୍କର ସେବା କାରୀ । ୯
ସମ୍ମାନ, ସୌନ୍ଦର୍ଯ୍ୟ, କୁଳ, ମାନ, ଯଶ
ସବୁଥିରେ ପରିପୂର୍ଣ୍ଣ
ଥିବାରୁ ମାଳତୀ ପୁତ୍ର ବଧୂ ରୂପେ
ସମ୍ମାନେ କଲେ ବରଣ । ୧୦
ମାଳତୀ ସୁନ୍ଦର ରୂପକୁ ଦେଖିଣ
ଅଙ୍ଗାରକ ବଶ ହେଲେ
କୁଆଁରୀ କନିଆଁ ଥିବାରୁ ମାଳତୀ
ବାପଘରେ ରହୁଥିଲେ । ୧୧
ମାଳତୀଙ୍କୁ ବାର- ବର୍ଷ ବୟସରେ
ହୋଇଲା ସେ ରୋଗାକ୍ରାନ୍ତ
ବହୁ ଚେଷ୍ଟା ପରେ ବଞ୍ଚିଗଲା ସତ୍ୟ
ରୂପ ଦିଶିଲା ବିକୃତ । ୧୨
ବେକ ବଙ୍କିଗଲା କୁଜ ବାହାରିଲା
ଅଣ୍ଟା ହୋଇଗଲା ବଙ୍କା
ତିନି ଭାଗ ହୋଇ ଯିବାରୁ ଶରୀର
ଲୋକେ ଡାକିଲେ ତ୍ରିବଙ୍କା । ୧୩

କଏ ଡାକେ କୁବ୍ଜା  କଏ ତ୍ରିବକ୍ରୀ, କେମ୍ବୀ
କଏବା କୁବ୍‌ଜାଡ଼ାକଇ
ସବୁ ନାମ ତାକୁ  ପସନ୍ଦ ଲାଗଇ
ପ୍ରତିବାଦ କରେ ନାହିଁ । ୧୪
ଥଟ୍ଟା ପରିହାସ  କଲେ କେହି ତାକୁ
ପ୍ରତିକ୍ରିୟା ନ ପ୍ରକାଶେ
ହସହସ ମୁଖେ  ସବୁ ସହିଯାଏ
ମନରେ ଦୁଃଖ ନ ଆସେ । ୧୫
ତା ବିକୃତ ରୂପ  ଦେଖି ଅଙ୍ଗାରକ
ତ୍ୟାଗ ପତ୍ର ଦେଇ ଦେଲ
ସେହିକୁ ନିବନ୍ଧା  କର୍ମକୁ ଆଦରି
ପିତୃଗୃହେ ବାସକଲ । ୧୬
ଜଣେ ବୁଦ୍ଧିମନ୍ତ,  ରୂପ, ଗୁଣବନ୍ତ
ବିବାହ ପରେ ଯେ ସୁଖ
ପାଇବାକୁ ହକ୍  ତହିଁରୁ ବଞ୍ଚିତ
ହୋଇତା ମନରେ ଦୁଃଖ । ୧୭
ଏ ଦୁନିଆଁ ପ୍ରତି  ନିଜପ୍ରତି, ତଥା
ଦେବତା ବ୍ରାହ୍ମଣ ପ୍ରତି
କ୍ରୋଧ ଓ ନୈରାଶ୍ୟ ଦେଖା ଦେଲେ ମଧ୍ୟ
ସହିଗଲ୍ ମୁଣ୍ଡ ପାତି । ୧୮
ତା ମାଆ ମରିବା  ପରେ ପ୍ରସାଦରେ
ସେ କାର୍ଯ୍ୟେ ପାଇ ନିଯୁକ୍ତ
ରାଜ ଅନ୍ତଃପୁରେ  ଗନ୍ଧ ଦ୍ରବ୍ୟ ମାନ
ଯୋଗାଏ ସେ ନିତପ୍ରତି । ୧୯
ତାହା ଅଧୀନରେ  ନିଯୁକ୍ତ ପାଇଣ
ବହୁଲୋକ ରହିଥିଲେ
ପୁଷ୍ପଉଦ୍ୟାନର  ରକ୍ଷଣା ବେକ୍ଷଣ
କାର୍ଯ୍ୟମାନ କରୁଥିଲେ । ୨୦

ଲତା ଗୁଳ୍ମ ମାନ ରୋପଣ କରିବା
ସଙ୍ଗେ ରକ୍ଷଣା ବେକ୍ଷଣ
ଦାୟିତ୍ୱ ବହନ କରିବା ସହିତ
କରୁଥିଲେ ଜଳଦାନ । ୨୧
ଲତାଗୁଳ୍ମ ଠାରୁ ସୁଗନ୍ଧ ଦ୍ରବ୍ୟାଦି
ଯତ୍ନେ କରି ଉତ୍ପାଦନ
ଭବିଷ୍ୟତ ପାଇଁ ସାଇତି ରଖନ୍ତି
ସଂଗୃହିତ ଦ୍ରବ୍ୟମାନ । ୨୨
ବିଭିନ୍ନ ପ୍ରକାର ଚେରମୂଳି ମଧ
ସଂଗ୍ରହ କରି ରଖନ୍ତି
ରୋଗ ବଇରାଗ କାଳେ ପୀଡ଼ିତଙ୍କ
ସେବା କାର୍ଯ୍ୟରେ ଲଗାନ୍ତି । ୨୩
ମାଳମାର ମାଆ ଏସବୁ ବିଦ୍ୟାରେ
ଥିଲେ ବେଶୀ ପାରଙ୍ଗମ
ମାଆଠାରୁ ବିଦ୍ୟା ଶିକ୍ଷା କରି ଝିଅ
ଅରଜିଛି ବହୁ ନାମ । ୨୪
ଏହି କାରଣରୁ ଲୋକଙ୍କ ଭିତରେ
ତ୍ରିବକ୍ରାର ବହୁ ମାନ୍ୟ
ରୂପ ନ ଥିଲେ ହେଁ ଗୁଣରେ ତାହାକୁ
ନୁହେଁ କେ ନାରୀ ସମାନ । ୨୫
ତାହା ଭଦ୍ର ନମ୍ର ବ୍ୟବହାର ଦେଖି
ସକଳେ ତା ପ୍ରତି ତୋଷ
ଏପରିକି କଂସ ନିଷ୍ଠୁର ହେଲେ ହେଁ
କରେ ଥଟ୍ଟା ପରିହାସ । ୨୬
ତ୍ରିବକ୍ରା ନିଜର କୁତ୍ସିତ ରୂପକୁ
ଦେଖି ହୁଏନି ଦୁଃଖିତ
କାରଣ ସେ ଭଲ ଭାବେ ଜାଣି ଅଛି
ତା ରୂପ ସୌନ୍ଦର୍ଯ୍ୟ ଯୁକ୍ତ । ୨୭

ତା ବେକ ଯଦି ବା- ଙ୍କି ଯାଇ ନ ଥାନ୍ତା
ତା ମୁଖ ଶୋଭା ସହିତ
ସମାନ ହେବାକୁ ମଧୁପୁର ନାରୀ
ହୁଅନ୍ତେ ନାହିଁ ସମର୍ଥ । ୨୮
ତା ପିଠିରେ କୁଜ ବାହାରି ନ ଥିଲେ
ଅଙ୍ଗ ଲାବଣ୍ୟ ତୁଳନା
ହେବାକୁ ମଥୁରା ମଧ୍ୟରେ ଜଣେ କେ
ମିଳନ୍ତେ ନାହିଁ ଲଳନା । ୨୯
ତା ଆଣ୍ଠୁଟା ବାଙ୍କି ନ ଥିଲେ ଗୃହରେ
ଫୁଟି ଉଠନ୍ତା ମାଧୁରୀ
ସମାନ ନୁହଁନ୍ତେ କଂସର ରମଣୀ
ହେଲେହେଁ ରାଜ କୁମାରୀ । ୩୦
ଶରୀର ଗଠନ ଅଙ୍ଗର ସୌଷ୍ଠବ
ସୁନ୍ଦର ମୁଖର ଶୋଭା
କୌଣସିରେ ତାର ଅଭାବ ନ ଥିଲା
ବୟସରେ ନବଯୁବା । ୩୧
ତା ମନ ଗହନ ଗୋପନ ରହସ୍ୟ
ମୁଖେ ନ କରି ପ୍ରକାଶ
ଦର୍ପଣରେ ନିଜ ରୂପକୁ ଦେଖିଣ
ଫୁଟି ଉଠେ ସ୍ମିତ ହାସ୍ୟ । ୩୨
ରାତିରେ ଶଯ୍ୟାରେ ଶୋଇ ରହି ଦେଖେ
ତା ସୁନ୍ଦର ରୂପ ସ୍ୱପ୍ନ
ନିଜ ରୂପ ଫେରି ପାଇବା ନିମନ୍ତେ
ଧ୍ୟାନ କରେ ବିଲୋଚନ । ୩୩
ତାହା ଦୃଢ ଭକ୍ତି ଦେଖି ଉମାପତି
କରିଛନ୍ତି ବରଦାନ
ଯେଉଁ ଦିନ ନେବେ ଦର୍ଶନ କରିବ
ଦେବକୀ ଦେବୀ ନନ୍ଦନ । ୩୪

ଯେ ଦିନ ତାହାର ଦୁଃଖ ଦୂର ହେବ
ସୁନ୍ଦର ଦିଶିବ ରୂପ
ଏହି ବିଶ୍ୱାସରେ ବଞ୍ଚି ରହିଛି ସେ
ମନୁଷ୍ୟଙ୍କ ଅନୁତାପ । ୩୫

ଏତେ ଦିନେ ସ୍ୱପ୍ନ ସଫଳ ହୋଇଲା
କୃଷ୍ଣ କଲେ ଆଗମନ
ଏ ବାରତା ପାଇ ଶୋଭାଯାତ୍ରା ଆଡ଼େ
ଚାଲିଗଲା ସେ ବହନ । ୩୬

ଦେଖିଲା ମଥୁରା ଦାଣ୍ଡେ ଯେତେ ଲୋକ
ସଭିଙ୍କ ମନେ ଆନନ୍ଦ
ଯେଉଁମାନେ କଂସ ପ୍ରତି ଅନୁରକ୍ତ
ସେମାନେ ବେଶୀ ଆନନ୍ଦ । ୩୭

କାରଣ ସେମାନେ ଭାବୁଛନ୍ତି ମନେ
କଂସର ପ୍ରଧାନ ବୈରୀ
ରାମକୃଷ୍ଣ ଦୁଇ ହତ୍ୟା କରିବାକୁ
ଡକାଇଛି ଦଣ୍ଡଧାରୀ । ୩୮

କୌଶଳେ ତାହାଙ୍କୁ ନିହତ କରାଇ
ନିଷ୍କଣ୍ଟକ ହୋଇଯିବ
ଏମନ୍ତ ବିଚାରି କଂସ ପକ୍ଷ ଲୋକ-
ମାନେ ଆନନ୍ଦ ଅପାର । ୩୯

ଅନ୍ୟ ପକ୍ଷେ କଂସ ଭୟେ ଯେଉଁମାନେ
ଭୋଗୁଛନ୍ତି ଦୁଃଖ କଷ୍ଟ
ସେମାନେ ଆନନ୍ଦ ହେବାର କାରଣ
କଂସ ବିନାଶିବେ କୃଷ୍ଣ । ୪୦

ଯାଦବମାନଙ୍କ ମୁକ୍ତିଦାତା କୃଷ୍ଣ
ଆଗମନେ ଆନନ୍ଦିତ
ଧର୍ମର ରକ୍ଷକ କୃଷ୍ଣ ବାସୁଦେବ
ଦେଖି ବିପ୍ରେ ଉଲ୍ଲସିତ । ୪୧

ମଥୁରା ଦାଣ୍ଡରେ ତାଙ୍କ ବିଷୟରେ
ବିଭିନ୍ନ କାହାଣୀମାନ
କାନେକାନେ କଏ କହିଗଲା ପରି
ହୁଅଇ କଥା ରଚନ । ୪୨

କେ କହେ ଦେବକୀ ତନୟ ଶ୍ରୀକୃଷ୍ଣ
ଜାତ ସ୍ୱୟଂ ଭଗବାନ
ଜନମର ତିନ ଦିନରେ ପୂତନା
ଅସୁରୀ କଲେ ନିଧନ । ୪୩

ଅଷ୍ଟ ବର୍ଷେ ଅଷ୍ଟ ମଲ୍ଲଙ୍କୁ ମାରିଲେ
କଲେ କଂସ ଗର୍ବ ଚୂର୍ଣ୍ଣ
କାନି ଅଙ୍ଗୁଳିରେ ଗିରି ଗୋବର୍ଦ୍ଧନ
ଧରିଲେ ସପତ ଦିନ । ୪୪

ଗିରି ଗୋବର୍ଦ୍ଧନ ପୂଜାକାଳେ ଇନ୍ଦ୍ର
ଗର୍ବକୁ କରିଲେ ଚୂର୍ଣ୍ଣ
ଭୂପ ଇନ୍ଦ୍ର ପଦ ଯାଚି ଦେଲେ ଇନ୍ଦ୍ର
ପଶିଲେ ପାଦେ ଶରଣ । ୪୫

ଗୋବତ୍ସା ହରଣ କରି ବେଦବର
ହେଲେ ବଡ଼ ଡରିବର
କୃଷ୍ଣ ବାସୁଦେବ ଚରଣ ସ୍ମରଣେ
ଅଜ୍ଞାନ ହୋଇଲା ଦୂର । ୪୬

ବହୁ ଅଲୌକିକ ଲୀଳା କରିଛନ୍ତି
ଗୋପରେ ନନ୍ଦ ନନ୍ଦନ
ମାସକ ମଧ୍ୟରେ ସାଧି କରିଛନ୍ତି
ଗୁରୁମୁଖ ବିଦ୍ୟାମାନ । ୪୭

ଏଥୁ ଜଣାଯାଏ ନାରଦଙ୍କ କଥା
ପ୍ରମାଣ ହୋଇଛି ସତ୍ୟ
ଦେବକୀ କୁମର କରେ କଂସାସୁର
ହୋଇବ ପ୍ରାଣେ ନିହତ । ୪୮

ମାରିବା ନିମନ୍ତେ ଡକାଇ ଆଣିଛୁ
ମରିବ ଆପଣେ ଦୁଷ୍ଟ
ଏ ଦେବକୀ ସୁତ କୃଷ୍ଣ ବାସୁଦେବ
ସ୍ୱୟଂ ଈଶ୍ୱର ସମ୍ଭୂତ । ୪୯
ଏକଥା ମାଳିନୀ ମନେ ଦୃଢ଼ୀଭୂତ
ହେଲି ମୁନି କଥା ଚିନ୍ତି
ତା ସ୍ୱପ୍ନ ଦେବତା ନର ନାରାୟଣ
ମଥୁରାକୁ ଆସିଛନ୍ତି । ୫୦
କୃଷ୍ଣଙ୍କ ଉପରେ ନଜର ପଡ଼ିଲା
ଧରିଛନ୍ତି ଦିବ୍ୟ ବେଶ
ଅଣ୍ଟାରେ ପଟ୍ଟୋଡ଼ି ମଥାରେ ପଗଡି
ଶିଖିପୁଚ୍ଛ ଚୂର୍ଣ୍ଣି କେଶ । ୫୧
ନଟବର ବେଶ ନୟନରେ ଦେଖି
ହେଲା ଭାବ ବହ୍ୱଳିତ
କହିଲା ହେ ପ୍ରଭୁ ତୁମ୍ଭଙ୍କୁ ଅପେକ୍ଷା
କରି ମୁଁ ଅଛି ଜୀବିତ । ୫୨
ବର୍ଷବର୍ଷ ଧରି ଅନାଇ ରହିଛି
ଆଖିରେ ନାହିଁ ମୋ ନିଦ
ହୃଦ ମଧ୍ୟେ ନାମ ସ୍ମରଣ କରୁଛି
ଧ୍ୟାନ କରେ ପଦ୍ମପାଦ । ୫୩
ଶ୍ରୀକୃଷ୍ଣ ପୁଛିଲେ ଆମ୍ଭେ ଆସିବାର
ତୁମ୍ଭେ ଜାଣିଲ କପରି ?
ତ୍ରିବକ୍ରା କହିଲା ନାରଦଙ୍କ କଥା
ହୃଦୟ କନ୍ଦରେ ସ୍ମରି । ୫୪
କିଏ ତୁମ୍ଭେ ଦେବୀ କି ନାମ ତୁମ୍ଭର
ପଚାରିଲେ ଧୀର କରି
ଉତ୍ତରିଲା କୁବ୍‌ଜା ମୋ ନାମ ତ୍ରିବକ୍ରା
ଅନ୍ତଃପୁର ସେବାକାରୀ । ୫୫

କଏ ଡାକେ କୁଣ୍ଣ, କେ ଡାକଇ କେଶି
କଏ ବା ଡାକଇ ଚ୍ଚେଟି
ଅଛା ପରିହାସ କରୁଥାନ୍ତି ଲୋକେ
ମୋ ନାମକୁ ମୁଖେ ରଟି । ୫୬
ପ୍ରାସାଦେ ସୁଗନ୍ଧ ଦ୍ରବ୍ୟ ଯୋଗାଇବା
ଦାୟିତ୍ୱ ଅଟେ ମୋହର
ପିତାଦତ୍ତ ନାମ ଅଟଇ ମାଳିନୀ
ନିବନ୍ଧା ଲୋକେ ଉଚ୍ଚାର । ୫୭
ଆପଣଙ୍କ ପାଇଁ ଆଣିଛି ସୁଗନ୍ଧ
ଗନ୍ଧ ଦ୍ରବ୍ୟ ମଧ୍ୟେ ଶ୍ରେଷ୍ଠ
ବହୁ ସୁଗନ୍ଧିତ ପଦାର୍ଥ ମନ୍ଥନେ
ହୋଇଅଛି ସଂଗୃହିତ । ୫୮
ରଜତ ଦାନରେ ସେ ସୁଗନ୍ଧ ଦ୍ରବ୍ୟ
ଯତନେ ରଖିଛି ସଞ୍ଚି
ସେ ଦ୍ରବ୍ୟ ଗ୍ରହଣ କରନ୍ତୁ ଆପଣ
ଭକ୍ତିଭରେ ସମର୍ପୁଛି । ୫୯
ନିବନ୍ଧାର କଥା ଶୁଣି ଅନ୍ତର୍ଯ୍ୟାମୀ
କରିଲେ କଟାକ୍ଷ ପାତ
ଓଷ୍ଠ ପୁଟେ ସ୍ମିତ ହାସ୍ୟ ରେଖା ଦେଖି
ନିବନ୍ଧା ହେଲା ମୋହିତ । ୬୦
ଜାଣିଲା ଅନ୍ତରେ ଏ ହସ କେବଳ
ତାହା ନିମନ୍ତେ ଉଦ୍ଦିଷ୍ଟ
ଏ ହସରେ ଭରି ରହିଅଛି ପ୍ରୀତି
ପ୍ରତିଶ୍ରୁତିର ଉଚ୍ଛ୍ୱାସ । ୬୧
ଏହି ପ୍ରେମମୟ ପ୍ରଭୁ ଅପେକ୍ଷାରେ
ସ୍ୱପ୍ନଭୁବି ହୋଇ ସେହି
ବର୍ଷ ବର୍ଷ ଧରି ଅପେକ୍ଷା କରିଛି
ଆସିବା ପଥକୁ ଚାହିଁ । ୬୨

ଏତେ ବଚନେ ଶିବ ଶୁଣିଲେ ତା କଥା
ଉଦ୍ଦେଶ୍ୟ ହୋଇଲା ପୂର୍ଣ୍ଣ
ନୟନେ ଦେଖିଲେ ସୁନ୍ଦର ଦେବତା
ଜଗତଜନ ମୋହନ । ୬୩

ଭବ ବହ୍ନିଳଚ ହୋଇଣ ହିବନ୍ଧା
ସୁବାସିତ ଦ୍ରବ୍ୟ ନେଇ
କୃଷ୍ଣଙ୍କ ଚିବୁକ, ହସ୍ତ, ଗଣ୍ଡସ୍ଥଳ
ଶ୍ରୀ ଅଙ୍ଗେ ବୋଳିଲେ ନେଇ । ୬୪

ବଳରାମଙ୍କର କପାଳେ ଲେପନ
କଲେ ନେଇ ଗନ୍ଧଦ୍ରବ୍ୟ
ଜ୍ୟେଷ୍ଠ ଭ୍ରାତା ପ୍ରାପ୍ତ ଦେବ ଶଙ୍କର୍ଷଣ
ଆଘ୍ରାଣ କଲେ ସେ ଦ୍ରବ୍ୟ । ୬୫

ପ୍ରେମେ ଲୌକିକତା ପାର ଲୌକିକତା
ମଧ୍ୟେ ନ ଥାଏ ତଫାତ
ପ୍ରେମ ଘନଭୂତ ହୋଇ ଭକ୍ତରେ
ହୋଇଥାଏ ପରିଣତ । ୬୬

ପ୍ରେମ ଭକ୍ତି ମିଶା ସୁଗନ୍ଧ ଦ୍ରବ୍ୟକୁ
ବୋଳିଲେ ବହୁ ସରାଗ
ଅଙ୍ଗରାଗ ନୁହେଁ ମନରାଗ ତାହା
ଅନ୍ତରର ଅନୁରାଗ । ୬୭

ଥରେ ଲାଗିଗଲେ ନ ଛାଡଇ ଆଉ
ଚହଟି ଉଠଇ ବାସ
ପ୍ରେମ ବାରି ପାଇ ଅଙ୍କୁରିତ ହୋଇ
ବିତରଇ ପ୍ରେମ ରସ । ୬୮

ପଦ୍ମପାଦ ତଳେ ପଡ଼ିଣ ହିବନ୍ଧା
ଦୁଃଖେ କ୍ରନ୍ଦନ କରିଲା
ହେ ପ୍ରଭୁ ! କୁତ୍ସିତ କଦାକାର କାୟା
ଏ ମୋର ରୂପ ହୋଇଲା ? ୬୯

କେବଳ ସେତିକି  କହି ବୁକୁଫଟା
ସ୍ୱରେ କରିଲା କ୍ରନ୍ଦନ
ଭଗିନୀ ବତ୍ସଳ  ସୋଦର ସମାନ
ଶ୍ରଦ୍ଧାରେ କହିଲେ କୃଷ୍ଣ । ୭୦
କିଏ କହେ ତୁହି  କୁବ୍ଜୀ, କଦାକାର
ଅତୀବ ସୁନ୍ଦରୀ ତୁହି
ଉଠଉଠ ଭଗ୍ନୀ  କହି ନନ୍ଦ ସୁତ
ଉଠାଇଲେ ସ୍ନେହ ବହି । ୭୧

ପ୍ରଭୁ କର ସ୍ପର୍ଶ  ପାଇ ଦିବ୍ୟ ନାରୀ
ରୂପ ହୋଇଲା ନିବନ୍ଧା
ସିଧା ହୋଇ ଦାଣ୍ଡେ  ଠିଆ ହୋଇଗଲା
ଦର୍ଶକେ ଦେଖି ଚାଟକା । ୭୨

କୁବ୍ଜ କାହିଁ ଗଲା  ବେକ ସିଧା ହେଲା
ଆଣ୍ଠୁଟା ଗଲା ସଲଖି
ଦିବ୍ୟନାରୀ ପ୍ରାୟ  ଦିଶିଲା ତା ରୂପ
ଦର୍ଶକେ ହେଲେ ଚମକି । ୭୩

ତାଳି ମାରି ଉଚ୍ଚେ  ନାଚିଲା ନିବନ୍ଧା
ମୁଖେ ଗାଇ କୃଷ୍ଣ କୃଷ୍ଣ
ମଧୁପୁର ଲୋକେ  ନିଶ୍ଚୟ ଜାଣିଲେ
ନନ୍ଦସୁତ ଭଗବାନ । ୭୪
କୃତଜ୍ଞତା ସହ  ପ୍ରଭୁପାଦ ତଳେ
ପଡ଼ିକଲା ପ୍ରଣିପାତ
ଦୀର୍ଘ କେଶ ଗୁଚ୍ଛ  ପଦ୍ମ ପାଦ ପରେ
ପଡ଼ି ହେଲା ବିଚ୍ଛୁରିତ । ୭୫
ଦର୍ଶକ ମୁଖରେ  ଶୁଣାଗଲା ଉଚ୍ଚେ
ଜୟ ହେ ଦେବକୀ ସୁତ
ଏ ବିରଳ ଦୃଶ୍ୟ  ଦେଖି ରାଜପଥ
ହୋଇଗଲେ ଅଭିଭୂତ । ୭୬

ନାରୀଙ୍କ ମନରେ 	ରାମକୃଷ୍ଣ ପ୍ରତି
ଜାତ ହେଲା ସ୍ନେହ ଭକ୍ତି
ଜାଣିଲେ ଅବଳା 	ଉଦ୍ଧାରକ କୃଷ୍ଣ
ବଢ଼ିଲା ପ୍ରଭୁଙ୍କ ଖ୍ୟାତି । ୭୭
ଅଠସ୍ତୋରି ପଦେ 	ଅଧ୍ୟାୟ ସମ୍ପୂର୍ଣ୍ଣ
ପରିପୂର୍ଣ୍ଣ କୃଷ୍ଣରସ
ଗୁରୁଙ୍କ କୃପାରୁ 	କାବ୍ୟକୃତି କଲା
କବି ପଣେ ବୃନ୍ଦାବନ । ୭୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ କୁବ୍‌ଜା ଉପାଖ୍ୟାନେ
ନାମ ଦ୍ୱାପଞ୍ଚାଶତ ଅଧ୍ୟାୟ ସମ୍ପୂର୍ଣ୍ଣଂ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



**ବୋଲି—**

ଭଜମନ ବ୍ରଜବନ କାଳିଆ
କନକାଗ୍ନି ଖିଆ କାଳିୟ ଦଳିଆ
କଳନ୍ଦୀ କୂଳିଆ ମାପ ମୂଳିଆ ॥ ଘୋଷା ॥
ଦେଶକଣ୍ଠା ପିଠା 	ନନ୍ଦରାଜା ବେଟା
ନଲଠା ରାଇର ଗୋଇଠା ଖିଆ
ଷଣ୍ଢାସୁର ମରା 	ବକାପାଟି ଚିରା
ପୂତନା ଅସୁରୀ ପରାଣ ନିଆ ।

ଗୋବର୍ଦ୍ଧନ ଗିରି ଟେକା ଦଇତ୍ୟାରି
ଯମୁନା-ପୁଳିନ-କୁଞ୍ଜ ରସିଆ
ହରିଆ ନାଗର ନାଟୁଆ ସୁନ୍ଦର
ଲଟର ପଟର ନଟନଟିଆ ।
ବୋଲେ ବୃନ୍ଦାବନ ତୋ ପାଦକୁ ଆଶ
ନିରାଶ ନ କର ରାଧା-ବେଢ଼ିଆ
ଶରଧା ବାଲିରେ ଗଡ଼ି ଡାକୁଅଛି
ଉଦ୍ଧାର କର ହେ ଚକାଡୋଳିଆ ।
ଯଗାବଳିଆ, ନୀଳାଚଳିଆ ।



# ଦ୍ୱିପଞ୍ଚାଶତ ଅଧ୍ୟାୟ

## ଧନୁଭଙ୍ଗ

### ରାଗ - କାଳୀ

କୃଷ୍ଣ ଚରିତ ମାନସ ଗୀତ ଶୁଣ ସୁଜନେ ଚିତ୍ତେ
ବୃଜିନ ନାଶକାରୀ ବିଶେଷ କୃଷ୍ଣ ରସ ଆପ୍ଳୁତେ ।
ଶୋଭି ଯାତରି ସଙ୍ଗେ ଚାଲନ୍ତି ମାଳମା ଦିବ୍ୟମୂର୍ତ୍ତି
ତା ରୂପ ଯିଏ ନୟନେ ଦେଖେ ହରାଇ ଦିଏ ଧୃତି । ୧

କୃତଜ୍ଞତାରେ ହୃଦ ବିଭୋରେ ଲୋକେ ବୋଲଇ ଦେଖି
ଦେବକୀ ସୁତ ଏ ଦୁଇ ଭ୍ରାତ ଯଦୁବଂଶ ନାୟକ ।
ମାନବୀ ବିଷ୍ଣୁ ମର୍ତ୍ତ୍ୟେ ଜନମ ହରି ନେବାକୁ ଦୁଃଖ
ଚରଣାଶ୍ରିତ ହୋଇଲେ ପାଇ ପ୍ରାଣେ ପରମ ସୁଖ । ୨

ସେବା କରିଲେ ଅଭିଷ୍ଟ ପୂର୍ଣ୍ଣ ହୁଅଇ ନିରନ୍ତର
ଦୁଃଖ ହରଣେ ମର୍ତ୍ତ୍ୟ ଭୁବନେ ମାନବ ଅବତାର ।
ପ୍ରଭୁ ଦୟାରୁ ଦେଖ ମୋହର ହୋଇଲା ଦିବ୍ୟରୂପ
କର ପରଶି କୁଜ ବିନାଶି ହରିଲେ ପାପ ତାପ । ୩

ପରମବ୍ରହ୍ମ ପୁରୁଷୋତ୍ତମ ଯାଦବ ମୁକତି ଦାତା
କୁତ୍ସିତ ରୂପ ଗଲା ମୋହର ସୁନ୍ଦରୀ ଗଣେ ଗଣିତା ।
ମାଳମାଙ୍କ ଗୃହେଁ ରହିଲେ ଲୋକେ ଦଣ୍ଡେ ନେଇ ପଥେ
ଦେବକୀ ସୁତ ଗୁଣ କୀର୍ତ୍ତନେ ମାତିଗଲେ ନିରତେ । ୪

ଜନତା ସ୍ନେହ ଅଭିବାଦନ ଘେନିଣ ଦୁଇ ଭାଇ
ଚାଲନ୍ତି ଦାଣ୍ଡେ ନୃତ୍ୟ ଉଦଣ୍ଡେ ଓଗାଳ ଗୀତ ଗାଇ ।
ବୋଲନ୍ତି ଲୋକେ ମଥୁରାପୁର ଭାଗ୍ୟ ଉଦୟ ହେଲା
ଯାଦବକୁଳ ଉଦ୍ଧାର ବେଳ ଉପଗତ ହୋଇଲା । ୫

ମଥୁରାପୁରେ ଆସିଲେ ପୁଏ ମାରିବେ କଂସରାଯ୍ଯୁ
କଂସକୁ ଭୟ ନ କରି ଆଉ ଭଜ ଦେବକୀ ପୁଅ ।
ନିର୍ଭୟେ ଗୀତ ଗାଇ ମାଳମା କରଇ ହାଣ୍ଡେ ନୃତ୍ୟ
ମଥୁରା ନାରୀ ତା ସଙ୍ଗେ ମିଳି ଗାଆନ୍ତି ଉଚ୍ଚେ ଗୀତ । ୬

ଶତ ସହସ୍ର ସଂଖ୍ୟାରେ ନାରୀ ପୁରୁ·ବାହାରି ହୋଇ
ଶୋଭାଯାତ୍ରାରେ ସାମିଲ ହୋଇ ନାଚନ୍ତି ଥେଇଥେଇ ।
ସନ୍ତାନହରା ନାରୀଏ ଧାଡ଼ି ବାନ୍ଧି ଗଲେ ସାଙ୍ଗରେ
ସନ୍ତାନଶୋକ ଦୂର ହୋଇଲା ପୁଅ ଦେଖି ପାଖରେ । ୭

ବାତ୍ସଲ୍ୟ ସ୍ନେହେ ପାଗଳୀ ହୋଇ ନେତ୍ରୁ ଗଡ଼ାନ୍ତି ନୀର
ଡ଼ାକନ୍ତି ଆସ କୋଳକୁ ମୋର ପ୍ରସାରି ବେନିକର ।
ବେଳକୁ ବେଳ ବଢ଼ିଲା ସଂଖ୍ୟା ଶୁଭଇ କୋଳାହଳ
ଜନସମୁଦ୍ର ଆପ୍ଲୁତ କାର୍ଯ୍ୟେ ସୈନ୍ୟବଳ ବିଫଳ । ୮

ପାଖରେ ରହି ହଏ ବଢାଇ କୁବ୍‌ଜା ଗୁପ୍ତ ରହସ୍ୟ
ସମୃଦ୍ଧଶାଳୀ ମଥୁରାପୁରେ ଯାହା କରିଛି କଂସ ।
ରା●ପଥରେ ଶୋଭା ଯାତରା କରଇ ଧୀରେ ଗତି
ଗୃହ, ଗୃହରେ ଗଛ ଡାଳରେ ଚଢ଼ି ଲୋକେ ଦେଖନ୍ତି । ୯

ମଥୁରା ଗ୍ରାମେ ସୁଧର୍ମା ନାମେ କଂସର ମାଳାକାର
ପୁଷ୍ପ ସମ୍ଭାର ନେଇ ଯିବାର ଭେଟିଲା ରଙ୍ଗାଧର ।
କଂସ ମାଳୀଣୀ ନୃତ୍ୟ କରଇ ଧରିଣ ଦ୍ରବ୍ୟ ବେଶ
ଡାକ ବୋଲଇ ଏ ବେନି ଭାଇ ଅଟନ୍ତି ବିଶ୍ୱବାସ । ୧୦
ଏହାଙ୍କ ପାଦେ ଶରଣ ପଶି ହୋଇବ ଇଚ୍ଛା ପୂର୍ଣ୍ଣ
ଏ ବିଶ୍ବନାଥ ସ୍ୱୟଂ ସମ୍ଭୂତ ଦେବକୀର ନନ୍ଦନ ।
ସେ କଥା ଶୁଣି ସୁଧର୍ମା ମାଳୀ ଭାବେ ବିହ୍ୱଳ ହୋଇ
କୁସୁମମାଳା ଲମ୍ବାଇ ଗଳେ ପଡିଲା ପାଦେ ଯାଇ । ୧୧
ସ୍ନେହେ ଶ୍ରୀପତି ତାହାର ପିଠି ଆଉଁଷି ଦେଲେ କରେ
ତତ୍କ୍ଷଣ ଉଠାଇ ବକ୍ଷେ ଲଗାଇ କୋଳ କଲେ ଶ୍ରଦ୍ଧାରେ ।
ଶ୍ରୀଅଙ୍ଗ ସ୍ପର୍ଶ ପାଇ ସୁଧର୍ମା ହୋଇଲା ଜୀବନ୍ମୁକ୍ତ
ଧନରତନ ଦେଇଣ କୃଷ୍ଣ କରିଲେ ପୁରୁଷାର୍ଥ । ୧୨

ଆରତିବାଣ ଶୁଭିଲା ସ୍ୱନ ଶୂନ୍ୟ କୁସୁମ ବୃଷ୍ଟି
ଗାଇଲେ ବିପ୍ରେ ମିଳିତ କଣ୍ଠେ ଅପରାଜିତା ସ୍ତୁତି ।
ଏହି ସମୟେ ଜନତା ମଧ୍ୟୁ ଶୁଭିଲା କୋଳାହଳ
ଅଶ୍ୱଙ୍କ ଖୁରାଧ୍ୱନି ସହିତ ଘୋଡ଼ା ମାଡି ରୋଳ ।୧୩
ଜନଗହଳି ମଧ୍ୟରେ ମାଡି ଆସେ ଦର୍ପିଷ୍ଟ ରଥ
ଘୋଡ଼ା ପିଟି ସାରଥିବର ସଫା କରଇ ପଥ ।
କେତେ ନିହତ କେତେ ପତିତ ରଥ ଚକର ତଳେ
ଠେଲାପେଲାରେ ଦଳାଦଳିରେ ଆଘାତପ୍ରାପ୍ତ ହେଲେ ।୧୪
ଲୋକ ଦୁର୍ଦ୍ଦଶା ଦେଖି ନୟନେ କ୍ରୋଧିତ ଶଙ୍କର୍ଷଣ
ରଥର ଗତି ରୋଧ କରିଲେ ଆଗେ ଠିଆ ହୋଇଣ ।
ସାରଥିବର କଲା ପ୍ରହାର ଘୋଡ଼ା ଧରି କରେ
କ୍ରୋଧେ ଘୋଡ଼ା ସହିତ ତାକୁ ଟାଣି ଆଣିଲେ ଖରେ ।୧୫
ତଳେ ପକାଇ ମୁଷ୍ଟି ପ୍ରହାର କରିଲେ କୋପେ ରାମ
ଅଚେତ ହୋଇ ପଡ଼ିଲା ତହିଁ ସାରଥି ନରାଧମ ।
ବିଦର୍ଭ ରାଜକୁମାର ରୁକ୍ମ ଥିଲେ ରଥ ଆରୋହୀ
ସାରଥି ମାଡ଼ ଦେଖି ପ୍ରଚଣ୍ଡ କ୍ରୋଧ ଭାବକୁ ବହି । ୧୬
ରାମଙ୍କପରେ ରଥ ଚଢାଇ ଦିଅନ୍ତେ ଦୁ ରୁ ମ ଦ
ରଥାଶ୍ୱ ସହ ଫିଙ୍ଗିଲେ ଦୂରେରାମ ବହିଣ କ୍ରୋଧ ।
ଖଣ୍ଡେ ଦୂରରେ ପଡ଼ିଲା ରଥଗଲା ଜଖମ ହୋଇ
ବିଦର୍ଭ ରାଜକୁମାର ଦୂରେ ପଡ଼େ କଗୃଡ଼ ହୋଇ । ୧୭
ରାଜ ଅତିଥି ଅପମାନିତ ହେବାର ଜାଣି କଂସ
ପ୍ରଦ୍ୟୋତେ ଡ଼ାକି ଆଦେଶ ଦେଲା ଦେବ ଦଣ୍ଡ ବିଶେଷ ।
ରାଜା ଆଦେଶ ପାଇ ପ୍ରଦ୍ୟୋତ ଯାଇ ଘଟଣା ସ୍ଥଳେ
ଦେଖିଲେ ଶୋଭା ଯାତ୍ରାରେ ପୁଣି ଆସନ୍ତି ଲୋକମେଳେ ୧୮
ଅଶ୍ୱୁ ଓହ୍ଲାଇ ପାଦରେ ଚାଲି ଭେଟିଲେ ରାମକୃଷ୍ଣ
ପୁଚ୍ଛିଲେ ତୁମେ ଡ଼ାକରା ପାଇ ଆସିଛ ରାଜଭବନ ?
ତୁମକୁ ଖୋଜି ଆସିଛୁ ମୁହିଁ ସଙ୍ଗରେ ନେବାପାଇଁ
ଆସ ମୋ ସଙ୍ଗେ ପଥ କଢ଼ାଇ ନେବି ପ୍ରାସାଦେ ମୁହିଁ ।୧୯

ଏମନ୍ତ କହି ପିଲାଙ୍କୁ ଗୃହିଁ ରହିଲେ ସେନାପତି
ଭାବିଲେ ମନେ ପ୍ରାଣ ନଧନେ ଯିଗିଛି କେତେ ରାତି ।
କାରାଗାରରୁ ପଳାଇ ଯାଇ କଲେ ଆତ୍ମ ଗୋପନ
ଡାକରାପାଇ ଆସିଅଛନ୍ତି ନେବେ କଂସ ପ୍ରାଣ । ୨୦
ପ୍ରଦ୍ୟୋତେ ଗୃହିଁ ପୁଚ୍ଛିଲେ ରାମ କୁହ ତୁମର ନାମ
କି କାର୍ଯ୍ୟେ ତୁମ୍ଭେ ଆସିଛ ଏଥେ କହ କର କି କାମ ?
ସିଏ ବୋଲଇ ଅନ୍ଧକ ମୁଁ ଖ୍ୟ ପ୍ରଦ୍ୟୋତ ମୋର ନାମ
ରାଜାଙ୍କ ମୁଖ୍ୟ ସେନାପତି ମୁଁ ଦେଶରକ୍ଷା ମୋ କାମ । ୨୧
ତୁମ୍ଭେ ଆସିବା ସମ୍ବାଦ ପାଇ ପେଷି ଅଛନ୍ତି ରାଜା
ମାନ୍ୟ ଗୌରବ କରିଣ ନେବ ତୁମେ ରାଜା ଭଣଜା ।
ପ୍ରଦ୍ୟୋତ କଥା ଶୁଣିଣ ରାମ ପୁଚ୍ଛିଲେ ସେନାପତି
ରଥ ପଠାଇ ଡାକି ଅଣାଇ ଦିଅ ଆମ୍ଭଙ୍କୁ ଶାସ୍ତି !! ୨୨
ଏପରି ଗୁଡ଼େ ରାଜ ଅତିଥି କରିଛ ଅ ମ ନ୍ତ୍ର ଣ
ପରୋକ୍ଷେ ତାଙ୍କ ହାତେ ଆମ୍ଭଙ୍କୁ ଦେଉଛ ଅପମାନ ।
ଏପରି ଦୁଷ୍ଟ ଦର୍ପୀ ପାପିଷ୍ଠ ଭଦ୍ରତା ଜଣା ନାହିଁ
ଲୋକ ଉପରେ କୋରଡ଼ା ମାରି ଯାନ୍ତି ରଥ ମଡ଼ାଇ ।୨୩
କେମନ୍ତ ଗଲ ଖାତିର ନାହିଁ ସେ ବଡ଼ ଅହଂକାରୀ
ଦେଖ କୋରଡ଼ା ମାଡ଼େ ଶରୀରୁ ଶୋଣିତ ପଡ଼େ ଝରି ।
ଏଥୁ ପ୍ରତ୍ୟୟ ହୁଅଇ ତୁମ୍ଭେ କେଡ଼େ ଅଭଥି ପ୍ରିୟ
ଏହା କହିଣ ହସିଲେ ରାମ କଂସକୁ କରି ହେୟ । ୨୪
କରକୁ ଯୋଡ଼ି କହିଲେ କୃଷ୍ଣ ଶୁଣ ଅନ୍ଧକ ମୁଖ୍ୟ
ତୁମ୍ଭର ଦେଖା ପାଇଣ ଧନ୍ୟ ତୁମ୍ଭେ ବୀର ପ୍ରତ୍ୟକ୍ଷ ।
ତୁମ୍ଭ ସମ୍ପର୍କେ ଶୁଣିଛୁ ଆଗୁ ରାଜାଙ୍କର ବିଶ୍ୱସ୍ତ
ତୁମ୍ଭରି ଦ୍ୱାରା ଅସାଧ ସାଧ କରନ୍ତି ନରନାଥ । ୨୫
ଅନ୍ଧକ ମୁଖ୍ୟ ହୋଇଥିବାରୁ ତୁମ୍ଭେ ଆମ୍ଭର ମାନ୍ୟ
ତୁମ୍ଭ ଦର୍ଶନ ପାଇଣ ଧନ୍ୟ ହେଲ ଆମ୍ଭର ମାନ୍ୟ ।
ଶ୍ଳେଷ ବଚନ ଶୁଣି ପ୍ରଦ୍ୟୋତ ହେଲେ ଅତି ଲଜ୍ଜିତ
କୃତ କରମ ଚିନ୍ତି ମାନସେ ଅତ୍ୟନ୍ତ ଅନୁତପ୍ତ । ୨୬

ମାଳିନୀ ବୋଲେ ପ୍ରଦ୍ୟୋତ ମୌସା ଦେବକୀ ସୁତପ୍ରତି
ତୁକ୍ଷ୍ନଯେପରି କାର୍ଯ୍ୟକରିଲେ ମୋର ମନେ ଅଶାନ୍ତି ।
ଶ୍ରୁଦଗ୍ରନାଗ୍ର କ ଣ୍ଠ ର ଧ୍ୱ ନି ଶ ବ ଲେ ପ ଝ ରି ତ
ପୁଚ୍ଛିଲେ ତୁମ୍ଭେ କଏ ବଦୂଷୀ ଚିହ୍ନି ପାରେ ନାହିଁତ ? ୨୭

ସମ୍ମତିରେ ବୋଲେ ମାଳିନୀ ମୁହିଁ ମୋତେ ନପାର ଚିହ୍ନି
ନିତି ସୁଗନ୍ଧ ଦ୍ରବ୍ୟ ଯୋଗାଏ ରାଜାଙ୍କ ମୁଁ ମାଲ୍ୟାଣୀ ।
ମାଳିନୀ ତୃହିଁ ଜିଜ୍ଞାସା କଲେ କାହିଁ ଗଲାଟୋ କୁଜ
ରୂପ କପରି ହେଲା ଏପରି ସୁଶ୍ରୀନାରୀ ଅଗ୍ରଜ । ୨୮

ମାଳିନୀ ବୋଲେ କୃଷ୍ଣ ଦର୍ଶନେ ଦୁର୍ଦ୍ଦଶା ହେଲାଦୂର
ପ୍ରଭୁଙ୍କ କର ପରଶେ ମୋର କମନୀୟ ଶରୀର ।
ତା କଥା ଶୁଣି ପ୍ରଦ୍ୟୋତ ବୀର ରହିଲେ ପୂଣେ ତୁହିଁ
ଜାଣିଲେ ଏହି ଜଗତ ସାଇଁ ଦେବକୀ ସୁତ ଦୁଇ । ୨୯

ଏହାଙ୍କୁ ବଧ କରିବା ପାଇଁ ଥିଲା ଦାୟିତ୍ୱ ମୋର
କେତେ ରଜନୀ ଜଗିଛି ମୁହିଁ ହୋଇଣ ଉଜାଗର ।
ପତ୍ନୀ ପୁତନା ସ୍ୱତନ୍ତ୍ରଭାବେ ଥିଲାସେ ଦାୟିତ୍ୱରେ
ତଥାପି ତଥ୍ୟ ନହେଲା ଜ୍ଞାତ ଯିବାରେ ଗୋପପୁରେ ।୩୦

ଯାହାଙ୍କୁ କଂସ ନିଧନ ପାଇଁ କରିଲା ଷଡଯନ୍ତ୍ର
ଯନ୍ତ୍ରାରୁ ଖସି ଶାର୍ଦ୍ଦୂଳ ପ୍ରାୟୁ ସେ ଆଜ ଉପଗତ ।
ନାରଦ ମୁନି ଭବିଷ୍ୟ ବାଣୀ ହୋଇଲା ପ୍ରମାଣିତ
କେ ମାରି ପାରେ ନିଜ ବଳେ ଯାକୁ ରକ୍ଷିବେ ଅନନ୍ତ ? ୩୧

ଅଜ୍ଞାତ କଥା ମନେ ପକାଇ ହୋଇଲା ଅନୁତପ୍ତ
ମନ ମଧ୍ୟରେ କ୍ଷମା ମାଗିଲା ଅନ୍ତରେ ପ୍ରଣିପାତ ।
ରାଜଦାୟିତ୍ୱ ବ୍ୟବହାରରେ ପୁଚ୍ଛିଲା ନମ୍ର ହୋଇ
ରାଜ ନଗରେ ବୁଲି ସାଥିରେ ନେବି ରାସ୍ତା କଢାଇ ? ୩୨
ବୋଲନ୍ତି ରାମ ଆଗ ଯାଉଚି ସ୍ଥଳେ ଯିବାକୁ ମନ
ପରେ ନଗରେ ଯାଇ ମାତୁଳେ ଭେଟି କରିବୁ ମାନ୍ୟ ।
ପ୍ରଦ୍ୟୋତ ବୋଲେ ଆସ ମୋ ସାଥିରେ ଯିବା ଯଜ୍ଞସ୍ଥଳେ
ଆଗେ ପ୍ରଦ୍ୟୋତ ପଛେ ଯୁଗଳ ଧୀର ଗତିରେ ଚଳେ । ୩୩

ଯମୁନାତଟରେ ପୁଣ୍ୟ ଭୂମିରେ ନିର୍ମିତ ଯଜ୍ଞ ପୀଠ
ମଣ୍ଡପେ ଧନୁ ଥୁଆ ହୋଇଛି ଚାଲିଛି ବେଦ ପାଠ ।
ତିନି ଦିଗରେ ବସି ବ୍ରାହ୍ମଣେ ପଢନ୍ତି ବେଦ ମନ୍ତ୍ର
ଘୃତ ଆହୁତି କୁଣ୍ଡେ ଦିଅନ୍ତି ଚରୁ ମସିଧାକ୍ଷତ । ୩୪

ବରିଷ୍ଠ ବୀରେ ଧନୁକୁ ଦେଖି କରନ୍ତି ନମସ୍କାର
କେ ଧନୁ ଧରି ଉଠାଏ ଉଛେ ନ ଉଠେ ଧନୁବର ।
ବିଗତ ତିନି ଦିବସ ଧରି ଦେଖନ୍ତି ବହୁ ବ୍ୟକ୍ତି
ମାତ୍ର ଧନୁକୁ ଟେକି ନ ପାରି ବିମୁଖେ ଫେରି ଯାନ୍ତି ।୩୫

ଧନୁର୍ଯଜ୍ଞର ଶେଷ ଦିବସେ ଧନୁରେ ଗୁଣ ଦେଇ
ଶର ସନ୍ଧାନେ ଆଗ୍ରହୀ ବୀର ଯାଆନ୍ତି ଧନୁ ଛୁଇଁ ।
ଯଜ୍ଞ ମଣ୍ଡପେ ମିଳିଲେ ଯାଇ ସଦର୍ପେ ରାମକୃଷ୍ଣ
ପ୍ରଭୁ ଆଗମ ଦେଖି ବ୍ରାହ୍ମଣ କଲେ ହବି ପ୍ରଦାନ । ୩୬

ବିଷ୍ଣୁ ମନ୍ତ୍ରରେ ଆହୁତି ଦେଲେ ସନ୍ତୋଷ ଭଗବାନ
ଗନ୍ଧ ଆଘ୍ରାଣ କରି ଆପଣେ ନମିଲେ ବିପ୍ରଗଣ ।
ଧନୁକୁ ଦେଖି ହୃଦ ମଧ୍ୟରେ ନମିଲେ ନାରାୟଣ
ମଉନ ହୋଇ ମୁହୂର୍ତ୍ତେ ମାତ୍ର ସ୍ଥିର ଦଣ୍ଡାୟମାନ । ୩୭

ମାଳିନୀ କର୍ଣ୍ଣେ ପ୍ରଦ୍ୟୋତ କହେ ଧନୁ ମହିମା ଶୁଣ
ଏ ଧନୁ କଂସ କ୍ଷମତା ତଥା ରାଜଶକ୍ତି ନିଶାଣ ।
ଯେପାଇଁ ଭୟ କରନ୍ତି କଂସେ ତିନିପୁରର ଜନ
ଏ ଧନୁ ଭଗ୍ନ କଲେ ତା ଶକ୍ତି ହୋଇଯିବ ନିଉନ ।୩୮

ଏ ଗୁପ୍ତ ଭେଦ କହି ପ୍ରଦ୍ୟୋତ ମୌନେ ଦଣ୍ଡାୟମାନ
ଏକାଳେ କୃଷ୍ଣ ଯଜ୍ଞ ମଣ୍ଡପେ ଉଠିଲେକ ବହ୍ନିନ ।
ଗୁପ୍ତ ରହସ୍ୟ ସଙ୍କେତେ କୁବ୍ଜା ଜଣାଇ ଦେଲା କୃଷ୍ଣ
ଜାଣିଲେ ବୋଲି ଜଣାଇ ଦେଲେ ସ୍ମିତହାସ୍ୟ ଛଳେଣ ୩୯

ଛଳନା କରି ପୁଚ୍ଛିଲେ କୃଷ୍ଣ ନୁହେଁ ଧାନୁଷ୍କ ଦକ୍ଷ
ଏ ଧନୁ ଟେକି ପୁଣ ଦେବ କି କହ ଅଜ୍ଞକ ମୂର୍ଖ୍ୟ ?
ପ୍ରଦ୍ୟୋତ ଚିନ୍ତେ ସତେକି କୃଷ୍ଣ ଯାଦବ ମୁକ୍ତିଦାତା
ଧନୁରେ ଗୁଣ ଦେଲେ ଜାଣିବା ଯଥାର୍ଥରେ ଦକ୍ଷତା ।୪୦

ସଙ୍କୁଚେ କହେ ଉଦ୍ୟମେ ବାଧା କିଛି ନାହିଁ ଏଠାରେ
ଧନୁର୍ଯଜ୍ଞରେ ନିୟମ ଅଛି ଗୁଣ ଚଢ଼ାଇବାରେ ।
ଶର ସନ୍ଧାନ ଆଗରୁ ଖାର ଦେଇ ପାରିବେ ଗୁଣ
ପ୍ରଦ୍ୟୋତ କଥା କର୍ଣ୍ଣରେ ଶୁଣି ଧନୁ ଧଇଲେ କୃଷ୍ଣ । ୪୧

ଧନୁ ଦି ପାଖ ନଇଁଛନ୍ତି ଦେଖି ଖୋଜନ୍ତି ଛିଦ୍ର ଗୋଟି
ସେ ମୁଣ୍ଡେ ପାଦ ରଖି ଓଟାଇ ନେଲେ ଅନ୍ୟ ମୁଣ୍ଡଟି ।
ଗୁଣ ଦେବାର କାଳେ ଦିଖଣ୍ଡ ହୋଇଲା ଧନୁବର
ଖଣ୍ଡେ ହାତରେ ଅନ୍ୟ ଖଣ୍ଡକ ପଡ଼େ ଭୂମି ଉପର । ୪୨

ଧନୁ ଭଗନ ଶବଦ ଶୁଣି ଲୋକେ ଧାଇଁଲେ ଦୂରେ
ସହାସ୍ୟେ କୃଷ୍ଣ ଦଣ୍ଡାୟମାନ ଯଜ୍ଞ ବେଦୀ ଉପରେ ।
ପ୍ରଦ୍ୟୋତ ମନ ମଧ୍ୟେ ଆନନ୍ଦ ଜାଣିଲା ନାରାୟଣ
କଂସ ନିଧନେ ମଥୁରାଗମେ କାର୍ଯ୍ୟ ହୋଇବ ପୂର୍ଣ୍ଣ । ୪୩

ବହ୍ନି ସଭାରେ କହନ୍ତି ଗାର୍ଗ୍ୟ ଏ ଯେଉଁ ଧନୁବର
ପାଞ୍ଚ ହଜାର ହାତିର ବଳ ଥିଲା ଏହି ଧନୁର ।
ଏ ଧନୁ ଧରି ଯଯାତି ନୃପ ତ୍ରିପୁର ଜୟ କଲେ
ତାହାଙ୍କ ପରେ ଧନୁ ଧାରଣେ କେଏ କ୍ଷମ ନ ହେଲେ । ୪୪

ସେ ବଂଶେ କଂସ ଜନ୍ମ ହୋଇଣ ସେ ଧନୁ କହେ ବହି
ମେରୁପର୍ବତ ମହା ବଳିଷ୍ଠ ତା ସମ ଖାର ନାହିଁ ।
ସେ ଧନୁ ଥୋଇ ଯଜ୍ଞ କରିଲା ଉଦ୍ଦେଶ୍ୟ ହେଲା ପଣ୍ଡ
ଦେବକୀ ସୁତ ହାତେ ସେ ଧନୁ ହୋଇଲା ଦୁଇଖଣ୍ଡ । ୪୫

କୃଷ୍ଣଙ୍କ ପରି କିଶୋର ବର୍ଷେ ଦଶରଥ କୁମର
ମିଥିଳାପୁରେ ପ୍ରବେଶି ଦିନେ ଭାଙ୍ଗିଲେ ଧନୁବର ।
ଶାସ୍ତ୍ରେ କଥିତ ଶଙ୍କର ବିଷ୍ଣୁ ମଧ୍ୟେ ଯୁଦ୍ଧ ଶେଷରେ
ଶଙ୍କର ତାଙ୍କ ଧନୁକୁ ଦେଲେ ଦେବରାତଙ୍କ କରେ । ୪୬

ସେ ନିବ ପ୍ରିୟ ଭକ୍ତ ଥିବାରୁ ତାଙ୍କୁ କଲେ ପ୍ରଦାନ
ସେ ଧନୁ ଧରି ସମର କରି ଖାରଙ୍କ ଅଗ୍ରଗଣ୍ୟ ।
ତାହାଙ୍କ ପରେ ତାଙ୍କ ବଂଶରେ ଧନୁ ଧାରଣେ କ୍ଷମ
ନୃହନ୍ତେ କେହି ଧନୁକୁ ନେଇ ରଖିଲେ ପୂଜାସ୍ଥାନ । ୪୭

ସେ ବଂଶେ ଯାତ ହୋଇ ଜନକ କଲେ ସେ ଧନୁ ପୂଜା
ପଡ଼ୋଶୀ ନୃପେ ଜୟ କରଣ ବୋଲାନ୍ତି ମହାରାଜା ।
ମିଥିଳା ରାଜ୍ୟେ ଜନକ ରାଜା ଅଯୋଧ୍ୟା ଦଶରଥ
ଏ ଦୁଇ ରାଜା କ୍ଷମତା ଶାଳୀ ଶିବ ବିଷ୍ଣୁ ଭକ୍ତ । ୪୮

ଧର୍ମ ଦୃଷ୍ଟିରୁ ଦୁହିଙ୍କ ମଧ୍ୟେ ଥିଲା ଅତ୍ୟନ୍ତ ଭେଦ
ଶୈବ ବୈଷ୍ଣବ ଭେଦ ମାର୍ଗରେ ଭେଦ ପରିଚ୍ଛେଦ ।
ଆଦର୍ଶଗତ ପାର୍ଥକ୍ୟ ହେତୁ ନ ଥିଲା ମିତ୍ରଭାବ
ପରସ୍ପରର ଶତ୍ରୁ ଥାଇଣ କରୁଥିଲେ ଆହବ । ୪୯

କିନ୍ତୁ ଦିନାନ୍ତେ ଜନକ ରାଜା ଯଜ୍ଞ ଭୂମି କର୍ଷଣେ
କନ୍ୟାଏ ପାଇ ପାଳନ କଲେ ସ୍ନେହେ ରାଜ ଭବନେ ।
ସେ କନ୍ୟା ନାମ ରଖିଲେ ସୀତା ଜାଣିଲେ ଜଗତ ମାତ୍ର
ପରଂ ବ୍ରହ୍ମ ରାମଙ୍କୁ ବିଭା ହୋଇବେ ଏଠି ରହି । ୫୦

ଅପର ଦିଗେ ସମୟ ଅନ୍ତେ ଦଶରଥଙ୍କ କୋଳେ
ପରମ ବ୍ରହ୍ମ ରାମ ନାମରେ ଆସି ଜନମ ହେଲେ ।
ଜନକ ସୁତା ସ୍ୱୟମ୍ବରରେ ଶିବଧନୁ ଭାଙ୍ଗିଲେ
ଜାନକୀ ବିଭାହୋଇଣ ଶ୍ରେଷ୍ଠ ଧାନୁଷ୍କ ବୋଲାଇଲେ । ୫୧

ସୀତା ବିବାହ କରି ଶ୍ରୀରାମ ରାଜ୍ୟେ ଫେରିବା ପଥେ
ପରଶୁରାମ ପଥ ଓଗାଳି ପୁଚ୍ଛିଲେ କ୍ରୋଧ ଚିତ୍ତେ ।
ମୋର ଗୁରୁ ଶିବଧନୁ ଭାଙ୍ଗି ତୁମ୍ଭେ କରିଛ ଦୋଷ
ମୋ ସଙ୍ଗେ ଯୁଦ୍ଧ କରି ଜିଣିଲେ ଜାଣିବା ବୀର ଶିଷ୍ୟ । ୫୨

ବୈଷ୍ଣବ ଧନୁ ଧରିଛି ଦେଖ କ୍ଷତ୍ରି ନିଧନ ପାଇଁ
ବିଷ୍ଣୁଙ୍କଠାରୁ ପାଇ ଏ ଧନୁ ମୁହିଁ ବିଶ୍ୱ ବିଜୟୀ ।
ଏହା କହିଣ ପରଶୁରାମ ଦେଲେ ଧନୁ ବଢାଇ
ସେ ଧନୁ ହସ୍ତେ ଛୁଇଁଣ ରାମ ହରିଲେ କଳା ତହିଁ । ୫୩
ଯେ ଦେଇଥିଲେ ସେ ନେଇଗଲେ ଦେବାନେବା ତା କାମ
କ୍ଷତ୍ରିୟ ଶକ୍ତି ହରାଇ ପଶୁ ଭଜିଲେ ସୀତାରାମ ।
ସେ ଦିନୁ ହେଲେ ପରଶୁରାମ ପରମ ବୈଷ୍ଣବ
ସର୍ବସ୍ୱ ରାମ ରୂପ ଦର୍ଶନ ବ୍ରହ୍ମସତ୍ତାନୁଭବ । ୫୪

ସେ ରମଣୀୟ ଭାମସତ୍ତ୍ୱରେ ମଜ୍ଜିଲେ ପର୍ଶୁରାମ
ବିଶ୍ୱବ୍ରହ୍ମାଣ୍ଡ ବ୍ୟାପି ଅଛନ୍ତି ନୟନ ଅଭିରାମ ।
ସେଇ ଶ୍ରୀରାମ ଶ୍ରୀକୃଷ୍ଣ ନାମେ ଧରାରେ ଅବତୀର୍ଣ୍ଣ
ଏ ଧନୁ ତାଙ୍କୁ କେତେ ମାତର ଧାନୁଷ୍କ ଅଗ୍ରଗଣ୍ୟ । ୫୫

ନାରଦ କଥା ସତ୍ୟ ହୋଇଲା କଂସ ନିଧନ ପାଇଁ
ଡାକି ଆଣିଛୁ ମନ୍ତ୍ରୀ ପଠାଇ ଆପେ ମରିବା ପାଇଁ ।
ବିପ୍ରଙ୍କ ମଧ୍ୟେ ଏ ଆଲୋଚନା ଶୁଣି ହସିଲେ କୃଷ୍ଣ
ଯଜ୍ଞ କୁଣ୍ଡରେ ଘୃତ ଆହୁତି ଦେଲେକ ବିପ୍ର ଗଣ । ୫୬
ଧନୁ ଭଗନ ଶବଦ ଶୁଣି ଉଗ୍ରସେନ ନନ୍ଦନ
ଭୀତ ମାନସେ ଅନ୍ତଃପୁରେ କଲେ ଆତ୍ମଗୋପନ ।
ପଶ୍ଚିମ ଦିଗେ ବୁଡ଼ିଲେ ସୂର୍ଯ୍ୟ ହୋଇଲା ସନ୍ଧ୍ୟାଗମ
ଯମୁନାଘାଟରେ ଲୋକଙ୍କ ମେଳେ କଲେ ଯାଇ ବିଶ୍ରାମ । ୫୭
ଯହିଁ ରହିଲେ ନଗରବାସୀ ଶତ ସହସ୍ର ସଂଖ୍ୟାରେ
ନିର୍ଭୟେ ରାତିଯାପନ କଲେ ରାମକୃଷ୍ଣ ସେଠାରେ ।
ଅଠାବନ ପଦେ ଅଧ୍ୟାୟ ଶେଷ ନ ହେଉ ଦାସ ଦୋଷ
ପଦପଦକେ ପୂରିଛି ରସ ବୋଲଇ ବୃନ୍ଦାଦାସ । ୫୮

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ ଧନୁଭଙ୍ଗ ଆଖ୍ୟାନେ
ନାମ ଦ୍ୱିପଞ୍ଚାଶତ ଅଧ୍ୟାୟ ସମ୍ପୂର୍ଣ୍ଣ ।
ଶ୍ରୀକୃଷ୍ଣାର୍ପଣମସ୍ତୁ ।



**ବୋଲି -**

ଭଜମନ କରମଲା କାନ୍ତଙ୍କୁ
ହରେ-ରାମ କୃଷ୍ଣ-ଅଭିରାମଙ୍କୁ
ଭଜନ କଲେ ଶ୍ୟାମାଭିରାମଙ୍କୁ
ଦର୍ଶନ ପାଇବୁ କୃଷ୍ଣାକାନ୍ତଙ୍କୁ
ଧନ୍ୟ ହେବ ଜନ୍ମ କାଳକାଳକୁ । ୧
ଦେଖ ଭଜ ବଇକୁଣ୍ଠ କଣ୍ଢ଼ାରି
ଭବସାଗରରୁ ହୋଇଲେ ପାରି
କଥା ରହିଗଲା କାଳ କାଳକୁ । ୨
ଭଜୁଛନ୍ତି ବସି ପରଷଙ୍କର
ଚିତ୍ତକୁ ନବେଶି ପଦ୍ମ ପଯୂର
ଅଜପା ସୂତ୍ରେ ବାନ୍ଧି ବାଇକୁ । ୩
ଆହୁରି ଅନେକ ଭକ୍ତ ପ୍ରବର
ଅନ୍ତରଙ୍ଗ ସଙ୍କୀର୍ତ୍ତନେ ବିଭୋର
ପାନ କରୁଛନ୍ତି ନାମାମୃତକୁ । ୪
ଅନନ୍ତ ଗୁମ୍ଫାରେ କରନ୍ତି ଠାବ
ଆଠ ସସ୍ତ ଭକ୍ତ ଅନ୍ତର ଭାବ
ଭାବ ବିନୋଦିଆ ଅଭିରାମଙ୍କୁ । ୫
ଭଜେ ବୁଲାଦାସ ପଦ୍ମ ପାଦକୁ
ବଢ଼ାଇ ଅଛନ୍ତି ଭକ୍ତ ଭାବକୁ
ହରେ-ରାମ-କୃଷ୍ଣ - ଶ୍ୟାମଧନକୁ । ୬



# ଚତୁଃପଞ୍ଚାଶତ ଅଧ୍ୟାୟ

## କଂସର ଶେଷ ଷଡଯନ୍ତ୍ର

### ରାଗ - ବସନ୍ତ ବରାଡ଼ୀ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ କର ସୁଜନେ ଦେଇମନ
ମଥୁରାନଗରେ ଆତଙ୍କର ଛାୟା ଗ୍ରାସିଅଛି ସବୁରି ପ୍ରାଣ
ଭାବନ୍ତି । ରାମକୃଷ୍ଣ ସଙ୍ଗେ ଯାଦବ
ମୁଖ୍ୟଙ୍କୁ ନିଧନ କରି ଶତ୍ରୁ ଶୂନ୍ୟ ହୋଇ ସେ ନିଃଶଙ୍କ ହୋଇବ । ୧
ଖୋଲା ଖୋଲି ଭାବେ ଲୋକଙ୍କ ଭିତରେ ଅସ୍ତ୍ରଶସ୍ତ୍ରର ବିତରଣ
ଏଥୁ ଜଣାଯାଏ ଧନୁର୍ଯଜ୍ଞ ସ୍ଥଳେ ଲାଗିଯିବ ପ୍ରବଳ ରଣ
ସପକ୍ଷ । ବିପକ୍ଷ ମଧ୍ୟେ ମୁହାଁମୁହିଁ
ଭୟଙ୍କର ରକ୍ତ ପାତ ଘଟାଇବା ମାନସେ ଅଛନ୍ତି ଅନାଇଁ । ୨
ରାଜା ଆକ୍ରମଣ ପ୍ରଜା ଆତ୍ମରକ୍ଷା ଏ ଦୁଇ କାର୍ଯ୍ୟେ ଅସ୍ତ୍ରଶସ୍ତ୍ର
ପ୍ରତିଯୋଗିତାର ପ୍ରସ୍ତାବନା ବୃଦ୍ଧି କାରଣରୁ ସେ ଭୟଗ୍ରସ୍ତ
ଯାଦବ । ସଙ୍ଘରେ ହୋଇଛି ନିଷ୍ପତ୍ତି
ଅସ୍ତ୍ରଶସ୍ତ୍ର ଧରି କଂସ କଲେ ଆକ୍ରମଣ ଦେବେ ସେ ଉପଯୁକ୍ତ ଶାସ୍ତି ।୩
ଦେବକୀ ପୁତ୍ରଙ୍କ ମଥୁରା ଗମନ ରଜକ ଠାରୁ ବସ୍ତ୍ରଜାର
ସୁଧର୍ମା ମାଳିର ମୋକ୍ଷ ବର ପ୍ରାପ୍ତି ମାଳକାରର ସୁଖୀ ଶରୀର
ବିଦର୍ଭ । ରାଜକୁମାର ଅପମାନ
ଯଜ୍ଞ ପୀଠେ ଧନୁ ଭଗନ ଘଟଣା ବାହୁକଙ୍କ ଶିର ଛେଦନ ।୪
ଲୋକଙ୍କ ଭିତରେ ଆଲୋଚ୍ୟ ବିଷୟ ଏହିସବୁ ଘଟଣା ମାନ
ନୂତନ ଝଡର ସାମ୍ଭାବ୍ୟ ଆଶଙ୍କା କରିଣ ଯାଦବେ ଉଚ୍ଛନ୍ନ
ପ୍ରମୁଖ । ଯାଦବେ ନିଶାର୍ଦ୍ଧ ସମୟେ
ଅକ୍ରୂରଙ୍କ ଘରେ ଏକତ୍ରିତ ହୋଇ ଉପାୟ କରନ୍ତି ନିର୍ଣ୍ଣୟେ । ୫
କେତେକ କହିଲେ ଆଜ ରାତ୍ରେ କଂସ ଉଆଇ ପାରଇ ଅଶାନ୍ତି
ପୂର୍ବେ ଆକ୍ରମଣ କରି ପ୍ରତିଶୋଧ ନେବାକୁ ଚାହାଁଇ ଦୁର୍ମତି
ଆଉକେ । କହିଲେ ଆମ୍ଭ ଅସ୍ତ୍ରଶସ୍ତ୍ର
ଧରି ଯଦିଥିବା ଆକ୍ରମଣ କଲେ କରିବା ମିଳି ପ୍ରତିହତ । ୬

କେ ବୋଲେ ରାଜ୍ୟରେ ହତ୍ୟା ବନ୍ଧନିକା ହୋଇବା ଆଗୁ ସଙ୍ଗଠିତ
ଚାଲ ଆମ୍ଭେମାନେ ମଥୁରା ଛାଡ଼ିଣ ଚାଲିଯିବା ରହିବା ଅନ୍ୟତ୍ର
ଏଠାରେ । ରହିଲେ ଜୀବନ ବିପନ୍ନ
କଂସର ବିରୋଧୀ ହୋଇଣ ରହିବା ଆମ୍ଭର ପକ୍ଷରେ କଠିନ । ୭
ଅକ୍ରୂର କହିଲେ ନ ହୁଅ ଚକିତ ଦେବକୀ ନନ୍ଦନ ଶ୍ରୀକୃଷ୍ଣ
ଆମ୍ଭ ମୁକ୍ତିଦାତା ମୁକ୍ତି ଦେବା ପାଇଁ ମଥୁରାପୁରର ଆଗମନ
ସଫଳ । ନାରଦ ମୁନିଙ୍କ ବଚନ
କାଳ କବଳିତ ହୋଇଅଛି କଂସ ଭଙ୍କାଇ ଦେବକୀ ନନ୍ଦନ । ୮
ଏହି ସମୟରେ ଗାର୍ଗୀଗୃହସ୍ଥ ସଙ୍ଗେ ପ୍ରବେଶିଲେ ଦେବକୀ ମାତ
ଦେବୀ ଆଗମନେ ଯାଦବ ସମ୍ମୁଖେ ହୋଇଣ ଚଳେ ସ୍ତମ୍ଭୀଭୂତ
ଦେବକୀ । ସାର୍ଦ୍ଧନ ଧରି ମୋହନ
ରହି ଏକାନ୍ତରେ ସମୟ କଟାନ୍ତି ନ କରି କା ମୁଖ ଦର୍ଶନ । ୯
ଦେବକୀ ଦେବୀଙ୍କ ଦୁର୍ଭାଗ୍ୟ କାହାଣୀ ପବିତ୍ର, ସାଧୁତା, ସଦ୍‌ଗୁଣ
ଜନସାଧାରଣ ମଧ୍ୟରେ ତାହାଙ୍କୁ ଦେଇଛି ଦେବୀର ଆସନ
ପ୍ରତାପ ! ନିକଟରେ ଦଣ୍ଡାୟମାନ
ମୁଖ ମଣ୍ଡଳରେ ତ୍ୟାଗର ସଙ୍କେତ ଶରୀର ଦିଶେ ଜୀର୍ଣ୍ଣଶୀର୍ଣ୍ଣ । ୧୦
ବିଷାଦରେ ପୂର୍ଣ୍ଣ ହୋଇଛି ବଦନ ନେତ୍ର ଦ୍ୱୟ ସ୍ଥିର ହୋଇଣ
ଯାଦବପତିଙ୍କ ଉପରେ ରହିଛି ଆତଙ୍କିତ ଭାବ ବହିଣ
ନୟନ । କାନ୍ଦକାନ୍ଦ ଲୋତକ ଶୂନ୍ୟ
କଥା କହିବାକୁ ଖୋଲୁଥିଲେ ମୁଖ ନିର୍ଗତ ହେଉ ନ ଥିଲା ବଚନ । ୧୧
ନିଜର ଗଳାକୁ ଦୁଇହାତେ ଚପି ଧରିଣ ଅତ୍ୟନ୍ତ କଷ୍ଟରେ
ଅତିକ୍ଷୀଣ ସ୍ୱରେ କହିଲେ ଜନନୀ ଭାବ ବିହ୍ୱଳିତ ସ୍ୱରରେ
"ଶୁଣନ୍ତୁ । କୁଳମୁଖ୍ୟ ମୋର ନିଷ୍ପତ୍ତି
ଯଦି ମୋ ପୁତ୍ରଙ୍କୁ ହତ୍ୟା କରାଯାଏ ନିଷ୍ଠୟ ଦେବି ଆତ୍ମହୁତି" । ୧୨
ଏଇପରି କଥା ଶୁଣି ସଭାସଦ ହୋଇଣ ଚଳେ ଅଭିଭୂତ
ପ୍ରତୀୟ ହୋଇଲା ଭୂମିକମ୍ପନରେ ପୃଥ୍ୱୀକି ହେଲା ରସାତଳ
ସଭାରେ । ବସିଲେ ସକଳେ ମଉନ
ମାତ୍ର ବିଚଳିତ ନ ହୋଇ ଅକ୍ରୂର ବ୍ୟକ୍ତ କଲେ ଜନନୀ ଶୁଣ । ୧୩

ଆମ୍ଭେମାନେ ପ୍ରାଣ ବନ୍ଧନମଧ୍ୟେ ତୁମ୍ଭ ତନୟଙ୍କୁ କରିବୁ ରକ୍ଷା
ଦୃଢ ପ୍ରତିଶ୍ରୁତି ଦେଉଅଛୁ ଆମ୍ଭେ ଅନ୍ୟଥା ନ ହୋଇବ ଘଟଣା
ସକଳେ । କଥାକୁ କଲେ ସମର୍ଥନ
ଯାଦବ ପ୍ରମୁଖେ ପ୍ରତିଜ୍ଞା କରିଲେ ଉଠାଇ ଅସ୍ତ୍ରଶସ୍ତ୍ରମାନ । ୧୪
କୁଳର ମୁଖ୍ୟଙ୍କ ନିଷ୍ଠାକଥା ଶୁଣି ଜନନୀ ନାଶେଙ୍କ ଭାବରେ
ସଭାସ୍ଥଳ ତ୍ୟାଗ କରି ଚାଲିଗଲେ ସଂଗୋପନେ ନିଜପୁରେ
ତତକ୍ଷଣେ । ଯାଦବ ପ୍ରମୁଖେ ଉଠିଲେ
ଦୃଢ ମନୋବଳ ତଥା ଧୈର୍ଯ୍ୟସହ କୃଷ୍ଣ ଥିବା ସ୍ଥାନେ ଚାଲିଲେ ।୧୫
ଗ୍ରାମବାସୀ ପାଇଁ ଉଦ୍ଦିଷ୍ଟ ସ୍ଥାନରେ ସେହିମାନଙ୍କ ଗହଣରେ
ନିରାପଦ ସ୍ଥାନ ମଣି ଅବସ୍ଥାନ କରୁଥିଲେକ ନୃ ଦୁର୍ଗରେ
ସକଳ । ଦୁର୍ଗଠାରୁ ନର ଦୁର୍ଗଟି
ଭେଦ କରିଯିବା ସହଜ ନୁହଇଁ ଜାଗ୍ରତ ସହିଁ ଜନ ଗୋଷ୍ଠି । ୧୬
ମାରଣାସ୍ତ୍ର ଧରି ଯାଦବ ପ୍ରମୁଖେ ଜଗିଣ ରହିଲେ ବକ୍ଷରେ
ଲକ୍ଷେ ଗଜହୁଳା ଜଳୁଛୁ ଚୌଦିଗେ ଅନ୍ଧକାର ନାହିଁ ଯେଠାରେ
କ୍ରମରେ । ନିର୍ଭୟେ ସେ ଦୁର୍ଗେ ରହିଲେ
ଶତସହସ୍ରପୂର କଣ ଲୋକମାନେ ସୁଦୃଢେ ବେଷ୍ଟଣ ରହିଲେ । ୧୭
ଦ୍ୱିତୀୟ ପ୍ରହର ହୋଇଛି ରଜନୀ କଂସ ନୟନେ ନାହିଁ ନିଦ
ନିଭୃତ କକ୍ଷରେ ବସି ବର୍ତ୍ତୁରଇ ପଡ଼ିଲା ଆସି ପରମାଦ
କପଟ ! ମାରିବ ଦେବକୀ ନନ୍ଦନ
ପାଣି ପାହାନ୍ତାରେ ପାଇ ପଳାଇଲେ ପ୍ରମାଦ ପଡ଼ିବା ପ୍ରମାଣ । ୧୮
କାରଣ ସେ ଜାଣେ ଯାଦବଙ୍କ ମଧ୍ୟେ ଥିଲେ ହେଁ ଏକାଧିକ ଗୋଷ୍ଠି
ସମସ୍ତେ ତାହାର ବିପକ୍ଷେ ରହିଣ ଷଡଯନ୍ତ୍ରରେ ମାତିଛନ୍ତି
ସେମାନେ । ମନ୍ତ୍ରଣା କରନ୍ତି ଗୋପନେ
କପଟ ମୋହର ବିନାଶ ଘଟାଇ ରଜା କରିବେ ଉଗ୍ରସେନେ । ୧୯
ଶୂର, ବୃଷ୍ଣି, ଭୋଜ, ଅନ୍ଧକ, ଚୂହାଣ, କୁଳାଧିନାୟକ ଯେତେକ
ମୋହପ୍ରତି ଜଣେ ବିଶ୍ୱସ୍ତ ନୁହନ୍ତି ସମସ୍ତେ ବିଶ୍ୱାସ ଘାତକ
ପ୍ରଲମ୍ବ । ପ୍ରଦ୍ୟୋତ, ଉଦ୍ଧବ, ଅକ୍ରୁର
ପଦସ୍ଥ ହେଲେହେଁ ବିଶ୍ୱସ୍ତ ନୁହନ୍ତି ପ୍ରତ୍ୟେକ ସନ୍ଦେହ ଜଡ଼ିତ । ୨୦

ରାଜ୍ୟ ମହାମନ୍ତ୍ରୀ ଥାଇଣ ପ୍ରଲମ୍ବ ଚିନ୍ତଇ ମୋହର ଅନିଷ୍ଟ
ଦେବକୀ ପୁତ୍ରକୁ ଗୋପେ ପଠାଇବା ଷଡଯନ୍ତ୍ରେ ସମ୍ଭବେ ଲିପ୍ତ
ରହସ୍ୟ । ଜାଣି ରଖିଲି ଗୁପ୍ତ କରି
ଗୁପ୍ତଚର ବାର୍ତ୍ତା ପାଇ ପଶୁରନ୍ତେ କହିଲି ସେ ଛଳନା କରି । ୨୧

ପ୍ରଦ୍ୟୋତ ମୋହର ଅତ୍ୟନ୍ତ ବିଶ୍ୱସ୍ତ ଥାଇଣ ମୁଖ୍ୟ ସେନାପତି
ତଥାପି ତାହାକୁ ବିଶ୍ୱାସ ନ ଆସେ ଦେଖି ତାହାର ମତିଗତି
ମୋହର । ଶାଳକ ଅଟଇ କୃତଘ୍ନ
ପ୍ରାସାଦ ସୁରକ୍ଷା ଦାୟିତ୍ୱ ତା ହାତେ କରିଥିଲେ ହେଁ ଅରପଣ । ୨୨

ତଥାପି ସମ୍ପୂର୍ଣ୍ଣ ବିଶ୍ୱାସ ନ କରେ ବିଦୁରେ ଅଟେ ସେ କୃତଘ୍ନ
ମଗଧର ରାଜକୁମାର ଥିବାରୁ କରଇ ମୋତେ ହେୟ ଜ୍ଞାନ
ଅହଙ୍କାର । ଅତ୍ୟନ୍ତ ଭାବେ ସ୍ପଷ୍ଟବାଦୀ
ଯାଦବେ ତାହାର ବାକ୍ୟ ଶୁଣିତ ହେତୁ ସେ ମୋହର ପ୍ରତିବାଦୀ । ୨୩

ଉଦ୍ଧବ ମୋହର ନିଜର ଭଣଜା ହେଲେ ହେଁ ନ ଥାଏ ବିଶ୍ୱାସ
ଯାଦବଙ୍କ ସଙ୍ଗେ ମେଣ୍ଟ ବାନ୍ଧିଅଛି କରିବାକୁ ମୋତେ ବିନାଶ
ଏପରି । ଜଣଜଣ କରି ତର୍କଣା
କରି ଘରସାନ୍ତ ହେଲି ତା ଚେତନା ଦେବନେଇବକୁ ନିଦ ମନା । ୨୪

ତୀକ୍ଷ୍ଣ କୂଟନୀତି ପ୍ରୟୋଗ କରିଣ ଗମ୍ଭୀରେ ଜରଇ ବିଚୁର
ଆଜି ଏ ସନ୍ଧିରେ ଦେବକୀ ପୁତ୍ରଙ୍କୁ ବିନାଶିବା କଷ୍ଟ ବ୍ୟାପାର
ଚୌଦିଗେ ! ଜନଗଣ ପୂରି ଅଛନ୍ତି
ବ୍ୟାପକ ଭାବରେ ଗଣହତ୍ୟା କଲେ ନିଜର ହେବ ବହୁ କ୍ଷତି । ୨୫

ବିଶେଷ କୃଷ୍ଣଙ୍କ ଦର୍ଶନ ନିମନ୍ତେ ଉଦ୍‌ବେଳିତ ଜନସ୍ରୋତ
ନ ଶୋଇ ନଗରର ଲୋକେ ଉଜାଗର ପ୍ରଦୀପାଲୋକେ ପ୍ରଜ୍ୱଳିତ
ତାଙ୍କର । ବିଶ୍ୱାସ କୃଷ୍ଣ ଭଗବାନ
ଦର୍ଶନ ନିମନ୍ତେ ଧାଇଁ ଛୁଟି ଅଛି କେ କରଇ ସଂଖ୍ୟା କଳନ । ୨୬

ଏହି ଅବସ୍ଥାରେ ବିନାଶ ନିମନ୍ତେ ଯଦ୍ୟପି ହୋଇବ ଉଦ୍ୟମ
ବହୁଜନ କ୍ଷୟ ତଥା ରକ୍ତ ପାତେ ରହିବ ମୋହର ଦୁର୍ନାମ
ନଗରେ । ରହିଛନ୍ତି ରାଜ ଅତିଥି
ଏମନ୍ତ ସମୟେ କନ୍ଦଳ ଲାଗିଲେ ସେମାନେ ହୋଇବେ ଅଶାନ୍ତ । ୨୭

ଗଣ ଆନ୍ଦୋଳନ ଦେଖା ଦେବ ଆସି ଦମନ କରିବା କଠିନ
ଯୁଦ୍ଧ କରିବାକୁ ମାଗଧୀ ସେନାନୀ ସଂଖ୍ୟାରେ ଅଟନ୍ତି ନଗଣ୍ୟ
ପରନ୍ତୁ । ପରିସ୍ଥିତି ହୋଇବ ବିସ୍ତ୍ର
ପ୍ରତ୍ୟକ୍ଷ ଯୁଦ୍ଧରେ ନ ମାରି କୁମରେ ମରାଇଲ କରିଣ କୂଟ । ୨୮
ନଗରରେ ଅନ୍ତରେ ଅଙ୍ଗାରକ ଅଟେ ଗଜ ସେନା ସଂଗତ ପତି
ବିଶ୍ୱାସୀ ଗଣରେ ସେନା ବାହିନୀରେ ରହିଛି ତାହାର ସୁଖ୍ୟାତି
ସମ୍ଭ୍ରାନ୍ତ । ସହିତ ପଦସ୍ଥ, ବିଶ୍ୱସ୍ତ
ଯାବତ କୁତ୍ସିତ କାର୍ଯ୍ୟ ସମ୍ପାଦନେ ହୋଇ ନାହିଁ କେବେ କୁଣ୍ଠିତ ୨୯
ତାହାକୁ ବହୁତ ଧନରତ୍ନ ଦେଇ କରି ରଖିଲେ ବଶୀଭୂତ
କ୍ରୋଧ କୁବଳୟା ଦ୍ୱାରା ମରାଇଲେ ନ ହୋଇବ ଦୋଷ ଲିପ୍ତ
ନଗର । ଗୋପନେ ଡକାଇ ବୋଲଇ
କୁବଳୟା ଦ୍ୱାରା କୃଷ୍ଣ ମରାଇଲେ ପୁରସ୍କୃତ ହୋଇବୁ ତୁହି । ୩୦
ଲୋକେ ଜମା ହେବା ଆଗୁ କାର୍ଯ୍ୟ ଶେଷ କଲେ କେ ଜାଣି ନପାରିବେ
ଲୋକେ ଯା'କୁ ମୁକ୍ତିଦାତା କହୁଛନ୍ତି ତା ମୃତ୍ୟୁରେ ଶୋକ କରିବେ
ନାରଦ । କହିବା କଥା ମିଥ୍ୟା ହେବ
ମଞ୍ଚରେ ମୁହିଁ ଦର୍ପେ ବସି ରହି ଦେଖୁଥିବ ଏ ଦୃଶ୍ୟ ଧ୍ରୁବ । ୩୧
ଏପରି ଜଘନ୍ୟ ଯୋଜନା କରିଣ ମନରେ ହୋଇଣ ଆଶ୍ୱସ୍ତ
ଦୃଢ ନିରାପତ୍ତା ବ୍ୟବସ୍ଥା ମଧ୍ୟରେ ଅନ୍ତଃପୁରେ ହେଲ ନିଦ୍ରିତ
ମାଳିନୀ । ନିଶାର୍ଦ୍ଧେ ପାଇଏ ଖବର
ମୋହିନୀ ରୂପକୁ ଧାରଣ କରିଣ ଏକାନ୍ତେ ଚଳିଲ ସତ୍ୱର । ୩୨
ନଗର ପ୍ରାନ୍ତରେ କୁଞ୍ଜର ଶାଳରେ ଭେଟିଲ ଯାଇ ଅଙ୍ଗାରକ
ମନ ବିଷାଦରେ ଶୋଇଛି ଶଯ୍ୟାରେ ସୁଖି ଯାଇଅଛି ତା ମୁଖ
ଦୁଇ ସ୍ତ୍ରୀ । ଜଣେ ଘସୁଅଛଇ ପାଦ
ଆରକ ବସିଣ ବିଞ୍ଚଣା କରଇ ତଥାପି ନ ଆସେ ନିଦ । ୩୩
ତାକୁ ଯେଉଁ କାର୍ଯ୍ୟ କରିବାକୁ ଆଜ୍ଞା ଦେଇଛନ୍ତି କଂସ ନରେଶ
ସେ ତାହା କରିବା ପାଇଁ ଘୃଣା କରେ ନିଜରେ କୁମାରେ ନିର୍ଦ୍ଦୋଷ
ପ୍ରଜାଏ । ପୂଜୁ ଅଛନ୍ତି ପ୍ରଭୁ ପରି
ଦାନା ଖାଉଅଛି ବୋଲିଏ ଅନ୍ୟାୟ କାର୍ଯ୍ୟସେ କରିବ କପରି ? ୩୪

ବସ୍ତୁରେ କଂସର ଯାବତ ହୁକୁମ ପାଳନ କରିଅଛି ମୁହିଁ
ମାତ୍ର ଏ ଆଦେଶ ପାଳନ ନିମନ୍ତେ ତା ବିବେକ ବାଧା ଦିଅଇ
ବସ୍ତୁରେ । ନ କଲେ କରିବ ବିନାଶ
କଲେ କୃଷ୍ଣ କୋପେ ପଡ଼ିଣ ଶେଷରେ ନିଧନ ହୋଇବ ଅବଶ୍ୟ ।୩୫
ହୃଦରେ ପଡ଼ିଣ ଛଟପଟ ହୁଏ ତା ଶରୀର ମନ ଅବଶ
ଏମନ୍ତ ସମୟେ ଆଘାତ କରିଲା ମାଳିନୀ ଯାଇ ଦ୍ୱାର ଦେଶ
କବାଟ । ଖୋଲନ୍ତେ ଭିତରକୁ ଗଲା
ଅତୀବ ସୁନ୍ଦରୀ ରମଣୀକୁ ଦେଖି ଆନନ୍ଦ-ବିସ୍ମୟେ ବୁଡିଲା ।୩୬
କୋଡିଏ ବର୍ଷର ଦାମ୍ପତ୍ୟ ବିଚ୍ଛେଦ ପରେ ଏ ଅପୂର୍ବ ମିଳନ
ବିସ୍ମୟେ ପୁଚ୍ଛିଲା ସ୍ୱାମୀ ଅଙ୍ଗାରକ ତୋହର ଏ ପରିବର୍ତ୍ତନ
କପରି । ହୋଇଲା ପ୍ରକାଶ ରହସ୍ୟ
ଶୁଣିବାକୁ ମନ ହେଉଛି ଉଚ୍ଛନ୍ନ ସନ୍ଦେହ କର ଗୋ ମୋଚନ । ୩୭
ମାଳିନୀ କହିଲା ଦେବକୀ ତନୟ ବିଷ୍ଣୁ ହୋଇଅଛନ୍ତି ଜାତ
ପ୍ରଭୁଙ୍କ ଦର୍ଶନ ପରଶେ ମୋ ରୂପ ବଦଳି ଗଲା ତତ୍‌କ୍ଷଣାତ୍
ଯାଦବ । କୁଳର ସେ ମୁକ୍ତିଦାତା
ତୁମ୍ଭ ପ୍ରଭୁ କଂସ ଠାରୁ ମୁକ୍ତିଦେବା ପାଇଁ ମୋର ପ୍ରଭୁ ଆଗତ । ୩୮
ବ୍ୟସ୍ତ ହୁଅ ନାହିଁ ଏତେ ଦିନକରେ ଆସି ହୋଇଲା ସୁପ୍ରଭାତ
ଦୁରାଚାରୀ କଂସ ଅଧୀନରେ ଆଉ କରିବା ନାହିଁତ ଦାସତ୍ୱ
ନିଶ୍ଚୟ । କହୁଛି ଜାଣ ମୋ ଭାରତୀ
କାଲି ସେ କଂସକୁ ନିଧନ କରିବେ ଶାନ୍ତ ହୋଇବ ବସୁମତୀ । ୩୯
ସ୍ୱାମୀ ଅଙ୍ଗାରକ ଫିଟାଇ କହିଲା ଶୁଣ ମାଳିନୀ ଗୁପ୍ତ ତଥ୍ୟ
ରାଜା ଆଜ୍ଞା ଅଛି କୁବଳୟା ଦ୍ୱାରା ମରାଇବ ଦେବକୀ ସୁତ
ସ୍ୱଭାବେ । ଆଜ୍ଞାବହ ଭୃତ୍ୟ ଅଟଇ
ଯଦି ରାଜା ଆଜ୍ଞା ପାଳନ ନ କରେ ଶରୀରେ ଶିର କି ରହିବ ? ୪୦
ମାଳିନୀ ପୁଚ୍ଛିଲା ଆଉ କେତେଦିନ ପାଳିବ ସେ ପାମର କଥା
ଦେବକୀ ପୁତ୍ରଙ୍କ ଶରଣ ପଶିଲେ ଦୂର ହୋଇବ ଦୁରବସ୍ଥା
ମୋ କଥା । ମାନିଲେ ରହିବ ଜୀବନ
ଯେତେ ଚେଷ୍ଟା କଲେ ମୋ ପ୍ରଭୁ କୃଷ୍ଣଙ୍କୁ କରି କି ପାରିବ ନିଧନ ? ୪

କଥାବାର୍ତ୍ତା ହୋଇ ପନ୍ତପତ୍ନୀ ଦୁଇ ମିଳିଲେ କୁଞ୍ଜର ଶାଳରେ
ଯତ୍ନ ଆଣିଥିବା ବଟିକା ମାଳମା ଭରଲା ହସ୍ତୀର ମୁଖରେ
ନସ୍ତେଜ । ହୋଇ ଶୋଇଲା ପାଟହାତି
ଆପଣା ମନ୍ଦରେ ଫେରିଲା ମାଳମା କୁଆଁ ତାର ବଡ ପାହାନ୍ତି । ୪୨

ମାଳମା ମୁଖରୁ କୃଷ୍ଣଙ୍କ ମହିମା ଶ୍ରବଣେ ଅଙ୍ଗାରକ ବୀର
ଅନ୍ତର ମଧରେ କୃଷ୍ଣ ନାମ ଜପି କରିଲା ଶତ ନମସ୍କାର
ଦେଖିଲା । କୃଷ୍ଣମୟ ବିଶ୍ୱଜଗତ
ଆକାଶ, ବତାସ, ସାଗର ଶଇଳ ପୂରି ରହିଛନ୍ତି ସର୍ବତ । ୪୩

ପାହାନ୍ତା ବଡରେ ପକ୍ଷୀଙ୍କ କଣ୍ଠରେ ଶୁଭିଲା କୃଷ୍ଣ ନିଃସ୍ୱନ
ଦେବାଳୟେ କମ୍ବୁ ଶବଦ ଶୁଭିଲା ବନ୍ଦୀ ମୁଖେ କୃଷ୍ଣଗାୟନ
ହୋଇଲା । କୃଷ୍ଣନାମ ପ୍ରତିଧ୍ୱନିତ
କୃଷ୍ଣନାମ ଶ୍ରୁତି ମଧୁର ଅଟଇ କୃଷ୍ଣ ପ୍ରେମେ ଚିତ୍ତ ପୂରିତ । ୪୪

ପଞ୍ଚାଶତରେ ଅଧ୍ୟାୟ ସମ୍ପୂର୍ଣ୍ଣ ଶ୍ରୀକୃଷ୍ଣ ଚରିତ ମାନସ
କୃଷ୍ଣ ଅଭିରାମ କୃପା ହୋଇବାରୁ ଗୀତେ ଗାଇଲା ବୃନ୍ଦାବନ
ସୁଜନେ । ପାନ କର ଅମିୟ ରସ
କାଳନଦୀ କୂଳେ କୁଟୀର କରିଣ ଘୋଷେ କୃଷ୍ଣନାମ ଅହର୍ନିଶ । ୪୫

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳାଖଣ୍ଡେ କଂସର ଶେଷ ଷଡଯନ୍ତ୍ର ବର୍ଣ୍ଣନେ
ନାମ ଚତୁଃପଞ୍ଚାଶତ ଅଧ୍ୟାୟ ସମ୍ପୂର୍ଣ୍ଣଂ
ଶ୍ରୀକୃଷ୍ଣାର୍ପଣମସ୍ତୁ ।



# ପଞ୍ଚପଞ୍ଚାଶତ ଅଧ୍ୟାୟ
## କଂସ ବଧ

### ରାଗ - ଭୂପାଳ

ଶ୍ରୀକୃଷ୍ଣ ଚରିତ ମାନସ ଶ୍ରବଣ
କର ସୁଜ୍ଞଜନେ ଦେଇ ମନକର୍ଣ୍ଣ । ୧
ରାଜମାନ୍ତ କାର୍ଯ୍ୟ ମଥୁରା ନଗରେ
କରୁଛନ୍ତି ରାମ କୃଷ୍ଣ ସମ୍ମୁଖରେ । ୨
ପ୍ରଭାତରୁ ଉଠି କଂସ ମହାବୀର
ମଥାରେ ମୁକୁଟ କଣ୍ଠେ ଅଳଙ୍କାର । ୩
କଟିଦେଶେ ବନ୍ଧା ତୀକ୍ଷ୍ଣ କରବାଳ
କଣ୍ଠଦେଶେ ଶୋଭା ମଣିରତ୍ନ ମାଳ । ୪
ଗବାକ୍ଷ ଉହାଡ଼େ ଠିଆ ହୋଇଅଛି
ରଙ୍ଗସଭା ଆଡ଼େ ଦୃଷ୍ଟି ରଖିଅଛି । ୫
ଦେଖଇ ଛୁଟିଛି ଜନତାର ସ୍ରୋତ
ଚାଲିଛନ୍ତି ସଭା ସ୍ଥଳକୁ ତୁରିତ । ୬
ଚାଣୂର, ମୁଷ୍ଟିକ ଆଦି ମଲ୍ଲମାନେ
ପ୍ରସ୍ତୁତ ଅଛନ୍ତି ରଙ୍ଗ ସଭା ସ୍ଥାନେ । ୭
ବୃତଘ୍ନ ଅଧୀନେ ମାଗଧୀ ସେନାଣୀ
ଜଗିଛନ୍ତି ସଭା ଅସ୍ତ୍ରଶସ୍ତ୍ର ସେନ । ୮
ଏମନ୍ତ ସମୟେ କୁବଳୟା ହସ୍ତୀ
ଆସୁଅଛି ମାଡ଼ି ପଡ଼ିଲାକ ଦୃଷ୍ଟି । ୯
କୁଳାପରି କାନ ଖମ୍ବପରି ଦାନ୍ତ
ବିଶାଳ ଶରୀର ଚଳନ୍ତା ପର୍ବତ । ୧୦
ସ୍ୱର୍ଣ୍ଣ ହାଉଦାରେ ଖଚିତ ଶରୀର
ହଣୁଅଛି ଜଳ ଜଳ ବହୁଦୂର । ୧୧

ହସ୍ତୀଶାଳୁ ଆସି    ପ୍ରାସାଦ ସମ୍ମୁଖେ
ଠିଆ ହେଲ ଦର୍ପେ    ଦେଖିଲେ ପ୍ରତ୍ୟକ୍ଷେ ।୧୨
ଶୋଭା ଯାତ୍ରା ଯେଉଁ    ଦିଗରୁ ଆସଇ
ଆଗ ଗୋଡ଼ ଟେକି    ରହିଲ ଗୃହିଁ ।୧୩
ଜନତା ଜନାର୍ଦ୍ଦନେ    କରେ ସ୍ୱାଗତ
ପ୍ରସ୍ତୁତ ହୁଅଇ    ଅବା ଏହି ମତ ।୧୪
ଶୋଭାଯାତ୍ରା ଆଗେ    ଆଗେ ରାମ କୃଷ୍ଣ
ଢଳଢଳ ଆସୁ    ଛନ୍ତି ବେନି ଜନ ।୧୫
ପଥ ପ୍ରାନ୍ତେ ନର    ନାରୀ ଠିଆ ରହି
ପାଦ ଧୂଳି ନେଉ    ଛନ୍ତି ଶ୍ରଦ୍ଧା ବହି ।୧୬
କଂସ ରାଜବାଟୀ    ଦିବ୍ୟ ପରିପାଟୀ
ସ୍ଫଟିକ ଶିଳାରେ    ହୋଇଅଛି ସୃଷ୍ଟି ।୧୭
ସାତତାଳ ହେବ    ମାପିଲେ ଉଚ୍ଚତା
ପ୍ରାସାଦ ଶୀର୍ଷରେ    କନକର ଛତା ।୧୮
ଚାଳେକ ଉଚ୍ଚର    ପଥର ପ୍ରାଚୀର
ଘେରି ରହିଅଛି    ପ୍ରାସାଦ ନିକର ।୧୯
ପଥର ପାଚେରି    ଭିତର ପାଖରେ
ଦ୍ୱିତୀୟ ପ୍ରାଚୀର    ନିର୍ମିତ ତମ୍ବାରେ ।୨୦
ସୁଗଭୀର ଖଣା    ଘେରି ରହିଅଛି
ଅତଳ ଗଭୀର    ଜଳରେ ପୂରିଛି ।୨୧
ସେ ଜଳେ କୁମ୍ଭୀର    ଆଦି ଜଳଚର
ବୁଲୁଛନ୍ତି ମାଳ    ମାଳ ଭୟଙ୍କର ।୨୨
ସିଂହ ଦ୍ୱାର ଦେଶେ    କୁବଳୟା ହସ୍ତୀ
ଠିଆ ହୋଇଅଛି    ବିଶାଳ ମୂରତି ।୨୩
ତା ରୂପକୁ ଦେଖି    ସକଳେ ଗୁଣିଆଁ
ଭୟ ପାଇ ଦୂରେ    ଯାଇ ହେଲେ ଠିଆ ।୨୪
ଗୌର ନୀଳବର୍ଣ୍ଣ    ଦେବକୀ ତନୟ
ନୟନ ଯୁଗଳ    ଅତି ରମଣୀୟ ।୨୫

ଦେବକୀ ସପ୍ତମ    ଅଷ୍ଟମ ଗରଭ
ବସୁଦେବ ରୂପ    ପ୍ରାପ୍ତକେ ସମ୍ଭବ । ୨୬
ସେ ଦୁଇ ଭଇଙ୍କି    କରି ଦରଶନ
ଚିହ୍ନିଲ ଏମାନେ    ଦେବକୀ ନନ୍ଦନ । ୨୭
ବିଗ୍ରହରେ ଏ ଶତ୍ରୁ    ଅଟନ୍ତି ମୋହର
ମରାଇବ ଗଜ    ଦ୍ୱାର ଏ ସୋଦର । ୨୮
ଗୌରବର୍ଣ୍ଣ ଶିଶୁ    ଗୋଟି ହୃଷ୍ଟପୁଷ୍ଟ
କଟିଦେଶେ ନୀଳା-    ମ୍ବର ପରିହିତ । ୨୯
ନୀଳବର୍ଣ୍ଣ ଯେଉଁ    ନବୀନ କିଶୋର
ପୀତ ବସ୍ତ୍ର ଅଙ୍ଗେ    ଶୋଭା ପାଏ ତାର ।୩୦
ସିଂହ ଦ୍ୱାରେ ଆସି    ହୋଇଲେ ପ୍ରବେଶ
ପ୍ରସନ୍ନ ବଦନ    ଦିଶେ ହସହସ । ୩୧
ନିର୍ଭୟରେ କୃଷ୍ଣ    କରୀ ପାଶେ ଯାଇ
ଥୋଡ଼ି ଧରି ଧୀରେ    ଦେଲେ ସେ ହଲେଇ । ୩୨
ପ୍ରଭୁ କର ସ୍ପର୍ଶ    ପାଇ କରୀବର
ଧନ୍ୟ ହେଲି ବୋଲି    କରଇ ବିଚାର । ୩୩
ଥୋଡ଼ି ଟେକି    ଉଚ୍ଚେ କରିଲ ଗର୍ଜନ
ତାହା ମନକଥା    ବୁଝିଲେ ଶ୍ରୀକୃଷ୍ଣ । ୩୪
ପ୍ରାଣୀ ମାନଙ୍କର    ହୃଦୟ କନ୍ଦର
ଜୟ କରିବାରେ    ସିଏ ଧୁରନ୍ଧର ।୩୫
ଜୀବ ଜଗତର    ହୃଦୟର କଥା
ବୁଝିବାକୁ ଯାର    ରହିଛି କ୍ଷମତା । ୩୬
ଦେବକୀ ନନ୍ଦନ    ଜାଣନ୍ତି ଯେପରି
ଅନ୍ୟକେ ବିଶ୍ୱେ    ଅଛଇ ସେପରି ? ୩୭

ହୃଦୟ ନାଥଙ୍କୁ    ହୃଦ କଥା କହି
ଅନାଇ ରହିଲ    ପୁଲକିତ ହୋଇ । ୩୮

ବିଗ୍ରହିଲ ଚିତ୍ତେ    ତା ଇଷ୍ଟ ଦେବତା
ଦୟାକରି ମୋତେ    ଦେଲେ ଆସି ଦେଖା । ୩୯

ଏମନ୍ତ ବଚନ     ସେହି ପାଟହାତୀ
ଆଣ୍ଠୁ ମାଡ଼ି ବସି     ଧୀରେ କଲା ସ୍ତୁତି । ୪୦
ତା ଭାଷାରେ ଗୀତ     ଗାଇଲା ସେ କେତେ
ଆଉଁଜି ଦେଲେ ତା     ଶରୀରକୁ ହାତେ । ୪୧

ତା ଆଖିରୁ ବହି     ଗଲା ଅଶ୍ରୁଧାର
ଚହଲିଲା ଏ ନନ୍ଦ-     ନନ୍ଦନ ଚକ୍ରଧର । ୪୨
ଚନ୍ଦନ ନନ୍ଦ ନାଗି     ରଖିଥିଲେ ପ୍ରାଣ
ଦେଇଥିଲା ପଦ୍ମ     ଶୁଣ୍ଢରେ ଧାରଣ । ୪୩
ଏବେ ସେ ପ୍ରଭୁଙ୍କ     ପଙ୍କଜ ପୟର
ପରଶ ପାଇଣ     ଧଇଲା ଥୋଡ଼ର । ୪୪
ସସ୍ନେହେ ଉଠାଇ     ପୃଷ୍ଠରେ ବସାଇ
ଧୀରେ ଧୀରେ ଆଣି     ଦେଲା ପୁଣି ଥୋଇ । ୪୫
ପ୍ରଭୁ ପାଦ ତଳେ     ଥୋଡ଼ପାକୁ ଥୋଇ
ଦୁଇ ଆଖି ବୁଜି     ପଡ଼ିଲା ସେ ଶୋଇ । ୪୬
ଏ ବଚନ ଦୃଶ୍ୟ     ଦେଖି କଂସାସୁର
ଉଡ଼ିଗଲା ହଂସ     ନ ସ୍ଫୁରଇ ଗିର । ୪୭
କଂସ ଜାଣିବାରେ     କୃଷ୍ଣ ମାୟା କରି
ମରାଇଲେ କୁବ-     ଳୟା ପାଟ କରୀ । ୪୮
ଲୋକେ ଜାଣିବାରେ     ପ୍ରଭୁ ଦର୍ଶନରେ
ମୁକ୍ତି ପାଇ ହସ୍ତୀ     ଗଲା ସ୍ୱର୍ଗପୁରେ । ୪୯
ହାତର ମାହୁନ୍ତ     ଅଙ୍ଗାରକ ବୀର
ଶରଣ ପଶିଲା     ପଙ୍କଜ ପୟର । ୫୦

କୁବଳୟା ହସ୍ତୀ     ପତନ ଶେଷରେ
ଧସାଇ ପଶିଲେ     ସେ ରଙ୍ଗ ସଭାରେ । ୫୧

ବିଶାଳ ଆୟତା-     କାର ଆଙ୍ଗନର
ଚାରି ପାଖେ ଘେରା     ସୁଉଚ୍ଚ ପ୍ରାଚୀର । ୫୨
ତା ମଧ୍ୟେ ନିର୍ମିତ     ମୃତ୍ତିକା ବେଦୀରେ
ଉଚ୍ଚାସନ ମାନ     ପଡ଼ିଛି ଧାଡ଼ିରେ । ୫୩

ନିମନ୍ତ୍ରିତ ମିତ୍ର ନୃପତି ସମେତ ବିଶିଷ୍ଟ ଅତିଥି ଗଣେ ଉପବିଷ୍ଟ ।
ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଶୂଦ୍ର ଆଦି ଚାରିବର୍ଣ୍ଣ ପ୍ରଜା ବସିଛନ୍ତି ଫେନ୍ଦି ।
ପୃଥକ ପୃଥକ ଘେରର ମଧ୍ୟରେ ବସି ଦେଖୁଛନ୍ତି ଖେଳ ଆନନ୍ଦରେ ।
ରାଜକର୍ମଚାରୀ ପାର୍ଶ୍ୱଦ ସାମନ୍ତ ରଙ୍ଗ ସଭା ମଧ୍ୟେ ସର୍ବେ ଉପସ୍ଥିତ ।
ଚେରା ବାଡ ମଧ୍ୟେ ବସିଛନ୍ତି ନାରୀ ମଲ୍ଲଯୁଦ୍ଧ ଦେଖିବାକୁ ମନ ଭରି ।
ଆସ୍ଥାନ ଉପରେ ଅତିଥି ଗହଣେ ବସିଅଛି ବୀର ଦର୍ପେ କଂସବନେ ।
ବାମେ ବାସୁଦେବ ଦକ୍ଷିଣେ ଅକ୍ରୂର ପାଖେ ବସାଇଛି କରିବ ସଂହାର ।
କଂସ ଭ୍ରାତା, ପୁତ୍ର, ଆତ୍ମୀୟ, ସ୍ୱଜନ ଅସ୍ତ୍ରରେ ସଜ୍ଜିତ ହୋଇ ଦଣ୍ଡାୟମାନ ।
କଂସର ପଛରେ ପ୍ରଦ୍ୟୋତ, ବୃତଘ୍ନ ଘେନିଛନ୍ତି ବେନି ସଦର୍ପେ ଆସନ ।
ବୃତଘ୍ନ ପାର୍ଶ୍ୱରେ ମାଗଧୀ ଯୋଦ୍ଧାଏ ଜଗିରହିଛନ୍ତି ମଧୁପୁର ଦ୍ୱାରେ ।
ପୂର୍ଣ୍ଣ ସାମରିକ ପ୍ରସ୍ତୁତି ସହିତ କାର୍ଯ୍ୟକ୍ଷମ କୂଟେ ହୋଇଛି ପ୍ରସ୍ତୁତ ।
ଯାଦବ ମୁଖ୍ୟଙ୍କୁ ଘେରି ରହିଛନ୍ତି ସଭାଗୃହ ଯେମନ୍ତେ ପଳାଇ ନ ଯାନ୍ତି ।
ଅସ୍ତ୍ରଶସ୍ତ୍ର ଧରି ଜଗିଛନ୍ତି ସୈନ୍ୟ ଦେଖିଣ ଦର୍ଶକେ ଭୟେ ଛନଛନ ।
ମଲ୍ଲଯୁଦ୍ଧ ପାଇଁ ନିରୂପିତ ସ୍ଥାନେ ଚାଣୂର ମୁଷ୍ଟିକ ଆଦି ମଲ୍ଲମାନେ ।
ସାମରିକ ବେଶ ପୋଷାକ ହୋଇଣ ମୁଷ୍ଟିର ମୁଦ୍ରାରେ ସେ ଦଣ୍ଡାୟମାନ ।
ଲୋକଙ୍କ ଗହଣେ ବସୁଦେବ ସୁତ ପ୍ରବେଶ ସମୟେ ନିରୋଧିଲେ ପଥ ।
ଭିତରେ ନ ଛାଡ଼ି ଯୁଦ୍ଧ ଆରମ୍ଭିଲେ ଚାଣୂର ସହିତ ଶ୍ରୀକୃଷ୍ଣ ଲଢ଼ିଲେ ।
ମୁଷ୍ଟିକ ସହିତ ରାମ କଲେ ଯୁଦ୍ଧ ଉଭୟଙ୍କର ମଲ୍ଲଯୁଦ୍ଧ ବେନି ବଧ ।
ମଲ୍ଲଙ୍କ ନିଧନ ଦେଖି କଂସାସୁର କୃଷ୍ଣ ମାରିବାକୁ ଧାଇଁଲା ପାମର ।
କ୍ରୋଧେ କୃଷ୍ଣଆଡେ ଦଉଡ଼ିବା କାଳେ ଖସି ଯାଇ ଶିରସ୍ତ୍ରାଣ ପଡେ ତଳେ ।
ତା ସୁଦୀର୍ଘ କେଶ ମୁକୁଳିତ ହୋଇ ନଭେ କଳାମେଘ ଶୋଭାକୁ ଧରଇ ।
ଶ୍ରୀକୃଷ୍ଣ ଡେଇଁଣ କେଶକୁ ଧଇଲେ ବଳେ ଟାଣି ଆଣି ତଳେ ପକାଇଲେ ।
ତାହାକରୁ ଖଣ୍ଡା ନେଇ ହତ୍ୟା କଲେ ତା ମୃତ ଶରୀରେ ନୃତ୍ୟ ଆରମ୍ଭିଲେ ।
ଏହି ସମୟରେ ପାପିଷ୍ଠ ବୃତଘ୍ନ ବସୁଦେବ ବଧେ କଲା ଆକ୍ରମଣ ।
ଲମ୍ଫ ଦେଇ ରାମ ମଞ୍ଚପରେ ଉଠି ମାରିଲେ ବୃତଘ୍ନ ପ୍ରହାରିଣ ମୁଷ୍ଟି ।
ଲାଗିଗଲା ଘୋର ଯୁଦ୍ଧ ଉଭୟଙ୍କର ଯାଦବେ ପ୍ରମୁଖେ କରିଲେ ସମର ।
ଗୋଟିଗୋଟି କଂସପକ୍ଷ କଲେ ନାଶ ଘଡ଼ିକମଧ୍ୟରେ ଦୁର୍ଜ୍ଜନେ ବିନାଶ ।
ଚାରିଦିଗ ଘେରିଥିଲେ ପ୍ରଜାଗଣ ଖସି ନ ପାରିଣ ହୋଇଲେ ନିଧନ ।

କଂସମଲ୍ଲପରେ କୃଷ୍ଣ ତା କଣ୍ଠରେ    ଝୁଲୁଥିବା ଶଙ୍ଖ ଫୁଙ୍କିଲେ ଉଚ୍ଚରେ ।
ଶଙ୍ଖସ୍ୱନ ଶୁଣି ସର୍ବେ ହେଲେ ଶାନ୍ତ    ଦେଖିଲେ କରନ୍ତି ଶବୋପରେ ନୃତ୍ୟ ।
ମୁକ୍ତିଦାତା ଜାଣି ଶରଣ ପଶିଲେ    କୃତଜ୍ଞତା ସହ ପ୍ରାର୍ଥନା କରିଲେ ।
ଏକାଳେ ମିଳିଲେ ପିତା ବସୁଦେବ    ମାନ୍ୟ କଲେ କୃଷ୍ଣ ହୃଦପ୍ରୀତି ଭାବ ।
ଆଗୁ ବଳରାମ ଜଗି ରହିଥିଲେ    ମିଳନ ହୋଇଲା ପିତାମାତା ଭୁଲେ ।
କୃଷ୍ଣ କାନ୍ଧେ ମୁଣ୍ଡରଖି ବସୁଦେବ    ବିଳାପ କରିଲେ ବହୁ ଦୁଃଖଭାବ ।
ଦେବକୀ ଜନନୀ ପୁତ୍ରପାଇ ଶାନ୍ତ    ଦୁଇପୁତ୍ର କୋଳେ ଧରି ହରଷିତ ।
ନାରଦମୁନିଙ୍କ ଭବିଷ୍ୟତ ବାଣୀ    ସତ୍ୟ ହେଲା ଜାଣି ପ୍ରଣମିଲେ ମୁନି ।
ଭଣଜା ହାତରେ ମାମୁଁର ନିଧନ    ଦେଖି ଦୁଷ୍ଟ ରାଜା କଲେ ପଳାୟନ
କଂସ ମରିବାରୁ କୁଟୁମ୍ବେ ତାହାର    କ୍ରନ୍ଦନ କରିଲେ ନେତ୍ରୁ ଗଡ଼େ ନୀର ।
ସଭିଙ୍କୁ ସାନ୍ତ୍ୱନା ଦେଇ ରାମକୃଷ୍ଣ    ଶବ ସତ୍କାର ନିମନ୍ତେ ଆୟୋଜନ ।
ଜୟ ରାମକୃଷ୍ଣ ଦେବକୀ ନନ୍ଦନ    କଂସ ନିସୂଦନ କୃଷ୍ଣ ଭଗବାନ ।
ପ୍ରବଳ ପ୍ରତାପୀ ଅତ୍ୟାଚାରୀ କଂସ    ରାମକୃଷ୍ଣ ଦୁହେଁଭାଇ କରି ନାଶ ।
ନିର୍ଜନାରେ ବସିଛନ୍ତି କ୍ଲାନ୍ତ ହୋଇ    ମିଳିଲେ ନାରଦ ସେଠାବରେ ଯାଇଁ ।
ମୁନି ଦେଖି ବେନି ସୋଦର ପ୍ରଣତ    କଲ୍ୟାଣ କରିଲେ ମୁନି ଟେକି ହସ୍ତ ।
ପୁଚ୍ଛିଲେ ସଧୀରେ ଆହେ ଯଦୁନାଥ    ବିଳମ୍ବରେ କଂସ କମ୍ପା କଲ ହତ ।
ରହିଁଥିଲେ ବହୁ ଆଗୁ ମାରିଥାନ୍ତ    ଅଘଟଣ ମାନ ଘଟି ନ ଥାଆନ୍ତ ।
ଦେବକୀ ପ୍ରଥମ ଗର୍ଭରେ ସମ୍ଭୂତ    ହୋଇ କରିଥାନ୍ତ କଂସକୁ ନିହତ ।
ତାହା ନ କରିଣ ଅଷ୍ଟମ ଗର୍ଭରେ    ଜାତ ହେଲ କମ୍ପା ଏତେ ବିଳମ୍ବରେ ।
ପିତାମାତା ଭୋଗ କଲେ ବହୁ ଦୁଃଖ    ବୃଦ୍ଧ ଉଗ୍ରସେନ ହୋଇଲେ ଅସୁଖ
ମଥୁରାର ନର ନାରୀ ଶିଶୁଗଣ    ଅକାଳରେ କଂସ ହାତରେ ନିଧନ ।
ଘରଦ୍ୱାର ଛାଡ଼ି ବହୁ ଲୋକ ପଳାଇଲେ    ପରରାଜ୍ୟେ ଯାଇ ବସବାସ କଲେ ।
ଦେବକୀର ଷଡ଼ ଗର୍ଭ ଗଲେ ନାଶି    ଯାଦବଗଣଙ୍କ ବିଷାଦ ବିଶେଷ ।
ନାରଦ ମୁନିଙ୍କ କଥା ଶୁଣି କୃଷ୍ଣ    କହିଲେ ହେ ମୁନି କରନ୍ତୁ ଶ୍ରବଣ ।
ଏ ସଂସାରେ ସାର ଅଟେ ଧର୍ମଫଳ    ଉଲଙ୍ଘଂନେ ନାହିଁ କାହାରିତ ବଳ ।

ତିଳେମାତ୍ର ଧର୍ମ ବଳ ଥିବା ଲୋକ   ନିଧନେ ସକ୍ଷମ ନୁହନ୍ତି କେଉଁ ଲୋକ ।
ଧର୍ମ ବଳ ହାନି ହେଲେ ଆୟୁହ୍ରାସ   ହୋଇଥାଏ ବୋଲି ଜାଣ ବ୍ରହ୍ମଶିଷ୍ୟ ।
ପୂର୍ବ ଜନ୍ମେ କଂସ କାଳନେମି ଥାଇ   ଅର୍ଜିଥିଲା ଧର୍ମଫଳ ଏହି ମହୀ ।
ସେ ପ୍ରାରବ୍ଧ ଫଳ ଯୋଗୁଇହ ଜନ୍ମେ   ବଞ୍ଚିଲା ସେ ଏତେ କାଳ ମହାମୁନେ୍ୟ
ପିତା, ଭଗ୍ନି, ଭଗ୍ନିପତି ଧରିବଳେ   ରଖିଲା ସେ ବନ୍ଦୀ କରି ଅବହେଳେ ।
ଇହ ଜନ୍ମେ ବହୁ ପାପ କରି ମଧ୍ୟ   ବଞ୍ଚିଲା ସେ ଏତେ ଦିନ ହେ ନାରଦ ।
ପ୍ରାରବ୍ଧ ବଳରେ ତାର ଏତେ ଶକ୍ତି   ଭୋଗ କଲା ମେରୁ ଯାଏ ସେ ଦୁର୍ମତି
ପାପ କର୍ମଫଳ ଯହୁଁ ହେଲା ବେଶୀ   ଆୟୁକ୍ଷୟ ହୋଇ ଗଲା କ୍ରମେ ଋଷି ।
ଆପଣା ଦୋଷରୁ ଆପେ ଗଲା ନାଶ   ଭୋଗି କଲା ପାପ କର୍ମସେ ଅବଶ୍ୟ ।
ମୋତେ ମାରିବାକୁ କରି ଷଡ଼ଯନ୍ତ୍ର   ଡ଼କାଇଲା ଦେଇ ନିମନ୍ତ୍ରଣ ପତ୍ର ।
ଗର୍ବୀ, ଅତ୍ୟାଗ୍ରହୀ ନିଷ୍ଠୁର ବ୍ୟକ୍ତିଏ   ବାହାସ୍ଫୋଟ ମାରୁଥାଆନ୍ତି ନିର୍ଭୟେ ।
ମାତ୍ର ପାପଫଳ ବୃଦ୍ଧି ପାଇ ଶେଷେ   ବିନାଶ ହୁଅନ୍ତି ବର୍ଷର ନିର୍ଦ୍ଦେଶେ ।
ତାହାହିଁ ଘଟିଲା କଂସର ଭାଗ୍ୟରେ   ଏଡ଼େ ବଡ ବୀର ପଡ଼ିଲା ମହୀରେ ।
ପାପ କର୍ମ କରି ଆୟୁକ୍ଷୟ ଗଲା   ଆପଣା ଦୋଷରୁ ଆପେ ସେ ମରିଲା ।
କଂସ ମରଣର ଅଟେ ଏ ରହସ୍ୟ   ଅନ୍ୟର ନାହିଁତ ତିଳେ ମାତ୍ର ଦୋଷ ।
ମୋତେ ମାରିବାକୁ ଯାଇ ସେ ମରିଲା   ନିମୂଳ ନିର୍ବଂଶ ସଫଳ ହୋଇଲା
କୃଷ୍ଣକଥା ଶୁଣି ନାରଦ ମହର୍ଷି   ମନଯାନେ ଗଲେ କୃଷ୍ଣ ନାମ ଘୋଷି ।
କଂସର ମରଣେ ଦେବେ ତୃପ୍ତ ହୋଇ   ପୁଷ୍ପବୃଷ୍ଟି କଲେ ଶୂନ୍ୟ ପଥେ ଥାଇ
ଯାଦବେ ସକଳେ ହେଲେ ଆନନ୍ଦିତ   ଉତ୍ସବ ପାଳିଲେ ବାଦ୍ୟେ କରି ନୃତ୍ୟ
ଏକଶ ତିରିଶ ପଦେ ଅଧ୍ୟା ଶେଷ   ଗୀତରେ ଭଣିଲା କବି ବୁଲାଦାସ

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ
ଗୋପଲୀଳା ଖଣ୍ଡେ କଂସବଧ ଆଖ୍ୟାନେ
ନାମ ପଞ୍ଚ ପଞ୍ଚାଶତ ଅଧ୍ୟାୟ ସମାପ୍ତଂ
ଶ୍ରୀକୃଷ୍ଣାର୍ପଣମସ୍ତୁ ।



# ଷଷ୍ଟ ପଞ୍ଚାଶତ ଅଧ୍ୟାୟ

# ଉଗ୍ରସେନଙ୍କ ରାଜ୍ୟାଭିଷେକ ଓ ନନ୍ଦଙ୍କ ଗୋପପୁର ପ୍ରତ୍ୟାବର୍ତ୍ତନ

## ରାଗ - ଶଙ୍କରାଭରଣ

କୃଷ୍ଣ ଚରିତ ମାନସ ଶୁଣ ସୁଜ୍ଞଜନ
କଂସ ପ୍ରେତକାର୍ଯ୍ୟ ଶେଷ ଅନ୍ତେ ରାମକୃଷ୍ଣ
ଜଗ ବନ୍ଧୁ ରୂପ ଧରି
ଯାଦବ ସକଳେ ଠିଆ କରେ ଶିର ଭରି । ୧

ଯାଦବଗଣଙ୍କୁ ଶୁଦ୍ଧି ଆଜ୍ଞାଦେଲେ କୃଷ୍ଣ
ମୁକ୍ତ କରିଦିଅ ବେଗେ ଯେତେ ବନ୍ଦୀଗଣ
ଆଜ୍ଞା ପାଇଣ ସାମନ୍ତେ
ବନ୍ଦୀମୁକ୍ତ କରିଦେଲେ କାରାଗାରେ ଯେତେ । ୨

ଯାଦବଗଣଙ୍କୁ ପୁଣି ଆଜ୍ଞା ଦେଲେ କୃଷ୍ଣ
ଉଗ୍ରସେନ ଅଭିଷେକ କର ଆୟୋଜନ
ତାହାଶୁଣି ଉଗ୍ରସେନ
ମନାକଲେ ମଥୁରାରେ ହେବାକୁ ରାଜନ । ୩

କହୁଛନ୍ତି ଉଗ୍ରସେନ ଶୁଣ ନାରାୟଣ
ଜଗତଠାକୁର ତୁମ୍ଭେ ହୁଅ ନରରାଣ
ସୁନ୍ଦର ଦିଶିବ ମହୀ
ଆମ୍ଭେ ପାଦେ ଖଟିଥିବୁ ପାରିଷଦ ହୋଇ । ୪

ତୁମ୍ଭେ ଆମ୍ଭ ମୁକ୍ତିଦାତା ପୁଣି କାର୍ଯ୍ୟଗ୍ରାହି
ତୁମ୍ଭର ଅର୍ଜିତ ସିଂହାସନ ଏ ଅଟଇ
କର ତୁମ୍ଭେ ଆରୋହଣ
ବୃଦ୍ଧ ଆମ୍ଭେ ରାଜ ପଣେ କିବା ପ୍ରୟୋଜନ । ୫

ଉଗ୍ରସେନ କଥା ଶୁଣି ଯୋଡ଼ ହସ୍ତ ହୋଇ
ବିନମ୍ର ବଚନେ ବୋଲୁଛନ୍ତି ଦୁଇ ଭାଇ
ଆହେ ଅଜା ଉଗ୍ରସେନ
ତୁମ୍ଭେ ଯା କହିଲ ତାହା ନୁହଇଁ ଗ୍ରହଣ । ୬
କାରଣ ଏ ମଥୁରାର ରାଜ ସିଂହାସନ
ଏ ମହୀମଣ୍ଡଳେ ଅଟଇ ଶ୍ରେଷ୍ଠ ଆସନ
ଦାୟିତ୍ୱ ନେବା ପାଇଁ
ଉପଯୁକ୍ତ ବ୍ୟକ୍ତି ଆମେ ନୋହୁ ନରସାଇଁ । ୭
ସଂସ୍କାର ନାହିଁ କ୍ଷତ୍ରିୟ କୁଳରେ ଆମ୍ଭର
ଏଡ଼େ ବଡ ଯୋଗ୍ୟାସନେ ବସିବୁ କପର
ତାପାଇଁ ଯୋଗ୍ୟତାର୍ଜନ
କରିବା ଆମ୍ଭର ପକ୍ଷେ ଆଗ ପ୍ରୟୋଜନ । ୮
ସେଥିପାଇଁ ଲାଗିଯିବ ବହୁତ ସମୟ
ମୋ ବିଚାରେ ତୁମ୍ଭେ ହୁଅ ରାଜ୍ୟ ନରରାୟ
ବିଜେ କର ସିଂହାସନେ
ଛତ୍ର ଟେକାଇବୁ ଆମ୍ଭେ ସେବାକାରୀପଣେ । ୧୦
ଭୋଜବଂଶ ଜ୍ୟେଷ୍ଠ ସୁତ ରାଜ୍ୟକୁ କାରେଣୀ
ଅନ୍ୟ ଷଡ଼ ଗୋଟି ବଂଶ ଯାଦ ପଣେ ଗଣି
ଭୋଜ ବଂଶେ ତୁମ୍ଭେ ଜାତ
ମଥୁରା କଟକେ ପୁଣି ନ୍ୟାଯ୍ୟ ନରନାଥ । ୧୦
ଆମ୍ଭ ପିତୃପିତା ମହ ନୃପ ନୋହୁ ଏଥେ
ପାଦ ପୁଦ ହୋଇ ନୃପ ହୋଇବୁ କେମନ୍ତେ ?
ବୋଲୁଛନ୍ତି ଉଗ୍ରସେନ
ପୃଥିବୀର ଭାରତୁମ୍ଭେ କରିଲେ ହରଣ । ୧୧
ଏକେ ତୁମ୍ଭେ ବିଶ୍ୱପତି ପୁଣି କାର୍ଯ୍ୟଗ୍ରାହୀ
ରାଜ ରାଜେଶ୍ୱର ଅଟ ଜଗତ ଗୋସାଇଁ
ତୁମ୍ଭ ପରିଯୋଗ୍ୟ ନାହିଁ
ଜଗତ ହସିବ ଶୋଭା ହେଲେ ନରସାଇଁ । ୧୨

ବୃଷ୍ଣି ବଂଶ ବୀର ବସୁଦେବ ତୁମ୍ଭ ପିତା
ମୋ କନ୍ୟା ଦେବକୀ ଦେବୀ ପୁଣି ତୁମ୍ଭ ମାତା
ବଂଶ କ୍ରମେ କୁଳ ଶ୍ରେଷ୍ଠ
ମାତୃ ଅଂଶେ ତୁମ୍ଭେ ପୁଣି ସମ୍ପର୍କେ ଗରିଷ୍ଠ । ୧୩
ଉଣଜାର ରାଜ୍ୟେ ଅଛୁ ନ୍ୟାୟ୍ୟ ଅଧିକାର
ତୁମ୍ଭେ ରାଜା ହେବା କଥା ଆମ୍ଭର ବିଚାର
ଗୁରୁଜନଙ୍କ କଥାମାନ
ମଥୁରାରେ ମହୀପତି ହୁଅ ମାନମଣି । ୧୪
ଶ୍ରୀକୃଷ୍ଣ କହିଲେ ଅଜା ଦେବ କାର୍ଯ୍ୟ ଅର୍ଥେ
କଂସାସୁର ନାଶଗଲା ଦୋଷ ଅନୁମତେ
ବିଶ୍ୱହିତେ ହେଲାହତ
ରାଜା ହେଲେ କି ବୋଲିବ ଆମ୍ଭଙ୍କୁ ଜଗତ । ୧୫
ଉଗ୍ରସେନ ବୋଲୁଛନ୍ତି ସର୍ବଗୁଣଦାମୀ
ତୁମ୍ଭେତ ସୃଷ୍ଟି କରିଛ ପାପପୂଣ୍ୟ ବେନି
ଅଲେଖ ଅରୂପ ତୁହି
ତୋ ଅଙ୍ଗରେ ପାପପୂଣ୍ୟ ଲାଗିବ କମ୍ପାଇଁ । ୧୬
ତୋ ମାୟାରୁ ଉଦ୍ଧରି କେ ପାରେ ଦେବ ସ୍ୱାମୀ
ଅନ୍ତିମରେ ନ ଭୁଲାଅ ମୋତେ ଅନ୍ତର୍ଯ୍ୟାମୀ ?
ସକୌତେ କହିଲେ କୃଷ୍ଣ
ମହୀଭାର ନିବାରଣେ ଆମ୍ଭେ ଅବତୀର୍ଣ୍ଣ । ୧୭
ମାନବ ରୂପେ ଜନମ ଏ ଦ୍ୱାପର ଯୁଗେ
ଦୁଷ୍ଟଗଣ ବିନାଶିବୁ ବୁଲି ମହୀଭାଗେ
ଧର୍ମ କରିବୁ ସ୍ଥାପନ
ଆମ୍ଭେ ନରଖିଲେ ଧର୍ମ ହୋଇବ ବିପନ୍ନ । ୧୮
ଆମ୍ଭେ ରାଜା ହେବା କଥା ଅଟଇ ଅଯୁକ୍ତ
ତୁମ୍ଭଙ୍କୁ ରାଜା କରାଇ ଦେଖାଇବୁ ଛନ୍ଦି
ତୋ ପୁତ୍ର ଅନ୍ୟାୟ୍ୟ କଲା ।
ତୋହଠାରୁ ବଳାତ୍କାରେ ରାଜ୍ୟ ନେଇଗଲା । ୧୯

ଆମ୍ଭ ଦୁଇଭାଇ ଅଟୁ ଆମ୍ଭେ ତୁମ୍ଭର
ଏଣୁ ତୁ ଆମ୍ଭ ସମ୍ପଦ ସୁଖେ ଭୋଗ କର
ପ୍ରାପ୍ତହେଲୁ ପୁଣ୍ୟ ଫଳେ
ଏବେ ଚକ୍ରବର୍ତ୍ତୀ ହୁଅ ଏ ମହୀ ମଣ୍ଡଳେ । ୨୦
ଏହାକହି କୃଷ୍ଣ ଦେଲେ ଶ୍ରୀ ହସ୍ତରେ ଶାଢ଼ି
ସାଷ୍ଟାଙ୍ଗରେ ପ୍ରଣିପାତ କଲେ ପାଦେ ପଡ଼ି
ଶିରେ ଛତ୍ର ଟେକାଇଲେ
ପାରିଦଣ୍ଡ ଧରି କରେ ନିଯୋଗ ଖଟିଲେ । ୨୧
ସିଂହାସନେ ବିଜେ ହେଲେ ଦେଖି ଶୁଭବେଳ
ଅଭିଷେକ କରାଇଲେ ଇଡ଼ ତୀର୍ଥ ଜଳ
ଖଟିଲେ ଯାଦବ ଗଣେ
ଚରଣେ ପଡ଼ିଲେ ରାମ କୃଷ୍ଣ ବେନି ଜଣେ । ୨୨
ସମ୍ଭବେ ପାଳିତ ହେଲା ଅଭିଷେକୋତ୍ସବ
ପିତାବସୁଦେବ ନିଜେ ଯୋଗାଡ଼ିଲେ ସବ
ସମ୍ବର୍ଦ୍ଧିତ ହେଲେ ନନ୍ଦ
ଦେଖି ମଧୁପୁରବାସୀ ହୋଇଲେ ଆନନ୍ଦ । ୨୩
ନନ୍ଦ ରଜା ମଥୁରାରେ କିଛି ଦିନ ରହି
ମନ ବଳାଇଲେ ଗୋପେ ଫେରି ଯିବା ପାଇଁ
ପୁତ୍ରଙ୍କୁ ଡ଼ାକି କହିଲେ
ଗୋପପୁରେ ଚାଲି ବାବୁ ଯିବା ଅବହେଳେ ।୨୪
ପିତାଙ୍କ ମୁଖରୁ ଶୁଣି ପ୍ରିତି ପୂର୍ଣ୍ଣବାଣୀ
କହିଲେ ଅଳପ ହସି ହରି ହଳ ପାଣି
ହେ ପିତା ! କରନ୍ତୁ ଶ୍ରବଣ
ଜଗତ ମଙ୍ଗଳେ କଲୁ କଂସକୁ ନିଧନ । ୨୫
ପୃଥିବୀ ନୃପଙ୍କୁ କଂସ କରିଛି ହିଙ୍ଗାସ
କଂସ ମଲା ଶୁଣି ରାଜ୍ୟ କରିଦେବେ ଧ୍ୱଂସ
ବପରି ମାଡ଼ି ଆସିବ
ଦୃଢ କାଳେ ଉଗ୍ରସେନ ଅରକ୍ଷିତ ହେବ । ୨୬

ରାଜା ନାଶ ଗଲେ ରାଜ୍ୟ ହେବ ଅରାଜକ
ଧନ ଓ ଜୀବନ ରକ୍ଷା ନପାରିବେ ଲୋକ
ଯଶ କୀର୍ତ୍ତି ଯିବ ନାଶ
ଜନ ମୁଖେ ଅପକୀର୍ତ୍ତି ରହିବ ଅବଶ୍ୟ । ୨୭

ତୁମ୍ଭେ ତାତ ଆଗେ ଯାଅ ଗୋପାଳଙ୍କୁ ନେଇ
ରାଜ୍ୟ ସୁସ୍ଥ କରିପଛେ ଯିବୁ ଭାଇ ବେନି
ମାତାଙ୍କୁ କହିବ ଯାଇ
ମନସ୍ତାପ ନ କରିବେ ସେ ଆମ୍ଭର ପାଇଁ । ୨୮

ଆମ୍ଭପ୍ରିୟ ଗୋପଗୋପୀ ମଧୁପୁର ବାସୀ
ପ୍ରବୋଧନା ଦେଇତାଙ୍କୁ କହିବ ଆଶ୍ୱାସି
ପୁତ୍ର ମୁଖୁ ଏହା ଶୁଣି
ଶୋକାତୁରେ ନୟନରୁ ଗଡ଼ାଇଲେ ପାଣି । ୨୯

କହୁଛନ୍ତି ନନ୍ଦ ରାଜା ହୋଇ ମର୍ମାହତ
ଯେଉଁ ଦିନ ନେଲି ମୁହିଁ ତୁମ୍ଭର ଦାୟିତ୍ୱ
ଜାଣିଥିଲି ଦିନେ ତୁହି
ମୋ କୋଳକୁ ଶୂନ୍ୟ କରି ଆସିବ ପଳାଇ । ୩୦

ଏବେ ସେହି ବେଳ ଆସି ହେଲା ଉପଗତ
ତୋପିତା ମାତାଙ୍କ ହାତେ କଲି ସମର୍ପିତ
ମୋପକ୍ଷେ ବଡ଼ ଗୌରବ
ଏହାଠୁ ଅଧିକ ଲଭ ଆଉ କିସ ହେବ ? ୩୧

ସଭିଙ୍କ ହୃଦୟ ଜୟ କରିଛ କୁମର
ସମସ୍ତେ ତୋ ପ୍ରିୟଜନ ନାହିଁ ପରାପର
ଦେବର୍ଷିଙ୍କ ବାଣୀ ସତ୍ୟ
କିଛୁକାଳ ରହିଥିଲୁ ହୋଇ ମୋର ପୁତ୍ର । ୩୨

ପର ପୁତ୍ର ଜାଣି କରି ନାହିଁ ହିନମାନ
ହୃଦୟର ସ୍ନେହ ଦେଇ କରିଛୁ ପାଳନ
ଯଶୋଦା ଜନନୀ ତୋର
ସ୍ତନ୍ୟ ପାନ ଦେଇ ଅଛି ମୁଖରେ ତୋହର ।୩୩

ମୋର ନିଜ ପୁଅ ହୋଇଥିଲେ ମଧ୍ୟ ତୁମ୍ଭ
ଏହାଠୁ ଅଧିକ ସ୍ନେହ ନପାରନ୍ତି ଦେଇ
ଏହା ମୋ ନିଷ୍ଠା ବଚନ
ତୋ ଅଭାବେ ରହିଗଲା ହୃଦେ ଶୂନ୍ୟସ୍ଥାନ । ୩୪

ପୋଷ୍ୟ ପୁତ୍ର ପରି ତୋତେ କରି ନାହିଁ ହେୟ
ପାଳନ କରିଛି ଦେଇ ଅନ୍ତରର ସ୍ନେହ
ତୋ ସ୍ନେହେ ପୂର୍ଣ୍ଣ ହୃଦୟ
ଯେଉଁଠାରେ ଥିଲେ ତୁହି ମୋହର ତନୟ । ୩୫

ଖୋଇବା, ପେଇବା ତଥା ବେଶ ପୋଷାକରେ
ଅବହେଳା କରି ନାହିଁ ସେବା ଶୁଶ୍ରୂଷାରେ
ଗୁରୁ ରଖାଇ ଗୃହରେ
ଯଥୋଚିତ ଶିକ୍ଷାଦାନ ଦେଇଛି ତୁମ୍ଭରେ । ୩୬

ତୋ ଦୁଷ୍ଟାମି ଦେଖି କେବେ ଦେଇଅଛି ଦଣ୍ଡ
ଦୋଷଥିଲେ ସେଥି ପାଇଁ ଦିଅ ମୋତେ ଦଣ୍ଡ
ଲାଳନ ପାଳନ କାର୍ଯ୍ୟେ
ଅବହେଳା କରି ନାହିଁ ମନ ମୋର ବୁଝେ । ୩୭

ଗୋପାଳ କୁଳେ ଗୋପାଳନ ପ୍ରଧାନ ବୃତ୍ତି
ସେ କାର୍ଯ୍ୟେ ଯଦ୍ୟପି ତୋତେ ଦେଇଛି ନିଯୁକ୍ତି
କରି ନାହିଁ କିଛି ଦୋଷ
ଖୁଆଇଛି କ୍ଷୀର ସର ଲବଣୀ ଗୋରସ । ୩୮

ଦୁର୍ଜ୍ଜନ ଦଳନ ତଥା ଧର୍ମ ସଂସ୍ଥାପନ
ଦେବତାଙ୍କ ଇଚ୍ଛା ଯାହା କରିବା ପୂରଣ
ମାତ୍ର ମୋର ବକ୍ଷ ଶୂନ୍ୟ
ହୋଇ ରହିଥିବ ତୁମ୍ଭ ପାଇଁ ଚିରଦିନ । ୩୯

ମୁଁ ଯଦି ଏଠାରେ ରହେ ଦୁଃଖ ମୋ ଅସହ୍ୟ
ନିଷ୍ଫଳ ହୋଇବ ଏଥୁ ଯେବେ ନ ଫେରିଲେ ବିଦାୟ
ମାତା ପଥ ଗୁହିଁଥିବ
ତୁମ୍ଭଙ୍କୁ ଅନାଇ ଦୁଃଖେ ଦିନ କାଟୁଥିବ । ୪୦

ତାହାଙ୍କୁ ସାନ୍ତ୍ୱନା ଦେବା ମୋହର କର୍ତ୍ତବ୍ୟ
ମୁଁ କାଲି ସକାଳୁ ଯିବି ଗୋପପୁର ଧ୍ରୁବ
ଶୁଣି ନନ୍ଦଙ୍କ ବଚନ
ହେଲା ନନ୍ଦନଙ୍କ ନେତ୍ର ଲୋତକରେ ପୂର୍ଣ୍ଣ । ୪୧
ନନ୍ଦଙ୍କୁ ବୁଝାନ୍ତି ବହୁ ମତେ ଦୁଇଭାଇ
ବୋଲନ୍ତି ବିନୟ ବାଣୀ ଯୋଡ଼ି କର ହୋଇ
ଗୋପାଳ ବାଳକ ଗଣ
କହୁଛନ୍ତି ରାମ କୃଷ୍ଣେ କରି ଆଲିଙ୍ଗନ । ୪୨
ଆହେ ସଖା ରାମ କୃଷ୍ଣ ତୁମ୍ଭେ ଆମ୍ଭ ପ୍ରାଣ
ତୁମ୍ଭଙ୍କୁ ଛାଡ଼ି କପରି ଧରିବୁ ଜୀବନ ?
ଗୋପାଳ ବାଳକେ ଚାହିଁ
କହିଲେ ଆପଣା ଘରେ ରହ ତୁମ୍ଭେ ଯାଇ । ୪୩
ମନପ୍ରାଣ ରଖିଥିବ ଚରଣେ ଆମ୍ଭର
ତୁମ୍ଭର ମନରୁ ଆମ୍ଭେ ନ ହୋଇବୁ ଦୂର ।
ତୁମ୍ଭେ ଜୀବନ ସମାନ
ଜୀବନ ବିହୁନେ କିସ ଧରିଇବ ପ୍ରାଣ ? ୪୪
ଏପରି ଜଣ ଜଣକୁ ମନାଇ ଶ୍ରୀକୃଷ୍ଣ
ପଠାଇଲେ ଗୋପପୁରେ କରି ଆଲିଙ୍ଗନ
ନେତ୍ରୁ ଗଳେ ଅଶ୍ରୁଜଳ
କି ବର୍ଣ୍ଣିବା ସେ ବିଚ୍ଛେଦ କରୁଣ କଲ୍ଲୋଳ । ୪୫
ରାମକୃଷ୍ଣ ପାଦେ ଚିତ୍ତ କରି ସମର୍ପଣ
ଫେରିଲେ ଗୋପାଳ ବାଳେ ଚିତ୍ରିଲା ସମାନ
ବିଷ୍ଣୁମାୟା ବିରଚିଲେ
ଗୋପାଳ ବାଳକ ଯେନ ନନ୍ଦ ବାହୁଡ଼ିଲେ । ୪୬
ଆସିବା ବେଳେ କହିଲେ ବସୁଦେବେ ନନ୍ଦ
ତୁମ୍ଭ ପୁତ୍ର ତୁମ୍ଭ ହସ୍ତେ ଦେଇ ମୁଁ ଆନନ୍ଦ
ହୋଇଲି ଦାୟିତ୍ୱ ମୁକ୍ତ
ପାଳନରେ ତ୍ରୁଟିଥିଲେ କ୍ଷମା ଦେବ ମିତ୍ର । ୪୭

ନନ୍ଦ କଥା ଶୁଣି ବସୁଦେବ ଭାବାବେଶ
ଲୋତକ ବର୍ଷି କଲେ କୃତଜ୍ଞତା ପ୍ରକାଶ
ଯାବୁଡ଼ି ଧଇଲେ ନନ୍ଦ
କିବା କୋଳା କୋଳି କେବା ବିଷାଦ ଆନନ୍ଦ । ୪୮

ଗୋପାଳ ବାଳକ ମେଳେ ଗୋପପତି ନନ୍ଦ
ଫେରିଲେ ଗୋପପୁରକୁ ହୋଇ କାନ୍ଦ କାନ୍ଦ
ଗୋପଲୀଳା ହେଲା ଶେଷ
ଅଣରୂଣ ପଦ ଗୀତ ଗାଏ ବୁଲ୍‌ଦାସ । ୪୯

ଇତି ଶ୍ରୀକୃଷ୍ଣ ଚରିତ ମାନସ ମହାକାବ୍ୟ କଥନେ ଗୋପଲୀଳା ଖଣ୍ଡେ ଉଗ୍ରସେନ ଅଭିଷେକ ଓ ନନ୍ଦ ରାଜାଙ୍କ ସହିତ ଗୋପାଳ ବାଳକେ ଗୋପପୁର ପ୍ରତ୍ୟାବର୍ତ୍ତନେ ନାମ ସପ୍ତ ପଞ୍ଚାଶତ ଅଧ୍ୟାୟ ସମ୍ପୂର୍ଣ୍ଣଂ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।



**ବୋଲି**

ଆହେ ନୀଳଗିରି ନୀଳାଦ୍ରି ନିବାସୀ
ନୀଳାଚଳ ନାଥ ଶ୍ରୀହରି
ନୀରଦ ନିନ୍ଦିତ ନୀଳ କଳେବର
ନବୀନ ସୁନ୍ଦର ସୁବେଶ ।
ନୀରଜ ନୟନ ନୀରଜ ବଦନ
ନୀରଜ ମୁଖ ନରହରି
ନୀରଜ ଚରଣ ନୀରଜ ଧାରଣ
ନୀରଜା ହୃଦୟ ବିହାରୀ ।

ନୀଳ କନ୍ଦରରେ ନିତ୍ୟ ଲୀଳାକର
ନୀଳାଦ୍ରି ବିହାରୀ ଶ୍ରୀହରି
ନିରତେ ଚରଣେ ଶରଣ ପଶିଛୁ
ବନିତ ବିପିନ ବିହାରୀ
ହେ କୃଷ୍ଣ କେଶବ କଂସାରୀ
ଭବଜଳୁ କର ବୁଲକୁ ପାର ।

**ଇତି ଗୋପଲୀଳା ସମ୍ପୂର୍ଣ୍ଣଂ ।**





## ଶ୍ରୀକୃଷ୍ଣ ଚରିତ ମାନସ



ଏକ ମହାକାବ୍ୟ । ଏହାର ମହାନାୟକ ହେଉଛନ୍ତି ପୃଥିବୀର ଶ୍ରେଷ୍ଠତମ ତଥା ସୁବିଶାଳ ସମର ମହାକାବ୍ୟ ''ମହାଭାରତ''ର ମହାନାୟକ ଭଗବାନ କୃଷ୍ଣ ବାସୁଦେବଙ୍କ ଶ୍ରୀମୁଖ ନିଃସୃତ ଶ୍ରୀମଦ୍ ଭଗବତ ଗୀତାର ଅମର ବାଣୀ- ''ଯୁଦ୍ଧାୟ କୃତ ନିଶ୍ଚୟ'' ।

ମହାଭାରତକୁ ଉପଜୀବ୍ୟ କରି ବିଭିନ୍ନ ପ୍ରାନ୍ତୀୟ ଭାଷାରେ ରଚିତ ପ୍ରସିଦ୍ଧ ଉପନ୍ୟାସ, ଗଳ୍ପ, କାବ୍ୟ, କବିତା, ସନ୍ଦର୍ଭ, ସମୀକ୍ଷା, ସମାଲୋଚନାର ଭାଷା, ଶୈଳୀ, ଶବ୍ଦ ବିନ୍ୟାସ ଓ ଭାବାର୍ଥକୁ ଭିତ୍ତି କରି ଏକାଧିକ ରାଗ ରାଗେଣୀରେ ରଚିତ ଶ୍ରୁତିମଧୁର ତଥା ରସୋତୀର୍ଣ୍ଣ ସଙ୍ଗୀତରେ ଭରପୂର ''ଶ୍ରୀକୃଷ୍ଣ ଚରିତ ମାନସ'' ଔପନ୍ୟାସିକ ଶୈଳୀରେ ସଂପୂର୍ଣ୍ଣ ଏକ ନୂତନ ସାରସ୍ୱତ ସୃଷ୍ଟି । ଓଡ଼ିଆ ସାହିତ୍ୟରେ ଅନେକାନେକ କୃଷ୍ଣ କାବ୍ୟ କବିତା, ଗଳ୍ପ, ଉପନ୍ୟାସ ରଚିତ ହୋଇଥିଲେ ମଧ୍ୟ ଏକବିଂଶ ଶତାବ୍ଦୀର ନବବର୍ଷରେ ପ୍ରକାଶିତ ଏହି ମହାକାବ୍ୟ ଏକ ଅନବଦ୍ୟ ସୃଷ୍ଟି । ଆଶା ଓ ବିଶ୍ୱାସ ଏହା ନିଶ୍ଚିତ ରୂପେ ରସଗ୍ରାହୀ ତଥା ଆଧ୍ୟାତ୍ମବାଦୀ ପାଠକ, ପାଠିକା ମାନଙ୍କ ଅନ୍ତଃକରଣରେ ରେଖାପାତ କରିବ । ଏହାର ଚିନ୍ତନ ଓ ଚିତ୍ରଣ କାଳ ହେଉଛି ତିରିଶ ବର୍ଷରୁ ଉର୍ଦ୍ଧ୍ୱ ସମୟ । ଏହା ଚାରିଖଣ୍ଡରେ ବିଭକ୍ତ ଯଥା- ଗୋପଲୀଳା, ମଥୁରା- ଦ୍ୱାରକାଲୀଳା, ବନଲୀଳା ଓ ଭାରତ ଲୀଳା ଖଣ୍ଡ । ତନ୍ମଧ୍ୟରୁ ଗୋପଲୀଳା ଖଣ୍ଡ ଅଧୁନା ପ୍ରକାଶିତ । ଅନ୍ୟ ତିନିଖଣ୍ଡ କ୍ରମଶଃ ପ୍ରକାଶ ଅପେକ୍ଷାରେ ।

ଏ ଲେଖକଙ୍କର କ୍ରମାନ୍ୱୟ ସୃଷ୍ଟି ସମ୍ଭାର ହେଉଛି ଧର୍ମରାଷ୍ଟ୍ର, ଶ୍ରୀଶ୍ରୀମୃଗ ମହାଦେବ କଥନମ୍, ଶ୍ରୀଭଞ୍ଜ ଭୂମି କେନ୍ଦୁଝରୀ, ମହାଶାବରୀ ମା' ତାରିଣୀ, ପିତୃ ପ୍ରତିମ ଦାଶରଥି ଓ ଶ୍ରୀକୃଷ୍ଣ ଚରିତ ମାନସ ।


ପ୍ରାପ୍ତିସ୍ଥାନ

**ନୀଳାଚଳ ପ୍ରକାଶନୀ**

ନୀଳାଚଳ ପ୍ରେସ୍, ବଡ଼ବିଲ- ୭୫୮ ୦୩୫

ଜି - କେନ୍ଦୁଝର, ଫୋ- ୩୦୪୫୦